ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ

# ଅନିର୍ବାଣ

## ନବକୃଷ୍ଣ ଚୌଧୁରୀଙ୍କ ଜୀବନ ଓ ସମୟ

ପଦ୍ମଚରଣ ନାୟକ





ଲେଖକ ପଦ୍ମଚରଣ ନାୟକ ୩୦ ଜାନୁଆରୀ ୧୯୨୬ରେ ଅବିଭକ୍ତ କଟକ ଜିଲ୍ଲାରେ ପାଟକୁରା ଥାନାର ବଡ଼କୂଳ ଗ୍ରାମରେ ଜନ୍ମ ଗ୍ରହଣ କରନ୍ତି । ୧୯୫୧ରେ ରେଭେନ୍‌ସା କଲେଜରୁ ରସାୟନ ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ପରେ ତାଙ୍କୁ ଅଧ୍ୟାପକ ଚାକିରି ଯଚାଯାଇଥିଲା । କିନ୍ତୁ ତାଙ୍କର ସ୍ୱପ୍ନ ଥିଲା ଭିନ୍ନ । ସେ ଚାହୁଁଥିଲେ ସ୍ୱାଧୀନ ଭାରତରେ ରାଜନୀତିରେ ପ୍ରବେଶ କରି ଦେଶବାସୀଙ୍କ ପାଇଁ କିଛି କରିବେ । ଏବେ ସେ କହନ୍ତି, ସ୍ୱାଧୀନତା ପ୍ରାପ୍ତି ପରର ରାଜନୀତିର ଅବକ୍ଷୟ ଭିତରେ ତାଙ୍କର ସ୍ୱପ୍ନ ଦୁଃସ୍ୱପ୍ନରେ ପରିଣତ ହେଲା । ପ୍ରଥମ ପୁସ୍ତକ 'ସ୍ପୁଟନିକ୍ ଓ ଗ୍ରହାନ୍ତର ପର୍ଯ୍ୟଟନ' ଲେଖିବାର ଚାଳିଶ ବର୍ଷ ପରେ ଏବେ ହଠାତ୍, 'ଅନିର୍ବାଣ'ର ଆବିର୍ଭାବ ତାଙ୍କୁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସ୍ୱୀକୃତି ଆଣିଦେଇଛି । ନବକୃଷ୍ଣ ଚୌଧୁରୀ ଓଡ଼ିଶାର ଜନମାନସ ପଟରୁ ଧୀରେଧୀରେ ଅପସରିଯାଉଥିବା ବେଳେ ଓଡ଼ିଶାର ରାଜନୈତିକ ଅଙ୍ଗନର କେନ୍ଦ୍ରରେ 'ଅନିର୍ବାଣ' ମାଧ୍ୟମରେ ସେ ପୁନଶ୍ଚ ଆଣି ତାଙ୍କୁ ଠିଆ କରାଇଛନ୍ତି । ସେ କହନ୍ତି, ସାହିତ୍ୟ କ୍ଷେତ୍ରରେ ସେ ଜଣେ ଅନୁପ୍ରବେଶକାରୀ; କିନ୍ତୁ ସେହି ଅନୁପ୍ରବେଶକାରୀଙ୍କୁ ଓଡ଼ିଆ ସାହିତ୍ୟ ଆପଣେଇନେଇ ଏକ ସମ୍ମାନଜନକ ଆସନରେ ଅବସ୍ଥାନ କରାଇଛି ।

# ଅନିର୍ବାଣ

## ନବକୃଷ୍ଣ ଚୌଧୁରୀଙ୍କ ଜୀବନ ଓ ସମୟ

"ନ ତ୍ୱହଂ କାମୟେ ରାଜ୍ୟମ୍ ନ ସ୍ୱର୍ଗଂ ନାପୁନର୍ଭବମ୍"

ପଦ୍ମଚରଣ ନାୟକ



ବିଦ୍ୟା ପ୍ରକାଶନ
ବାଲୁବଜାର, କଟକ-୨

ଅନିର୍ବାଣ – ଲେଖକ : ପଦ୍ମଚରଣ ନାୟକ, ପ୍ରକାଶକ : ବିଦ୍ୟା ପ୍ରକାଶନ, ବାଲୁବଜାର, କଟକ-୨, ପ୍ରଚ୍ଛଦ : ବିଜୟ ପ୍ରଧାନ, ଡି.ଟି.ପି. : ୟୁନିଟେକ୍, କଟକ, ମୁଦ୍ରଣ : ଗୁରୁପ୍ରସନ୍ନ ପ୍ରେସ୍, କଟକ ।



**ANIRBANA** – Author : Padmacharana Nayak, Publisher : Bidya Prakashan, Balubazar, Cuttack-753 002, Orissa (India), Cover Design : Bijay Pradhan, D.T.P. : Unitech, Cuttack, Printer : Guruprasanna Press, Cuttack.

First Edition : **1996**
Third Edition : **2007** (505 Copies) ISBN : 81-7703-081-7

Price : Rs. **175**

## କୃତଜ୍ଞତାଞ୍ଜଳି

ଏହି ଜୀବନୀ ଲେଖାରେ ମୁଁ ଚୌଧୁରୀ ପରିବାରର ସମସ୍ତଙ୍କଠାରୁ ସବୁ ପ୍ରକାର ସାହାଯ୍ୟ ଓ ସହଯୋଗ ପାଇଛି । ବିଶେଷକରି ଅନ୍ନପୂର୍ଣ୍ଣା ମହାରଣା ଓ କୃଷ୍ଣା ମହାନ୍ତିଙ୍କଠାରୁ ପାଇଥିବା ଅନେକଗୁଡ଼ିଏ ପୁରାତନ ଦଲିଲ ଏବଂ ଚିଠି ମୋ' ଲେଖା ପାଇଁ ଖୁବ୍ ମୂଲ୍ୟବାନ୍ ତଥ୍ୟ ଯୋଗାଇଛି । ଏମାନଙ୍କ ଛଡ଼ା ନବକୃଷ୍ଣ ଚୌଧୁରୀଙ୍କର ବହୁ ସହକର୍ମୀ ଓ ସହବନ୍ଦୀ ଏବଂ ତତ୍କାଳୀନ ବହୁ ବରିଷ୍ଠ ଅଫିସରଙ୍କର ଲେଖା ଓ ସାକ୍ଷାତ୍କାର ମୋ' ଲାଗି ଉପାଦେୟ ବିଷୟବସ୍ତୁ ହୋଇଛି । ତାଙ୍କର ବହୁ ଗୁଣଗ୍ରାହୀଙ୍କର ଅନେକ ଚିଠିରୁ ବି ବହୁତ କଥା ଜାଣିବାକୁ ପାଇଛି । ଏହି ସାହାଯ୍ୟକାରୀଙ୍କ ସଂଖ୍ୟା ଏତେ ଅଧିକ ଯେ ସେମାନଙ୍କ ନାମ ଉଲ୍ଲେଖ କଲେ ତାଲିକା ବହୁତ ଲମ୍ବା ହୋଇଯିବ । ସେମାନଙ୍କଠାରେ କୃତଜ୍ଞତା ଜ୍ଞାପନ କରିବା ସଙ୍ଗେସଙ୍ଗେ ସମସ୍ତଙ୍କ ନାମ ଉଲ୍ଲେଖ ନକରିପାରୁଥିବାରୁ କ୍ଷମା ମାଗିନେଉଛି ।

ଏ ଦିଗରେ ଓଡ଼ିଶା ବିଧାନସଭା ଓ ରାଜ୍ୟ ଅଭିଲେଖାଗାର କର୍ତ୍ତୃପକ୍ଷଙ୍କ ନିକଟରେ ମୁଁ ବିଶେଷ ଋଣୀ । ନବକୃଷ୍ଣ ଚୌଧୁରୀଙ୍କ ଗୁଣଗ୍ରାହୀ, ପୂର୍ବତନ ବାଚସ୍ପତି ଯୁଧିଷ୍ଠିର ଦାସ ଏବଂ ଗବେଷଣା ଅଫିସର୍ କାଳିଦତ୍ତ ଦାସଙ୍କ ସାହାଯ୍ୟ ଫଳରେ ନବକୃଷ୍ଣ ଚୌଧୁରୀଙ୍କ ବିଧାନସଭା ଭାଷଣର ଯେଉଁ ସହସ୍ରାଧିକ ପୃଷ୍ଠା ଜେରକ୍ସ ପାଇଛି, ସେତକ ମୋ' ଲେଖା ଲାଗି ମୌଳିକ ଉପାଦାନ ଯୋଗାଇଛି । ଜ୍ଞାନମଣ୍ଡଳ ଦୁଇଶହ ପୃଷ୍ଠାରୁ ଅଧିକ ଡି.ଟି.ପି. କରାଇଦେଇଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ । ଏମାନଙ୍କ ବ୍ୟତୀତ ବିଭୂତିଭୂଷଣ ମହାନ୍ତି ଓ ଜୟକୃଷ୍ଣ ମହାନ୍ତିଙ୍କଠାରୁ ମୁଁ ବହୁ ମୂଲ୍ୟବାନ ଫଟୋ ପାଇଛି । ସେ ସବୁଗୁଡ଼ିକୁ ବ୍ୟବହାର ନକରିପାରିଥିବା ହେତୁ ମୁଁ ଦୁଃଖିତ । ଏହି ପୁସ୍ତକ ଲେଖବା ଦିଗରେ ନବକୃଷ୍ଣ ଚୌଧୁରୀଙ୍କ ପୁଅ କାଲୁର ସହପାଠୀ କରୁଣାକର ପରିଡ଼ା ବହୁ ସମ୍ବାଦପତ୍ରର ପ୍ରାସଙ୍ଗିକ ଲେଖା ଏବଂ ନବବାବୁଙ୍କ ବହୁ ଚିଠି ଯୋଗାଇ ମୋତେ ବହୁ ପରିମାଣରେ ସହାୟକ ହୋଇଛନ୍ତି ।

# ସୂଚନା

ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲାବେଳେ ସେ ଏଭଳି ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ରଖିଥିଲେ ଯେ, ଅଫିସରମାନେ ବି ତାଙ୍କୁ ଆଜିକାଲି ଭଳି ସି.ଏମ୍. ନ କହି ନବବାବୁ ବୋଲି କହୁଥିଲେ । ଏଣୁ ଏହି ଜୀବନୀରେ 'ନବବାବୁ' ନାଁଟି ବହୁଳ ଭାବରେ ବ୍ୟବହୃତ ହୋଇଛି । ସେହିଭଳି ଗୋପବନ୍ଧୁ ଚୌଧୁରୀଙ୍କୁ ଗୋପବାବୁ ବୋଲି ଲେଖାଯାଇଛି । ଲେଖା ଭିତରେ ପୁତୁରା ମନମୋହନ ଚୌଧୁରୀଙ୍କ ଡାକ ନାଁ ବୁଲୁ ଓ ପୁଅ ବିନାୟକର ନାଁ କାଲୁ ଏବଂ ଝିଆରୀ ଅନ୍ନପୂର୍ଣ୍ଣା ମହାରଣାଙ୍କ ନାମ ଚୁନି ବୋଲି ପଢ଼ିବାକୁ ପାଇବେ । ତାଳ ପକାଇବା ଲାଗି ପ୍ରାୟ ବୁଲୁର ଭଉଣୀର ନାଁ ବୁବୁ (ଉତ୍ତରା) ଦିଆଯାଇଥିଲା । ବୁବୁ ପିଲାଦିନେ ଖୁବ୍ ବୁଦ୍ଧିମତୀ ଥିଲା । ବୁଲୁଭାଇ ଓ ଚୁନିଅପାଙ୍କ ଭଳି ସେ ବି ଗୋପବନ୍ଧୁ ଚୌଧୁରୀଙ୍କୁ ବାପା ଓ ରମା ଦେବୀଙ୍କୁ ବୋଉ ଡାକୁଥିଲା । ବାପାଙ୍କ ସାନଭାଇକୁ ସେ ଡାକିଲା 'ବାପି' । ନବବାବୁଙ୍କୁ ଏହି ବାପି ଡାକିବାଟା ତାହା ପରେ ଏକ ବିରାଟ ପରିବାରର ଡାକ ହୋଇଗଲା । ପୁଣି ନିଜ ମାଆ ନାଆଁର ପ୍ରଥମ ଓ ଶେଷ ଅକ୍ଷର ବାଦ୍ ଦେଇ ମାଳତୀ ଦେବୀଙ୍କୁ 'ମିନୁ ମାଆ'' ନ ଡାକି, ଡାକିଲା 'ନୁମା' । ଏଣୁ 'ବାପି' ପରିବାରର ଲୋକେ ମାଳତୀ ଦେବୀଙ୍କୁ 'ନୁମା' ବୋଲି ଡାକନ୍ତି । ସାନ ଝିଅ ତୃତୀୟ ଗର୍ଭରୁ ଜାତ ବୋଲି ତା'ର ନାଁ 'ତିନୁ', ଆଉ ଲେଖାଲେଖିରେ 'କୃଷ୍ଣା' । ପାଠକମାନେ ଏହି ଡାକ ନାଁ ଓ ଲେଖା ନାଁ ସମ୍ପର୍କରେ କିଛି ପୃଷ୍ଠା ପଢ଼ିବା ପରେ ଅଭ୍ୟସ୍ତ ହୋଇଗଲେ ଆଉ ଅସୁବିଧାଜନକ ମନେକରିବେ ନାହିଁ ।

ବହିର କଳେବର ବୃଦ୍ଧି ହୋଇଯିବାର ଆଶଙ୍କାରୁ ବହୁ ମୂଲ୍ୟବାନ୍ ଚିଠି ଓ ଦଲିଲ୍-ସମ୍ବଳିତ ପରିଶିଷ୍ଟ ଏବଂ ବହୁ ଫଟୋ ଯୋଗ କରିବାର ଲୋଭ ସମ୍ବରଣ କଲି ।

ଲେଖକ

# ତୃତୀୟ ସଂସ୍କରଣ ସମ୍ପର୍କରେ

ନବକୃଷ୍ଣ ଚୌଧୁରୀଙ୍କୁ ତାଙ୍କର ପ୍ରିୟଜନମାନେ 'ବାପି' ବୋଲି ଡାକୁଥିଲେ । ସେ ସୌଭାଗ୍ୟ ମୋ'ର ଘଟିନାହିଁ । ତାଙ୍କର ଜୀବନୀ ଯେଉଁମାନେ ଲେଖିଛନ୍ତି, ସେମାନେ 'ବାପି' ବୃତ୍ତ ମଧ୍ୟର ବ୍ୟକ୍ତି । ଏଣୁ ନବକୃଷ୍ଣ ଚୌଧୁରୀଙ୍କ ଜୀବନୀ ଲେଖିବା ମୋ' ପକ୍ଷରେ ଥିଲା ଏକ ଦୁଃସାହସିକ କାର୍ଯ୍ୟ । ଏହାଛଡ଼ା ବୟସ ଓ ଦୁଃସ୍ୱାସ୍ଥ୍ୟ ତଥା ଆର୍ଥିକ ଅନାଟନର ବୋଝ ତ ଥିଲା । କାଳେ ଜୀବନୀଟି ବାହାରିପାରିବ ନାହିଁ, ସେହି ଆଶଙ୍କା ଥିବାରୁ ତା'ର ପାଣ୍ଡୁଲିପିକୁ ଆଉ କିଛି ଲୋକଙ୍କୁ ଦେଖାଇବା ଲାଗି ସମୟ ପାଇପାରିନଥିଲି । 'ଅନିର୍ବାଣ'ର ଉନ୍ମୋଚନ ଲାଗି ରାଜମୋହନ ଗାନ୍ଧି ଆଗ୍ରହର ସହ ସମ୍ମତ ହୋଇଥିଲେ । ତା'ର ଉନ୍ମୋଚନ ଉତ୍ସବ ଥିଲା ମୋ' ଜୀବନର ଏକ ସ୍ମରଣୀୟ ଦିନ । ବହିଟିର ମୁଦ୍ରଣ ଓ ମଲାଟ ମୋଟେ ଆକର୍ଷଣୀୟ ନଥିଲେବି ବହୁ ପାଠକଙ୍କ ଠାରୁ ମୂଲ୍ୟବାନ ଅଭିମତମାନ ପାଇବାରେ ଲାଗିଲି । ଏହାର ପ୍ରାୟ ଚାଳିଶ ବର୍ଷ ପୂର୍ବେ 'ସ୍ପୁଟ୍‌ନିକ୍ ଓ ଗ୍ରହାନ୍ତର ପର୍ଯ୍ୟଟନ' ନାମକ ବହିଟିଏ ମାତ୍ର ଲେଖିଥିଲି । ବହୁ ସାହିତ୍ୟିକ ଆଶ୍ଚର୍ଯ୍ୟ ହୋଇଥିଲେ, ଏଭଳି ଜଣେ ଅଜ୍ଞାତ ବ୍ୟକ୍ତିଙ୍କ ସେହି ବହିଟି ପଢ଼ି । ଓଡ଼ିଆରେ ଆତ୍ମଜୀବନୀ ଓ ସ୍ମୃତିକଥା ତୁଳନାରେ ଜୀବନୀ ସଂଖ୍ୟା ବହୁତ କମ୍ । ସାହିତ୍ୟିକ ତ ମୋଟେ ନୁହେଁ, ନିଜକୁ ଜଣେ ଲେଖକ ବୋଲି ବି ମୁଁ ଭାବେ ନାହିଁ । ଏହା ସତ୍ତ୍ୱେ ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୯୬ ମସିହା ଲାଗି 'ଅନିର୍ବାଣ'କୁ ପୁରସ୍କୃତ ଦଲେ । ଏତେ ପ୍ରଶଂସା ଓ ପୁରସ୍କାର ପାଇଁ ମୋ'ର ଲେଖନୀ ଅପେକ୍ଷା ନବକୃଷ୍ଣଙ୍କ ଭଳି ଅସାଧାରଣ ଓ ଆକର୍ଷଣୀୟ ବ୍ୟକ୍ତିତ୍ୱ ହିଁ ଦାୟୀ ।

ନବକୃଷ୍ଣ ଚୌଧୁରୀଙ୍କ ଜନ୍ମ ଶତବାର୍ଷିକୀ ପାଳନ ବେଳକୁ ବହିଟିର ଦ୍ୱିତୀୟ ସଂସ୍କରଣର ଅତ୍ୟନ୍ତ ଆବଶ୍ୟକତା ଥିଲା । ଶ୍ରଦ୍ଧେୟ ବନ୍ଧୁ ନଟବର ଖୁଣ୍ଟିଆଙ୍କ ଆନୁକୂଲ୍ୟରେ ବେଷ୍ଟ୍‌ସେଲର୍‌ସ୍ ପବ୍ଲିକେଶନ ସେହି ଅଭାବ ଦୂର କରି ନବକୃଷ୍ଣ ଚୌଧୁରୀଙ୍କ ପ୍ରତି ତଥା ମୋ' ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ପ୍ରଦର୍ଶନ କରିଥିଲେ । ଦ୍ୱିତୀୟ ସଂସ୍କରଣରେ କେତେ ତଥ୍ୟଗତ ପ୍ରମାଦ ସଂଶୋଧନ କରିଥିଲି, ଯେଉଁଥିଲାଗି ମୁଁ ଶ୍ରୀଯୁକ୍ତ ମନମୋହନ ଚୌଧୁରୀଙ୍କଠାରେ କୃତଜ୍ଞ । ଏହାଛଡ଼ା ସେ ଆଉକେତେଗୁଡ଼ିଏ କଥା ଉଠାଇଥିଲେ, ଯାହାକୁ ବିଚାରକୁ ନେଇ ସେସବୁକୁ ମୁଁ ତୃତୀୟ ସଂସ୍କରଣର ସଂଯୋଗ କରିଛି । ପ୍ରଥମ ଓ ଦ୍ୱିତୀୟ ସଂସ୍କରଣରେ ଯେଉଁ ଗୋଟିଏ

ବଡ଼ କଥା ଉଲ୍ଲେଖ କରିପାରିନଥିଲି, ତାହା ହେଉଛି ବ୍ରହ୍ମପୁର ଜେଲ୍‌ରେ ଲକ୍ଷ୍ମଣ ନାୟକଙ୍କ ଫାଶି ଦିନର କଥା । ସେ ସମ୍ପର୍କରେ ସ୍ୱର୍ଗତ ଭଗବାନ ପ୍ରତିହାରୀ ଓ ସ୍ୱର୍ଗତ ଜଗନ୍ନାଥ ମିଶ୍ରଙ୍କ ଲେଖାରୁ ସୂଚନା ପାଇଥିଲେ ମଧ୍ୟ ବ୍ରହ୍ମପୁର ଜେଲ୍‌ର ସେ ବେଳର ସହବନ୍ଦୀ ଦୋଳଗୋବିନ୍ଦ ପ୍ରଧାନ ଓଡ଼ିଶା ବିଧାନସଭାରେ ସେଦିନର ଅନୁଭୂତି ଯେଭଳି ବର୍ଣ୍ଣନା କରିଥିଲେ, ତାହା ମୋ' ମନରେ ଗଭୀର ରେଖାପାତ କରିଥିଲା । ତାଙ୍କୁ ସ୍ୱତନ୍ତ୍ର ଭାବରେ ଏଥିଲାଗି ଭେଟି ତାଙ୍କଠାରୁ ପାଇଥିବା ସେଦିନର ସବିଶେଷ ବିବରଣୀ ଏହି ସଂସ୍କରଣରେ ସନ୍ନିବେଶ କରିଛି । ଏହା ଛଡ଼ା ନବକୃଷ୍ଣ ଚୌଧୁରୀଙ୍କ ଆସାମ, ନାଗାଲାଣ୍ଡ ଓ ମଣିପୁର ଅଞ୍ଚଳରେ ଶାନ୍ତି ପ୍ରଚେଷ୍ଟା ଉପରେ ଅଧିକ କିଛି ବିବରଣୀ ଏହି ସଂସ୍କରଣରୁ ପାଇବେ ।

ନକ୍‌ସଲ୍ ଆନ୍ଦୋଳନର ପ୍ରାରମ୍ଭରେ ପଶ୍ଚିମବଙ୍ଗର ବହୁ ଉଚ୍ଚଶିକ୍ଷିତ ଯୁବକ ତଥା ବୁଦ୍ଧିଜୀବୀ ତହିଁରେ ନିଜକୁ ଉତ୍ସର୍ଗ କରିଦେଇଥିଲେ । ତତ୍କାଳୀନ ମୁଖ୍ୟମନ୍ତ୍ରୀ ସିଦ୍ଧାର୍ଥଶଙ୍କର ରାୟ ସେହି ଆନ୍ଦୋଳନକାରୀଙ୍କୁ ଦୃଢ଼ ହସ୍ତରେ ଦମନ କରିଥିଲେ । ବହୁ ଯୁବକଯୁବତୀ ଓ ବୁଦ୍ଧିଜୀବୀଙ୍କର କୌଣସି ପତ୍ତା ମିଳିଲା ନାହିଁ । ଏଭଳି ଅଗଣତାନ୍ତ୍ରିକ ଉପାୟରେ ସେମାନଙ୍କୁ ରାତିଅଧିଆ ଧରିନେଇ ହତ୍ୟାକରି ପ୍ରତିବାଦ କରିବାକୁ କେହି ସାହସ କରୁନଥିଲେ । ସେହି ସମୟରେ କଲିକତା ବିଶ୍ୱବିଦ୍ୟାଳୟ ସଭାଗୃହରେ ଯେଉଁ ପ୍ରତିବାଦ ସଭା ହୋଇଥିଲା, ସେଥିରେ ନବକୃଷ୍ଣ ଚୌଧୁରୀ ମୁଖ୍ୟବକ୍ତା ହୋଇ ଯେଉଁ ବକ୍ତୃତା ଦେଇଥିଲେ, ତାହା ଅତ୍ୟନ୍ତ ଉଚ୍ଚ କୋଟିର ହୋଇଥିଲା ବୋଲି ପରଦିନର ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇଥିଲା । ସେ ସମ୍ପର୍କରେ କିଛି ବିବରଣୀ ପାଇବେ 'ନାଗରିକ ଅଧିକାର' ଶୀର୍ଷକ ଲେଖାରୁ ।

ଗୋପବନ୍ଧୁ ଚୌଧୁରୀ ଥିଲେ ଜଣେ ଭିନ୍ନ ଧରଣର ବିପ୍ଳବୀ । ତାଙ୍କ ସମ୍ପର୍କରେ କିଛି ପୁନଃମୂଲ୍ୟାୟନ ପାଇବେ, ଏହି ତୃତୀୟ ସଂସ୍କରଣରୁ ।

ଦ୍ୱିତୀୟ ସଂସ୍କରଣ ବିକ୍ରି ସରିବା ପରେ 'ଅନିର୍ବାଣ'ର ବହୁ ପାଠକ ରହିଯାଇଛନ୍ତି ଅନୁଭବ କରି ତୃତୀୟ ସଂସ୍କରଣ ପାଇଁ 'ବିଦ୍ୟା ପ୍ରକାଶନ' ଆଗଭର ହୋଇଥିବାରୁ ମୁଁ ତାଙ୍କଠାରେ ମୋ'ର କୃତଜ୍ଞତା ପ୍ରକାଶ କରୁଛି ।

ଭୁବନେଶ୍ୱର — ଲେଖକ



ଝିଅ ଏବଂ କର୍ମୀଙ୍କ ସହିତ ନବକୃଷ୍ଣ ଚୌଧୁରୀ



ବ୍ରହ୍ମପୁର ଜେଲ୍



ମାଳତୀ ଦେବୀ



ମାଳତୀ କୁଟୀର

# ପର୍ବତ ଆରୋହଣ

ନବକୃଷ୍ଣ ଚୌଧୁରୀ ବଞ୍ଚିଥିଲା ବେଳେ ମୁଁ ତାଙ୍କୁ ଯଥାର୍ଥ ଭାବରେ ଚିହ୍ନି ପାରି ନ ଥିଲି । ଅବଶ୍ୟ ୧୯୪୨ ଆନ୍ଦୋଳନ ସମୟରେ ତାଙ୍କ ନାଁ ଶୁଣିଥିଲି । ୧୯୪୬ ମସିହାରେ ସେ ମନ୍ତ୍ରୀ ହେଲେ । ସେତେବେଳକୁ ରାଜନୀତିରେ ମୁଣ୍ଡ ଖେଳେଇବାର ଅବସର ନଥିବାରୁ ତାଙ୍କୁ ଭଲଭାବରେ ଜାଣିନଥିଲି । ୧୯୫୧ ମସିହା ଆଡ଼କୁ ତାଙ୍କୁ ଜାଣିବା ବେଳକୁ ସେ ହୋଇଯାଇଥାନ୍ତି ଆମମାନଙ୍କ ପାଇଁ ଖଳନାୟକ । ସରକାରୀ କଲେଜ ଛାତ୍ରମାନଙ୍କ ଦରମା ବୃଦ୍ଧି ନେଇ ଉପୁଜିଥିବା ଆନ୍ଦୋଳନ ଓ ସେଥିରୁ ଲାଠି ତଥା ଗୁଳିଚାଳନା ଫଳରେ କଟକର ଯୁବସମାଜରେ ନବକୃଷ୍ଣ ଚୌଧୁରୀଙ୍କ ବିରୋଧରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଥାଏ । ଅବଶ୍ୟ ଗୁଳିଚାଳନା ଫଳରେ କେହି ମରି ନ ଥିଲେ, କେବଳ ଜଣଙ୍କ ଗୋଡ଼ରେ ଆଘାତ ଲାଗିଥିଲା ।

୧୯୫୨ ସାଧାରଣ ନିର୍ବାଚନ ସମୟରେ ମୁଁ ଲୋକନାଥ ଚୌଧୁରୀଙ୍କ ନିର୍ବାଚନର ସଞ୍ଚାଳକ ଥାଏ । କୁଜଙ୍ଗ ନିକଟସ୍ଥ କାଳିଆପାଟଠାରେ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଏକ ନିର୍ବାଚନ ସଭାରେ ଭାଷଣ ଦେଲା ପରେ, ମୁଁ ତାଙ୍କୁ ସେତେବେଳକାର କମ୍ୟୁନିଷ୍ଟ ପାର୍ଟିର କେତେକ ଧରାବନ୍ଧା ପ୍ରଶ୍ନ କରିଥିଲି–ରାଜାମାନଙ୍କୁ କାହିଁକି ଭତ୍ତା ଦିଆଯାଉଛି ? ଜମିଦାରମାନଙ୍କୁ କାହିଁକି କ୍ଷତିପୂରଣ ଦିଆଗଲା ? କଂଗ୍ରେସ କହିଥିଲା, ଖଜଣା ଟିକସ କମାଇବ ; ଖଜଣା ତ କମିଲା ନାହିଁ, ଟିକ୍‌ସ ବଢ଼ିଲା ଇତ୍ୟାଦି ଇତ୍ୟାଦି । ଅନ୍ୟାନ୍ୟ ପ୍ରଶ୍ନର ଉତ୍ତର ମନେନାହିଁ । "ଖଜଣା ଟିକସ କମାଇବ ବୋଲି କହି, କଂଗ୍ରେସ କମାଇ ନାହିଁ ସତ, କିନ୍ତୁ ହୀରାକୁଦ ନଦୀବନ୍ଧ ଯୋଜନା ଭଳି ବଡ଼ କାମ କଥା କହି ନ ଥିଲା, ଅଥଚ କରିଛି ।" ଏହା ଥିଲା ସେ ଦିନ ନବକୃଷ୍ଣ ଚୌଧୁରୀଙ୍କ ଉତ୍ତର । ଏହି ସମୟରେ 'ନିଆଁଖୁଣ୍ଟା' ନାମକ ଏକ ପ୍ରଭାବଶାଳୀ ପତ୍ରିକା ବାହାରୁଥାଏ । ତହିଁରେ କଂଗ୍ରେସ ସରକାର ବିରୋଧରେ, ବିଶେଷ କରି ନବକୃଷ୍ଣ ଚୌଧୁରୀ ଏବଂ ମାଳତୀ ଦେବୀଙ୍କ ବିରୋଧରେ କଟୁ ସମାଲୋଚନା ପ୍ରକାଶ ପାଉଥାଏ । ଆମମାନଙ୍କ ଭଳି ଉପରଠାଉରିଆ ଲୋକଙ୍କୁ ସେ ସବୁ ଭଲ ଲାଗୁଥାଏ । ଏହାର ଠିକ୍ ଚାରିବର୍ଷ ପରେ ସୀମା ଆନ୍ଦୋଳନ କାଳରେ ଓଡ଼ିଶାର ଦାବି ଅଗ୍ରାହ୍ୟ ହେବା ଏବଂ ପୁଲିସ ଗୁଳିରେ ଦୁଇଜଣ ପ୍ରାଣ ହରାଇବା ଯୋଗୁଁ ନବକୃଷ୍ଣ ଚୌଧୁରୀଙ୍କୁ ମୁଖ୍ୟମନ୍ତ୍ରୀ ପଦ ହରାଇବାକୁ ପଡ଼ିଥିଲା । ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିଲାବେଳକୁ ସେ ହୋଇଯାଇଥିଲେ ପୂରାପୂରି ଏକ ବର୍ଜନୀୟ ବ୍ୟକ୍ତି ।

ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବାର ପାଞ୍ଚ ବର୍ଷ ପରେ "କଂଗ୍ରେସ ହଟାଓ" ଆନ୍ଦୋଳନରେ ନବକୃଷ୍ଣ ଚୌଧୁରୀଙ୍କ ପ୍ରମୁଖ ଭୂମିକା ତାଙ୍କ ପ୍ରତି ଆଖିଦୃଶିଆ ସହାନୁଭୂତି ସୃଷ୍ଟି କରିଥିଲା । ସେତେବେଳେ ଅନ୍ୟ ନେତାମାନେ କଂଗ୍ରେସକୁ ହଟାଇବାକୁ କହୁଥିଲେ । ସେମାନଙ୍କଠାରୁ ନବକୃଷ୍ଣ ଚୌଧୁରୀଙ୍କ କଥା ଥିଲା ଭିନ୍ନ ଧରଣର । ଯେତେବେଳେ ସେ ନିଜକୁ ରାଜସାକ୍ଷୀ ବୋଲି କହି ରାଜ୍ୟ ସାରା ବୁଲି ସଭା କଲେ, ତାହା ଆନ୍ଦୋଳନକୁ ନୂଆ ପର୍ଯ୍ୟାୟକୁ ନେଇଗଲା । ୧୯୬୭ ନିର୍ବାଚନରେ ସବୁ ନେତା ଭୋଟରେ ଠିଆ ହେଲେ । ନବକୃଷ୍ଣ ଚୌଧୁରୀ କିନ୍ତୁ ନିର୍ବାଚନ ଲଢ଼ିବାକୁ ମନା କରିଦେଲେ । ଇନ୍ଦିରା ଗାନ୍ଧିଙ୍କ ଜରୁରୀକାଳୀନ ଅବସ୍ଥା ଘୋଷଣା ବିରୋଧରେ ସେ ପୁଣି ଅଗ୍ରଣୀ ଭୂମିକା ଗ୍ରହଣ କଲେ । ସେହି ସମୟରେ କେନ୍ଦ୍ରାପଡ଼ାରେ ଏ ସମ୍ପର୍କୀୟ ଏକ ବୈଠକୀ ସଭାରେ ନବବାବୁଙ୍କୁ ଅତି ପାଖରୁ ଦେଖିବାକୁ ଓ ଶୁଣିବାକୁ ପାଇଥିଲି । କାରାଗାରରେ ପକ୍ଷାଘାତ ରୋଗର ଶିକାର ହୋଇ ସେ ଗାଧୁଆଘରେ ପଡ଼ି ଅଚେତ ହୋଇଯାଇଥିଲେ । ସେଇ ରୋଗର ପ୍ରଭାବ ଶେଷ ପର୍ଯ୍ୟନ୍ତ ତାଙ୍କୁ ଏକରକମ ଗ୍ରାସ କରି ରହିଲା । ଏହିସବୁ ଘଟଣା ପରେ ତାଙ୍କ ପ୍ରତି ମୋ'ର ସମ୍ମାନ ବଢ଼ିଯାଇଥିଲା । ଜୀବନର ଶେଷ ସାତବର୍ଷ ସେ ଅନୁଗୋଳରେ ରହୁଥିଲା ଭିତରେ ଦୁଇଥର ତାଙ୍କ ପାଖରେ ବସି କିଛି ଉପାଦେୟ କଥା ଶୁଣିବାର ସୁଯୋଗ ପାଇଥିଲି । କିନ୍ତୁ କଥାବାର୍ତ୍ତାରେ ସଂଯୋଗ ସୃଷ୍ଟିକାରୀ ଖିଅ ପାଇ ନ ଥିଲି ।

ନବକୃଷ୍ଣ ଚୌଧୁରୀଙ୍କର ଏକ ବୃହତ୍ତର ବୃତ୍ତ ଥିଲା । ସେଥିର କିଛି ବଛା ବଛା ଲୋକଙ୍କ ଛଡ଼ା ବାଜି ରାଉତ ଛାତ୍ରାବାସର ଅନ୍ତେବାସୀ ଏବଂ କଂଗ୍ରେସ ସୋସାଲିଷ୍ଟ ପାର୍ଟି ତଥା ସର୍ବୋଦୟ କର୍ମୀଙ୍କର ସେ ଥିଲେ 'ବାପି' । ମୁଁ ସେ ବୃତ୍ତ ବାହାରର ଲୋକ । ମୋ ଭଳି ଜଣେ ସ୍ନେହକାଙ୍ଗାଳ ଲୋକର ତାଙ୍କ ଭଳି ଅତ୍ୟନ୍ତ ଅମାୟିକ, ସ୍ନେହୀ, ଦରଦୀ ବ୍ୟକ୍ତିଙ୍କୁ 'ବାପି' ଡାକିବାର ସୌଭାଗ୍ୟ ହୋଇନାହିଁ । ତାଙ୍କ ଏକାଦଶାହ ଅବସରରେ ଭୁବନେଶ୍ୱରର କସ୍ତୁରବା ନାରୀମହଲ ପ୍ରେକ୍ଷାଳୟରେ ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ସଭାରେ ବିଭିନ୍ନ ବକ୍ତା ତାଙ୍କ ଗୁଣଗାନ କରିଥିଲେ । ସେଇ ସଭାରେ ଏକ ପ୍ରସ୍ତାବ ଗ୍ରହଣ କରାଯାଇଥିଲା ଯେ, ନବକୃଷ୍ଣ ଚୌଧୁରୀଙ୍କ ପୂର୍ଣ୍ଣାଙ୍ଗ ଜୀବନୀ ଲେଖାଯାଉ ।

ଆଠବର୍ଷ ବିତିଯାଇଥିଲେ ମଧ୍ୟ ତାଙ୍କ ଜୀବନୀ ପ୍ରକାଶ ପାଇଲା ନାହିଁ । ଇନ୍ଦିରା ଗାନ୍ଧିଙ୍କ ଅମଳର ପରିସ୍ଥିତିଠାରୁ ରାଜୀବ ଗାନ୍ଧିଙ୍କ ସମୟରେ, ଦେଶ ଆହୁରି ଆହୁରି ତଳକୁ ଯାଇଥାଏ । ପ୍ରଧାନମନ୍ତ୍ରୀ ବୋଫର୍ସ କମ୍ପାନୀଠାରୁ କମାଣ କିଣିବା ବାବଦରେ ଲାଞ୍ଚ ନେଇଛନ୍ତି ବୋଲି ପାର୍ଲାମେଣ୍ଟରେ ଅଭିଯୋଗ ହେଲା । ଖାଲି କେନ୍ଦ୍ର ସରକାର ସ୍ତରରେ ନୁହେଁ, ଦୁର୍ନୀତି ରାକ୍ଷସ ରାଜ୍ୟସ୍ତରକୁ ଅତିକ୍ରମ କରି ଗ୍ରାମସ୍ତରକୁ ଆସିଯାଇଥାଏ । କିନ୍ତୁ ସେସବୁ ସମାଲୋଚନା କେବଳ ପାର୍ଲାମେଣ୍ଟ ଓ ବିଧାନସଭା ସ୍ତରରେ ସୀମାବଦ୍ଧ ହୋଇ ରହିଲା । ଦେଶର ଯୁବକ ଓ

ଜନସାଧାରଣଙ୍କ ମଧ୍ୟରେ ତୀବ୍ର ଅଶାନ୍ତି ସୃଷ୍ଟି ହୋଇଥିଲେ ବି ତାହା ବିକ୍ଷୋଭ ସ୍ତର ପର୍ଯ୍ୟନ୍ତ ଯାଉନଥାଏ । ଅଧିକାଂଶ ଯୁବକଯୁବତୀଙ୍କର ବି ଏ ଦିଗରେ ଆଦୌ ଧ୍ୟାନ ନଥାଏ । ସେମାନେ ବ୍ୟକ୍ତିଗତ ବା ଗୋଷ୍ଠୀଗତ ମଜଲିସ୍‌ରେ ବ୍ୟସ୍ତ ରହିଥାନ୍ତି । ସେହି ସମୟକୁ ଜୟପ୍ରକାଶ ନାରାୟଣ ଓ ନବକୃଷ୍ଣ ଚୌଧୁରୀଙ୍କ ଅଭାବ ଭାରି ଅନୁଭୂତ ହେଉଥାଏ । ଜନସାଧାରଣଙ୍କୁ ନେତୃତ୍ୱ ଦେବାକୁ ଓ ସମସ୍ତଙ୍କୁ ଏ ଦିଗରେ ଅନୁପ୍ରାଣିତ କରି ଲଢ଼ିବା ପାଇଁ ଏବଂ ବିଭିନ୍ନ ଗୋଷ୍ଠୀକୁ ଏକଜୁଟ କରିବା ଭଳି ନେତା ଆଖିରେ ପଡୁନଥାନ୍ତି । ଠିକ୍ ସେହି ସମୟରେ ନବକୃଷ୍ଣ ଚୌଧୁରୀଙ୍କ ଜୟନ୍ତୀ ବେଳକୁ "ସେମାନେ ଆଜି ନାହାନ୍ତି" ଶୀର୍ଷକ ମୋ'ର ଏକ ଲେଖା ପ୍ରକାଶିତ ହୋଇଥିଲା ।

ତାଙ୍କ ମୃତ୍ୟୁର ଆଠବର୍ଷ ପରେ କଟକର "ୟୁନିଭର୍ସ" ଆନୁକୂଲ୍ୟରେ ଚିତ୍ତରଞ୍ଜନ ଦାସଙ୍କ ଦ୍ୱାରା ଲିଖିତ 'ନବକୃଷ୍ଣ ଚୌଧୁରୀଙ୍କ ଏକ ଜୀବନୀ' ପ୍ରକାଶିତ ହେଲା । ଜମା ତ ଜୀବନୀ ନ ଥିଲା ; ଏଣୁ ମୁଁ ସେଇଟି କିଣିଲି ଓ ଆଉ କେତେଜଣଙ୍କୁ ଏହି ଜୀବନୀ କିଣିବା ପାଇଁ ପ୍ରବର୍ତ୍ତାଇଥିଲି । ଚିତ୍ତରଞ୍ଜନବାବୁ ନବବାବୁଙ୍କର ଗଭୀର ଶ୍ରଦ୍ଧା ଓ ସାନ୍ନିଧ୍ୟ ଲାଭ କରିଥିଲେ ଏବଂ ନବବାବୁ ମାଳତୀ ଦେବୀଙ୍କ ପ୍ରତିଷ୍ଠିତ ଚମ୍ପତିମୁଣ୍ଡାସ୍ଥ ଉତ୍ତର ମୌଳିକ ବିଦ୍ୟାଳୟକୁ ସାକାର କରିବା ଦିଗରେ ନିଜକୁ ଉତ୍ସର୍ଗ କରିଦେଇଥିଲେ । ଏହାଛଡ଼ା ସେ ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠ ଲେଖକ । ଏଣୁ ତାଙ୍କ ଲିଖିତ ଜୀବନୀର ଗୁରୁତ୍ୱ ରହିଛି । ନବକୃଷ୍ଣ ଚୌଧୁରୀଙ୍କ ଜନ୍ମଦିନ, ସେ ବଞ୍ଚିଥିଲା ବେଳେ ପାଳିତ ହେଉନଥିଲା ଏବଂ ତାଙ୍କ ମୃତ୍ୟୁ ପରେ କ୍ୱଚିତ ପାଳିତ ହେଉଥିଲା । ଗତ କିଛି ବର୍ଷ ହେଲା ତାଙ୍କ ଜୟନ୍ତୀ ଭୁବନେଶ୍ୱର ସମେତ ରାଜ୍ୟର ଅନେକ ସ୍ଥାନରେ ପାଳିତ ହେଉଛି ଓ ଜୟନ୍ତୀ ବେଳକୁ ଖବରକାଗଜମାନଙ୍କରେ ଲେଖା ବାହାରୁଛି । ଦିନେ ଜ୍ଞାନମଣ୍ଡଳର ଶ୍ରଦ୍ଧେୟ ଦୀପକ କାନୁନ୍‌ଗୋ ସେ ବର୍ଷ ଜୟନ୍ତୀ ବେଳକୁ "ନବକୃଷ୍ଣ ଚୌଧୁରୀ କାହିଁକି ବଡ଼" ବୋଲି ଏକ ପ୍ରବନ୍ଧ ଲେଖିବାକୁ ମୋତେ କହିଲେ । ନବକୃଷ୍ଣ ଚୌଧୁରୀ କେତେବଡ଼, ତାହା ନଜାଣିଥିବା ଲୋକ ପକ୍ଷରେ 'କାହିଁକି ବଡ଼' ଲେଖିବା ଅସମ୍ଭବ ବୋଲି ଥିଲା ମୋ'ର ଉତ୍ତର । "ଆପଣ ତାଙ୍କର ଏକ ପୂର୍ଣ୍ଣାଙ୍ଗ ଜୀବନୀ ଲେଖନ୍ତୁ" ବୋଲି କଥାବାର୍ତ୍ତା ଭିତରେ ସେ ଏକ ପ୍ରସ୍ତାବ ଦେଲେ । ହଁ ଭରିଲି ସିନା, କିନ୍ତୁ କେଉଁଠୁ କିଭଳି ଆରମ୍ଭ କରିବି, କିମିତି ଆଗେଇବି, ସେ ବିଷୟରେ ନିଷ୍ପତ୍ତି ନେଇପାରୁନଥାଏ । ନବବାବୁଙ୍କ ମୃତ୍ୟୁ ପରେ ରାଉରକେଲାର ବସ୍ତିଆ ମେମୋରିଆଲ୍ ଟ୍ରଷ୍ଟ, ନବଜୀବନ ମଣ୍ଡଳ ଓ ସର୍ବୋଦୟ ସଂସ୍ଥା ତରଫରୁ ପ୍ରକାଶିତ ତିନୋଟି ସ୍ମରଣିକା ପଢ଼ିଲି । ସେସବୁ ପଢ଼ି ମୋ'ର ମନେହେଲା, ମୋ'ର ପରିଣତ ବୟସ ଓ ରୁଗ୍ଣ ସ୍ୱାସ୍ଥ୍ୟରେ ଏ କାମଟି ହିମାଳୟ ଚଢ଼ିଲା ଭଳି ହେବ । ଚିତ୍ତବାବୁଙ୍କ ବହିଟି ପୁଣିଥରେ ପଢ଼ିଲି । ଓଡ଼ିଶାର ପ୍ରାୟ ଅଧିକାଂଶ ବିଶିଷ୍ଟ ଲୋକଙ୍କ ଜୀବନୀ ତଥା ଆତ୍ମଜୀବନୀ ଏବଂ ସ୍ମୃତିକଥାମାନ ପଢ଼ିଦେଲି । ଜୀବନୀ ଲେଖା

ବେଳର ବ୍ୟବହୃତ ଚିଠିପତ୍ର ଥାଇପାରେ ବୋଲି ଚିତ୍ତରଞ୍ଜନବାବୁଙ୍କ ଦ୍ୱାରସ୍ଥ ହେଲି । ସେ ମନା କଲେ । ତେବେ ଆଶ୍ୱାସନା ଦେଲେ ଯେ, "ପର୍ବତ ଉପରକୁ ଅନେଇଲେ ଚଢ଼ିଲାବେଳକୁ ଡର ଲାଗେ । ଶିଖରକୁ ନଜର ନରଖି ଗୋଟିଏ ଗୋଟିଏ ପାଦ ଆଗାନ୍ତୁ ।" ଏହି ଉପଦେଶ ମୋତେ କିଛିଟା ସାହସ ଦେଇଥିଲା ।

ଚିତ୍ତରଞ୍ଜନବାବୁ ନବବାବୁଙ୍କ ଜୀବନୀଲେଖାରେ ନିଜେ ମଧ୍ୟ ସନ୍ତୋଷ ଲାଭ କରିପାରି ନ ଥିଲେ । ଏଣୁ ଏ ଲେଖକକୁ ସେ ବାରମ୍ବାର ପଚାରିଛନ୍ତି, "ଜୀବନୀ କେବେ ବାହାରୁଛି ?" ନବବାବୁଙ୍କ ପ୍ରତି ତାଙ୍କର ଆନ୍ତରିକ ଶ୍ରଦ୍ଧା ଓ ସମ୍ମାନ କଥା ସ୍ମରଣ କରି ସେ ଏବେ ବି ଗଦ୍‌ଗଦ ହୋଇଯାଆନ୍ତି । ଜଣେ ମଣିଷ ଖାଲି ରାଜନୀତିକ ମଣିଷ ନୁହେଁ । ଏଣୁ ନବକୃଷ୍ଣ ଚୌଧୁରୀଙ୍କ ରାଜନୀତିକ ବ୍ୟକ୍ତିତ୍ୱ ଛଡ଼ା ଅନ୍ୟାନ୍ୟ ବିଭାବର ମୂଲ୍ୟାୟନ ପାଇଁ ଏ ପୁସ୍ତକରେ ଉଦ୍ୟମ କରିଛି । ଆଗରୁ ଯେଉଁ ଦୁଇଜଣ ନବକୃଷ୍ଣ ଚୌଧୁରୀଙ୍କ ଜୀବନୀ ଲେଖିଛନ୍ତି, ସେମାନେ ତାଙ୍କୁ ବହୁତ ପାଖରୁ ଦେଖିଛନ୍ତି, ଆଉ ମୁଁ ଦେଖିଛି ବହୁ ଦୂରରୁ । ଏଣୁ 'ଦୂର ପର୍ବତ ସୁନ୍ଦର' ପରି ମୋତେ ନବକୃଷ୍ଣ ଚୌଧୁରୀ ସର୍ବାଙ୍ଗସୁନ୍ଦର ଦେଖାଯାଇଥିବେ ବୋଲି କହିହେବ ।

ଗୋଟିଏ ବିଷୟରେ ସମସ୍ତେ ଏକମତ ଯେ ନବକୃଷ୍ଣ ଚୌଧୁରୀଙ୍କ ବ୍ୟକ୍ତିତ୍ୱରେ ଛଳନା ନଥିଲା । ତାଙ୍କ ଭିତରର ଭାବ, କହିବା କଥା ଏବଂ ଆନୁଷଙ୍ଗିକ କାମ ମଧ୍ୟରେ ପ୍ରଭେଦ ନଥିଲା । କିନ୍ତୁ ତାଙ୍କ ସହିତ ଆଳାପର ସୌଭାଗ୍ୟ ମୁଁ କ୍ୱଚିତ୍ ପାଇଛି । ତାଙ୍କ ସମ୍ପର୍କୀୟ ଲେଖା ଓ ଚିଠିପତ୍ର ବି ବହୁତ କମ୍ । ଏଣୁ ନବକୃଷ୍ଣ ଚୌଧୁରୀଙ୍କ ଜୀବନୀ ଲେଖିବା ପାଇଁ ମୁଁ ତାଙ୍କର ସହସ୍ରାଧିକ ପୃଷ୍ଠାସମ୍ବଳିତ ବିଧାନସଭା ଭାଷଣକୁ ମୂଳ ପାଣ୍ଠି କରିଥିଲି । ଅବଶ୍ୟ ଏହାପରେ ସେ ମନ୍ତ୍ରୀ ତଥା ମୁଖ୍ୟମନ୍ତ୍ରୀ ଥିଲାବେଳର ଏବଂ ତାହା ପୂର୍ବର ତଥା ପରର ବହୁ ସରକାରୀ ଓ ବେସରକାରୀ ଚିଠିପତ୍ର, ଟେଲିଗ୍ରାମ୍ ପାଇପାରିଛି । ସେସବୁ ଭିତରେ ଜବାହରଲାଲ ନେହେରୁ, ହରେକୃଷ୍ଣ ମହତାବ, ବିଶ୍ୱନାଥ ଦାସ, ତତ୍କାଳୀନ କଂଗ୍ରେସ ସଭାପତି ଧେବର, କୃପାଳିନୀ ଆଦିଙ୍କ ଚିଠି ଅଛି ଏବଂ ଅତି ଅଜଣା କର୍ମୀଙ୍କ ବହୁ ମୂଲ୍ୟବାନ ଚିଠି ବି ରହିଛି ।

ଭାଷଣରେ ପ୍ରବଞ୍ଚନା ବା କଥାକୁ ଏଡ଼ାଇଦେବା କେବେ ନବବାବୁଙ୍କ ଜାତକରେ ନଥିଲା । ତେଣୁ ସେହି ସହସ୍ରାଧିକ ପୃଷ୍ଠାର ବିଧାନସଭା ବିବରଣୀ ପାଠ କଲେ ତାଙ୍କ ବ୍ୟକ୍ତିତ୍ୱର ବିଭିନ୍ନ ଦିଗ ଅନେକ ପରିମାଣରେ ଜାଣିହୁଏ । ନବବାବୁଙ୍କ ସମ୍ପର୍କରେ ଦୁଷ୍ପ୍ରାପ୍ୟ ଚିଠିପତ୍ର ଓ ବିରଳ ତଥ୍ୟ ପାଇଁ ତାଙ୍କର ଝିଆରୀ ଅନ୍ନପୂର୍ଣ୍ଣା ମହାରଣା ଓ ଝିଅ କୃଷ୍ଣା ମହାନ୍ତିଙ୍କ ସାହାଯ୍ୟ ବିଶେଷ ଉଲ୍ଲେଖନୀୟ । ଏହାଛଡ଼ା ଅଳକାଶ୍ରମର ଅନ୍ତେବାସୀମାନଙ୍କ ସହିତ ଦେଖା କରିଛି ଓ ସେମାନଙ୍କଠାରୁ ଅନେକ କଥା ଜାଣିଛି । ରାଜନୈତିକ ତଥା ସାଧାରଣ କ୍ଷେତ୍ରର

ବହୁ ପୁରୁଖା ବ୍ୟକ୍ତି ଏବଂ ସହବନ୍ଦୀ ତଥା ସ୍ୱାଧୀନତା ସଂଗ୍ରାମୀଙ୍କଠାରୁ ଚିଠି ପାଇଛି ଏବଂ କେତେକ ସାକ୍ଷାତ୍‌କାର ନେଇଛି । ନବବାବୁ ଛଅବର୍ଷ ମୁଖ୍ୟମନ୍ତ୍ରୀ ଥିଲେ । ସେ କିଭଳି ମୁଖ୍ୟମନ୍ତ୍ରୀ ଥିଲେ, ତାହା ସେ ସମୟର ତିନିଜଣ ଉଚ୍ଚ ଅଫିସରଙ୍କ ଜୀବନ-ସ୍ମୃତି ପଢ଼ି ଜାଣିଛି ଏବଂ ସେ ସମୟର ବହୁ ସରକାରୀ କର୍ମଚାରୀଙ୍କୁ ଭେଟି ସେମାନଙ୍କର ମତାମତ ନେଇଛି । ନବବାବୁଙ୍କ ସମୟର ଆଦିବାସୀ-ଗ୍ରାମମଙ୍ଗଳ ବିଭାଗ ସେକ୍ରେଟାରୀ ଚିନ୍ତାମଣି ମିଶ୍ର ତାଙ୍କୁ ଜଣେ ଅଯୋଗ୍ୟ ମୁଖ୍ୟମନ୍ତ୍ରୀ ବୋଲି ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି । କିନ୍ତୁ ସେ ସମୟର ଜଣେ ପଦାଧିକାରୀ, ଯିଏ କି ପରବର୍ତ୍ତୀ ଅବସ୍ଥାରେ ସେକ୍ରେଟେରୀ ହେଲେ, ସେ ତାଙ୍କୁ ଓଡ଼ିଶାର ସବୁଠାରୁ ଭଲ ମୁଖ୍ୟମନ୍ତ୍ରୀ ବୋଲି କହିଛନ୍ତି ତ ପୁଣି ଅନ୍ୟ ଜଣେ, ଯିଏ ରାଜସ୍ୱ ପରିଷଦର ସଭାପତି ହୋଇଥିଲେ, ସେ କହିଛନ୍ତି, ନବବାବୁ ଥିଲେ ସେ ବେଳର, ରାଜଗୋପାଳାଚାରୀ ଆଦି ଦେଶର ଚାରିଜଣ ଶ୍ରେଷ୍ଠ ମୁଖ୍ୟମନ୍ତ୍ରୀଙ୍କ ମଧ୍ୟରୁ ଜଣେ ।

ଏହି ଜୀବନୀ ଲେଖା ଉଦ୍ଦେଶ୍ୟରେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଠନ କାଳର ନମ୍ବୁଦ୍ରିପଦ ଓ ମିନୁ ମାସାନୀଙ୍କୁ ଚିଠି ଲେଖି କିଛି ପାଇନାହିଁ । କିନ୍ତୁ ନବବାବୁଙ୍କର ଷାଠିଏ ବର୍ଷ କାଳର ବନ୍ଧୁ ଅନ୍ନଦାଶଙ୍କର ରାୟଙ୍କୁ କଲିକତାରେ ଭେଟିଛି ଓ ଦିଲ୍ଲୀସ୍ଥିତ ଜବାହରଲାଲ ନେହେରୁ ମିଉଜିୟମ୍ ଲାଇବ୍ରେରୀରୁ ନେହେରୁଙ୍କ ସହିତ ନବବାବୁଙ୍କର ୧୯୩୩ ମସିହାର ଚିଠି ଓ ନେହେରୁଙ୍କ ଉତ୍ତର ପାଇଛି । 'ନବକୃଷ୍ଣ ଚୌଧୁରୀଙ୍କ ଗାନ୍ଧିବୋଧ', 'ଶିକ୍ଷା ଓ ନବକୃଷ୍ଣ ଚୌଧୁରୀ' ଆଦି ତାଙ୍କ ବ୍ୟକ୍ତିତ୍ୱର ବିଭିନ୍ନ ବିଭାବ ଉପରେ ସ୍ୱତନ୍ତ୍ର ଅଧ୍ୟୟନ ଲୋଡ଼ା । ସେଥିଲାଗି ନାଗାଲାଣ୍ଡ, ବନାରସ, ସେବାଗ୍ରାମ ଆଦି ସ୍ଥାନକୁ ଯିବା ଛଡ଼ା ଗଞ୍ଜାମ ମାଳଅଞ୍ଚଳ ଓ କୋରାପୁଟର ବିଭିନ୍ନ ଅଞ୍ଚଳ ବୁଲି ବିଭିନ୍ନ ତଥ୍ୟ ସଂଗ୍ରହ କରିବାକୁ ପଡ଼ିବ । ମୋ'ର ଏ ବୟସ ଓ ସ୍ୱାସ୍ଥ୍ୟରେ ବି ମୁଁ କେବଳ ପର୍ବତକୁ ଦୂରରୁ ଦେଖି ମୁଗ୍ଧ ନହୋଇ ତା' ପାଖକୁ ପାଖକୁ ଯାଇଛି ; ତା'ର ସୌନ୍ଦର୍ଯ୍ୟ ତଥା ସୌରଭରେ ଆକର୍ଷିତ ହୋଇଛି । ପାହାଚ ପରେ ପାହାଚ ଚଢ଼ି ସେ ପର୍ବତ ଉପରକୁ ଉଠିବାକୁ ଚେଷ୍ଟା କରିଛି । କିନ୍ତୁ ଯେତିକି ଉଠିଛି, ତା'ପରେ ଦେଖିଛି, ପର୍ବତ ଆହୁରି ସେତିକି ଉପରକୁ ରହିଛି । ପୁଣି କିଛି ଉଚ୍ଚତା ଅତିକ୍ରମ କଲା ପରେ ବି ସେଇ ଅବସ୍ଥା । ସତେ ଯେମିତି ଏକ ହିମାଳୟ । ଏହି ପର୍ବତାରୋହଣରେ ମୁଁ ପର୍ବତର ପାଦଦେଶରୁ ଉଠି କେତୋଟି ରହଣି ସ୍ଥାନର ଚିହ୍ନ ରଖିଯାଉଛି । ପରବର୍ତ୍ତୀ କାଳରେ କେହି ଏହି ପର୍ବତାରୋହଣ ପାଇଁ ଆଗେଇଲେ ମୋ' ଶ୍ରମ ସେମାନଙ୍କୁ ସାହାଯ୍ୟ କରିବ ବୋଲି ବିଶ୍ୱାସ କରୁଛି ।

ନବକୃଷ୍ଣ ଚୌଧୁରୀ ବଞ୍ଚିଥିଲା ବେଳେ ତାଙ୍କ ନାମରେ କୌଣସି ପ୍ରତିଷ୍ଠାନ ବା ରାଜପଥ ଅଥବା ଚୌକ ନ ଥିଲା । ତାଙ୍କ ବିୟୋଗର ଦୁଇବର୍ଷ ପରେ ହିଁ ଭୁବନେଶ୍ୱରରେ ଏକ ପ୍ରତିଷ୍ଠାନ ଏବଂ ତରିକୁନ୍ଦରେ ଏକ ମହାବିଦ୍ୟାଳୟ ତାଙ୍କ ନାମରେ ନାମିତ ହୋଇଛି ।

ସେ ପ୍ରଚାରକୁ ଘୃଣା କରୁଥିଲେ ଏବଂ ତାଙ୍କ ଜୀବନୀ ଲେଖାହେବା ସେ ଚାହୁଁ ନଥିଲେ । ଏଣୁ ଅନେକ ମୂଲ୍ୟବାନ ଚିଠିପତ୍ର ସେ ନିଜେ ନଷ୍ଟ କରିଦେଇଥିଲେ । ତାଙ୍କ ପିଢ଼ିର ଅଧିକାଂଶ ଚାଲିଗଲେଣି । ଯେଉଁମାନେ ବଞ୍ଚିଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ସ୍ମୃତିହ୍ରାସ ଘଟିଲାଣି । ନବବାବୁଙ୍କ ଦେହାନ୍ତ ପରେ ତାଙ୍କ ସାନଭଉଣୀ ଏବଂ ବଡ଼ ଝିଅ ଇହଧାମ ତ୍ୟାଗ କରିଛନ୍ତି । ସେମାନଙ୍କଠାରୁ ଅନେକ କିଛି ଉପାଦାନ ମିଳିପାରିଥାନ୍ତା । ମାଳତୀ ଦେବୀଙ୍କର ମଧ୍ୟ ସ୍ମୃତିକ୍ଷୟ ହୋଇଛି ; ଯାହାକି ମୋ' ପାଇଁ ଅପୂରଣୀୟ ଅଭାବ । ତେଣୁ ତାଙ୍କ ଜୀବନୀ ଲେଖା ବେଶ୍ କଷ୍ଟକର । ବର୍ତ୍ତମାନ ପିଢ଼ିର ଅଧିକାଂଶ ତାଙ୍କୁ ଜାଣନ୍ତିନାହିଁ କି ଜାଣିବାର ଉଦ୍ୟମ କରନ୍ତି ନାହିଁ । ୧୯୯୫ ମସିହା ଜୁଲାଇ ମାସର 'ମୀନାବଜାର' ଶିଶୁପତ୍ରିକାରେ ଓଡ଼ିଶାର ପନ୍ଦର ଜଣ କୃତୀ ସନ୍ତାନଙ୍କ ନାମ ଲେଖିବା ପାଇଁ ପ୍ରଶ୍ନ ଦିଆଯାଇ ତା'ର ନିମ୍ନରେ ଉତ୍ତରରେ ସେମାନଙ୍କ ନାମ ପ୍ରକାଶିତ ହୋଇଛି । ସେଥିରେ ନବକୃଷ୍ଣ ଚୌଧୁରୀଙ୍କ ଭଳି ଲୋକଙ୍କ ନାମ ନାହିଁ; ଅଛି ଲଲାଟେନ୍ଦୁ ମାନସିଂହ ଓ ଗିରିବାଳା ମହାନ୍ତିଙ୍କ ନାମ । ଏଣୁ ବର୍ତ୍ତମାନ ତଥା ଆଗାମୀ ପିଢ଼ି ଲାଗି ଏକ ଉଲ୍ଲେଖନୀୟ ବ୍ୟକ୍ତିତ୍ୱଙ୍କ ଉପରେ ଆଲୋକପାତ କରିବା ଲାଗି ମୋ'ର ଏହି ପ୍ରଚେଷ୍ଟା ।

ଯାହାଙ୍କ ସମ୍ପର୍କରେ ଲେଖୁଛି, ତାଙ୍କୁ ବହୁ ପରିମାଣରେ ଚିହ୍ନିଲି, ତାଙ୍କ ମୃତ୍ୟୁର ଦଶବର୍ଷ ପରେ । ଏଣୁ ଏ ଲେଖାର ପ୍ରାମାଣିକତା ସମ୍ବନ୍ଧରେ ସନ୍ଦେହ ରହିବାର କଥା । ତେବେ ବିଲୁପ୍ତ ଡାଇନୋସାର୍‌ର ଛବି ଓ କାର୍ଯ୍ୟକଳାପ ସମ୍ପର୍କରେ ତ କଳନା କରି ହେଉଛି । ତେଣୁ ମାତ୍ର ଏଗାରବର୍ଷ ତଳେ ଯାହାଙ୍କୁ ରକ୍ତମାଂସ ଶରୀରରେ ଦେଖିଛୁ ଓ ଯାହାଙ୍କ ବକ୍ତବ୍ୟ ଶୁଣିଛୁ ଏବଂ ଯାହାଙ୍କ ସମ୍ପର୍କରେ ନାନା ତଥ୍ୟ, ନାନା କାହାଣୀ ଏବେ ବି ଓଡ଼ିଶାର ଗାଁ ଗହଳରେ ବିଞ୍ଚିହୋଇ ରହିଛି, ତାଙ୍କ ବ୍ୟକ୍ତିତ୍ୱର ଏକ ଆଭାସ ଆଙ୍କିବା କାହିଁକି ଅସମ୍ଭବ ହେବ ? ନିଖୁଣ ଚିତ୍ର ଓ ନିର୍ଭୁଲ ବିଶ୍ଳେଷଣ ନହେଲେ ବି ତାଙ୍କର ଏକ ବିଶ୍ୱସନୀୟ ରେଖାଚିତ୍ର ରଚନା କରିବା ଦିଗରେ କେତେଦୂର ସମର୍ଥ ହୋଇଛି, ସେକଥା ପାଠକଗଣ ବିଚାର କରିବେ ।

ନବକୃଷ୍ଣ ଚୌଧୁରୀ ସାଧୁ, ସନ୍ଥ ବା ମହାପୁରୁଷ ନଥିଲେ । ଅବଶ୍ୟ ବହୁଜନଙ୍କ ମତରେ ସେ ଥିଲେ ଜଣେ ସଜ୍ଜନ । କିନ୍ତୁ ଭୀଷ୍ମଙ୍କ ଭଳି ଅନ୍ୟାୟକୁ ସେ କେବେ ବରଦାସ୍ତ କରିନାହାନ୍ତି । ନିଜର ମୋଟେ ଅହମିକା ତ ନଥିଲା, କିନ୍ତୁ ସ୍ୱାଭିମାନ ଥିଲା ଅତ୍ୟନ୍ତ ଉଚ୍ଚକୋଟୀର । ତାଙ୍କର ଶିଶୁସୁଲଭ ସରଳତା ଜବାହରଲାଲ ନେହେରୁଙ୍କଠାରୁ ଆରମ୍ଭ କରି ଅତିସାଧାରଣ ଲୋକଙ୍କୁ ମୁଗ୍ଧ କରିଥିଲା । ପୁଣି ରଣକୌଶଳ ସ୍ଥିର କରିବାରେ ତାଙ୍କର ଅସାଧାରଣ ବିଚକ୍ଷଣତା ବହୁ ଲୋକଙ୍କୁ ବିସ୍ମିତ କରୁଥିଲା । ଅନ୍ୟର ଦୁଃଖ ଦେଖି ଅନେକ ସମୟରେ ସେ କାନ୍ଦିପକାଉଥିଲେ, ପୁଣି ଏକମାତ୍ର ପୁତ୍ରର ଅକାଳ ବିୟୋଗରେ ଏବଂ ତରୁଣ ନାତିଦ୍ୱୟଙ୍କ ଅକାଳ ମୃତ୍ୟୁରେ

ସେ, ସେସବୁ ଦୁଃଖକୁ ଧୈର୍ଯ୍ୟର ସହ ସହିନେଇଥିଲେ । ଅହିଂସାର ପଥିକ ଥିଲେ ବି ଅନ୍ୟାୟବିରୋଧୀ ଲଢ଼େଇରେ କେହି ଅନ୍ୟ ଉପାୟ ନ ପାଇ ହିଂସାର ଆଶ୍ରୟ ନେଲେ ତା' ପ୍ରତି ତାଙ୍କର ସହାନୁଭୂତି ଅତୁଟ ରହୁଥିଲା । ଏଇଥିପାଇଁ ତାଙ୍କୁ ଓ ମାଳତୀ ଦେବୀଙ୍କୁ ଅନେକେ ଭୁଲ୍ ବୁଝୁଥିଲେ । ବେଶଭୂଷା ଓ ଖାଦ୍ୟରେ ଗାନ୍ଧିଜନଙ୍କ ଭଳି ଦେଖାନଯାଉଥିଲେ ବି ସେ ଥିଲେ ଜଣେ ଅସଲ ଗାନ୍ଧିପନ୍ଥୀ । ସେଇଥିପାଇଁ ତାଙ୍କୁ ଦୁଇ ଦୁଇ ଥର ସର୍ବ-ସେବାସଂଘର ସଭାପତି କରାଯାଇଥିଲା । ନାନା ଦିଗରୁ ସେ ଥିଲେ ଜଣେ ବିସ୍ମୟକର ବ୍ୟକ୍ତି ।

କାର୍ଲମାର୍କ୍ସ କହୁଥିଲେ, "ମୁଁ ମାର୍କ୍ସବାଦୀ ନୁହେଁ ।" ଯେଉଁମାନେ ମାର୍କ୍ସବାଦୀ ବୋଲି କହିହୁଅନ୍ତି, ସେମାନଙ୍କ ମଧ୍ୟରେ କ୍ୱଚିତ୍ ମାର୍କ୍ସବାଦୀ ଦେଖିବାକୁ ମିଳନ୍ତି । କିନ୍ତୁ ନବକୃଷ୍ଣ ଚୌଧୁରୀ ଥିଲେ ମାର୍କ୍ସବାଦୀ । ମାର୍କ୍ସଙ୍କ ସବୁ କଥାକୁ ସେ ବେଦବାକ୍ୟ ଭଳି ଗ୍ରହଣ କରିନାହାନ୍ତି; ତା' ଉପରେ ନିଜର ଚିନ୍ତନ, ମନନ କରିଛନ୍ତି । ଓଡ଼ିଶାରେ ସେ ସମାଜବାଦୀ ଦଳ ପ୍ରତିଷ୍ଠା କଲେ; କିନ୍ତୁ ସମାଜବାଦୀ ଦଳରେ ରହିଲେ ନାହିଁ । ଏଥିଲାଗି ତାଙ୍କ ବିରୋଧରେ ବହୁ ଅଭିଯୋଗ ଓ ଅଭିମାନ । ସମାଜବାଦୀ ଦଳରୁ ଯେଭଳି ଭାବରେ ଜୟପ୍ରକାଶଙ୍କୁ ତଡ଼ିବାର ବାଟ ପରିଷ୍କାର କରାଗଲା ଏବଂ ସମାଜବାଦୀ ଦଳ ଖଣ୍ଡବିଖଣ୍ଡିତ ହେବାପାଇଁ ନେତାମାନେ ଯେପରି ବାଟ କଲେ ଏବଂ କ୍ଷମତା ରାଜନୀତି ସହିତ ସମ୍ପୃକ୍ତ ହେବା ଲାଗି ସବୁ ପ୍ରକାର ସାଲିସ କଲେ, ସେହି ଦଳରେ ନବବାବୁଙ୍କ ଭଳି ଲୋକ କିପରି ରହିପାରନ୍ତେ ? ସରପଞ୍ଚଟିଏ ହେବା ଲାଗି ଲୋକେ ଗୋଟିଏ ହାତରେ ମହାପ୍ରସାଦ ଓ ଅନ୍ୟ ହାତରେ ବିଷ ଧରି ଭୋଟ୍ ଭିକ୍ଷା କରୁଛନ୍ତି । କହୁଛନ୍ତି, "ଭୋଟ୍ ନ ଦେଲେ ବିଷ ଖାଇବି, ଭୋଟ୍ ଦେବ ବୋଲି କହୁଛ ଯଦି, ମହାପ୍ରସାଦ ଛୁଇଁ ହଲପ୍ କର ।" ଅଥଚ ନବକୃଷ୍ଣ ଚୌଧୁରୀଙ୍କୁ ମୁଖ୍ୟମନ୍ତ୍ରୀ କରିବାପାଇଁ ନେହେରୁଙ୍କଠାରୁ ଆରମ୍ଭ କରି ହରେକୃଷ୍ଣ ମହତାବ, ମାଳତୀ ଦେବୀଙ୍କୁ ଅନୁରୋଧ କରିବା ପର୍ଯ୍ୟନ୍ତ କଥା ଯାଇଛି । ସେ ମୁଖ୍ୟମନ୍ତ୍ରୀ ହେଲେ । ସେ ନଚାହିଁଥିଲେ ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର ଆଦିଙ୍କ ଶତଚେଷ୍ଟା ସତ୍ତ୍ୱେ ତାଙ୍କୁ କେହି ମୁଖ୍ୟମନ୍ତ୍ରିତ୍ୱରୁ ତଡ଼ିପାରିନଥା'ନ୍ତେ । ଏହି ବିତାଡ଼ନ ନାଟକର ଅନ୍ୟତମ ନାୟକ ନୀଳମଣି ରାଉତରାୟ କହନ୍ତି, "ନବକୃଷ୍ଣ ଚୌଧୁରୀ ସବୁବେଳେ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବି ଛାଡ଼ିବି ବୋଲି କହିହେଲେ ବୋଲି, ମୁଁ ତାଙ୍କୁ ବିଦାୟ ଦେବାକୁ ଆଗଭର ହେଲି ।" ସେତେବେଳର କଂଗ୍ରେସ ସଭାପତି ଯେତେବେଳେ ତାଙ୍କୁ କହିଲେ, "ତୁମେ ମନ୍ତ୍ରୀମଣ୍ଡଳର ସଦସ୍ୟ ରହି କିପରି ନେତାଙ୍କ ବିରୋଧରେ ଲାଗିଲ ?" ନୀଳମଣିବାବୁ କହିଥିଲେ, "ନବବାବୁ ମନ୍ତ୍ରିତ୍ୱ ଛାଡ଼ିବେ ବୋଲି ସବୁବେଳେ କହିବା ଯୋଗୁଁ, ମୁଁ ବାଧ ହୋଇ ଏଭଳି ବାଟ ଧରିଛି । ନବବାବୁ ରହିବେ ବୋଲି କହନ୍ତୁ ତ, କେହି ତାଙ୍କୁ ହଟାଇ ପାରିବେ ନାହିଁ ।"

ନବକୃଷ୍ଣ ଚୌଧୁରୀଙ୍କ ଚେହେରାରେ ମୋଟେ ଧାର୍ମିକ ଲୋକର ଛାପ ନଥିଲା । କିନ୍ତୁ ବିଚାର ଓ କାର୍ଯ୍ୟରେ ସେ ଥିଲେ ବୈଷ୍ଣବ-ଶାକ୍ତ-ଅବଧୂତଙ୍କ ସଂଶ୍ଲେଷଣ । ଏ ଦିଗରୁ ସେ ଥିଲେ ଏକ ବିସ୍ମୟ । ତାଙ୍କ ସମୟଠାରୁ ସେ ଥିଲେ ବହୁ ଆଗରେ ; ଆଉ ତାଙ୍କ ବେଳର ଲିଲିପୁଟୀୟମାନଙ୍କ ମଧ୍ୟରେ ସେ ଥିଲେ ଗଲିଭର୍ ! ବେଶପୋଷାକ, ଖାଦ୍ୟପେୟରେ ଥିଲେ ଅତି ସାଧାରଣ; ଅଥଚ ଚିନ୍ତାରେ ଥିଲେ ଅତ୍ୟାଧୁନିକ ଓ ବୈଜ୍ଞାନିକ-ଦାର୍ଶନିକ । ସେ ଖୁବ୍ ଚେସ୍ ଖେଳୁଥିଲେ ଓ ତରୁଣମାନଙ୍କୁ ଚେସ୍ ଶିଖାଉଥିଲେ । ଯେତେବେଳେ ଚେସ୍ ଖେଳ ଶିଖୁଥିବା ତରୁଣମାନେ ତାଙ୍କୁ ଖେଳରେ ହରାଇଦେଉଥିଲେ, ସେତେବେଳେ ସେ ଆନନ୍ଦରେ ପାଟି କରିଉଠୁଥିଲେ, "ଜିତିଲି, ଜିତିଲି !" ଅର୍ଥାତ୍ ଶିଷ୍ୟ ଠିକ୍ ମନ୍ତ୍ର ଧରିଛି ; ଗୁରୁଙ୍କୁ ହରେଇଦେଇପାରିଲା । ସେଥିରେ ସେ ଅପାର ଆନନ୍ଦ ଓ ଗୌରବ ଅନୁଭବ କରୁଥିଲେ । କିନ୍ତୁ ରାଜନୀତିରେ ଓ ସାଧାରଣ ଜୀବନରେ ତ୍ୟାଗ, ନିଷ୍ଠା ଓ ସାଧନାରେ ତାଙ୍କୁ ତାଙ୍କର ଅନୁଗାମୀମାନେ ହରାଇ ନପାରିବାରୁ ରହିଗଲା ତାଙ୍କର ଅବସୋସ । ଏଇଠି ଥିଲା ଅନ୍ୟ ନେତାମାନଙ୍କଠାରୁ ତାଙ୍କର ବିଶେଷତ୍ୱ । ଏତେ ଜ୍ଞାନ ଓ ଏତେ ଗୁଣ ସତ୍ତ୍ୱେ ତାଙ୍କୁ ଦେଖିଲେ ଡର ଲାଗୁନଥିଲା । ଏଣୁ ମନ ଭିତରେ ଓ ବାହାରେ ବହୁ ଲୋକଙ୍କର ତାଙ୍କ ପ୍ରତି ଅକୃତ୍ରିମ ଶ୍ରଦ୍ଧା ଓ ଭକ୍ତି ଥିଲା ।

ସେଭଳି ଲୋକଙ୍କର ଆଦର୍ଶ ଆମ୍ଭମାନଙ୍କ ପାଇଁ ଓ ଭବିଷ୍ୟତ ବଂଶଧରଙ୍କ ଲାଗି ପ୍ରେରଣାଦାୟକ ବୋଲି ସ୍ମୃତିସଭାରେ କୁହାଯାଉଛି ଓ ପ୍ରତ୍ୟେକ ଲେଖାରେ ଦେଖିବାକୁ ମିଳେ । ତଥାପି କାହିଁକି ପ୍ରେରଣା ପାଇବା ଲୋକଙ୍କ ସଂଖ୍ୟା ଏତେ ନଗଣ୍ୟ ? ତାଙ୍କ ସମ୍ପର୍କରେ ଅସଂଖ୍ୟ କାହାଣୀ (ସବୁ ସତ) ଶୁଣିବାକୁ ମିଳେ । ସେସବୁରୁ ତାଙ୍କ ବିଚିତ୍ର ଓ ଆକର୍ଷଣୀୟ ବ୍ୟକ୍ତିତ୍ୱକୁ ଅଧିକ ଭଲ ଭାବରେ ଜାଣିହେବ । ସେଗୁଡ଼ିକ ସଂଗୃହୀତ ହୋଇପାରିନାହିଁ । ସେହିସବୁ କାହାଣୀ ସଙ୍କଳନ କରାଯାଇ ପାରିଲେ ଓ ନବକୃଷ୍ଣ ଚୌଧୁରୀଙ୍କୁ ଚିହ୍ନିବା ଓ ଚିହ୍ନେଇବା ଲାଗି ଆହୁରି ଗଭୀର ଉଦ୍ୟମ ହେଲେ, ହୁଏତ ସେସବୁ ଯୁବମାନସରେ କିଛି ଆସ୍ଥା ଓ ପ୍ରେରଣା ଯୋଗାଇବ । ଏ କଥା ସ୍ୱୀକାର୍ଯ୍ୟ ଯେ ପର୍ବତାରୋହଣ, ସୁଅର ଅନୁକୂଳରେ (ପହଁରା ଜାଣିଥିଲେ) ତଳକୁ ଭାସିଯିବାଠାରୁ କଷ୍ଟକର ଓ ବିପଦସଙ୍କୁଳ । ତଥାପି କାହିଁକି ଲୋକେ ପାହାଡ଼ପର୍ବତ ଆରୋହଣରେ ଏତେ ଆନନ୍ଦ ପାଆନ୍ତି ?

ସମ୍ପୂର୍ଣ୍ଣ ହତାଶିଆ ଓ ଅତି ସିଆଣିଆ ଲୋକେ କହିପାରନ୍ତି ଯେ, କ'ଣ ହେବ ଏ ସବୁ ଲେଖି ? କିଏ ପଢୁଛି ? କିଏ ଶୁଣୁଛି ? କିନ୍ତୁ ଆମେ ଆସି ଏଭଳି ଏକ ପରିସ୍ଥିତିରେ ପହଞ୍ଚିଲୁଣି ଯେ ଆମର ଭାଗ୍ୟବିଧାତା ହୋଇଗଲେଣି ଦଳେ ଡକାୟତ ସର୍ଦ୍ଦାର, ଡକାୟତ, ଉପଡକାୟତ, ଅନୁଡକାୟତ ଓ କେତେକ ପ୍ରବଞ୍ଚକ ଶ୍ରେଣୀର ବ୍ୟକ୍ତି । ଏଭଳି କଥା କେତେ

ଦିନ ଚାଲିବ ? ବଜାରଭିତ୍ତିକ ଜଗତୀକରଣ ପ୍ରକ୍ରିୟା ଆରମ୍ଭ ହୋଇଛି ମାତ୍ର । ଏହା ପୂରା ଦମ୍‌ରେ ଚାଲିଲେ ଦୁର୍ଦ୍ଦଶାର ସୀମା ରହିବ ନାହିଁ । ସେତେବେଳେ ନିର୍ବାଚନକାଳୀନ ମଦ, ମାଂସ ଓ ଅର୍ଥ ଦ୍ୱାରା ଅଧିକାଂଶ ଲୋକଙ୍କୁ ଭୁଲେଇହେବ ନାହିଁ । ଦୁର୍ନୀତିର ପ୍ରଭାବ ଏଭଳି ସର୍ବଗ୍ରାସୀ ହୋଇପଡ଼ିଛି ଯେ ଲୋକେ ଆଖି ବୁଲେଇଲେ ସଚ୍ଚୋଟ ଲୋକଟିଏ ପାଉନାହାନ୍ତି । ଛଅବର୍ଷ ମୁଖ୍ୟମନ୍ତ୍ରୀ ଥିଲେ ବି ନବକୃଷ୍ଣ ଚୌଧୁରୀ ଥିଲେ କଳଙ୍କହୀନ । ଜାତୀୟକବି ବୀରକିଶୋର ଦାସଙ୍କ ଭାଷାରେ ସେ ଥିଲେ 'ଖାଣ୍ଟି ସୁନା' । ଏବେ ନହେଲେ ବି ଆଗକୁ ଏକ ସଙ୍କଟମୟ ସମୟ ଆସିବ, ଯେତେବେଳେ ଲୋକେ ନବକୃଷ୍ଣ ଚୌଧୁରୀଙ୍କ ଆଦର୍ଶ ଆଡ଼କୁ ଆଖି ଫେରାଇବେ ।

ପଦ୍ମଚରଣ ନାୟକ

## ▫ ପ୍ରଥମ ଅଧ୍ୟାୟ ▫

# ଅନିର୍ବାଣ

ସେଦିନ ଥିଲା ରବିବାର ; ଅନୁଗୋଳର ସାପ୍ତାହିକ ହାଟ ଦିନ । ଖରାଦିନେ ରାତିର ତୃତୀୟ ପ୍ରହରରୁ ବଣିଆବାହାଲ ହାଟରେ ବଡ଼ବଡ଼ ଗରାଖଙ୍କ ଟ୍ରକ୍‌ଭରା ସଉଦା ଆରମ୍ଭ ହୋଇଯାଏ । ଆଉ ସକାଳୁସକାଳୁ ଆଖପାଖର ପଚାଶ ଖଣ୍ଡ ଗାଁର ସାଧାରଣ ଖାଉଟିଙ୍କ ହାଟ ଗହଳି ଲାଗେ । ସେଦିନ ପାହାନ୍ତାରୁ ହାଟରେ ଖବର ପହଞ୍ଚିଲା ଯେ ନବକୃଷ୍ଣ ଚୌଧୁରୀ ମରିଯାଇଛନ୍ତି । ସିଏ ସାଧାରଣ ଲୋକ ଭଳି ପ୍ରାୟ ପ୍ରତି ପାଳି ହାଟକୁ ଯାଆନ୍ତି ; ଅବଶ୍ୟ ନିଜର କିଛି କିଣାକିଣି ନଥାଏ । ତଥାପି ଦୁନିଆର ସାଧାରଣ ଲୋକଙ୍କ କଥା ଜାଣିବା ପାଇଁ ହାଟ ଏକ ସୁଯୋଗ । ମୃତ୍ୟୁର କିଛି ମାସ ପୂର୍ବରୁ ଚଲାବୁଲା କରିପାରୁଥିବା ପର୍ଯ୍ୟନ୍ତ ସେ ବଣିଆବାହାଲ ହାଟକୁ ଯାଉଥିଲେ ।

ଦିନେ ହାଟ ସାରି ଫେରୁଥିଲେ ଅନୁଗୋଳ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟକ୍ଷ ଭାଗୀରଥି ନାୟକ । ବୈଶାଖ ମାସର ଶେଷ ଆଡ଼କୁ ଅନୁଗୋଳର ପିଚୁରାସ୍ତା ତାତି ତରଳିବାକୁ ଆରମ୍ଭ କଲାଣି । ବାଟୋଇ କାଁ ଭାଁ । ସେଇ ତାତିରେ ଚାଲିଥା'ନ୍ତି ଆଣ୍ଠୁଲୁଚା ଲୁଗାପିନ୍ଧା ବୁଢ଼ାଟିଏ । ଖୋଲାଦେହରୁ ଝାଳ ବୋହୁଥାଏ । ବାଁଗୋଡ଼ଟି ତଳୁ ଭଲ ଭାବରେ ଉଠୁନଥାଏ; ଘୁଷୁରିଘୁଷୁରି ଯାଉଥାଏ । ପାଖ ହୋଇଯିବାରୁ ସେ ଚିହ୍ନିପାରିଲେ ଯେ ବୁଢ଼ାଜଣକ ହେଉଛନ୍ତି ନବକୃଷ୍ଣ ଚୌଧୁରୀ । ଭାଗୀରଥି ବାବୁ ହତବାକ୍ ହୋଇ ସାଇକେଲରୁ ଓହ୍ଲାଇପଡ଼ିଲେ । ପଚାରି ବୁଝିଲେ ଯେ ନବବାବୁ ହାଟକୁ ଯାଇଥିଲେ । "ଚାଲିବାକୁ କଷ୍ଟ ହେଲାଣି, ଏତେ ଖରା, ରିକ୍ସାରେ କାହିଁ ଫେରିଲେ ନାହିଁ ?" ବୋଲି ପଚାରିବାରୁ ନବବାବୁ କହିଲେ, "ରାସ୍ତାକଡ଼ର ଏଇ ଗଛଗୁଡ଼ିକୁ ଦେଖିଦେଖି ଫେରିବାକୁ ଚାହେଁ । ବୋଧହୁଏ ଆଉ ସେଗୁଡ଼ିକୁ ଦେଖିବାର ସୁଯୋଗ ମିଳିବ ନାହିଁ ।

ଜୀବନର ପ୍ରାୟ ଅଧାଅଧି ସିଏ ଅନୁଗୋଳ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ । ରାଜନୀତିରେ ଥିଲାବେଳେ ତା'ରି ବହୁ ଗାଁକୁ ଯାଇଛନ୍ତି । ଏହି ଅନୁଗୋଳକୁ କେନ୍ଦ୍ର କରି ସେ ଗଡ଼ଜାତ ମୁକ୍ତି ଆନ୍ଦୋଳନ ଚଳାଇଥିଲେ । ୧୯୪୦ ମସିହାରେ ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ, ଓଡ଼ିଶାରୁ ପ୍ରଥମ ଦଳରେ, ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ ତାଙ୍କଦ୍ୱାରା ମନୋନୀତ ହୋଇଥିଲେ ନବକୃଷ୍ଣ ଚୌଧୁରୀ । ଏହି ଅନୁଗୋଳର ବାଗେଡ଼ିଆଠାରେ, ବ୍ରିଟିଶ ସରକାରର ଯୁଦ୍ଧ

ଘୋଷଣା ବିରୋଧର ବକ୍ତୃତା ଦେଇ ସେ ଗିରଫ ହୋଇଥିଲେ । ୧୯୪୨ ଆନ୍ଦୋଳନ କାଳରେ କିଛି କାଳ ସେ ଏହି ଅନୁଗୋଳ ଜେଲ୍‌ରେ ବନ୍ଦୀ ଭାବରେ ରହିଥିଲେ । ମୁଖ୍ୟମନ୍ତ୍ରୀ ଦାୟିତ୍ୱରୁ ଗଲାପରେ ନବକୃଷ୍ଣ ଚୌଧୁରୀ ବାଜି ରାଉତ ଛାତ୍ରାବାସକୁ ଫେରିଥିଲେ । ତା'ରି ପରିସର ମଧ୍ୟରେ ଅନୁଗୋଳର ପୂର୍ବତନ ବିଧାୟକ ଗିରିଜାଭୂଷଣ ଦତ୍ତଙ୍କର ଏ୨-୮୬ ଡେସିମାଲ ଜମିରେ କୁଟୀରଟିଏ ଥାଏ । ତରିକୁନ୍ଦର ଘରକରଣା ଭାଙ୍ଗି, ୧୯୪୦ ମସିହାରେ କୁଟୀର ସହିତ ସେହି ଜମି ଖଣ୍ଡକ କିଣି ସେଇଥିରେ ମାଳତୀ ଦେବୀଙ୍କ ସହ ପୁଣି ବସା ବାନ୍ଧିଥିଲେ । ସେଇଥିଲାଗି ସେହି ଆଦ୍ୟ କୁଟୀରର ନାଁ 'ପୁନଶ୍ଚ' । ଏହି ପୁନଶ୍ଚ ଠିକଣାରୁ କେତେ ସହକର୍ମୀ, ସହଯୋଦ୍ଧା ଓ ପ୍ରିୟଜନଙ୍କ ପାଖକୁ ଚିଠି ଯାଇଛି । ସ୍ଥାୟୀ ଭାବରେ ରହିବାର ସୁବିଧା ଲାଗି ପରେ ତା'ର କିଛି ଦୂରରେ ତିଆରି ହୋଇଥିଲା ରୋଷେଇଘର, ପାଇଖାନା ସହିତ ଏକ ଚାଳଛପର ଘର । ବାରଣ୍ଡାଟି ଚଉଡ଼ା, ଯେମିତି ସେଠାରେ ଖଟ ପକାଇ ଶୋଇହେବ ଓ ଟେବୁଲଚେୟାର ପକାଇ ଲେଖାଲେଖି କରିହେବ, ଏବଂ ମଝିରେ ଏକ ନୁଆଁଣିଆ ବାଘମୁହିଁ । ୧୯୬୬ ମସିହା ବେଳକୁ ହରେକୃଷ୍ଣ ମହତାବ ଏହି ଘରକୁ ଆସିଲା ବେଳେ ନୁଆଁଣିଆ ବାଘମୁହିଁ ବାଟେ ନଇଁ କରି ଘରକୁ ଆସିଥିଲେ । ମନ୍ତବ୍ୟ ଦେଇଗଲେ, ବାଘମୁହଁଟା ଟିକିଏ ବଡ଼ ହେଉ । ସେହି ସମୟ ପରେ ବାଘମୁହିଁ ଟିକିଏ ବଢ଼ିଛି ଓ ଉଚ୍ଚା ହୋଇଛି । ସେହି ବାଘମୁହିଁରେ ଅନେକ ବନ୍ଧୁଙ୍କୁ ସଂଖୋଳାଯାଇଛି । ସେଇଠି ଚର୍ଚ୍ଚିତ ହୋଇଛନ୍ତି ଭାରତବର୍ଷର ପୂର୍ବତନ ରାଷ୍ଟ୍ରପତି ନିଲମ୍ ସଞ୍ଜୀବ ରେଡ୍ଡିଙ୍କ ଠାରୁ ଆରମ୍ଭ କରି ଦେଶବିଦେଶର ବହୁ ବିଶିଷ୍ଟ ବ୍ୟକ୍ତି, ବହୁ ଜିଜ୍ଞାସୁ ଯୁବକ ଓ ବିପ୍ଳବୀ ।

୧୯୮୪ ମସିହା ଜୁନ୍ ୨୪ ତାରିଖର ସିନ୍ଦୂରା ନଫାଟୁଣୁ ଏହି ବାଜି ରାଉତ ଛାତ୍ରାବାସରେ ରୁଣ୍ଡ ହୋଇଯାଇଥିଲେ ହାଟବାଟରୁ ଖବର ପାଇ ଶହଶହ ଲୋକ । ନବବାବୁଙ୍କ ଶୋଇବା ଘର ଝରକା ବାଟଦେଇ ଜଣଜଣ ହୋଇ ଆଖି ପକାଇ ଦେଇଗଲେ ଅନ୍ତିମ ଶଯ୍ୟାରେ ଶାୟିତ ସେହି ସୁପୁରୁଷଙ୍କୁ । ଆସିଥିଲେ ମାଟିଆକେଳା ସାହିର ଦୁରୁଗା ଡମ ଠାରୁ ଆରମ୍ଭ କରି ସୋମନାଥପୁର ଶାସନର ଅଧ୍ୟାପକ ରାଜକିଶୋର ମିଶ୍ର ଆଦି ସବୁ କିସମର ଲୋକ । ଶହଶହ ନରନାରୀଙ୍କ ଆଖିରେ ଲୁହ । ଅନୁଗୋଳ ଟାଉନ ଓ ନାଲ୍‌କୋ ନଗରୀରେ ଏ ଖବର ବ୍ୟାପିଗଲା । ସବ୍‌କଲେକ୍ଟରଙ୍କଠାରୁ ଆରମ୍ଭ କରି ନାଲ୍‌କୋର ନିର୍ଦ୍ଦେଶକ ଓ ବିଶିଷ୍ଟ କବି ରାଧାମୋହନ ଗଡ଼ନାୟକ ଆଦି ଆସିଲେ ଶେଷ ଦର୍ଶନ ପାଇଁ । ସାଧାରଣ ଶୁଭେଚ୍ଛୁଙ୍କ ସୁଅ ଛୁଟିଲା । ଲୋକଗହଳିକୁ ସମ୍ଭାଳିବା କଷ୍ଟକର ହେଲା । ଏଣୁ ମରଶରୀରକୁ ଶୋଇବା ଘରୁ ନିଆହୋଇଥିଲା ଶାନ୍ତିମନ୍ଦିର ମଣ୍ଡପକୁ । ଜିଲ୍ଲାପାଳ ଓ ମୁଖ୍ୟମନ୍ତ୍ରୀ ଖବର ପାଇସାରିଥା'ନ୍ତି । ପାଖଆଖର ଖଲାରୀ, ଖମାର, ଆଙ୍କୁଲା, କାଙ୍ଗୁଲା, ନୂଆସାହି, ତୁରଙ୍ଗ, କାଣ୍ଡସର, ହୁଲୁରିସିଙ୍ଗା, ଲିଙ୍ଗରାଜୋଡ଼ି, ଛେଳିଆପଡ଼ା, ନନ୍ଦପୁର, କଲଣ୍ଡାପାଳ ଆଦି ଗାଁରୁ

ଯେଉଁ ଲୋକେ ହାଟକୁ ଆସିଥିଲେ, ସେମାନଙ୍କ ଜରିଆରେ ଏ ଖବର ପଞ୍ଚୁକୋଶୀ ଅଞ୍ଚଳରେ ଖେଳିଗଲା । ହଜାରହଜାର ଲୋକ ଅତି ଶୃଙ୍ଖଳିତ ଭାବରେ ତାଙ୍କୁ ଶେଷଥର ପାଇଁ ଦର୍ଶନ କରି କେହି ପ୍ରଣିପାତ କଲେ ତ କେହି ପୁଷ୍ପାଞ୍ଜଳି ଦେଲେ । ଶଯ୍ୟାଧାର ନିକଟରେ ଆଶ୍ରମ ଭଜନାବଳୀ ବୋଲା ହେଉଥାଏ । ମଧ୍ୟାହ୍ନ ପୂର୍ବରୁ ତାଳଚେର, ଢେଙ୍କାନାଳ, ରେଢ଼ାଖୋଲ, କଟକ ଓ ଭୁବନେଶ୍ୱର ଆଦି ସ୍ଥାନରୁ ନବକୃଷ୍ଣ ଚୌଧୁରୀଙ୍କ ବହୁ ସହକର୍ମୀ, ଗୁଣଗ୍ରାହୀ ଓ ଆତ୍ମୀୟ ବ୍ୟକ୍ତି ପହଞ୍ଚିଥିଲେ ।

ଆସିଥିଲେ ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀଙ୍କ ପ୍ରତିନିଧି ଭାବରେ ରାଜ୍ୟପାଳ ବିଶ୍ୱମ୍ଭର ନାଥ ପାଣ୍ଡେ, ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଓ ତାଙ୍କ ମନ୍ତ୍ରିମଣ୍ଡଳର ସଦସ୍ୟବୃନ୍ଦ । ଆଉ ପହଞ୍ଚିଥିଲେ ସ୍ୱାଧୀନତା ଆନ୍ଦୋଳନ, ସମାଜବାଦୀ ଆନ୍ଦୋଳନ ଓ ଗଡ଼ଜାତ ଆନ୍ଦୋଳନର ସହକର୍ମୀ ରାଧାନାଥ ରଥ, ପବିତ୍ରମୋହନ ପ୍ରଧାନ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ବୈଷ୍ଣବ ପଟ୍ଟନାୟକ, ବିଶ୍ୱନାଥ ପଣ୍ଡିତ, ଭଗବାନ ପ୍ରତିହାରୀ, ନନ୍ଦକିଶୋର ଦାସ, ଦୁଃଖବନ୍ଧୁ ପ୍ରଧାନ, ଅନିଲ କୁମାର ଘୋଷ, ଗୋବିନ୍ଦ ଚନ୍ଦ୍ର ମହାନ୍ତି, ବିଶ୍ୱମ୍ଭର ପରିଡ଼ା, ହରମୋହନ ପଟ୍ଟନାୟକ, ନରସିଂହ ତ୍ରିପାଠୀ, କସ୍ତୁରୀଚରଣ ମଲ୍ଲିକ, ବଳରାମ ମହାନ୍ତି ଆଦି ଏବଂ ପରବର୍ତ୍ତୀ ପିଢ଼ିର ଅମିତାଭ ମହାପାତ୍ର, ରବି ରାୟ, ଗିରିଜାଭୂଷଣ ପଟ୍ଟନାୟକ, ରବି ସାହୁ, ଭର୍ତ୍ତୃହରି ମହତାବ, ପ୍ରଦ୍ୟୁମ୍ନ ବଳ, ଶ୍ରୀବତ୍ସ ନାୟକ, ବୃନ୍ଦାବନ ବେହେରା, ମନୋରମା ମହାପାତ୍ର, ସ୍ୱାଧୀନ ପଟ୍ଟନାୟକ, ଶ୍ରୀକାନ୍ତ ପଣ୍ଡା, ଶ୍ୟାମସୁନ୍ଦର ପାଢ଼ୀ, ରଣଜିତ ମହାନ୍ତି, ରାଜେନ୍ଦ୍ର ପ୍ରସାଦ ସିଂହ, ପ୍ରଫୁଲ୍ଲ ଦାସ, ବୀଣା ଦାସ, ବିଷ୍ଣୁପ୍ରିୟା ମହାପାତ୍ର, ସୁଧା ସାହୁ, ରମ୍ଭାଦେବୀ, ମଙ୍ଗଳା ଦେବୀ, ଯୋଗୀନ୍ଦ୍ର ତ୍ରିପାଠୀ ଆଦି ନେତୃସ୍ଥାନୀୟ ବ୍ୟକ୍ତି । ବ୍ୟକ୍ତି-ବିଶେଷଙ୍କ ଛଡ଼ା ବହୁ ପ୍ରତିଷ୍ଠାନ ତରଫରୁ ପୁଷ୍ପାଞ୍ଜଳି ପ୍ରଦାନ ଚାଲିଲା ।

ନବକୃଷ୍ଣ ଚୌଧୁରୀ ଥିଲେ ଓଡ଼ିଶାର ଜନନେତା । ଏଣୁ ବିଶ୍ୱନାଥ ପଣ୍ଡିତ ଆଦି ପ୍ରସ୍ତାବ କଲେ, ତାଙ୍କୁ ତାଙ୍କର ଜନ୍ମସ୍ଥାନ, କଟକକୁ ନିଆଯାଉ ଆଉ ଓଡ଼ିଶାର ପ୍ରଖ୍ୟାତ ଶ୍ମଶାନ ସତୀଚଉରାରେ ତାଙ୍କର ସତ୍କାର କରାଯାଉ । ଜାନକୀବାବୁ ବି ସେଥିରେ ସମ୍ମତ ହୋଇଥିଲେ । ନବକୃଷ୍ଣ ଚୌଧୁରୀ କିନ୍ତୁ ଇଚ୍ଛା ପ୍ରକାଶ କରିଥିଲେ ଯେ ତାଙ୍କୁ ସାଧାରଣ ଶ୍ମଶାନରେ ହିଁ ସତ୍କାର କରାଯିବ । ମୃତ୍ୟୁ ପୂର୍ବରୁ ଅବସ୍ଥା ଖରାପ ଆଡ଼କୁ ଯାଉଥିବା ବେଳେ, କଟକ ବଡ଼ ଡାକ୍ତରଖାନାକୁ ସ୍ଥାନାନ୍ତରଣକୁ ସେ ବିରୋଧ କରିଥିଲେ । ସିଏ ସେହି ଅନୁଗୋଳର ମାଟି ନେବେ, ଏଇଆ ଥିଲା ତାଙ୍କର ଇଚ୍ଛା । ଏ କଥା ଜଣାପଡ଼ିଲା ପରେ, ବାଜି ରାଉତ ଛାତ୍ରାବାସ ଯେଉଁ ଗାଁରେ, ସେହି ସୋମନାଥପୁର ଗାଁର ଶ୍ମଶାନରେ ତାଙ୍କ ସତ୍କାର କଥାରେ ସମସ୍ତେ ରାଜି ହୋଇଗଲେ । ରାଜ୍ୟ ସାମରିକ ପୋଲିସ ବାହିନୀର ଅଫିସର ଶବସଂସ୍କାର ସ୍ଥାନ ପରିଦର୍ଶନ କରି ଯାତ୍ରାର ମାର୍ଗ ସ୍ଥିର କଲେ । କିନ୍ତୁ ଖଲାରୀ ଗାଁ ଲୋକେ ଚାହିଁଲେ, ତାଙ୍କ ଗାଁ

ଶ୍ମଶାନରେ ନବବାବୁଙ୍କର ସଂସ୍କାର ହେଉ । କାରଣ, ଖଲାରୀ ଗାଁରେ କେବଳ ମାତ୍ର ବିଭିନ୍ନ ବିଦ୍ୟାଳୟ ପ୍ରତିଷ୍ଠାରେ ନୁହେଁ ସେହି ଗାଁ ରାସ୍ତାରେ ମାଟି ବୋହି ପକାଇବାଠାରୁ ଆରମ୍ଭ କରି ବିଭିନ୍ନ କାର୍ଯ୍ୟରେ ସେ ସମ୍ପୃକ୍ତ ଥିଲେ । କିନ୍ତୁ ସେତେବେଳକୁ ସଂସ୍କାର ନିଷ୍ପତ୍ତି ଚୂଡ଼ାନ୍ତ ହୋଇସାରିଥାଏ । ଏଣୁ ପୂର୍ବ ନିଷ୍ପତ୍ତି ଅପରିବର୍ତ୍ତିତ ରହିଲା । ବାବାଜୀ ଭାଇ (ବଳଭଦ୍ର ମିଶ୍ର) ଓ ବିଶ୍ୱନାଥ ପଣ୍ଡିତ ତାଙ୍କୁ ସ୍ନାନ କରାଇ ନୂଆ ଲୁଗା ପିନ୍ଧାଇଦେଲେ ଓ ଅନ୍ତିମ ଯାତ୍ରା ପୂର୍ବରୁ ପ୍ରାର୍ଥନା ପାଇଁ ବ୍ୟବସ୍ଥା କରାଗଲା ।

ଦିନ ୩ଟା ବେଳକୁ ପ୍ରାର୍ଥନା ସଭାରେ ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ, ରାଧାନାଥ ରଥ ଆଦି ନେତୃବୃନ୍ଦ ଯୋଗ ଦେଲେ ଓ ପ୍ରାର୍ଥନା ପରିଚାଳନା କରିଥିଲେ ନବବାବୁଙ୍କ ଦୁଇ ଜ୍ୱାଇଁ ନାରାୟଣ ଦେଶାଇ ଓ ବିଭୂତିଭୂଷଣ ମହାନ୍ତି, ଦୁଇ ଝିଅ ଉତ୍ତରା ଦେଶାଇ, କୃଷ୍ଣା ମହାନ୍ତି ତଥା ଆଶ୍ରମର ଅନ୍ତେବାସୀବୃନ୍ଦ । ଏକ ସୁସଜ୍ଜିତ ଟ୍ରକ୍‌ରେ ତାଙ୍କ ମରଶରୀରକୁ ରଖାଗଲା । ଟ୍ରକ୍‌ରେ ଥିଲେ ଝିଅ, ନାତିନାତୁଣୀଙ୍କ ଛଡ଼ା ବହୁ ଆତ୍ମୀୟସ୍ୱଜନ । ଶବ ଶୋଭାଯାତ୍ରାରେ ଦୂର ଗାଁର ବହୁ ସାଧାରଣ ଲୋକ, ବିଶେଷକରି ହରିଜନ ଲୋକ, ସଂକୀର୍ତ୍ତନ ସହ ଯୋଗ ଦେଇଥିଲେ । ଶୋଭଯାତ୍ରାରେ ଦେଖିବାକୁ ମିଳିଥିଲା ବିଭିନ୍ନ ବୟସର ବହୁ ମହିଳାଙ୍କୁ । ହଜାର ହଜାର ନରନାରୀ ପଥପାର୍ଶ୍ୱରେ ଲୋତକଭରା ଚକ୍ଷୁରେ ପ୍ରିୟ ନେତା ନବବାବୁଙ୍କୁ ସମ୍ମାନ ଜଣାଇଲେ । ଅନୁଗୋଳ ପାଇଁ ଏହା ଥିଲା ଅଭିନବ । ସେହି ଶୋଭାଯାତ୍ରାରେ ଜଣେ ମା' ତା'ର ଛୋଟ ଛୁଆକୁ ସାଙ୍ଗରେ ଧରି କାନ୍ଦିକାନ୍ଦି ଚାଲୁଥିଲା । ପିଲାଟି ମା'କୁ କାନ୍ଦିବାର କାରଣ ପଚାରିଲା । ସେଇ ଗାଉଁଲି ଗରିବ ଘରର ସ୍ତ୍ରୀଲୋକଟି ପିଲାଟିକୁ ବୁଝାଇ କହିବାର ଶୁଣାଯାଇଥିଲା "ତୁ ତ ଜାଣିପାରିବୁ ନାହିଁ; ଯା'ର କେହି ନାହାନ୍ତି, ସିଏ ଥିଲା ତା'ର ସାହା, ଆଜି ସେହି ଲୋକଟି ଚାଲିଗଲା ।" ଆଷାଢ଼ ମାସର ଦଶଦିନ ବିତିଯାଇଥିଲେ ବି ସେଦିନ ବିଶେଷ ଖରା ନଥିଲା କି ବର୍ଷା ନଥିଲା । କେବଳ ସଞ୍ଜବେଳକୁ ଆକାଶରୁ ଝରିପଡ଼ିଥିଲା ସାମାନ୍ୟ କିଛି ବର୍ଷାବିନ୍ଦୁ ।

ଶ୍ମଶାନର କିଛି ଦୂରରୁ ସାମରିକ ପୋଲିସ ବାହିନୀ ସ୍ୱର୍ଗତ ନେତାଙ୍କୁ ଶେଷ ସମ୍ମାନ ଜଣାଇଥିଲେ । ମରଶରୀରକୁ ସଂସ୍କାର ସ୍ଥାନକୁ ନିଆଯାଇ ଅଗ୍ନିସଂଯୋଗ କରାଗଲା । ନିଜ ପରିବାର ଲୋକଙ୍କ ଛଡ଼ା ଅନ୍ୟ ଯିଏ ଚାହିଁଲେ, ଖଣ୍ଡେଖଣ୍ଡେ ଇନ୍ଧନ ପକାଇ ଦେଇଗଲେ । ଆସ୍ତେ ଲୋକଗହଳି କମିଲା । ଶେଷକୁ ରହିଥିଲେ ଦିବାକର ପ୍ରଧାନ, ଗୋଲୋକଚନ୍ଦ୍ର ପାତ୍ର, ବାବାଜୀ ଭାଇ ଆଦି ଅଳ୍ପ କେତେଜଣ ।

ଯେଉଁ ନିଆଁ ତେଷଠି ବର୍ଷ ଧରି ଏକ ଶରୀର ମଧ୍ୟରେ ଜଳୁଥିଲା, ଯାହା ସବୁ ପ୍ରକାର ଅନ୍ୟାୟ, ଅତ୍ୟାଚାର, ଶୋଷଣ ଓ କଷଣ ଦେଖିଲେ ନବକୃଷ୍ଣ ଚୌଧୁରୀଙ୍କୁ ପ୍ରଜ୍ୱଳିତ କରିଦେଉଥିଲା, ୧୯୮୪ ମସିହା ଜୁନ୍ ୨୪ ତାରିଖ ସନ୍ଧ୍ୟାରେ ସେହି ନିଆଁ, ଜୁଇର ନିର୍ବାପନ

ସହିତ, ଲିଭିଗଲା । କିନ୍ତୁ ନିର୍ଯାତିତ ଓ ଶୋଷିତ ଜନତାର ଲୁହଲହୁ ବିରୋଧରେ ସଂଗ୍ରାମ ଲାଗି ତାଙ୍କର ଆହ୍ୱାନ ଅଲିଭା ରହିଛି । ଆଜି ବଜାର ଅର୍ଥନୀତିର ବିଜ୍ଞାପନର ଶିକାର ହୋଇ ହଜାର ହଜାର ତଥାକଥିତ ଶିକ୍ଷିତ ଯୁବକ ଭୋଗଲାଳସା ପାଇଁ ଦିନ ଦି'ପ୍ରହରରେ ଡକାୟତି କରୁଛନ୍ତି । କୈଫିୟତ ଦେଉଛନ୍ତି, ସେମାନଙ୍କ ଭଳି ବେକାର ଯୁବକଙ୍କ ଲାଗି ଡକାୟତି ଛଡ଼ା ଅନ୍ୟ ପନ୍ଥା ନାହିଁ । କିନ୍ତୁ ସମାନ୍ତର ଭାବରେ ବିପରୀତ ଦିଗରେ, ଅଳ୍ପ ସଂଖ୍ୟକ ହେଲେ ବି, ଆଉକିଛି ଶିକ୍ଷିତ ଯୁବକଯୁବତୀ ଚାଲିଛନ୍ତି ଚିଲିକା କୂଳରେ, ସାଧାରଣ ଲୋକଙ୍କ ସଙ୍ଗରେ ଚିଙ୍ଗୁଡ଼ି-ମାଫିଆବିରୋଧୀ ଲଢ଼େଇରେ । ଆଉକେତେକ ଶିକ୍ଷିତ ଯୁବକଯୁବତୀ କୃଚ୍ଛ୍ର ସାଧନା ଆରମ୍ଭ କରିଛନ୍ତି ବୋଲଗଡ଼ ବେଗୁନିଆ, ବରୀର ଗାଁ ଗହଳିରେ ; ନବକୃଷ୍ଣ ଚୌଧୁରୀଙ୍କ ଭଳି, ଗାଉଁଲି ଲୋକଙ୍କ ଜୀବନକୁ ଆଦରି ନେଇ, ଗ୍ରାମ୍ୟ ଜୀବନକୁ ଜୀବନ୍ୟାସ ଦେବା ଲାଗି । ଏମାନଙ୍କ ଭଳି ଆହୁରି କେତେକ ଦୁର୍ଗମ ଆଦିବାସୀ ଅଞ୍ଚଳରେ ଦଶାବ୍ଦୀ ଦଶାବ୍ଦୀ ଧରି ଆଦିବାସୀମାନଙ୍କ ସଂଗ୍ରାମରେ ନିଜକୁ ସାମିଲ୍ କରିଦେଇଛନ୍ତି ; ସେମାନଙ୍କ ମଧ୍ୟରେ ଭୟଶୂନ୍ୟତା ସୃଷ୍ଟି କରିଛନ୍ତି । ସେହି ଉତ୍ସର୍ଗୀକୃତ ଲୋକମାନଙ୍କ ସଂଖ୍ୟା ଅବଶ୍ୟ ନଗଣ୍ୟ । ତେବେ ସବୁବେଳେ, ଅଳ୍ପ ସଂଖ୍ୟକ ହେଲେ ବି, ବିଚାରବନ୍ତ, ଉତ୍ସର୍ଗୀକୃତ ଓ ନିର୍ଭୀକ ଲୋକମାନେ ହିଁ ଇତିହାସକୁ ମୋଡ଼ ଦିଅନ୍ତି । ସେହିମାନଙ୍କ ଲାଗି ନବକୃଷ୍ଣ ଚୌଧୁରୀ ରହିଯିବେ ଅନିର୍ବାଣ ଜ୍ୟୋତି ଭଳି ।

୧୯୮୪ ମସିହା ଜୁନ୍ ୨୪ ତାରିଖ ଦିନ ରାତିରେ ଆକାଶବାଣୀର କଟକ କେନ୍ଦ୍ରରୁ ନବବାବୁଙ୍କର ଜଣେ ଘନିଷ୍ଠ ସହଯୋଗୀ ବିନୋଦ କାନୁନ୍‌ଗୋ ଶ୍ରଦ୍ଧାଞ୍ଜଳି ଦେଇ କହିଥିଲେ, "ନବକୃଷ୍ଣ ଚୌଧୁରୀ ଆଉ ନାହାନ୍ତି—ଏହି ଖବର ପ୍ରଚାରିତ ହୋଇଗଲା ମାତ୍ରେ ଓଡ଼ିଶାରେ ହାହାକାର ଖେଳିଗଲା । ଯାହାମୁହଁରୁ ଶୁଣିବ, ସେଇ ଗୋଟିଏ କଥା, 'କେଡ଼େ ବଡ଼ ଲୋକଟାଏ ଚାଲିଗଲା' ।"

"କୋଡ଼ିଏ ବର୍ଷ ବୟସ୍କ ଯୁବକ, କଲେଜ ଛାତ୍ର ନବକୃଷ୍ଣଙ୍କ କାନରେ ମହାତ୍ମା ଗାନ୍ଧିଙ୍କ ଡାକରା ବାଜିଲା । ସେ କଲେଜ ଛାଡ଼ିଦେଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । ସେହି ଦିନରୁ ଦୀର୍ଘ ତେଷଠି ବର୍ଷ କାଳ ସେ ଗୋଟିଏମାତ୍ର କାମ କରିଆସିଛନ୍ତି—ତାହା ହେଉଛି ଅନ୍ୟାୟ ଅତ୍ୟାଚାର ବିରୋଧରେ ସଂଗ୍ରାମ । ସେ ବରାବର କହୁଥିଲେ, 'ଗାନ୍ଧିଠାରୁ ମୁଁ ଗୋଟିଏ କଥା ଶିଖିଛି । ଯେଉଁଠାରେ ଲୁହ, ସେଠାରେ ଯାଇ ପହଞ୍ଚିଯାଅ । ଆଉ କିଛି କରିପାର ବା ନକର, ତା' ଲୁହ ପୋଛିଦେଇ ପିଠିଟାକୁ ଟିକିଏ ଆଉଁଶିଦିଅ । ଅତ୍ୟାଚାରୀର ମାଡ଼ରେ ତା' ପିଠି ଫାଟିଯାଇଥିଲେ ମଧ୍ୟ ତା' କଷ୍ଟ ବହୁ ଦୂରକୁ କମିଯିବ ।' ନବକୃଷ୍ଣ ଚୌଧୁରୀଙ୍କ ଜୀବନକୁ ଅଧ୍ୟୟନ କଲେ, ଆମେ ଦେଖିବା, ସେ ବରାବର ଜଳିଛନ୍ତି—କେବେହେଲେ, ନିଜ ଅକ୍ତିଆରରେ ଥିବା ପର୍ଯ୍ୟନ୍ତ, କୁହୁଳିନାହାନ୍ତି ।"

ଶେଷ ଜୀବନରେ, ବୃଦ୍ଧ ବୟସରେ ବନ୍ଦୀ ଭାବରେ ଥିଲାବେଳେ ତାଙ୍କ ମସ୍ତିଷ୍କରେ ଯେଉଁ ଆଘାତ ହେଲା, ସେଥିରେ ତାଙ୍କ ଶରୀର ଓ ମନ ଉପରେ ଆଞ୍ଚ୍ ଆସିଲା । ତାହା ପରେ ସେ ଟିକିଏ ଦୁର୍ବଳ ହୋଇପଡ଼ିଥିଲେ ମଧ ବିପ୍ଳବୀର ମନ ନେଇ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ରହିଥିଲେ ।

ମହାତ୍ମା ଗାନ୍ଧିଙ୍କ ଉପଦେଶର ଅସଲ ମର୍ମ ସେ ବୁଝିଥିଲେ । ଗାନ୍ଧି କହୁଥିଲେ–ଯିଏ ସାଧାରଣ କ୍ଷେତ୍ରରେ ଜୀବନ କଟାଇବ, ସେ ଦାରିଦ୍ର୍ୟକୁ ବରଣ କରିନେବ । ତାହାହେଲେ ଯାଇ ସେ ତାହା ଭିତରେ ସୌନ୍ଦର୍ଯ୍ୟ ଦେଖିବ । ଦାରିଦ୍ର୍ୟ ଭିତରେ ବାଧ୍ୟ ହୋଇ ରହିବା ଲୋକର ମନ ଦବିଯାଏ । ଯିଏ ଦାରିଦ୍ର୍ୟକୁ ବରଣ କରିଥାଏ, ସେ ସେଥିରୁ ପ୍ରେରଣା ପାଇଥାଏ । ନବବାବୁ ଏ କଥାର ମହତ୍ତ୍ୱ ବୁଝିଥିଲେ । ସେଥିପାଇଁ ସେ ଦୀର୍ଘ ଛଅବର୍ଷ କାଳ ମୁଖ୍ୟମନ୍ତ୍ରୀ ଥିଲେ ମଧ ବ୍ୟକ୍ତିଗତ ଭାବରେ ତାଙ୍କ ବିରୋଧରେ କୌଣସି ଆର୍ଥିକ ବ୍ୟଭିଚାରର ଅଭିଯୋଗ, ତାଙ୍କର ବିରୋଧୀମାନେ ମଧ କରିପାରିନାହାନ୍ତି । ଗାନ୍ଧିଙ୍କଠାରୁ ସେ ସାହସ ଶିଖିଥିଲେ । ତେଣୁ କେବେହେଲେ ସେ କାହାକୁ ଡରିଯାଇନାହାନ୍ତି । ମୁଣ୍ଡ ଟେକି କଥା କହିଛନ୍ତି । ନିର୍ଭୀକତା, ସଚ୍ଚୋଟପଣିଆ, ଚରିତ୍ରବତ୍ତା ଏବଂ ଦକ୍ଷତାର ସେ ଥିଲେ ଗୋଟିଏ ଅପୂର୍ବ ମିଶ୍ରଣ । ଯେକୌଣସି ଦିଗରୁ ସେ ଥିଲେ ଜଣେ ପଣ୍ଡିତ, ବିଦ୍ୱାନ୍ ।

ଇତିହାସ ସମ୍ପୂର୍ଣ୍ଣ ନିରପେକ୍ଷ । ସେ କାହାର ମୁହଁକୁ ଚାହେଁ ନାହିଁ । ତେଣୁ ଦିନେ ବଡ଼ ବୋଲି ଜଣାପଡୁଥିବା ବହୁ ଲୋକଙ୍କ ନାମକୁ ଇତିହାସ ପୋଛିଦେଇଛି, ଲିଭାଇଦେଇଛି । କିନ୍ତୁ କୋଟିକରେ ଏଭଳି ଗୋଟିଏ ଲେଖା ଲୋକ ବାହାରନ୍ତି, ଯାହା ନାମକୁ ଇତିହାସ ନିଜ ବକ୍ଷରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଦିଏ । ଶହଶହ ବର୍ଷ ବିତିଗଲେ ମଧ ଲୋକେ ତାଙ୍କ କଥା ମନେପକାନ୍ତି । ଆଉ କିଛି ନହେଲେ ମଧ ଏତକ ନିଶ୍ଚୟ ଲେଖାଯିବ ଯେ–'ନିଜେ ଯେଉଁଥିରେ ବିଶ୍ୱାସ କରୁଥିଲେ, ଯାହାକୁ ସତ୍ୟ ବୋଲି ବିଚାରୁଥିଲେ, ସେଥିରେ ଦୃଢ଼ ରହିବାପାଇଁ ଯେତେ ତ୍ୟାଗ କରିବାକୁ ପଡୁ ପଛକେ ସେ ପଛାଇ ଯାଉନଥିଲେ । ମଣିଷର ମଣିଷ ଭଳି ବଞ୍ଚିରହିବାର ଅଧିକାର ଅଛି ବୋଲି ସେ ଦୃଢ଼ ଭାବରେ ବିଶ୍ୱାସ କରୁଥିଲେ ।' ସମସ୍ତଙ୍କ ମନରେ ଦୁଃଖ ଯେ ଗାନ୍ଧିଯୁଗର ଜଣେ ଶ୍ରେଷ୍ଠ ରଥୀ ଚାଲିଗଲେ । କିନ୍ତୁ ଏତିକି ସାନ୍ତ୍ୱନାର କଥା ଯେ ସାଧାରଣ ଜୀବନରେ ପବିତ୍ରତା ରକ୍ଷା କରିବାର ଯେଉଁ ଉଜ୍ଜ୍ୱଳ ଉଦାହରଣ ସେ ରଖିଦେଇଗଲେ, ତାହା ଆମର ଭବିଷ୍ୟତ ବଂଶଧରମାନଙ୍କୁ ପ୍ରେରଣା ଦେବ । ସେହି ଦୃଷ୍ଟିରୁ ନବବାବୁଙ୍କର ମରଶରୀର ଆଜି ୪ଟା ବେଳେ ଭସ୍ମୀଭୂତ ହୋଇଗଲେ ସୁଦ୍ଧା ତାଙ୍କ ପ୍ରେରଣା ଅଧିକ ଜୀବନ୍ତ ହୋଇଯାଉଛି ।..."

ନବକୃଷ୍ଣ ଚୌଧୁରୀ ଗୌତମ ବୁଦ୍ଧଙ୍କ ଭଳି ନିର୍ବାଣ ଚାହିଁନଥିଲେ କି ଶଙ୍କରାଚାର୍ଯ୍ୟଙ୍କ ପରି ବ୍ରହ୍ମତ୍ୱ ଲାଭ କାମନା କରିନଥିଲେ । ସେ ଚାହିଁଥିଲେ ଏଇ ଧୂଳିମାଟିର ଲୋକଙ୍କ

ଦୁଃଖସୁଖରେ ନିଜକୁ ମିଶେଇଦେବା ଲାଗି । ଦିନେ ଅନୁଗୋଳ ଟାଉନ ବାହାର ଗାଁରୁ ଫେରୁ ଫେରୁ ହଠାତ୍ ଅଦିନିଆ ବର୍ଷା ହୋଇଗଲା । ସାଙ୍ଗରେ କିଛି ମୂଲ୍ୟବାନ ବହି ଖାତା ରହିଛି । ସେସବୁ ଭିଜିଗଲା । ଆଖି ପଡ଼ିଲା ମାଟିଆ କେଳା ସାହିର ଦୁରୁଗା କେଳା ଘର ଉପରେ । ସେ ନିଜେ ନଥିଲା । ଘରେ କେତେ ଖଣ୍ଡ ପୁରୁଣା ଖଜୁରିପତ୍ରବୁଣା ସପ ଛଡ଼ା ଆଉ କିଛି ନାହିଁ । ସେଥିରୁ ଖଣ୍ଡେ ଧରିଲେ । ସାଙ୍ଗରେ ଥାଆନ୍ତି ଜଗାଭାଇ (ଶିଳ୍ପୀ ଜଗନ୍ନାଥ ଦାସ) । କହିଲେ, "ଜଗୁ, ଏଥିରୁ ଖଣ୍ଡେ ଧର ।" ଟିକିଏ ଇତସ୍ତତଃ ହୋଇ ଜଗାଭାଇ ବି ସେଥିରୁ ଖଣ୍ଡେ ଧରିଲେ । ଆଶ୍ରମରେ ପହଞ୍ଚି ସେସବୁ ପିଲାଙ୍କ ହାତରେ ଫେରାଇଦେଇଥିଲେ । ଏହାପରେ ସେ କେତେଥର ଦୁରୁଗାଭାଇ ଘରକୁ ଯାଇଛନ୍ତି । ତା'ରି ଗୋଲାକାର ଘର ପରି ଆଶ୍ରମ ଭିତରେ ଏକ ଘର ବି କଲେ । ଶେଷ ପର୍ଯ୍ୟନ୍ତ ନବବାବୁଙ୍କର ସେ ରହିଗଲେ ଦୁରୁଗାଭାଇ ହୋଇ । ଅନ୍ୟାନ୍ୟ ବିଷୟ ମଧ୍ୟରେ, ନବବାବୁଙ୍କର ନୃତତ୍ତ୍ୱ ଓ ସମାଜତତ୍ତ୍ୱ ସମ୍ପର୍କରେ ଜାଣିବା ପାଇଁ ଖୁବ୍ ଆଗ୍ରହ ଥାଏ । ଏଣୁ କେଳା, ସବାଖିଆ ଭଳି ଯାଯାବରମାନଙ୍କ ଜୀବନଧାରାକୁ ଓ ଆଦିବାସୀମାନଙ୍କ ସାମାଜିକ ଜୀବନର ବିଶେଷତ୍ୱକୁ ସେ ଆଗ୍ରହର ସହ ଅଧ୍ୟୟନ କରନ୍ତି ।

ଜୀବନର ଉତ୍ତର କାଳରେ ସେ କେତେଥର ତରିକୁନ୍ଦ ଆସିଛନ୍ତି । କିନ୍ତୁ ଅନ୍ୟତ୍ର ଆତିଥ୍ୟ ଗ୍ରହଣ ନକରି ସେ ତାଙ୍କ ପୁରୁଣା ଖମାରିଆ ଦାମ ଭୋଇ ଘରେ ଶାଗ ଖାଇବାରେ ସନ୍ତୋଷ ଲାଭ କରନ୍ତି ।

ରାୟଗଡ଼ା ଜିଲ୍ଲାର ଶଙ୍ଖଳପଦର ଗାଁର ସାହୁକାର ହରିହର ମିଶ୍ର ଚଞ୍ଚକତା କରି ଆଦିବାସୀଙ୍କ ଜମି ବନ୍ଦୋବସ୍ତ କାଳରେ ନିଜ ନାଁରେ ରେକର୍ଡ଼ କରେଇନେଇଥିଲେ । ସେହି ଜମିକୁ ଦଖଲ ନେଲାବେଳକୁ ଆଦିବାସୀମାନଙ୍କ ବର୍ଚ୍ଛା ଓ ଢେଲାମାଡ଼ରେ ହରିହର ମିଶ୍ର ଓ ତାଙ୍କ ପୁତୁରା ବିଶ୍ୱନାଥ ମିଶ୍ରଙ୍କ ମୃତ୍ୟୁ ଘଟିଲା । ମକଦ୍ଦମା ବେଳେ ଆଦିବାସୀମାନେ ମାରିଥିବା କଥା ମାନିଗଲେ । ୪୨ ଜଣଙ୍କୁ ଆଜୀବନ କାରାବାସ ହେଲା । ଜେଲ୍‌ରେ ଥିବା ସମୟରେ ସେମାନଙ୍କ ମଧ୍ୟରୁ ୬ଜଣଙ୍କର ମୃତ୍ୟୁ ଘଟିଲା । ସର୍ବୋଦୟ ନେତା ଓ କର୍ମୀମାନଙ୍କ ଉଦ୍ୟମରେ ଶଙ୍ଖଳପଦର ଗାଁର ବନ୍ଦୀମାନଙ୍କ ଘରବାଲାମାନେ ରାଷ୍ଟ୍ରପତିଙ୍କ ନିକଟରେ କ୍ଷମା ଗୁହାରି କଲେ । ରାଷ୍ଟ୍ରପତି ମହିଳାମାନଙ୍କର ଆକୁଳ ନିବେଦନକୁ ହୃଦୟର ସହିତ ବିଚାର କରି ବନ୍ଦୀମାନଙ୍କ କାରାମୁକ୍ତି ଲାଗି ଆଦେଶ ଦେଲେ । ତେବେ ଗୋଟିଏ ସର୍ତ୍ତ ରହିଲା, ଆସାମୀମାନେ ଭବିଷ୍ୟତରେ ଯେପରି ହିଂସ୍ରକ ନ ହୁଅନ୍ତି, ସେଥିପାଇଁ କୌଣସି ବିଶିଷ୍ଟ ନେତା ମୁଚାଲିକା ଲେଖିଦେବା ଦରକାର । ନବକୃଷ୍ଣ ଚୌଧୁରୀ ଆଗଭର ହୋଇଥିଲେ ସେହି ଆସାମୀମାନଙ୍କ ପାଇଁ ଏହି ମର୍ମରେ ମୁଚାଲିକା ଲେଖିଦେବାକୁ । ଶଙ୍କଳପଦର ଗାଁକୁ ଫେରିଆସିଲେ ୩୬ଜଣ ଆଜବୀନ କାରାବନ୍ଦୀ । ନବକୃଷ୍ଣ ଚୌଧୁରୀଙ୍କ ପାଇଁ ଏହାଠାରୁ ଆନନ୍ଦଦାୟକ କଥା ଆଉ କ'ଣ ଥିଲା ?

ନକ୍ସଲପନ୍ଥୀ ନାଗଭୂଷଣ ପଟ୍ଟନାୟକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଉତ୍ପାତରୁ ନିରୀହ ଲୋକଙ୍କୁ କୌଣସିମତେ ରକ୍ଷା କରିପାରିଲେ ନାହିଁ । ସେଭଳି ଅତ୍ୟାଚାରୀଙ୍କୁ ହତ୍ୟା କରିଥିବା କଥା ସେ ବିଚାରାଳୟରେ ମାନିଯାଇଥିଲେ । ତାଙ୍କୁ ହେଲା ପ୍ରାଣଦଣ୍ଡ । କିନ୍ତୁ ଏହି ହତ୍ୟା ନଥିଲା ବ୍ୟକ୍ତିଗତ ସ୍ୱାର୍ଥ ବା ସୁଖଲାଳସାରୁ । ତାଙ୍କ ଭଳି ଜଣେ ଉତ୍ସର୍ଗୀକୃତ ଲୋକଙ୍କ ଜୀବନ ରକ୍ଷା କରିବା ଲାଗି ରତନ ଦାସ, ରବି ସାହୁ, ରବି ଦାସ ଓ ମନୋରଞ୍ଜନ ମହାନ୍ତି ଆଦି ଉଦ୍ୟମ କଲେ । କିନ୍ତୁ କିଏ ଉଦ୍ୟମ କଲେ ଦିଲ୍ଲୀ ସିଂହାସନ ହଲ୍‌ଚଲ୍ ହେବ, ରାଷ୍ଟ୍ରପତି ଅନୁରୋଧ ରକ୍ଷା କରିବେ ? ସେଥିପାଇଁ ଏକମାତ୍ର ଲୋକ ଥିଲେ ଜୟପ୍ରକାଶ ନାରାୟଣ । ତାଙ୍କୁ ପ୍ରବର୍ତ୍ତାଇବା ପାଇଁ ଠିକଣା ଲୋକ ହେଲେ ନବକୃଷ୍ଣ ଚୌଧୁରୀ । ଏ ଉଭୟଙ୍କ ଉଦ୍ୟମ ଫଳରେ ନାଗଭୂଷଣଙ୍କ ମୃତ୍ୟୁଦଣ୍ଡ, ଆଜୀବନ କାରାବାସରେ ପରିଣତ ହେଲା । ନାଭୂଷଣଙ୍କ ଭଳି ଅନ୍ୟ ଯେଉଁମାନେ ବନ୍ଦିଶାଳାରେ ଥିବା ସମୟରେ ସେମାନଙ୍କ ପରିବାର ଅତି ଅଭାବ, ଦୁଃଖ ଓ ପୋଲିସ ନିର୍ଯାତନାରେ କାଳାତିପାତ କରୁଥିଲେ, ସେମାନଙ୍କୁ ସାହାଯ୍ୟ କରିବା ଲାଗି ନବବାବୁ ଓ ମାଳତୀ ଦେବୀ ନିଜର ଅତି ଆପଣାର କରୁଣାକର ପରିଡ଼ା, ନିତ୍ୟାନନ୍ଦ ଦାସ, ସ୍ୱାଧୀନ ପଟ୍ଟନାୟକ, ମନୋରଞ୍ଜନ ମହାନ୍ତି ଏବଂ ଡାକ୍ତର ସରସ୍ୱତୀ ସ୍ୱାଇଁ ଆଦିଙ୍କଠାରୁ ଅର୍ଥ ସଂଗ୍ରହ କରି ସେମାନଙ୍କ ଦ୍ୱାରରେ ଉପସ୍ଥିତ ହୋଇଛନ୍ତି ଓ ପୋଲିସ ଉତ୍ପାତ ବିରୋଧରେ ଲଢ଼ିଛନ୍ତି ଏବଂ ଲୋକଙ୍କ ମନରେ ସାହସ, ଶକ୍ତି ଜାଗ୍ରତ କରିଛନ୍ତି ।

ନବବାବୁ ଓ ମାଳତୀ ଦେବୀ ହିଂସା ମାର୍ଗକୁ ବିରୋଧ କରୁଥିଲେ ; କିନ୍ତୁ ଭୀରୁର ଅହିଂସାକୁ ଘୃଣା କରୁଥିଲେ । ତାହା ସତ୍ତ୍ୱେ ନାଗାମାନଙ୍କଠାରୁ ଆରମ୍ଭ କରି ନାଗଭୂଷଣଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ସାହାଯ୍ୟ କରିଛନ୍ତି ଓ ଅହିଂସା ମାର୍ଗର ଫଳପ୍ରଦତା ସମ୍ପର୍କରେ ବୁଝାଇଛନ୍ତି । ତାଙ୍କରି ପ୍ରଭାବରେ ନାଗଭୂଷଣ ଓ ନାଗାମାନଙ୍କ ଚିନ୍ତାଧାରା ତଥା କାର୍ଯ୍ୟକଳାପରେ ପରିବର୍ତ୍ତନ ଲକ୍ଷ୍ୟ କରାଯାଇଛି । ନାଗାମାନେ ନାଗାଲାଣ୍ଡର ଜେଲ୍‌ରେ ରହିଲେ ସେମାନଙ୍କୁ ବିଦ୍ରୋହୀମାନେ ଜେଲ୍ ଭାଙ୍ଗି ନେଇଯାଇପାରନ୍ତି ବୋଲି ଆଶଙ୍କା ଥିଲା । ଏଣୁ ଭାରତ ସରକାର ସେମାନଙ୍କୁ କୋରାପୁଟ ଜେଲ୍ ଭଳି ଦେଶର ବିଭିନ୍ନ ଦୁର୍ଗମ ଜେଲ୍‌ରେ ରଖାଇଥିଲେ । ନାଗାମାନେ ଅନ୍ୟାନ୍ୟ ମାଂସ ଅପେକ୍ଷା କୁକୁରମାଂସକୁ ଅଧିକ ପସନ୍ଦ କରନ୍ତି । ଏଣୁ ସେମାନଙ୍କୁ କୁକୁର ମାଂସ ଯୋଗାଇ ଦେବା ଲାଗି ସେ ତତ୍କାଳୀନ କଲେକ୍ଟର ଜଗନ୍ନାଥ ଦାସଙ୍କୁ ଅନୁରୋଧ କରିଥିଲେ ।

ମୃତ୍ୟୁର ପ୍ରାୟ ବର୍ଷକ ପୂର୍ବରୁ ଯେତେବେଳେ ସେ କଟକ ଆସିଥିଲେ, ତାଙ୍କର ପ୍ରିୟ ଅନିଲ ଘୋଷ ତାଙ୍କୁ ନେଇ ଗୌରୀଶଙ୍କର ସ୍ମୃତିସଦନ ପରିସରରେ ଏକ ସଭା କରାଇଥିଲେ । ସେତେବେଳକୁ ଆମ ଦେଶର ଚାରିଆଡ଼େ ଘଟିଯାଉଥିବା ରାଜନୈତିକ ଓ ସାମାଜିକ

ଦୁଃସ୍ଥିତିରେ ଓ ସେସବୁକୁ ସୁଧାରିବା ଦିଗରେ ନିଜର ବ୍ୟର୍ଥତାରେ, ସେ ହତାଶ ହୋଇପଡ଼ିଥାନ୍ତି । ତଥାପି ସେ ଉକ୍ତ ସଭାରେ ସାନ୍ତ୍ୱନା ଦେଇ କହୁଥାନ୍ତି, "ଏଇ ମଦୁଆ ଓ ନଷ୍ଟ ଲୋକଙ୍କ ଭିତରୁ ବାହାରିବେ, ବାହାରିବେ ସଂଗ୍ରାମୀ ଲୋକ, ଏ ଅବସ୍ଥା ରହିବ ନାହିଁ । ମଣିଷର ବିଚାର ଓ ବିବେକ ତାକୁ ପୁଣି ଠିକ୍ ବାଟକୁ ଫେରାଇଆଣିବ ।"

ନିରାଶା ଓ ହତାଶାର ଧକ୍କା ଖାଇ ବି ମଣିଷର ଭବିଷ୍ୟତ ଉପରେ ତାଙ୍କର ଭରସା ଥିଲା । ସିଏ ନିର୍ବାଣ ପଥରେ ଚାଲିଲେ ଏହି ଭୟଙ୍କର ହତାଶାର ଅନ୍ଧକାରରୁ ବାଟ କଢ଼ାଇବା ଲାଗି ସାରଥିର ଅଭାବ ପଡ଼ିଯିବ ଯେ ! ଏଣୁ ଅଧିକାଂଶ ଲୋକଙ୍କ ଶୋଷଣ, କଷଣ, ଦୁର୍ଭାଗ୍ୟ ଥିବା ପର୍ଯ୍ୟନ୍ତ ସିଏ ଜନ୍ମଲାଭ କରୁଥିବେ; ସେହିମାନଙ୍କର ପିଠି ଆଉଁଶିଦେଉଥିବେ । ସେହି ହତଭାଗ୍ୟଙ୍କ ମୁହଁରେ ହସ ଦେଖିବାଯାଏ ନବକୃଷ୍ଣ ଚୌଧୁରୀ ବାରମ୍ବାର ଏହି ପୃଥିବୀରେ ଆବିର୍ଭୂତ ହେଉଥିବେ; ସେପର୍ଯ୍ୟନ୍ତ ତାଙ୍କର ନିର୍ବାଣ ନାହିଁ ।

**ଶତାବ୍ଦୀର ଅର୍ଘ୍ୟ :**

ନବକୃଷ୍ଣ ଚୌଧୁରୀ ଥିଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ଏଣୁ ତାଙ୍କ ବିୟୋଗରେ ରାଷ୍ଟ୍ରପତିଙ୍କଠାରୁ ଆରମ୍ଭ କରି ପ୍ରଧାନମନ୍ତ୍ରୀ ଓ ରାଜ୍ୟପାଳଙ୍କଠାରୁ ଆସିଥିଲା ଶୋକବାର୍ତ୍ତାମାନ । କିନ୍ତୁ ସେସବୁ ଔପଚାରିକ ବାର୍ତ୍ତା ଛଡ଼ା ବହୁ ବ୍ୟକ୍ତିବିଶେଷ ଏବଂ ଅନୁଷ୍ଠାନ ତରଫରୁ ତାଙ୍କ ପ୍ରତି ଆନ୍ତରିକ ଶ୍ରଦ୍ଧା ନିବେଦନ କରାଯାଇଥିଲା ।

'ସମାଜ' ସମ୍ପାଦକ ରାଧାନାଥ ରଥ ଶ୍ରଦ୍ଧାଞ୍ଜଳି ଜଣାଇ ଲେଖିଥିଲେ, "ମୋ' ଦୃଷ୍ଟିରେ ସେ ଚିର ଅମର ।" ହରେକୃଷ୍ଣ ମହତାବ 'ପ୍ରଜାତନ୍ତ୍ର'ରେ 'ଏକ ପ୍ରତିଭାର ତିରୋଧାନ' ଶୀର୍ଷକ ଏକ ସଂକ୍ଷିପ୍ତ ଅଥଚ ଚମତ୍କାର ସମ୍ପାଦକୀୟରେ ଲେଖିଥିଲେ, "ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲେ ଇତ୍ୟାଦି ବର୍ଣ୍ଣନାରୁ ସେ କଅଣ ଥିଲେ, ତାହା ଯୁବକମାନେ ଜାଣିପାରିବେ ନାହିଁ । ସେ ଥିଲେ ଓଡ଼ିଶା କଂଗ୍ରେସ ଇତିହାସର ଏକ ଅଧ୍ୟାୟର ପ୍ରଧାନ ନାୟକ । ସୋସାଲିଷ୍ଟ୍ ପାର୍ଟିର ଥିସିସ୍ କଟକସ୍ଥ ନବବାବୁଙ୍କ ଘରେ ପ୍ରସ୍ତୁତ ହୋଇଥିଲା । ମିନୁ ମାସାନି, ଅଚ୍ୟୁତ ପଟ୍ଟବର୍ଦ୍ଧନ ପ୍ରଭୃତି ସେଇଠି ଆସି ଏକତ୍ର ହେଉଥିଲେ । ୧୯୪୩ରୁ ୧୯୪୭ ପର୍ଯ୍ୟନ୍ତ କଂଗ୍ରେସ ସୋସାଲିଷ୍ଟ ପାର୍ଟି ହିଁ ଓଡ଼ିଶାର କଂଗ୍ରେସ ଥିଲା । ସେହି ସମୟରେ ପ୍ରବଳ ବେଗରେ କୃଷକ ଆନ୍ଦୋଳନ ଚାଲିଥିଲା । ପ୍ରବର୍ତ୍ତକ ଥିଲେ ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଚୌଧୁରୀ । ନବବାବୁଙ୍କ ଜୀବନ ଥିଲା ସମାଜବାଦୀର ଜୀବନ । କେବଳ ଚିନ୍ତା କ୍ଷେତ୍ରରେ ସମାଜବାଦୀ ହୋଇ କାର୍ଯ୍ୟକ୍ଷେତ୍ରରେ ଯେପରି ଧନୀ ଜୀବନ ଅନେକ ଅତିବାହିତ କରନ୍ତି, ସେ ସେପରି ନଥିଲେ । ସେ ଥିଲେ କାୟମନୋବାକ୍ୟରେ ସମାଜବାଦୀ । ସେ ସର୍ବୋଦୟୀ ହେଲେ ସମାଜବାଦୀ ଭିତ୍ତିରେ... । ସେ ରାଜସ୍ୱ ବିଭାଗର ମନ୍ତ୍ରୀ ଥିଲାବେଳେ ବିଭାଗଟିକୁ ସମାଜବାଦୀ ଲାଇନ୍‌ରେ ପରିଚାଳନା କରିଥିଲେ । ପୁଣି ଯେତେବେଳେ

ମୁଖ୍ୟମନ୍ତ୍ରୀ ହେଲେ, ସମୁଦାୟ ଶାସନକୁ ସର୍ବୋଦୟ କାର୍ଯ୍ୟକ୍ରମରେ ଲଗାଇଲେ । ତାଙ୍କର ଜୀବନ ଛଳନାମୟ ନଥିଲା । ସେ ଯାହା ବିଶ୍ୱାସ କରୁଥିଲେ, ତାହାହିଁ କରୁଥିଲେ–ଏହାହିଁ ଥିଲା ତାଙ୍କ ଜୀବନର ବିଶେଷତ୍ୱ । ଓଡ଼ିଆ ଜୀବନରେ ଆଧୁନିକତା ପ୍ରବେଶ କରାଇବାରେ ସେ ଥିଲେ ଅଗ୍ରଣୀ । ସାହିତ୍ୟ କ୍ଷେତ୍ରରେ ସବୁଜ ସାହିତ୍ୟ ଯୁଗ ଯେ ଆରମ୍ଭ ହୋଇଥିଲା ଏଥିରେ ନବକୃଷ୍ଣ ଚୌଧୁରୀ ମଧ୍ୟ ପ୍ରଥମ ଅବସ୍ଥାରେ ସାମିଲ ଥିଲେ । ନବବାବୁଙ୍କର ଦୀର୍ଘ ଜୀବନ ଓଡ଼ିଶା କଂଗ୍ରେସ ଓ ସାଧାରଣ ଜୀବନର ଇତିହାସର ଏକ ପ୍ରଧାନ ଅଧ୍ୟାୟ ।... ତାଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରିବାର ଛଳନା ମୁଁ କରୁନାହିଁ । ଆମେ ଥିଲୁ ସମବୟସୀ ଓ ବହୁ ବର୍ଷର ସହକର୍ମୀ । ନାନା ବିଷୟରେ ମତଭେଦ ଥିଲେ ମଧ୍ୟ ଆମେ ଥିଲୁ ଅନ୍ତରଙ୍ଗ ବନ୍ଧୁ । ସେହି ପଥରେ ସମସ୍ତଙ୍କୁ ଯିବାକୁ ହେବ । ଜନ୍ମ ଓ ମୃତ୍ୟୁ ମଧ୍ୟରେ ଯେଉଁ ସମୟତକକୁ ଜୀବନ କୁହାଯାଏ, ତାହା ନବବାବୁଙ୍କ ପକ୍ଷରେ ସାର୍ଥକ ଥିଲା, ଏହାହିଁ ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ।”

ଅନ୍ୟମାନେ ତାଙ୍କ ବିୟୋଗ ଫଳରେ ‘ଅପୂରଣୀୟ କ୍ଷତି ଘଟିଲା, ଭାରତୀୟ ସାଧାରଣ ଜୀବନରେ ଏହା ଏକ ଅଲିଭା ଚିହ୍ନ ଛାଡ଼ିଗଲା’, ‘ଏକ ବ୍ୟତିକ୍ରମର ବିଲୟ ଘଟିଲା’ ଇତ୍ୟାଦି କହି ଶ୍ରଦ୍ଧାଞ୍ଜଳି ଦେଇଥିଲେ ।

ତାଙ୍କର ୬୦ ବର୍ଷର ଅବିଚ୍ଛିନ୍ନ ଘନିଷ୍ଠ ବନ୍ଧୁ ଅନ୍ନଦା ଶଙ୍କର ରାୟ ଲେଖିଲେ, “ସେ ଥିଲେ ଏକ ଅନ୍ୟାୟ ସମାଜରେ ଜଣେ ନ୍ୟାୟବନ୍ତ ପୁରୁଷ”, ସର୍ବୋଦୟ ନେତା ଠାକୁରଦାସ ବଙ୍ଗଙ୍କ ମତରେ ସେ ଥିଲେ ‘ଦେବୋପମ ମଣିଷ’ ଏବଂ ବିଶିଷ୍ଟ ଶିକ୍ଷାବିଦ୍ ବଳଭଦ୍ର ପ୍ରସାଦ ତାଙ୍କୁ ‘ଶତାବ୍ଦୀ ପୁରୁଷ’ ବୋଲି ବର୍ଣ୍ଣନା କଲେ । ସ୍ୱାଧୀନତା ସଂଗ୍ରାମୀ ଯୁଗଳକିଶୋର ପାଣିଗ୍ରାହୀ ଗୋପାଳକୃଷ୍ଣ ପଦାବଳୀରୁ ଏକ ପଦ ଉଦ୍ଧାର କରି ଲେଖିଲେ, ‘ତାଙ୍କ ପରି ସିନା ସିଏ’, ଶିଳ୍ପୀ ବିନୋଦ ରାଉତରାୟ ‘ଦଧୀଚି–ଅସ୍ଥି’ ଶୀର୍ଷକ ଏକ ପ୍ରବନ୍ଧରେ ତାଙ୍କ ଚରମ ସାହସ ଓ ପରମ ତ୍ୟାଗ–କଥା ସାତଶତ୍ରୁ ମଧ୍ୟ ସ୍ୱୀକାର କରିବ ବୋଲି ଲେଖିଲେ ।

ଗଡ଼ଜାତ ଆନ୍ଦୋଳନର ଜଣେ ନେତା ବ୍ରଜକିଶୋର ଧଳ ପରବର୍ତ୍ତୀ ମୁଖ୍ୟମନ୍ତ୍ରୀମାନଙ୍କ ସହିତ ତାଙ୍କୁ ତୁଳନା କରି ଲେଖିଲେ ‘ଏମିତି ମୁଖ୍ୟମନ୍ତ୍ରୀ ବି ଥିଲେ’ । ତାଙ୍କ ମତରେ ସେଭଳି ଲୋକ ଆଉ ଜନ୍ମ ହେବେ ନାହିଁ । କଥାଟି ଅତିଶୟୋକ୍ତି ବୋଲି ମନେହୋଇପାରେ । କାରଣ, ତାଙ୍କଠାରୁ ଆହୁରି ଭଲ ମଣିଷ ଜନ୍ମ ନହେବ ବୋଲି କିଏ କହିପାରିବ ? ତେବେ, ସ୍ୱାଧୀନତା ଆନ୍ଦୋଳନ ବେଳର ଓ ଗଡ଼ଜାତ ଆନ୍ଦୋଳନ କାଳର ଯେଉଁସବୁ ଲୋକଙ୍କର ତ୍ୟାଗ ସେ ଦେଖିଛନ୍ତି, ତାହାର ସହସ୍ରାଂଶ ବି ଆଜିର ଯୁବକଯୁବତୀଙ୍କ ମଧ୍ୟରେ ଦେଖିବାକୁ ନପାଇ ସେ ଏହି ଲେଖକ ପାଖରେ ହତାଶା ପ୍ରକାଶ କରିଛନ୍ତି । ଯେମିତି ସୃଷ୍ଟିପ୍ରକ୍ରିୟାରେ କେତେ ଜୀବର ବିଲୁପ୍ତି ଘଟିଛି, ସେମିତି ଆଜିର ବଜାରଭିତ୍ତିକ ସମାଜରେ ଭୋଗର ପ୍ରାଦୁର୍ଭାବରେ ତ୍ୟାଗର ବିଲୁପ୍ତି ଘଟିବା ଫଳରେ ନବକୃଷ୍ଣ ଚୌଧୁରୀଙ୍କ ଭଳି ଲୋକ ବିଲୁପ୍ତ ବ୍ୟକ୍ତିତ୍ୱ ବୋଲି ତାଙ୍କ କହିବା କଅଣ ଅବାନ୍ତର ?

ନବକୃଷ୍ଣ ଚୌଧୁରୀଙ୍କ ସମବୟସୀ ବିଶିଷ୍ଟ ସର୍ବୋଦୟ କର୍ମୀ ବାଲିକୁଦାର ହରେକୃଷ୍ଣ ବିଶ୍ୱାଳଙ୍କର ୧୯୯୫ ଅକ୍ଟୋବର ୬ ତାରିଖ ଦିନ ତିରୋଧାନ ଘଟିଲା । ସେ ଲେଖିଛନ୍ତି, "ରାଜା ହରିଶ୍ଚନ୍ଦ୍ର ବିଶ୍ୱାମିତ୍ର ଋଷିଙ୍କୁ ରାଜ୍ୟ ଦାନ କଲା ଭଳି ଚୌଧୁରୀ ଦୁଇଭାଇ, ନିଜର କଟକ ଘର ବ୍ୟତୀତ ତାଙ୍କର ଜମିଦାରିର ସମସ୍ତ ଖମାର ଡିହ, ନିଜଚାଷ, ନିଜଜୋତ ପ୍ରଭୃତି ଚାଷଜମିକୁ ଭୂ-ଦାନ ଯଜ୍ଞ ସମିତିକୁ ଅର୍ପଣ କରିଥିଲେ । ଏହି ଚାଷଜମି ଓ ଖମାର ଡିହଗୁଡ଼ିକୁ ମୁଁ ନିଜେ ଗରିବ ଲୋକଙ୍କୁ ବାଣ୍ଟିଛି ।... ଆମେ ସମସ୍ତେ କହୁ, ହରିଶ୍ଚନ୍ଦ୍ର ତ୍ୟାଗୀ ଥିଲେ, ପରନ୍ତୁ ପରିଶେଷରେ ସେ ବିଶ୍ୱାମିତ୍ରଙ୍କଠାରୁ ଦାନଦତ୍ତ ରାଜ୍ୟ ପୁନଃପ୍ରାପ୍ତ ହୋଇ ଭୋଗ କରିଥିଲେ । କିନ୍ତୁ ନବବାବୁ ଓ ତାଙ୍କ ପରିବାର, ମୋ' ମତରେ ଥିଲେ ତ୍ୟାଗର ତଦୂର୍ଦ୍ଧ୍ୱ ନିଦର୍ଶନ ।"

ସେ ଜନ୍ମ ହୋଇଥିଲେ ଓ ବଢ଼ିଥିଲେ ଦ୍ୱିତଳ ପ୍ରାସାଦରେ, କିନ୍ତୁ ଶେଷ-ଜୀବନ କଟାଇଥିଲେ ଅନୁଗୋଳର ଏକ ଛପର ଘରେ । ସ୍ୱେଚ୍ଛାରେ ସାଧାରଣ ଲୋକର ଜୀବନ ବାଛିନେଇ ଦଧୀଚିଙ୍କ ଭଳି ସେ ନିଜକୁ ଉତ୍ସର୍ଗ କରିଦେଇଗଲେ । ତାଙ୍କ ଜନ୍ମସ୍ଥାନ ଯେ ପରବର୍ତ୍ତୀ କାଳରେ ଓଡ଼ିଶାର ଜାତୀୟ ଆନ୍ଦୋଳନର ପୀଠ ହୋଇ ବହୁ ମହାତ୍ମା ଓ ତ୍ୟାଗୀଙ୍କ ପଦରଜରେ ମହୀୟାନ ହୋଇଥିଲା, ଏହା ତାଙ୍କର ପ୍ରଥମ ଜୀବନୀଲେଖକଙ୍କ ସମେତ ଓଡ଼ିଶାର ଅଧିକାଂଶ ଲୋକ ଜାଣନ୍ତି ନାହିଁ ।

ବିଂଶ ଶତାବ୍ଦୀ, ଊନବିଂଶ ଶତାବ୍ଦୀ ଭଳି, ମହାନ୍ ବ୍ୟକ୍ତି ଜନ୍ମ ଦେଇପାରିନାହିଁ ବୋଲି ବହୁ ଲୋକଙ୍କର ମତ । କିନ୍ତୁ ନବକୃଷ୍ଣ ଚୌଧୁରୀଙ୍କ ଜୀବନକୁ ଅନୁଧ୍ୟାନ କଲେ ସେ ଉକ୍ତିକୁ ଅଭ୍ରାନ୍ତ ବୋଲି କହିହେବ ନାହିଁ । ସେ କୌଣସି ବିରାଟ ବିପ୍ଳବର ଜନକ ନୁହନ୍ତି ବା ତାଙ୍କର ମହାନ୍ ସାହିତ୍ୟ ସୃଷ୍ଟି ନାହିଁ । କୌଣସି ଯୁଗାନ୍ତକାରୀ ତତ୍ତ୍ୱର ସେ ଉଦ୍ଭାବକ ନୁହନ୍ତି ସତ ; କିନ୍ତୁ ବିଂଶ ଶତାବ୍ଦୀ ଯେଉଁ କେତେଜଣ ସାର୍ଥକ ବ୍ୟକ୍ତିତ୍ୱ ସୃଷ୍ଟି କରିଛି, ନବକୃଷ୍ଣ ଚୌଧୁରୀ ସେମାନଙ୍କ ମଧ୍ୟରେ ସ୍ଥାନ ପାଇବେ ।

୧୯୫୧ରୁ ୧୯୫୬ ମସିହା କାଳରେ ନବକୃଷ୍ଣ ଚୌଧୁରୀଙ୍କୁ ଖଳନାୟକ ବୋଲି କହୁଥିବା ପଣ୍ଡିଚେରୀ ଆଶ୍ରମର ବିଶ୍ୱମ୍ଭର ସାମନ୍ତ ତାଙ୍କ ସମ୍ପର୍କରେ ଏବେ କହନ୍ତି, "ତାଙ୍କ ବିୟୋଗରେ ଏପରି ଏକ ବ୍ୟକ୍ତିତ୍ୱର ଦେହାବସାନ ଘଟିଲା, ଯେଉଁମାନଙ୍କ ଆବିର୍ଭାବ କଦବା-କ୍ୱଚିତ୍ ଘଟିଥାଏ । ଆମ ଦେଶ କାହିଁକି, ସାରା ପୃଥିବୀରେ ମଧ୍ୟ ଏପରି ବ୍ୟକ୍ତିତ୍ୱ ବିରଳ ଯେ କି ନିଜ ଭିତରେ ମସ୍ତିଷ୍କର ପ୍ରଖର ଚିନ୍ତାଶକ୍ତି ସାଙ୍ଗକୁ ହୃଦୟରେ ପ୍ରେମର ଏପରି ପ୍ଳାବନ, ଏପରି ସତ୍ୟନିଷ୍ଠା, ଏପରି ତ୍ୟାଗ, ଦେଶପ୍ରେମ, ମୌଳିକ ଚିନ୍ତାଧାରା, ବିପ୍ଳବୀ ଆଦର୍ଶ ଓ ସମସ୍ତଙ୍କ ପାଇଁ ଗଭୀର ସଦିଚ୍ଛା ନେଇ ସହଜ ଓ ସ୍ୱତଃସ୍ଫୂର୍ତ୍ତ ଭାବରେ ସମସ୍ତଙ୍କ ହୃଦୟ ଜୟ କରିପାରନ୍ତି ।"



## ଦ୍ୱିତୀୟ ଅଧ୍ୟାୟ

# ଉନ୍ମେଷ

### ସ୍ମୃତିବିଜଡ଼ିତ ସ୍ୱରାଜ୍ୟାଶ୍ରମ :

କଟକ ଜିଲ୍ଲା-ଜଜ୍ ଓ କଲେକ୍ଟରଙ୍କ ଅଫିସ ନିକଟରେ ରେଭେନ୍ସା କଲିଜିଏଟ୍ ସ୍କୁଲ ଓ ରେଭେନ୍ସା କଲେଜ ଗଢ଼ିଉଠିଥିବାରୁ ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ତାହାର ପାଖ ସାହେବଯାଦା ବଜାର ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ । ସେହି ଅଞ୍ଚଳରେ ଅସୁରେଶ୍ୱରର ଚିନ୍ତାମଣି ଦାସଙ୍କର ଏକ ଦୋମହଲା କୋଠା ଥାଏ । କଚେରି ଓ କଲେଜ ପାଖ ଜାଗା ହୋଇଥିବାରୁ ସେହି କୋଠାରେ ଓକିଲ ଗୋକୁଳାନନ୍ଦ ଚୌଧୁରୀ ରହୁଥିଲେ । ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି ବି ସେହି ଘରେ ରହିଥିଲେ । ସେ ଅବସର ନେବାର କିଛି କାଳ ପରେ, ସତ୍ୟବାଦୀ ବକୁଳବନ ବିଦ୍ୟାଳୟର ପୂର୍ବତନ ଛାତ୍ରମାନେ ସେଠାରେ ଏକ ମେସ୍ କଲେ । ତା' ନାଁ ହେଲା ସତ୍ୟବାଦୀ ମେସ୍ । ମେସ୍‌ବାସୀଙ୍କ ମଧ୍ୟରୁ କେତେକ ମାଟ୍ରିକ୍ ପରୀକ୍ଷା ଦେବାଲାଗି ପ୍ରସ୍ତୁତ ହେଉଥିଲେ ଏବଂ ଅନ୍ୟ କେତେକ ରେଭେନ୍ସା କଲେଜରେ ପଢୁଥିଲେ । ୧୯୨୧ ମସିହା ବେଳକୁ ତାହା ହୋଇଯାଇଥିଲା ଏକ ଜାତୀୟ ବିଦ୍ୟାଳୟ ଭଳି । ଗୋପବନ୍ଧୁ ଦାସ କଟକ ଆସିଲେ ସେଠାରେ ରହୁଥିଲେ । ଏହାର ଅନ୍ତେବାସୀଙ୍କୁ ଗୋପବନ୍ଧୁଙ୍କ ଛଡ଼ା ନନ୍ଦକିଶୋର ଦାସଙ୍କ ଭଳି ବିଦ୍ୱାନମାନେ ପଢ଼ାଉଥିଲେ । ସେହି ସମୟରୁ ସତ୍ୟବାଦୀ ମେସ୍ ସ୍ୱରାଜ୍ୟ ଆନ୍ଦୋଳନର ପ୍ରାଣକେନ୍ଦ୍ର ହୋଇଉଠିଥିଲା—ନାଁ ତା'ର ହେଲା ସ୍ୱରାଜ୍ୟାଶ୍ରମ । କଂଗ୍ରେସ ନେତା ଓ କର୍ମୀମାନେ ଆସିଲେ ସେଇଠି ରହନ୍ତି । ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନ ବିଧିବଦ୍ଧ ରୂପ ନେଲା । ସେତେବେଳେ ରାତିଏ ରାତିଏ ପାଞ୍ଚ ଶହରୁ ଅଧିକ ଲୋକ ବି ସେଠାରେ ରହିଯାଉଥିଲେ । ସେହି ବର୍ଷର ସବୁଠାରୁ ସ୍ମରଣୀୟ ଦିନଟି ହେଉଛି ମାର୍ଚ୍ଚ ୨୩ ତାରିଖର ଦୋଳ ପୂର୍ଣ୍ଣିମା । ମହାତ୍ମା ଗାନ୍ଧି କଟକ ଆସିବା ଖବର ଚାରିଆଡ଼େ ଚହଳ ପକାଇଦେଇଥାଏ । ତାଙ୍କୁ ଦେଖିବା ଲାଗି ସେ କାଳର ୧୨ ପଇସା ଧରି ଆସିଥିଲେ ଷୋଳ ବର୍ଷର ଉଦୟନାଥ ଷଡ଼ଙ୍ଗୀ । ୩୦ ମାଇଲ ଚାଲିଚାଲି ଆସିଥିଲେ ବି କ୍ଳାନ୍ତି ନଥାଏ । ସ୍ୱରାଜ୍ୟାଶ୍ରମ ସେଦିନ ହୋଇଯାଇଥିଲା ଏକ ତୀର୍ଥସ୍ଥାନ । ତା'ରି ମାଟି ଛୁଇଁଦେଲେ ଆସୁଥିଲା ଅପୂର୍ବ ସ୍ପନ୍ଦନ । ତାଙ୍କରି ଭଳି ହଜାରହଜାର ଲୋକ ଗାନ୍ଧି ଦର୍ଶନ

ଲାଗି ଛୁଟିଥାନ୍ତି । ରାତିରେ ସ୍ୱରାଜ୍ୟାଶ୍ରମରେ ସୋରିଷଟିଏ ପକାଇବାକୁ ଜାଗା ନଥାଏ । ଶୋଇବାକୁ ସ୍ଥାନ ନଥିଲେ ବି ଶୋଚନା ନାହିଁ । ୧୯୨୧ ମସିହାରେ କିଛି ନେତା ଓ କର୍ମୀ କାରାବରଣ କଲେ । ୧୯୨୨ ମସିହା ବେଳକୁ ଆନ୍ଦୋଳନ ମାନ୍ଦା ପଡ଼ିଯାଇଥିଲା । ସ୍ୱରାଜ୍ୟାଶ୍ରମରେ ଆଉ ଗହଳିଚହଳି ନଥାଏ । ତଥାପି ତାହା ଥାଏ କଂଗ୍ରେସ ଦଳର କାର୍ଯ୍ୟାଳୟ । ଅବଶ୍ୟ ୧୯୨୪ ଜୁନ୍ ୨୬ ତାରିଖରେ ଗୋପବନ୍ଧୁ ଦାସ ହଜାରିବାଗ ଜେଲ୍‌ରୁ ଖଲାସ ହେଲାପରେ ସ୍ୱରାଜ୍ୟାଶ୍ରମ ପୁଣି କିଛି କାଳ ଲୋକମୁଖର ହୋଇଯାଇଥିଲା । ଜୁନ୍ ୨୮ ଓ ୨୯ ତାରିଖ ଦୁଇଦିନ ଧରି ଉତ୍କଳ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀ ଲାଗି ସ୍ୱରାଜ୍ୟାଶ୍ରମରେ ଗହଳି ଲାଗିଥିଲା । ୧୯୨୫ ଓ ୧୯୨୭ରେ ଗାନ୍ଧିଜୀ କଟକ ଆସିଲା ବେଳକୁ ସ୍ୱରାଜ୍ୟାଶ୍ରମରେ ଲୋକଗହଳି ହୋଇଥିଲେ ବି ତାହା ୧୯୨୧ ମସିହା ଭଳି ଚାଞ୍ଚଲ୍ୟକର ନଥିଲା । ୧୯୩୦ ମସିହା ଲବଣ ସତ୍ୟାଗ୍ରହ କାଳରେ ସ୍ୱରାଜ୍ୟାଶ୍ରମ ପୁନର୍ବାର ସଂଗ୍ରାମର ଶିବିର ହୋଇଉଠିଲା । ବିନୋଦ କାନୁନ୍‌ଗୋ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ସୁରେନ୍ଦ୍ରନାଥ ପଟ୍ଟନାୟକ, ବିପିନ ବିହାରୀ ମହାନ୍ତି ଆଦି କଲିଜିଏଟ୍ ସ୍କୁଲ ଛାଡ଼ି ଆସିଥିଲେ ସ୍ୱାଧୀନତା ସଂଗ୍ରାମର ଏହି ତୀର୍ଥସ୍ଥଳକୁ । ଲବଣ ସତ୍ୟାଗ୍ରହରେ ଅଂଶ ନେବାକୁ ଏଇଠାକୁ ଆସିଲେ ଶହ ଶହ କର୍ମୀ ଓ ସେଇଠାରୁ ହିଁ ରାଜ୍ୟର ଚାରିଆଡ଼କୁ ନିର୍ଦ୍ଦେଶ ଯାଉଥିଲା । ଲବଣ ସତ୍ୟାଗ୍ରହରେ କଂଗ୍ରେସ ଲୋକେ ବନ୍ଦୀ ହୋଇଯିବା ପରେ ଇଂରେଜ ସରକାର, ଆନ୍ଦୋଳନର ପ୍ରାଣକେନ୍ଦ୍ର, ସ୍ୱରାଜ୍ୟାଶ୍ରମକୁ ତାଲା ପକାଇ ପୋଲିସ ଜଗୁଆଳ ରଖାଇଥିଲେ । ଖାଲି କଟକର କଂଗ୍ରେସ ଅଫିସ୍ ନୁହେଁ, ଭାରତବର୍ଷର ବିଭିନ୍ନ ସ୍ଥାନର କଂଗ୍ରେସ ଅଫିସ୍‌ରେ ତାଲା ପକାଇ ସରକାରୀ ଦଖଲକୁ ନିଆଯାଇଥିଲା । ନେତାମାନଙ୍କୁ ଅଧିକ କାଳ ଜେଲ୍ ହୋଇଥାଏ । କର୍ମୀମାନେ ବର୍ଷେ, ଛ'ମାସ ପରେ ଖଲାସ ହୋଇ ଆସୁଥାନ୍ତି । ହେଲେ, କେଉଁଠିକୁ ଯିବେ ? ଏହି ସମୟରେ କଂଗ୍ରେସର ଜଣେ ଟାଣୁଆ ନେତା ଗଙ୍ଗାଧର ରାଓ ଦେଶପାଣ୍ଡେ, ଡିକ୍ଟେଟର୍ ଭାବରେ, ଦେଶର ବିଭିନ୍ନ ଅଞ୍ଚଳର କର୍ମୀମାନଙ୍କୁ କଂଗ୍ରେସ ଅଫିସ୍ ଦଖଲ କରିବାକୁ ନିର୍ଦ୍ଦେଶ ଦେଇଥାନ୍ତି । ତାଙ୍କରି ନିର୍ଦ୍ଦେଶରେ ସ୍ୱରାଜ୍ୟାଶ୍ରମକୁ ଦଖଲ କରାଯିବାର ପ୍ରସ୍ତାବ କରାଗଲା । ୧୯୩୨ ଅଗଷ୍ଟ ୮ ତାରିଖ ଦିନ ସେହି ଅଭିଯାନର ନେତୃତ୍ୱ ନେଲେ ବାଙ୍କୀର ଗୋଲୋକଚନ୍ଦ୍ର ମହାରଣା । ତାଙ୍କ ଛଡ଼ା ଥିଲେ କାଳିନ୍ଦୀଚରଣ ସାହୁ, କୈଳାସ ମହାପାତ୍ର, ସୀତାକାନ୍ତ ମହାନ୍ତି, କୃଷ୍ଣଚନ୍ଦ୍ର ମହାନ୍ତି, ଗଣେଶ୍ୱର ମହାନ୍ତି, ହୃଦାନନ୍ଦ ମହାନ୍ତି, ସୁଧାଂଶୁ ମୈତ୍ର, ବଙ୍କିମ ବିହାରୀ ସିଂହ ଓ ସୁକୁମାର ଘୋଷ ପ୍ରଭୃତି । ଏହି ଗୋଲୋକ ମହାରଣା ଯେଭଳି ସାହସୀ, ସେହିଭଳି କୌଶଳୀ । ଉଲ୍ଲେଖନୀୟ ଯେ ସ୍ୱାଧୀନତା ପ୍ରାପ୍ତି ପରେ ବହୁ ସଂଗ୍ରାମୀ ପଦପଦବୀ ପଛରେ ବା ଧନ ରୋଜଗାରରେ ପାଗଳ ହୋଇପଡ଼ିଥିଲେ ବି ଏହି ସାହସୀ ଓ ଉତ୍ସର୍ଗୀକୃତ ଗୋଲୋକ ମହାରଣା ଶେଷ ପର୍ଯ୍ୟନ୍ତ ସେ ସବୁଠାରୁ ଦୂରରେ ଥିଲେ ।

ସତ୍ୟାଗ୍ରହୀମାନେ ଆଶ୍ରମ ଭିତରକୁ ଧସେଇ ପଶି ଦୋମହଲା ଉପରେ ଜାତୀୟ ପତାକା ଉଡ଼ାଇଲେ । ପୋଲିସ ସାହେବ, ଲେନ୍, ଏ ଖବର ପାଇ ଅଧିକ ପୋଲିସ ଧରି ସେଠାରେ ପହଞ୍ଚିଲେ । ତାଙ୍କରି ଆଦେଶରେ ସତ୍ୟାଗ୍ରହୀମାନଙ୍କୁ ଦୋମହଲାକୁ ଉଠିଥିବା ଶିଡ଼ିରେ ଠେଲି ଗଡ଼ାଇଦିଆହେଲା । ବାମନ ପରିଡ଼ା (ବିଶିଷ୍ଟ କଣ୍ଟ୍ରାକ୍ଟର ଓ ପରବର୍ତ୍ତୀ କାଳରେ ନିଗମାନନ୍ଦଙ୍କ ଆଶ୍ରିତ ସନ୍ନ୍ୟାସୀ)ଙ୍କୁ ଦୋମହଲା ଉପରୁ ସିଧା ତଳକୁ ଫୋପାଡ଼ି ଦିଆଯାଇଥିଲା । ପୋଲିସ୍‌ଙ୍କ ମାଡ଼ ସାହେବଙ୍କ ମନକୁ ନଯିବାରୁ, ସେ ନିଜେ ଇଲେକ୍‌ଟ୍ରିକ୍ ହଣ୍ଟର୍ ସାହାଯ୍ୟରେ, ସତ୍ୟାଗ୍ରହୀମାନଙ୍କୁ ଗୋରୁ ଭଳି ପିଟିଗଲେ । ଜଣଙ୍କର ଆଖିଡୋଳା ମାଡ଼ରେ ବାହାରିପଡ଼ିଥାଏ । ଆଶ୍ରମ ଦୁଆରେ ସମସ୍ତେ ବେହୋସ ହୋଇ ପଡ଼ିଥାନ୍ତି । ବର୍ଷା ସତ୍ତ୍ୱେ ଶହଶହ ଲୋକ ଏ ଦୃଶ୍ୟ ଦେଖୁଥାନ୍ତି ।

ଦ୍ୱିତୀୟ ଦିନର ନେତୃତ୍ୱ ନେଲେ ମହାଦେବ ସିଂହ, ସେ ମାଡ଼ ଖାଇଖାଇ ବେହୋସ୍ ହୋଇଗଲେ । ନଳିନୀକାନ୍ତ ମିତ୍ର ଓ ଭାବଗ୍ରାହୀ ପତି ଟିକିଏ ଦୂରରେ ଥିବା ଉତ୍ତ୍ୟକ୍ତ ଜନତାକୁ ଶାନ୍ତ କରୁଥିବା ବେଳେ ତାଙ୍କ ମୁଣ୍ଡରେ ବସିଲା ପ୍ରହାର । ରକ୍ତରେ ନର୍ଦ୍ଦମାର ପାଣି ଲାଲ୍ ହୋଇଯାଇଥାଏ । ବିପିନ ବିହାରୀ ଦାସ ନାମକ ସତ୍ୟାଗ୍ରହୀ ମାଡ଼ ଖାଇ ବେହୋସ ହୋଇ ନର୍ଦ୍ଦମା ପାଣିରେ ପଡ଼ିଥିବା ବେଳେ ତାଙ୍କୁ ଉଦ୍ଧାର କରାଯାଇଥିଲା । ଦର୍ଶକମାନଙ୍କ ମଧ୍ୟରୁ ଏହି ସତ୍ୟାଗ୍ରହୀମାନଙ୍କ ମଧ୍ୟରେ ସାମିଲ ହୋଇଯାଇଥିଲେ ଯୁବକ ବିଜୟାନନ୍ଦ ପଟ୍ଟନାୟକ । ତାଙ୍କୁ ମାଡ଼ ମାରି, ରକ୍ତାକ୍ତ କରି, ପାଖ ପାଣିନାଳକୁ ଠେଲିଦିଆହୋଇଥିଲା । ପ୍ରବଳ ବର୍ଷାର ସୁଅରେ ସେ ଭାସିଯାଉଥିଲେ ବି ବହୁ ସମୟ ପର୍ଯ୍ୟନ୍ତ ତାଙ୍କୁ ଉଠାଇବାକୁ କେହି ସାହସ କରୁ ନଥାନ୍ତି ବୋଲି ଶ୍ରୀରାମଚନ୍ଦ୍ର ଦାଶ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ସେ ଭାସିଆସି ଲଣ୍ଡା ଦେଉଳ ପାଖରେ ଲାଗିଥାନ୍ତି । ଉତ୍ତେଜନା କମିଯିବାରୁ ବହୁ ସମୟ ପରେ ଟ୍ରେନିଙ୍ଗ କଲେଜର କେତେକ ବୟସ୍କ ଛାତ୍ର ତାଙ୍କୁ ଉଠାଇ ନେଇଥିଲେ । ସତ୍ୟାଗ୍ରହୀମାନଙ୍କୁ ବସ୍ତା ଲଦିଲା ଭଳି ଜଣକ ଉପରେ ଜଣକୁ ପକାଇ ଏକ ଅତିଛୋଟ ବସ୍‌ରେ, କଟକ ବଡ଼ ଡାକ୍ତରଖାନାକୁ ନିଆହୋଇଥିଲା । ଏ ଖବର ପାଇ, ପ୍ରବଳ ବର୍ଷା ସତ୍ତ୍ୱେ, ସହସ୍ରାଧିକ ଲୋକ ହସ୍‌ପିଟାଲ୍‌ରେ ପହଞ୍ଚି ଆହତମାନଙ୍କର ଅବସ୍ଥା ବୁଝିଥିଲେ । ଏହି ଘଟଣାରେ କଟକ ସହରରେ ପ୍ରବଳ ଉତ୍ତେଜନା ସୃଷ୍ଟି ହୋଇଥିଲା । ଜମିଦାର ବନବିହାରୀ ପାଲିତଙ୍କ ସଭାପତିତ୍ୱରେ ଟାଉନ୍ ହଲ୍‌ରେ ଏକ ସଭା କରାଯାଇ ପୋଲିସ୍ କାର୍ଯ୍ୟର ନିନ୍ଦା କରାଗଲା । ଭୁବନାନନ୍ଦ ଦାସ ସେତେବେଳକୁ ଖୁବ୍ ସମ୍ମାନନୀୟ ବ୍ୟକ୍ତି । ସେହିଦିନ କଟକ କଲେକ୍ଟର କୁଜଙ୍ଗ ଗସ୍ତରେ ଥିବାରୁ ଭୁବନାନନ୍ଦ ଦାସ ତାଙ୍କୁ ଟେଲିଗ୍ରାମ୍ କରି ଏଭଳି ଗୁରୁତର ଅବସ୍ଥା କଥା ଜଣାଇ ଶୀଘ୍ର କଟକ ଫେରିଆସିବାକୁ ଅନୁରୋଧ କଲେ ।

ଏଭଳି ଅମାନୁଷିକ ଅତ୍ୟାଚାର ସତ୍ତ୍ୱେ ତୃତୀୟ ଦିନ ବହୁ ସତ୍ୟାଗ୍ରହୀ ସ୍ୱରାଜ୍ୟାଶ୍ରମ ଦଖଲ ପାଇଁ ଆସିଗଲେ । ସେଦିନର ନେତୃତ୍ୱ ନେଇଥିଲେ କଟକ ସହରର ଭରତ ପ୍ରସାଦ ସିଂହ । ସତ୍ୟାଗ୍ରହୀମାନେ ସ୍ୱରାଜ୍ୟାଶ୍ରମରେ ପହଞ୍ଚିବା ପୂର୍ବରୁ ଜିଲ୍ଲା ମାଜିଷ୍ଟ୍ରେଟ୍ ଡି.ପି.ସିଂହ ଶର୍ମା ଆଶ୍ରମ ହତାରେ ଉପସ୍ଥିତ ଥାଆନ୍ତି । ଏସ୍.ପି. ଲେନ୍ ବି ଆସିଥାନ୍ତି । ଲାଠିଧାରୀ ପୋଲିସ୍ ସ୍ୱରାଜ୍ୟାଶ୍ରମର ଗେଟ୍‌ରେ ନରହି ଆଶ୍ରମର ପଛପଟେ ଥାଆନ୍ତି । ସ୍ୱରାଜ୍ୟାଶ୍ରମ ହତା ଭିତରେ ଓ ବାହାରେ ୧୪୪ ଧାରା ଜାରି ହୋଇଥାଏ । ବର୍ଷା ନଥାଏ । ଆଶ୍ରମ ବାହାରେ ପ୍ରବଳ ଭିଡ଼ । କଚେରିରୁ ଗଣେଶ ଘାଟ ପର୍ଯ୍ୟନ୍ତ ବି ଲୋକାରଣ୍ୟ ହୋଇଥାଏ । ରାସ୍ତା ପ୍ରାୟ ବନ୍ଦ । ସତ୍ୟାଗ୍ରହୀମାନେ ଆଶ୍ରମ ହତାରେ ପ୍ରବେଶ କଲା କ୍ଷଣି ଜିଲ୍ଲା ମାଜିଷ୍ଟ୍ରେଟ୍ ସତ୍ୟାଗ୍ରହୀମାନଙ୍କୁ ଗିରଫ କରିବା ଲାଗି ପୋଲିସ୍‌କୁ ନିର୍ଦ୍ଦେଶ ଦେଲେ । ଗିରଫ ହୋଇଥିବା ସତ୍ୟାଗ୍ରହୀମାନେ ଜେଲ୍‌କୁ ଗଲେ । ଏହିଭଳି କିଛିଦିନ ଗିରଫ ପରେ କଲେକ୍ଟର ଆଉ ଗିରଫ ନକରିବା ଲାଗି ନିର୍ଦ୍ଦେଶ ଦେଲେ । ୧୪୪ ଧାରା ପ୍ରତ୍ୟାହାର କରିନିଆହେଲା । ସ୍ୱରାଜ୍ୟାଶ୍ରମ ଘରେ ତାଲା ପଡ଼ିଥିଲେ ବି ବାରଣ୍ଡା, ରୋଷେଇଘର ଓ ହତା ସତ୍ୟାଗ୍ରହୀମାନଙ୍କ ଦଖଲକୁ ଆସିଯାଇଥିଲା ।

ଏହି ଜିଲ୍ଲା କଲେକ୍ଟର ସତ୍ୟାଗ୍ରହୀଙ୍କ ପ୍ରତି ସହାନୁଭୂତି ପ୍ରଦର୍ଶନ କରିଥିବାରୁ ତାଙ୍କୁ ଘଟଣାର ୧୫ ଦିନ ପରେ କଟକରୁ ବଦଳି କରିଦିଆଯାଇଥିଲା । ଏହା ପରେପରେ କଟକ ଆସିଥିବା ବ୍ରିଟିଶ ପାର୍ଲାମେଣ୍ଟ ସଦସ୍ୟମାନଙ୍କ ନିକଟରେ ଏଭଳି ଅତ୍ୟାଚାର ସମ୍ପର୍କରେ ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀ ଆଦି ସାକ୍ଷ୍ୟ ଦେଇଥିଲେ ।

୧୯୩୭ ନିର୍ବାଚନରେ କଂଗ୍ରେସ ସଂଖ୍ୟାଗରିଷ୍ଠତା ଲାଭ କରି ମନ୍ତ୍ରିମଣ୍ଡଳ ଗଢ଼ିଲା ପରେ ଦଳର ଏକ ସ୍ଥାୟୀ ଅଫିସ୍ ଘରର ଆବଶ୍ୟକତା ପଡ଼ିଲା । ସେତେବେଳକୁ ସ୍ୱରାଜ୍ୟାଶ୍ରମକୁ ଚିନ୍ତାମଣି ଦାସଙ୍କଠାରୁ ତତ୍କାଳୀନ କେନ୍ଦ୍ରାପଡ଼ା ଏସ୍.ଡି.ଓ. ନଳିନୀକାନ୍ତ ଘୋଷ କିଣିନେଇଥାନ୍ତି । ତାଙ୍କଠାରୁ କଂଗ୍ରେସ ଦଳ ତରଫରୁ ନିତ୍ୟାନନ୍ଦ କାନୁନ୍‌ଗୋ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ବିଚିତ୍ରାନନ୍ଦ ଦାସ, ପ୍ରାଣକୃଷ୍ଣ ପଢ଼ିଆରୀ ଓ ମଦନମୋହନ ପଟ୍ଟନାୟକଙ୍କ ନାମରେ ଟ ୧୦,୫୦୦ରେ ସ୍ୱରାଜ୍ୟାଶ୍ରମ କିଣାଯାଇଥିଲା । ସମୁଦାୟ ଖର୍ଚ୍ଚ ଲାଗିଥିବା ୧୧,୦୦୦ ଟଙ୍କାରୁ ୭,୦୦୦ ଟଙ୍କା ଚାନ୍ଦାରୁ ମିଳିଥିଲା ଓ ନିତ୍ୟାନନ୍ଦ କାନୁନ୍‌ଗୋ ୨୦୦୦ ଟଙ୍କା ଦାନ କରିଥିଲେ । ବାକିତକ ପାଇଁ ମହତାବ ବାବୁ ଓ ଭାଗୀରଥି ମହାପାତ୍ର କରଜ କରିଥିଲେ । କଂଗ୍ରେସ ଅଫିସ୍ ଭୁବନେଶ୍ୱର ଉଠିଆସିଲା ପରେ ତାହା ଏବେ ଏକ ବିବାଦୀୟ ସ୍ଥଳ ହୋଇପଡ଼ିଛି । ମହାତ୍ମା ଗାନ୍ଧିଙ୍କ ବ୍ୟତୀତ ଏହି ସ୍ୱରାଜ୍ୟାଶ୍ରମ ଧନ୍ୟ ହୋଇଛି ସି.ଏଫ୍.ଆଣ୍ଡ୍ରୁଜ୍, ମୋତିଲାଲ ନେହେରୁ, ବିଠଲଭାଇ ଯାଭେରୀ ପଟେଲ (ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ବଡ଼ଭାଇ), ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଏବଂ ଏମ୍.ଏ. ଆନସାରୀଙ୍କ ଭଳି ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀଙ୍କ ପାଦଧୂଳିରେ । ସ୍ୱାଧୀନତା

ଆନ୍ଦୋଳନ କାଳରେ ଏହିଠାରେ ଅବସ୍ଥାନ କରିଛନ୍ତି ରାଜେନ୍ଦ୍ରପ୍ରସାଦ, ଜବାହରଲାଲ୍ ନେହେରୁ, ବଲ୍ଲଭଭାଇ ପଟେଲ, ସୁଭାଷ ଚନ୍ଦ୍ର ବୋଷ, ଆଚାର୍ଯ୍ୟ କୃପାଳିନୀ ଓ ଜୟପ୍ରକାଶ ନାରାୟଣଙ୍କ ଭଳି ଭାରତବର୍ଷର ବରପୁତ୍ରମାନେ । ସେହି ବିଖ୍ୟାତ ସ୍ୱରାଜ୍ୟାଶ୍ରମ କୋଠାର ତଳ ମହଲାର ମଝି ବଖରାରେ ହିଁ ଜନ୍ମ ଲାଭ କରିଥିଲେ ତ୍ୟାଗୀ ଗୋପବନ୍ଧୁ ଚୌଧୁରୀ ଏବଂ ଏହାର ଛଅ ବର୍ଷ ପରେ ନବକୃଷ୍ଣ ଚୌଧୁରୀ । ୧୯୦୧ ନଭେମ୍ବର ୨୩ ତାରିଖ ଠାରୁ ୧୯୫୬ ଅକ୍ଟୋବର ୧୯ ତାରିଖ ପର୍ଯ୍ୟନ୍ତ ଏହି ସ୍ୱରାଜ୍ୟାଶ୍ରମ ଥିଲା ନବକୃଷ୍ଣ ଚୌଧୁରୀଙ୍କର କର୍ମକେନ୍ଦ୍ର । ପିଲାଦିନରେ ତାଙ୍କ ନାଁ ଥିଲା ଟୁଆଁ । ପିଲାଦିନର ଟୁଆଁ ନାମକୁ ସେ ଜେଜେବାପା ହେବା ପର୍ଯ୍ୟନ୍ତ ବି କିଛି ଲୋକ ଡାକୁଥିଲେ । ସ୍ୱରାଜ୍ୟାଶ୍ରମର ପଛପଟରେ ବଛାମିଆଁର ସାନ ଚାଳଘର । ଜନ୍ମ ହେବାପରେ ମା' ପଦ୍ମାବତୀଙ୍କର ସ୍ତନହରା ହେବାରୁ ସେ ବଛାମିଆଁ ବିବିଙ୍କ ଠାରୁ କ୍ଷୀର ଖାଉଥିଲେ । ଟୁଆଁ ଜନ୍ମ ହେବାର ଅଳ୍ପ ଦିନ ପରେ ବାପା ଗୋକୁଳାନନ୍ଦ ଚୌଧୁରୀ ସାଂଘାତିକ ରୋଗରେ ପଡ଼ିଲେ । ପଦ୍ମାବତୀ ଦିନରାତି ସବୁବେଳେ ତାଙ୍କରି ପାଖେପାଖେ ରହିଲେ । ମା'ଙ୍କ ବଦଳରେ ଘରର ଧାଈ ସାଧବୀ ହିଁ ଟୁଆଁକୁ ପାଳିଲେ । ରମାଦେବୀ ବିବାହ ହୋଇ ଆସିବା ପରେ, ତାଙ୍କଠାରୁ ମାତ୍ର ଦୁଇବର୍ଷ ସାନ ଦିଅରଙ୍କୁ ଟୁଆଁ ବୋଲି ଡାକିବା ଅସମୀଚୀନ ମନେକରି ତାଙ୍କୁ ଟୁକ ବୋଲି ଡାକିଲେ । ଏଣୁ ଗୋପବନ୍ଧୁ ଚୌଧୁରୀ ଆଦି କେତେକ ତାଙ୍କୁ ଟୁକ ବୋଲି ଡାକନ୍ତି ।

**ସାଧବୀ ଧାଈ :**

ସାଧବୀ ଯେତେବେଳେ ୭ ବା ୮ ବର୍ଷର ହୋଇଥିଲେ, ସେତେବେଳେ ତାଙ୍କ ଅଞ୍ଚଳରେ କାଳ ପଡ଼ିଥିଲା । ନବକୃଷ୍ଣ ଚୌଧୁରୀଙ୍କ ଜେଜେବାପା ବ୍ରଜସୁନ୍ଦର ମଙ୍ଗରାଜଙ୍କୁ ସାଧବୀଙ୍କ ମା' ଗୌଣୀଏ ଧାନ (ପ୍ରାୟ ପାଞ୍ଚ କିଲୋ) ବଦଳରେ ତାଙ୍କୁ ବିକିଦେଇଥିଲେ । ସାଧବୀ ସୁନ୍ଦରୀ ଓ କର୍ମକୁଶଳା ଥିଲେ । ସେ ବଡ଼ ହେବାରୁ, ବ୍ରଜସୁନ୍ଦରଙ୍କ ଔରସରୁ ତାଙ୍କର ପୁଅଟିଏ ହେଲା । ତାହାର ନାଁ ଥିଲା ବିଦୁର । ସେ ପୁଅଟି ବାଇଶ ବର୍ଷ ବୟସରେ ମରିଯିବାରୁ ସାଧବୀଙ୍କୁ ମଙ୍ଗରାଜେ ବୋହୂ ପଦ୍ମାବତୀଙ୍କ ପାଖରେ କଟକରେ ରଖାଇଲେ । ପଦ୍ମାବତୀଙ୍କର ଆଠଟିଯାକ ପିଲାଙ୍କୁ ତେଲହଳଦୀ ଲଗାଇଦେବା, ତାଙ୍କ ଲୁଗା ସଫା କରିବା ଓ ବିଛଣା ପାରିବା ଆଦି ସେ ହିଁ କରିଆସୁଥିଲେ । ଟୁଆଁକୁ ସେ ଅତି ସ୍ନେହ କରୁଥିଲେ । ମୃତ୍ୟୁ ପୂର୍ବରୁ ସେ ଟୁଆଁର ଭାବୀ ବଧୂ ଲାଗି ରୁପା ତାରକସୀ କାମ ହୋଇଥିବା ଏକ ଥଳିରେ ଗୋଟିଏ ଗିନି (ସେ କାଳର ସ୍ୱର୍ଣ୍ଣମୁଦ୍ରା) ପୂରାଇ ରମାଦେବୀଙ୍କ ଜିମା ଦେଇଯାଇଥିଲେ । ମାଳତୀ ଦେବୀ ଯେତେବେଳେ ବିବାହ ହୋଇ ଆସିଲେ, ରମାଦେବୀ ତାଙ୍କୁ ସାଧବୀଙ୍କ ଉତ୍ସର୍ଗୀକୃତ ଜିନିଷଟି ଦେଇଥିଲେ । ରମାଦେବୀ ସେହି ଗିନିର କାହାଣୀ କହିବା ବେଳେ ନବବାବୁ କାନ୍ଦି ପକାଇଥିଲେ ।

## ପାଠପଢ଼ା :

ଟୁଆଁଙ୍କର ପାଠପଢ଼ା ଆରମ୍ଭ ହୁଏ ବେଣ୍ଟକାର ପାଖ ଦେଉଳି ଗାଁର ଯଦୁମଣି ମହାନ୍ତିଙ୍କ ପାଖରେ । ଏହି ଯଦୁମଣି ହେଉଛନ୍ତି ସ୍ୱାଧୀନତା ସଂଗ୍ରାମୀ ଓ ସର୍ବୋଦୟ ନେତା ଗୁଣନିଧି ମହାନ୍ତିଙ୍କ ଭାଇ । ସେ ବି ଥିଲେ ଜଣେ ସମାଜସେବୀ । ସେତେବେଳେ ଆଧୁନିକ ଯୁଗର ଉନ୍ନତ ଧରଣର ପଢ଼ା ଆରମ୍ଭ ନହୋଇଥିଲେ ବି ଟୁଆଁ ପାଠପଢ଼ା ବେଳେ ମାଡ଼ ତ ଖାଇ ନ ଥିଲେ; ବରଂ ଯଦୁମଣିଙ୍କ ପ୍ରତି ସେ ଏଭଳି ଭୟଶୂନ୍ୟ ହୋଇଯାଇଥିଲେ ଯେ ସେ ସମୟସମୟରେ ଗୁରୁଙ୍କ କାନ୍ଧରେ ବି ବସିଯାଉଥିଲେ ।

ଟିକିଏ ବଡ଼ ହେବାରୁ ପ୍ୟାରୀମୋହନ ଏକାଡେମୀରେ ତାଙ୍କର ନାମ ଲେଖାଗଲା । ନିମାଇଁଚରଣ ଚ୍ୟାଉ ପଟ୍ଟନାୟକ ନାମକ ଜଣେ ଅତି ଭଲ ଶିକ୍ଷକ ସେତେବେଳେ ସେହି ସ୍କୁଲର ପ୍ରଧାନଶିକ୍ଷକ ଥିଲେ । ଏଣୁ ଆଚାର୍ଯ୍ୟ ହରିହରଙ୍କ ସୁପାରିଶରେ, ତାଙ୍କ ନାମ କଲେଜିଏଟ୍ ସ୍କୁଲରେ ଲେଖା ନଯାଇ, ସେହି ସ୍କୁଲରେ ଲେଖାଯାଇଥିଲା । ଗୋପବାବୁ ୧୪ ବର୍ଷ ବୟସରେ ମାଟ୍ରିକ ପାସ୍ କରିଥିଲେ । କିନ୍ତୁ ନବବାବୁଙ୍କ ବେଳକୁ ନିୟମ ହୋଇଗଲା ଯେ ୧୬ ବର୍ଷ ନହେଲେ ମାଟ୍ରିକ୍ ପରୀକ୍ଷା ଦେଇହେବ ନାହିଁ । ଏଇଥିପାଇଁ ମାଟ୍ରିକ ପାଠ ଶେଷ କରିଥିଲେ ବି ସେ ବର୍ଷକ ପରେ ପରୀକ୍ଷା ଦେଲେ ।

ଗୋକୁଳାନନ୍ଦ ଚୌଧୁରୀ ବଞ୍ଚିଥିଲା ପର୍ଯ୍ୟନ୍ତ ସେ କଚେରିରୁ ଫେରି ନିତ୍ୟକର୍ମ ସାରି ଖବରକାଗଜ ପଢ଼ି ପିଲାଙ୍କୁ ଶୁଣାନ୍ତି ଓ ସେ ସମ୍ପର୍କରେ ଆଲୋଚନା କରନ୍ତି । ତା'ପରେ ସେମାନଙ୍କୁ ସ୍କୁଲପାଠ ପଢ଼ାନ୍ତି । ଏ ସବୁ ସରିଲା ପରେ ଅବଶ୍ୟ ସୁରାପାନ ହୁଏ । ବାପାଙ୍କ ମୃତ୍ୟୁ ପରେ ଅନ୍ୟ ଶିକ୍ଷକମାନେ ଟୁଆଁଙ୍କୁ ଘରେ ପଢ଼ାଉଥିଲେ ।

## ପିତୃବିୟୋଗ :

୧୯୦୭ ମସିହା ବେଳକୁ ଗୋକୁଳାନନ୍ଦ ଚୌଧୁରୀ ଦଧିବାବୁଙ୍କ ବାଖରାବାଦ କୋଠାକୁ କିଣି, ନୂଆ ଘର ତିଆରି କରି, ୧୯୦୮ ବେଳକୁ ସ୍ୱରାଜ୍ୟାଶ୍ରମ କୋଠାରୁ ଚାଲିଆସିଥିଲେ । ୧୯୧୪ ନଭେମ୍ବର ୧୧ ତାରିଖ ଦିନ ଗୋପବନ୍ଧୁ ଚୌଧୁରୀଙ୍କ ବିବାହ । ତା'ର ମାତ୍ର ତିନିମାସ ପରେ ଗୋକୁଳାନନ୍ଦ ଚୌଧୁରୀଙ୍କ ଦେହାନ୍ତ ହୋଇଗଲା । ସେହି ଘଟଣା ଚୌଧୁରୀ ପରିବାରକୁ ଇତସ୍ତତଃ କରିଦେଲା । ଶୋକରେ ବିହ୍ୱଳ ହୋଇ ଟୁକ ଅଗଣା ଭିତରର କୂଅ ଭିତରକୁ ଡେଇଁପଡ଼ିଥିଲେ । କୂଅରେ ବେଶି ପାଣି ନଥିଲା । ଏଣୁ ଲୋକେ ତାଙ୍କୁ କାଢ଼ିଆଣିଥିଲେ । ତାଙ୍କ ମନରେ ଏକ ଭୟ ପଶିଲା, ବୋଉ ଯଦି ମରିଯାଏ ସେ କଅଣ କରିବେ, କେଉଁଠି ରହିବେ । ଠିକ୍ ସେହିଦିନ ତାଙ୍କ ଘରର ବଡ଼ ଘୋଡ଼ାଟି ଗୋକୁଳାନନ୍ଦ ବାବୁଙ୍କୁ ଝୁରିଝୁରି ମରିଗଲା । ଶବ ସଂସ୍କାର ସରିଲା । ଶ୍ମଶାନରୁ ଫେରି ବଡ଼ ନଣଦେଇ

ଦେବେନ୍ଦ୍ରବାବୁ ରମାଦେବୀଙ୍କୁ କହିଲେ, ''ଆଉ କାନ୍ଦିଲେ ଚଳିବ ନାହିଁ । ଏ ଘର ଆଜିଠୁଁ ତୁମକୁ ସମ୍ଭାଳିବାକୁ ହେବ । ବେଙ୍ଗ ଓ ଟୁଆଁ ଆଜିଠାରୁ ତୁମର ନଣନ୍ଦ ଓ ଦିଅର ନୁହନ୍ତି । ତାଙ୍କୁ ପୁଅ ଝିଅ ଭାବି ଦେଖିବ ।'' ରମାଦେବୀ ଟୁଆଁ ଓ ସାନ ନଣନ୍ଦ ବେଙ୍ଗ (ବସନ୍ତ)ଙ୍କୁ ନିଜ ପିଲା ଭଳି ଖୁଆଇପିଆଇ ପାଖରେ ଶୁଆନ୍ତି । ଏହି ବସନ୍ତଦେବୀ ହେଉଛନ୍ତି ବିଶ୍ୱବିଖ୍ୟାତ ଦାର୍ଶନିକ ଜିତେନ୍ଦ୍ରନାଥ ମହାନ୍ତିଙ୍କ ମା' । ଗୋକୁଳାନନ୍ଦବାବୁ ଥିଲେ ଭାରି ଖର୍ଚ୍ଚୀ । ତାଙ୍କ ମୃତ୍ୟୁ ପରେ ଆର୍ଥିକ ସମସ୍ୟା ଦେଖାଦେଲା । ଗୋକୁଳାନନ୍ଦ ଚୌଧୁରୀଙ୍କ ବୈଠକଖାନା- ଘର ଭଡ଼ା ଲାଗିବାରୁ ଘର କୌଣସିମତେ ଚଳିଲା । ଚଳଣିରେ ଆଭିଜାତ୍ୟ ଥିଲେ ବି ଚୌଧୁରୀ ପରିବାରରେ ତତ୍କାଳୀନ ରାଜକିଶୋର ଦାସଙ୍କ ପରିବାର ଭଳି, ନବାବୀ ଢଙ୍ଗର ସୌଖୀନତା ନଥିଲା । ପିଲାମାନେ ସ୍କୁଲକୁ ଯିବା ପୂର୍ବରୁ ଜୋତା ପିନ୍ଧୁ ନଥିଲେ । ଟୁକ ପୂର୍ବ ଭଳି ଘୋଡ଼ାଗାଡ଼ିରେ ସ୍କୁଲକୁ ଯାଆନ୍ତି । ତାଙ୍କ ପାଇଁ ପଦ୍ମାବତୀ, ନ ହେଲେ ରମାଦେବୀ, ସରୁ ଚକୁଳି କରନ୍ତି । ନଡ଼ିଆ କୋରା ହେଲେ, ସେଥିରେ ଟିକିଏ ହେଲେ ନାଲି ଚୋପା ରହିବ ନାହିଁ । ପିଲାଦିନେ ସେ ଥିଲେ ଖୁବ୍ ସଫାସୁତୁରା ଓ ସୁକୁମାରିଆ । ଗୋପବାବୁ ଓ ନବବାବୁ ଗୋଟିଏ ଥାଳିରେ ବରାବର ଖାଇବସନ୍ତି । ଭାଇ ଘରେ ନଥିଲେ ତାଙ୍କ ଆସିବା ପର୍ଯ୍ୟନ୍ତ ଟୁକ ଖାଇବାକୁ ଅପେକ୍ଷା କରୁଥିଲେ । ସ୍କୁଲରୁ ଫେରି ଜଳଖିଆ ଖାଇ ସେ ଟେନିସ୍ ଆଦି ଖେଳିବାକୁ ଯାଆନ୍ତି । ଖେଳରୁ ଫେରି ପଢ଼ାପଢ଼ି । ରୋଷେଇ ଡେରି ଥିଲେ ମା' ରମାଦେବୀଙ୍କୁ ପଠାଇଦିଅନ୍ତି ଟୁକ ସଙ୍ଗରେ କ୍ୟାରମ୍ ଖେଳିବାକୁ–ଯେପରି ସେ ଖେଳରେ ମାତି ଖାଇବା କଥା ଭୁଲିଯାଏ ।

ଟୁକଙ୍କ ପ୍ୟାରୀମୋହନ ଏକାଡେମୀର ଜଣାଶୁଣା ସାଙ୍ଗମାନଙ୍କ ମଧ୍ୟରେ ଥିଲେ ବଂଶୀଧର ପରିଡ଼ା ବୋଲି ଜଣେ; ଯିଏ ପରବର୍ତ୍ତୀ କାଳରେ ନାମାଚାର୍ଯ୍ୟ ବାୟାବାବା ଭାବରେ ଖ୍ୟାତି ଲାଭ କରିଥିଲେ । ଏହାଙ୍କ ଛଡ଼ା ଦିବ୍ୟସିଂହ ମହାନ୍ତି, ବସିର୍ ଅହମଦ୍ ଓ ପ୍ରହ୍ଲାଦ ସାହୁଙ୍କ ସହିତ ତାଙ୍କ ବିଶେଷ ଆତ୍ମୀୟତା ଥିଲା । ଅବଶ୍ୟ ଟୁଙ୍ଗୁ (ନିତ୍ୟାନନ୍ଦ କାନୁନ୍‌ଗୋ) ଓ ମୃଷ୍ଟୁ (ନିକୁଞ୍ଜ କିଶୋର ଦାସ) ଥିଲେ ବନ୍ଧୁବାନ୍ଧବ ଦିଗରୁ ଅନ୍ତରଙ୍ଗ ।



## ତୃତୀୟ ଅଧ୍ୟାୟ

# ଯୌବନର ସ୍ୱପ୍ନ

### ସେ ବେଳର ପରିବେଶ :

ନବକୃଷ୍ଣ ଚୌଧୁରୀଙ୍କ ବାପା ଗୋକୁଳାନନ୍ଦ ଚୌଧୁରୀ ଉତ୍କଳଗୌରବ ମଧୁସୂଦନଙ୍କ ସହକର୍ମୀ ଭାବରେ ଉତ୍କଳ ସମ୍ମିଳନୀର ଅନ୍ୟତମ ନେତା ରୂପେ ଜଣାଶୁଣା । ଏଣୁ ପିଲାଦିନୁ ତାଙ୍କ ଘରେ ଉତ୍କଳ ସମ୍ମିଳନୀ କଥା ସେ ଶୁଣିଥିଲେ ଏବଂ ସମ୍ମିଳନୀ କଟକରେ ବସିବା ବେଳେ ସେଥିରେ ଯୋଗ ଦେଉଥିଲେ । ଏହାଛଡ଼ା ବଙ୍ଗଭଙ୍ଗ ଆନ୍ଦୋଳନ, 'ଆନନ୍ଦ ମଠ' ଉପନ୍ୟାସ ଓ ପରେ ପରେ ସ୍ୱରାଜ ଆନ୍ଦୋଳନ କଥା ବି ତାଙ୍କ ଘରେ ଆଲୋଚିତ ହେଉଥିଲା । ଲକ୍ଷ୍ମୀନାରାୟଣ ସାହୁଙ୍କ ଛଡ଼ା ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ ଓ ଆଚାର୍ଯ୍ୟ ହରିହର ଆଦି ବରାବର ତାଙ୍କ ଘରକୁ ଆସୁଥିଲେ । ଗୋକୁଳାନନ୍ଦ ଚୌଧୁରୀ ରାତିରେ ଇଂରାଜୀ ଖବର କାଗଜ ପଢ଼ିଲା ବେଳେ ଦେଶବିଦେଶର କଥା ପିଲାମାନଙ୍କ କାନରେ ପଡ଼ିବା ସ୍ୱାଭାବିକ । ଏଣୁ ଦେଶମିଶ୍ରଣ ଛଡ଼ା ବିଭିନ୍ନ ଦେଶର ମୁକ୍ତି ଆନ୍ଦୋଳନ କଥା ସେମାନେ ଶୁଣୁଥିଲେ । ଯେଉଁଠି ଏବେ ଗ୍ରାମସେବକ ପ୍ରେସ୍ ଅଛି, ସେଠାରେ ଏକ ମେସ୍ ଥିଲା । ସେଠାରେ ଲିଙ୍ଗରାଜ ମିଶ୍ର, ମଙ୍ଗୁ ମିଶ୍ର ଇତ୍ୟାଦି ରହି କଲେଜରେ ପଢୁଥିଲେ । ସେମାନେ ଆତଙ୍କବାଦୀମାନଙ୍କ ସହିତ ସମ୍ପର୍କ ରଖୁଥିଲେ । ଆନି ବେସାନ୍ତଙ୍କ New India ଓ Common Weal ପତ୍ରିକା ସେମାନେ ମଗାଉଥିଲେ । ନବବାବୁ ସେ ମେସ୍‌କୁ ଯାଇ ସେସବୁ ପଢ଼ନ୍ତି । ତିଳକ ସେହି ସମୟରେ ମାଣ୍ଡାଲେ ଜେଲକୁ ଗଲେ । ସେ ଖବର ଚାଞ୍ଚଲ୍ୟ ସୃଷ୍ଟି କରିଥାଏ । ଗୋକୁଳାନନ୍ଦ ଚୌଧୁରୀ ବଞ୍ଚିଥିବା କାଳରେ ରବୀନ୍ଦ୍ରନାଥ ନୋବେଲ ପୁରସ୍କାର ପାଇଥିଲେ । ସେ ରବୀନ୍ଦ୍ରନାଥଙ୍କ ଇଂରାଜୀ 'ଗୀତାଞ୍ଜଳି' ଛଡ଼ା Personality, Self-realisation & Nation ନାମକ ବହି କିଣିଥିଲେ । ଗୋପବନ୍ଧୁ ଚୌଧୁରୀ Law, Part-Iରେ ପ୍ରଥମ ହୋଇ ପୁରସ୍କାର ପାଇଥିଲେ । ସେହି ପୁରସ୍କାର ଟଙ୍କାରେ ଅନେକ ବହି କିଣାଯାଇଥିଲା । ସେସବୁରୁ Dickensଙ୍କ ଲେଖା ନବବାବୁଙ୍କୁ ଚିତ୍ତାକର୍ଷକ ଲାଗୁଥିଲା । ଏହାଛଡ଼ା ସେହି ସମୟରେ ସେ ରୋମାଁ ରୋଲାଁଙ୍କ ଜାଁ କ୍ରିସ୍ତପ୍, ରାମକୃଷ୍ଣ କଥାମୃତ ଆଦି ଉତ୍କଳ ଟ୍ରେଡିଙ୍ଗ କମ୍ପାନୀରୁ କିଣି ପଢ଼ାପଢ଼ି କରିଥିଲେ ।

ଏହି ସମୟରେ ବାଙ୍କୀର ଗୋବିନ୍ଦ ରଥଙ୍କ ସାହସ ଓ କୀର୍ତ୍ତିକଳାପ ଶୁଣି ନବବାବୁ ଉତ୍ସାହିତ ହୋଇଥିଲେ ବୋଲି କହନ୍ତି । ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ବିଦ୍ୟାଭ୍ୟାସ ଓ ସାହସ ତାଙ୍କ କିଶୋରମନରେ ଖୁବ୍ ପ୍ରଭାବ ପକାଇଥିଲା । ବିଭିନ୍ନ ବହିପଢ଼ାର ପ୍ରଭାବ ତ ତାଙ୍କ ଉପରେ ପଡ଼ିଥିଲା ; ଏହାଛଡ଼ା ସେ ସ୍କୁଲରେ ପଢୁଥଲା ବେଳେ ଗ୍ରେଟ୍‌ବ୍ରିଟେନ୍ ବିରୋଧରେ ଆୟର୍ଲାଣ୍ଡର ବିଦ୍ରୋହ, ସେ ସମୟର ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଯାହାର ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ହେଉନଥିଲେ ବୋଲି ସେତେବେଳର ସ୍ତାବକମାନେ କହୁଥିଲେ, ତାକୁ ଏକ କ୍ଷୁଦ୍ର ଆୟର୍ଲାଣ୍ଡ ଚାଲେଞ୍ଜ୍ ଦେବା କଥା ନବବାବୁଙ୍କ ତରୁଣ ମନରେ ଗଭୀର ରେଖାପାତ କରିଥିଲା ।

କଲିକତା ଆଡ଼ର 'ନିଗ୍ରହ ଫାର୍ମାସୀ' ବହୁବାର ବିଜ୍ଞାପନ ଦେଉଥାଏ, 'ମରଣ ବିନ୍ଦୁପାତେନ' । ବିଜ୍ଞାପନର ଉଦ୍ଦେଶ୍ୟ ଥାଏ ଯେ ଶୁକ୍ରକ୍ଷରଣ ଲାଗି ତାଙ୍କ ଫାର୍ମାସୀର ଔଷଧ ଖାଆନ୍ତୁ । ନବବାବୁ ଆଦି ସେ ବିଜ୍ଞାପନ ପଢ଼ି ଏତେ ଆତଙ୍କିତ ହୋଇଯାଇଥିଲେ ଯେ ଭାବିନେଲେ, ସେମାନଙ୍କର ଭବିଷ୍ୟତ ଧ୍ୱଂସ ହୋଇଗଲା । ହଠାତ୍ ସେ ଏକ ଇଂରାଜୀ ବହି ପଢ଼ି ଜାଣିପାରିଥିଲେ ଯେ ସେ ସବୁ ଭୁଲ୍ । Youth ସମ୍ପର୍କରେ Stanley Hallଙ୍କ ଏକ ବହି ପଢ଼ି ତାଙ୍କର ସେ ସମ୍ପର୍କୀୟ ଭ୍ରାନ୍ତି ଦୂର ହୋଇଥିଲା । ପରେ ଫ୍ରିଡା ଦାସଙ୍କଠାରୁ ଏ ବାବଦରେ ନବବାବୁ ଅନେକ ବହି ପାଇଥିଲେ ।

## ମହାବିଦ୍ୟାଳୟରେ ପ୍ରବେଶ :

ନବକୃଷ୍ଣ ଚୌଧୁରୀଙ୍କ ପିତୃବିୟୋଗ ୧୯୧୫ ଫେବୃଆରି ମାସରେ । ବାପାଙ୍କ ଅନ୍ତେ ଭାଇ ଗୋପବନ୍ଧୁ ଚୌଧୁରୀ ହେଲେ ଘରର ମୁରବି । ପରିବାର ଦାୟରେ ସେ ଆଇନ୍ ପଢ଼ା ଶେଷ ହେବା ପୂର୍ବରୁ, ୧୯୧୭ ମସିହାରେ ଡେପୁଟି ଚାକିରି କଲେ । ସେହି ବର୍ଷ ନବବାବୁ କଲେଜରେ ନାଁ ଲେଖାଇଲେ । ସେ ବର୍ଷ ଇତିହାସର ଏକ ଯୁଗାନ୍ତକାରୀ ଘଟଣା ଘଟିଗଲା– ରୁଷ ଦେଶରେ ସମାଜବାଦୀ ରାଷ୍ଟ୍ର ପ୍ରତିଷ୍ଠିତ ହେଲା । କଲେଜରେ ତାଙ୍କର ସହପାଠୀ ଥାଆନ୍ତି ନିତ୍ୟାନନ୍ଦ କାନୁନ୍‌ଗୋ ଓ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ଲୋକନାଥ ପଟ୍ଟନାୟକ (ବଡ଼) ଆଦି । ହରେକୃଷ୍ଣ ମହତାବ ସେହି ବର୍ଷ ରେଭେନ୍ସା କଲେଜରେ ବିଜ୍ଞାନ ପଢ଼ିବା ଲାଗି ନାମ ଲେଖାଇଥାନ୍ତି । ତାଙ୍କ ସହିତ ନବବାବୁଙ୍କର ଭଲଭାବରେ ପରିଚୟ ହୁଏ ବର୍ଷକ ପରେ । ମହତାବ ବାବୁଙ୍କ ସହିତ ଏକା ମେସ୍‌ରେ ରହୁଥିଲେ ନବବାବୁଙ୍କ ସାଙ୍ଗ ପ୍ରହ୍ଲାଦ ସାହୁ । ବହୁବାର ସେ ଏହି ପ୍ରହ୍ଲାଦ ସାହୁଙ୍କ ସହ ଉଦ୍ଦେଶ୍ୟହୀନ ଭାବରେ ମହାନଦୀ ବାଲି ଉପରେ ଚାଲିଚାଲି ଆରପାଖକୁ ଯାଆନ୍ତି ଓ ଆସନ୍ତି । ନବବାବୁ ତାଙ୍କ ମେସ୍‌ରେ ଅନେକ ସମୟ କଟାଉଥିଲେ । କେବଳ ଡମପଡ଼ା ରାଜାଙ୍କ ବ୍ୟତୀତ ଅନ୍ୟମାନେ ଲୁଗା ଓ କମିଜ

ପିନ୍ଧି କଲେଜକୁ ଆସୁଥିଲେ । ଚାକିରି କରିବା ତ ଏମାନଙ୍କର ମୋଟେ ଲକ୍ଷ୍ୟ ନଥାଏ; ଦେଶସେବା ଓ ଅନ୍ୟର ସେବା ଦିଗରେ ମନ ଢଳିଥାଏ । ଏଣୁ କଲେଜର ପଢ଼ା ଓ ପରୀକ୍ଷାର ଫଳାଫଳ ପ୍ରତି ବିଶେଷ ଧ୍ୟାନ ନଥାଏ । ଉତ୍କଳ ସମ୍ମିଳନୀ ଓ ଛାତ୍ରସଙ୍ଗଠନ କାର୍ଯ୍ୟରେ ଯୋଗ ଦେବା ଛଡ଼ା ଏମାନେ ବିଭିନ୍ନ ବହି ପଢୁଥିଲେ । ଅନ୍ୟାନ୍ୟ ପଢ଼ାପଢ଼ି ଭିତରେ ସେମାନେ ନିୟମିତ ଭାବରେ ଆନି ବେସାନ୍ତଙ୍କ ସମ୍ପାଦିତ 'ନିଉ ଇଣ୍ଡିଆ' ପଢୁଥିଲେ । ଏହି ତରୁଣ ଗୋଷ୍ଠୀ ନିଜକୁ ମୁକ୍ତ ଚିନ୍ତକ ବୋଲି ବିଚାର କରୁଥାନ୍ତି । ଏଣୁ ପ୍ରଚଳିତ ଚାଲିଚଳନଠାରୁ ନିଜ କାର୍ଯ୍ୟରେ ଅଲଗା କିଛି ଦେଖାଇହେବା ଲାଗି ଏମାନଙ୍କର ଚେଷ୍ଟା ଥାଏ । ଏମାନେ ଅନ୍ୟମାନଙ୍କଠାରୁ ଭିନ୍ନ ପୋଷାକ ପିନ୍ଧନ୍ତି । ଦିନାକେତେ ନବବାବୁ ତାଳପତ୍ର ଛତା ଧରି ବି କଲେଜକୁ ଯାଉଥିଲେ ।

ଏହି ସମୟକୁ ଗାନ୍ଧି ଭାରତୀୟ ରାଜନୀତିକୁ ଆସିଗଲେଣି । ରାଓଲଟ୍ ଆକ୍ଟର ପ୍ରତିବାଦ ସ୍ୱରୂପ ସତ୍ୟାଗ୍ରହ, ସ୍ୱାଧୀନତା ପାଇଁ ସହିଦମାନଙ୍କ ପ୍ରାଣଦାନ, ତିଳକ ଓ ଗାନ୍ଧି ଆଦିଙ୍କର ପ୍ରେରଣାମୟ ଉଦ୍‌ବୋଧନ ଏମାନଙ୍କୁ ଦେଶମିଶ୍ରଣ ଆନ୍ଦୋଳନଠାରୁ ଭାରତର ମୁକ୍ତି ଆନ୍ଦୋଳନ ଆଡ଼କୁ ମୁହାଁଇନେଉଥାଏ । ଏହି ସମୟରେ ଏକ ଉଲ୍ଲେଖନୀୟ ଘଟଣା ଘଟିଲା ଜାଲିଆନାୱାଲାବାଗ୍‌ଠାରେ । ବଙ୍ଗଭଙ୍ଗ ଆନ୍ଦୋଳନ କେବଳ ବଙ୍ଗଳା ମଧ୍ୟରେ ସୀମିତ ଥିଲା; କିନ୍ତୁ ଜାଲିଆନାୱାଲାବାଗ୍ ଗୁଳିକାଣ୍ଡ ଓ ପଞ୍ଜାବରେ ଚାଲିଥିବା ଅତ୍ୟାଚାର ସମଗ୍ର ଭାରତବର୍ଷରେ ଇଂରେଜ ସରକାର ବିରୋଧରେ ଅପୂର୍ବ ଜାଗରଣ ସୃଷ୍ଟି କରିଥିଲା ।

**ଭାରତୀ ମନ୍ଦିର :**

ଗୋପବନ୍ଧୁ ଚୌଧୁରୀ ସରକାରୀ ଚାକିରି କରିଥିଲେ ବି, ୧୯୧୯ ମସିହାରେ କଟକର ଯୁବମହଲରେ ଜାତୀୟ ଚେତନା ବୃଦ୍ଧି ଉଦ୍ଦେଶ୍ୟରେ, ଏକ ପାଠାଗାର ଗଠନ କରିଥିଲେ । ସନ୍‌ସାଇନ୍ ଫିଲ୍ଡର ଦକ୍ଷିଣ-ପଶ୍ଚିମ କୋଣର ଏକ ଚାଳଘରେ ସେହି ପାଠାଗାର ପ୍ରତିଷ୍ଠିତ ହୋଇଥିଲା । କଟକରେ ସେତେବେଳକୁ ସାଧାରଣ ପାଠାଗାର ନଥାଏ । ପ୍ରଥମେ ଗୋକୁଳାନନ୍ଦ ଚୌଧୁରୀଙ୍କ ଅମଳର ବହୁ ମୂଲ୍ୟବାନ ପୁସ୍ତକ ସେଠାକୁ ଅଣାଗଲା । ସେସବୁ ଭିତରେ ଥାଏ ବହୁ ଇଂରାଜୀ ଉପନ୍ୟାସ, କାବ୍ୟ ଓ ଏନ୍‌ସାଇକ୍ଲୋପେଡିଆ ବ୍ରିଟାନିକା ଆଦି । ଗୋପବନ୍ଧୁ ଚୌଧୁରୀ କଲିକତାରେ ପଢ଼ିଲା ବେଳେ ଏକହଜାର ଟଙ୍କା ପୁରସ୍କାର ପାଇଥିଲେ । ସେହି ଟଙ୍କାରେ ସେ ଅନେକ ଇଂରାଜୀ ଗ୍ରନ୍ଥାବଳୀ କିଣିଥିଲେ ଏବଂ ଏହାଛଡ଼ା ସେ, ବହି ଆକାରରେ, ଅନେକ ପୁରସ୍କାର ବି ପାଇଥିଲେ । ଏସବୁ ବହି ଭାରତୀ ମନ୍ଦିରକୁ ଆସିଯାଇଥିଲା । ଭାରତୀ ମନ୍ଦିରର ଅନ୍ୟାନ୍ୟ ଉଦ୍ୟୋକ୍ତା ହେଲେ ଭାଗୀରଥି ମହାପାତ୍ର, ନିତ୍ୟାନନ୍ଦ କାନୁନ୍‌ଗୋ, ଯଦୁମଣି ମଙ୍ଗରାଜ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ,

ପ୍ରହ୍ଲାଦ ସାହୁ, ବଶିର୍ ସାହେବ ଓ ନିକୁଞ୍ଜ କିଶୋର ଦାସ ଆଦି । ବିଭିନ୍ନ ପ୍ରକାର ବହି ଛଡ଼ା ଭାରତବର୍ଷର ବିଭିନ୍ନ ନଗରୀର ସମ୍ବାଦପତ୍ର ବି ଏଠାକୁ ଆସୁଥିଲା । ଛାତ୍ର, ଯୁବକଙ୍କ ଛଡ଼ା ବହୁ ଓକିଲ ଏବଂ ସାଧାରଣ କାର୍ଯ୍ୟରେ ଆଗ୍ରହ ଥିବା ଲୋକଙ୍କୁ ଏହି ଅନୁଷ୍ଠାନ ଆଡ଼କୁ ଆକୃଷ୍ଟ କରାଗଲା । ଏ ସବୁଥିରେ ଭାଗୀରଥି ମହାପାତ୍ରଙ୍କ ଉଦ୍ୟମ ବିଶେଷ ଉଲ୍ଲେଖନୀୟ । ଏହାର କାର୍ଯ୍ୟକଳାପ କ୍ରମେ ସରକାରଙ୍କ ସନ୍ଦେହ ଚକ୍ଷୁରେ ପଡ଼ିଲା । ପଢ଼ିବା ବାହାନାରେ ଏଠାକୁ ଗୁପ୍ତ ପୋଲିସ୍‌ମାନେ ବି ଆସିଲେ । ଜ୍ଞାନ ଆହରଣ ଛଡ଼ା ଏହାରି ପରିସର ମଧ୍ୟରେ ରାଜନୀତି ଚର୍ଚ୍ଚା ଓ ରାଜନୀତିକ କାର୍ଯ୍ୟକଳାପର ଯୋଜନା କରାଯାଉଥିଲା । ସ୍ୱରାଜ୍ୟାଶ୍ରମ ଅସହଯୋଗ ଆନ୍ଦୋଳନର କେନ୍ଦ୍ର ହେବା ପୂର୍ବରୁ ଭାରତୀ ମନ୍ଦିର ହିଁ ଆନ୍ଦୋଳନର ଅଧିବାସର ସ୍ଥଳ ହୋଇଯାଇଥିଲା । ୧୯୨୧ର ଅସହଯୋଗ ଆନ୍ଦୋଳନ ମାନ୍ଦା ପଡ଼ିଯିବା ପରେ ଏହି ପାଠାଗାରର ଗୁରୁତ୍ୱ କମିଯାଇଥିଲା । ନେତାମାନେ କଟକରୁ ଅନ୍ୟତ୍ର ଚାଲିଯାଇଥିଲେ ଏବଂ ବହୁ ମୂଲ୍ୟବାନ ବହି ପାଠକମାନଙ୍କଠାରୁ ଫେରିଲା ନାହିଁ । ଏଣୁ ଯାହା କିଛି ବହି ଥିଲା, ସେଗୁଡ଼ିକ ୧୯୨୪ ମସିହାରେ ପୁଣି ଗୋପବନ୍ଧୁ ଚୌଧୁରୀଙ୍କ ଘରକୁ ଫେରିଯାଇଥିଲା ।

ଏହି ସମୟରେ କଟକରେ ସ୍ୱରାଜ ସେବକ ସଂଘ ନାମକ ଏକ ଅନୁଷ୍ଠାନ ଗଢ଼ା-ଯାଇଥିଲା । ନବକୃଷ୍ଣ ଚୌଧୁରୀଙ୍କ ବ୍ୟତୀତ ରାମପ୍ରସାଦ ସିଂହ, ରଘୁ ରାଉତ ଓ ରାଜ କିଶୋର ଦାସ ଆଦି ସେଥିରେ ସଭ୍ୟ ଥିଲେ ଏବଂ ବ୍ରଜବନ୍ଧୁ ଦାସ ଥିଲେ ତାହାର ସମ୍ପାଦକ । ସେମାନେ ବିଭିନ୍ନ ଗଠନମୂଳକ କାର୍ଯ୍ୟ କରିବା ସଙ୍ଗେସଙ୍ଗେ କଂଗ୍ରେସର ସଭ୍ୟ ସଂଗ୍ରହ କରୁଥିଲେ ଓ ଅସହଯୋଗ ବାର୍ତ୍ତା ପ୍ରଚାର କରୁଥିଲେ ।

### ଅସହଯୋଗ ଆନ୍ଦୋଳନ :

ଅସହଯୋଗ ଆନ୍ଦୋଳନ ପୂର୍ବରୁ ବି ରେଭେନ୍ସା କଲେଜର କେତେକ ଛାତ୍ର ଦେଶମିଶ୍ରଣକୁ ସଂକୀର୍ଣ୍ଣ ପ୍ରାଦେଶିକତା ବୋଲି ବିଚାରୁଥାନ୍ତି । ସେମାନେ ମଧୁସୂଦନ ଦାସଙ୍କ ଦୃଷ୍ଟିଭଙ୍ଗୀକୁ ବିରୋଧ କରୁଥାନ୍ତି । ସେହି ଗୋଷ୍ଠୀର ମୁଖ୍ୟ ଥିଲେ ଯଦୁମଣି ମଙ୍ଗରାଜ ଏବଂ ତାଙ୍କର୍ ଏ ଦିଗର ମୁଖ୍ୟ ସହକର୍ମୀ ଥିଲେ ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀ । ୧୯୧୯ରେ ଏହି ଗୋଷ୍ଠୀ ତରଫରୁ ହରେକୃଷ୍ଣ ମହତାବ ଜଣେ ଦର୍ଶକ ଭାବରେ ଯାଇଥିଲେ କଲିକତାର କଂଗ୍ରେସ ଅଧିବେଶନକୁ ଏବଂ ୧୯୨୦ ମସିହା ନାଗପୁର କଂଗ୍ରେସ ଅଧିବେଶନକୁ ମହତାବଙ୍କ ଛଡ଼ା ଯଦୁମଣି ମଙ୍ଗରାଜ ଯାଇଥିଲେ । ସେଠାରୁ ଫେରିଲାବେଳେ ଚକ୍ରଧରପୁରଠାରେ ଏମାନେ ଉତ୍କଳ ସମ୍ମିଳନୀରେ ଯୋଗ ଦେଲେ ଏବଂ ଦେଶ ମିଶ୍ରଣ ବଦଳରେ, ଦେଶର ସ୍ୱାଧୀନତା, ସମ୍ମିଳନୀର ଲକ୍ଷ୍ୟ ବୋଲି ପ୍ରସ୍ତାବ ପାସ୍ କରାଇଲେ । ଏହା ଥିଲା ମଧୁସୂଦନ ଦାସଙ୍କ ବିରୋଧରେ ଏକ ଚାଲେଞ୍ଜ୍ । ସେତିକିରେ ସେମାନେ ସନ୍ତୁଷ୍ଟ

ହୋଇନଥିଲେ । ସେମାନେ କଟକ ଫେରିଲା ବେଳକୁ ମଧୁସୂଦନ ବିହାର-ଓଡ଼ିଶା ସରକାରଙ୍କ ମନ୍ତ୍ରୀ ଭାବରେ ମନୋନୀତ ହୋଇସାରିଥିଲେ । ତାଙ୍କ ସମ୍ମାନାର୍ଥେ କଟକ ଟାଉନ୍‌ହଲ୍‌ରେ ଏକ ସଭାର ଆୟୋଜନ ହୋଇଥିଲା । ସେହି ସଭା ଭଣ୍ଡୁର କରିବାର ନେତୃତ୍ୱ ନେଇଥିଲେ ହରେକୃଷ୍ଣ ମହତାବ ଓ ସହଯୋଗୀ ଥିଲେ ଯଦୁମଣି ମଙ୍ଗରାଜ ଏବଂ ନବକୃଷ୍ଣ ଚୌଧୁରୀ ଆଦି । ମଧୁସୂଦନ ଦାସ ନିରନ୍ନ ଓଡ଼ିଆଙ୍କ ରାଜସ୍ୱରୁ ମାସକୁ ୫୦୦୦ ଟଙ୍କାରେ ମନ୍ତ୍ରୀ ଚାକିରିରେ ରହିଲେ ବୋଲି ଏମାନେ ଏକ ପ୍ରଚାରପତ୍ର ବଣ୍ଟନ କରିଥିଲେ ଏବଂ ସମ୍ବର୍ଦ୍ଧନା ସଭାକୁ ବି ଭଣ୍ଡୁର କରିଦେଇଥିଲେ । ଏହା ଏକ ଅବାନ୍ତର କଥା ବୋଲି ପରେ ଜଣାଯାଇଥିଲା । କାରଣ ଉତ୍କଳ ଗୌରବଙ୍କ ଦରମା ନନେଇ ମନ୍ତ୍ରୀ ହେବା ପ୍ରସ୍ତାବକୁ ସରକାର ଗ୍ରହଣ ନ କରିବାରୁ, ସେ ୮-୩-୧୯୨୩ ତାରିଖରେ ଇସ୍ତଫା ଦେଇଥିଲେ । ଯେଉଁ ଯଦୁମଣି ମଙ୍ଗରାଜ ମଧୁସୂଦନଙ୍କ ଗୌରବ ନଷ୍ଟ କରିବା ଦିଗରେ ଏତେ ଆଗୁଆ ଥିଲେ, ପରବର୍ତ୍ତୀ କାଳରେ ସେ ନିଜର ଏ ଦିଗର ଉତ୍ସାହ ଆତିଶଯ୍ୟର ପ୍ରମାଦ ଉପଲବ୍ଧି କରିପାରିଥିଲେ । ସାଇମନ୍ କମିଶନକୁ ଏହି ଗୋଷ୍ଠୀ ବିରୋଧ କରିବାରେ ନେତୃତ୍ୱ ନେଇଥିଲେ ହେଁ ସାଇମନ୍ କମିଶନ୍ ଓଡ଼ିଶାକୁ ଯେତିକି ନ୍ୟାୟ ଦେଇଥିଲେ, କଂଗ୍ରେସ ଦଳ କ୍ଷମତା ପାଇଲା ପରେ ବି ସେଥିରୁ ଅଧିକ କିଛି ଦେଇନାହାନ୍ତି ବୋଲି ବହୁ ଲୋକଙ୍କର ମତ । ଏଣୁ ମଧୁସୂଦନଙ୍କ ପ୍ରତି ଆକ୍ଷେପ ଓ କୁତ୍ସା ଯଦୁମଣିଙ୍କୁ ସାରା ଜୀବନ ଘାରିଥିଲା । ମୃତ୍ୟୁଶଯ୍ୟାରେ ବି ସେ ମଧୁବାବୁଙ୍କ ନାମ ସ୍ମରଣ କରି ବାରମ୍ବାର ତାଙ୍କ ଉଦ୍ଦେଶ୍ୟରେ ନମସ୍କାର କରୁଥିଲେ ।

୧୯୨୧ ମସିହା ଆରମ୍ଭ ବେଳକୁ ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀ ଆଦି କଲେଜ ପଢ଼ା ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେବେ ବୋଲି ସ୍ଥିର କରିଥାନ୍ତି । ମଧୁସୂଦନ ଦାସଙ୍କ ସମ୍ବର୍ଦ୍ଧନା ସଭା ଭାଙ୍ଗିବା ଅଭିଯୋଗରେ ରେଭେନ୍ସା କଲେଜର ପ୍ରିନ୍ସିପାଲ ଲେମ୍ବାଟ୍ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ଓ ଯଦୁମଣି ମଙ୍ଗରାଜ, ଗୋକୁଳାନନ୍ଦ ମହାନ୍ତି ଆଦି ଗଣ୍ଡଗୋଳକାରୀଙ୍କ ଅଭିଭାବକମାନଙ୍କୁ ତାଗିଦ୍ କରି ଲେଖିଲେ ଯେ ସେମାନଙ୍କ ପିଲାମାନେ ନିଜନିଜର ଆଚରଣ ସଂଶୋଧନ ନକଲେ ସେମାନଙ୍କ ନାମ କଟିଯିବ । ସେତେବେଳକୁ ଭାଇ ଗୋପବନ୍ଧୁ ଚୌଧୁରୀ ଥାଆନ୍ତି ଅଭିଭାବକ । ସେ ନବବାବୁଙ୍କ ମନୋଭାବ ଜାଣି ପ୍ରିନ୍ସିପାଲଙ୍କୁ କିଛି ଜଣାଇଲେ ନାହିଁ । ଗାନ୍ଧିଙ୍କ ଆହ୍ୱାନରେ ଅନ୍ୟମାନେ ସ୍କୁଲ, କଲେଜ ଓ କଚେରି ବର୍ଜନ କରିବା ପୂର୍ବରୁ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ଯଦୁମଣି ମଙ୍ଗରାଜ, ନିତ୍ୟାନନ୍ଦ କାନୁନ୍‌ଗୋ ଆଦି କଲେଜ ଛାଡ଼ିଥିଲେ । ସେତେବେଳେ ଗୋପବନ୍ଧୁ ଚୌଧୁରୀ ଏହି ଭାରତୀ ମନ୍ଦିରର ବିଦ୍ରୋହୀମାନଙ୍କୁ ସାବଧାନ ବାଣୀ ଶୁଣାଇ ଲେଖିଥିଲେ, ''ସୁଅରେ ଭାସିଯାଅ ନାହିଁ, ସୁଅରେ ପହଁରି ନିଜ ବାଟ କାଟିନିଅ । ଯେ ସୁଅରେ ନିଜ ବାଟ ହରେଇ ଭାସିଯିବେ, ସେମାନଙ୍କର ବିପଦ ଅଛି; କେଉଁଠି ଲାଗିଯିବେ ବା

ବୁଡ଼ିଯିବେ ବା ଅଟକିଯିବେ । ଯେ ଭାବିଚିନ୍ତି ସେଥିରେ ଡେଇଁପଡ଼ି ପହଁରିଯିବ, ନିଜର ଗନ୍ତବ୍ୟ ଠିକ୍ ରଖିଥିବ, ତା'ର ଅଧିକ ମଙ୍ଗଳ ହେବ ।'' ଏହାର କିଛିଦିନ ପରେ ଗୋପବନ୍ଧୁ ବି ଚାକିରିରୁ ଇସ୍ତଫା ଦେଇଦେଲେ । ଏହି ଯୁବକମାନଙ୍କ ପ୍ରଭାବ ପରୋକ୍ଷରେ ଗୋପବନ୍ଧୁ ଚୌଧୁରୀଙ୍କ ଉପରେ ପଡ଼ିଥିଲା । ସେ ତାଙ୍କର ଅସମ୍ପୂର୍ଣ୍ଣ ଆତ୍ମଜୀବନୀରେ ଲେଖିଛନ୍ତି, ''ତାଙ୍କର ସ୍ୱାଧୀନ ଚିନ୍ତା ଓ ସାହସ ମୋ' ସଙ୍କଳ୍ପ ସାଧନାରେ ମୋତେ ସାହାଯ୍ୟ କରିଥିଲା । ସାନ ହେଲେ ସୁଦ୍ଧା ସତ୍ୟପଥ ଆଶ୍ରୟ କରି ଚାଲିଲେ ନିଶ୍ଚୟ ବଡ଼ଙ୍କୁ ମଧ୍ୟ ଚଳେଇ ପାରିବ, ଏହା ମୋର ବିଶ୍ୱାସ । ଜୀବନରେ ଏଇଭଳି ଆଉ ଅନେକ ଦୃଷ୍ଟାନ୍ତ ଦେଖିଛି ।

''ଯେତେବେଳେ ଦେଶସେବାଟା ଜୀବନର ମୁଖ୍ୟ ବ୍ରତ ହୋଇ ନଥାଏ, ସେତେବେଳେ ମନରେ ଏତିକି ସ୍ଥାନ ପାଇଥାଏ ଯେ, ଚାକିରିରେ ରହି ମଣିଷର ପୂର୍ଣ୍ଣ ଆତ୍ମବିକାଶ ହେବା ସମ୍ଭବ ନୁହେଁ, ସେଥିପାଇଁ ଅନ୍ୟ କ୍ଷେତ୍ର ଖୋଜିବାକୁ ହେବ ।''

ଗୋପବନ୍ଧୁ ଚୌଧୁରୀ ଇସ୍ତଫା ଦେଇ ଘରକୁ ଫେରିଆସିବାର ଦୁଇଚାରିଦିନ ପରେ ସ୍ୱରାଜ୍ୟାଶ୍ରମକୁ ଯା'ଆସ କଲେ । ଏହାର ଅଳ୍ପ କେଇଦିନ ପରେ ଦୋଳ ପୂର୍ଣ୍ଣିମାକୁ ଗାନ୍ଧିଜୀଙ୍କ କଟକ ଆଗମନ । ସେ ସାରା ଭାରତବର୍ଷ ବୁଲି ଇଂରେଜ ସରକାର ବିରୋଧରେ ଭାଷଣ ଦେଉଥାନ୍ତି ଏବଂ ସରକାର ସହିତ ଅସହଯୋଗ କାର୍ଯ୍ୟକ୍ରମର ତାତ୍ପର୍ଯ୍ୟ ବୁଝାଉଥାନ୍ତି । ତାଙ୍କର ଆହ୍ୱାନରେ ଓଡ଼ିଶାରୁ ପ୍ରାୟ ୬୦ ଜଣ ଛାତ୍ର ସ୍କୁଲକଲେଜ ଛାଡ଼ିଥିଲେ ଓ କେତେକ ଓକିଲ କଚେରି ବର୍ଜନ କରିଥିଲେ । ୧୯୨୧ ମାର୍ଚ୍ଚ ମାସରେ ରାଜକୃଷ୍ଣ ବୋଷ ଆଇନ୍ ଅମାନ୍ୟ କରି ଓଡ଼ିଶାର ପ୍ରଥମ ରାଜବନ୍ଦୀ ହେବାର ଗୌରବ ଲାଭ କରିଥିଲେ । ତାଙ୍କ ପରେ ଅବଶ୍ୟ ଗୋପବନ୍ଧୁ ଦାସ, ଭାଗୀରଥି ମହାପାତ୍ର ଓ ଯଦୁମଣି ମଙ୍ଗରାଜ ଏବଂ ପରେପରେ ହରେକୃଷ୍ଣ ମହତାବ ଗିରଫ ହୋଇଥିଲେ । କେତେକ ସର୍ତ୍ତ ପୂରଣ ହୋଇପାରିଲେ 'ବର୍ଷକ ମଧ୍ୟରେ ସ୍ୱରାଜ' ହୋଇପାରିବ ବୋଲି ଗାନ୍ଧି କହିଥାନ୍ତି । ସେଗୁଡ଼ିକ ହେଲା–ଲୋକେ ଅରଟରେ ସୂତା କାଟି ସେ ସୂତାର ଲୁଗା ପିନ୍ଧିବେ, ସମ୍ପୂର୍ଣ୍ଣ ନିଶା ନିବାରଣ ହୋଇଥିବ, ହିନ୍ଦୁ ମୁସଲମାନ ଏକତା ଥିବ, ଲୋକେ ଅହିଂସାପରାୟଣ ହୋଇଥିବେ । ଏଥିପାଇଁ ୧୯୨୧ ଡିସେମ୍ବର ୩୧ ଥିଲା ଶେଷ ତାରିଖ । ଏହି କାର୍ଯ୍ୟ କିଛି ପରିମାଣରେ ସଫଳ ହେଲା ସତ, କିନ୍ତୁ ସମ୍ପୂର୍ଣ୍ଣ ଭାବରେ ସାଧିତ ହୋଇପାରିଲା ନାହିଁ । ଏଣୁ ଯେଉଁମାନେ ଭାବୁଥିଲେ ବର୍ଷକ ମଧ୍ୟରେ ସ୍ୱରାଜ ମିଳିଯିବ, ସେମାନେ ନିରାଶ ହେଲେ । ନବକୃଷ୍ଣ ଚୌଧୁରୀ ଗାନ୍ଧିଜୀଙ୍କ ଏହି ଆହ୍ୱାନକୁ କିଭଳି ଗ୍ରହଣ କରିଥିଲେ, ତାହା ଜଣାନାହିଁ । ଏଥର ସେ କାରାବରଣ କରିନଥିଲେ । ତେବେ ୧୯୨୨ ମସିହାରେ ମଦନମୋହନ ପଟ୍ଟନାୟକ ଓ ସେ ଖଦି କାମ ଶିଖିବା ଲାଗି ଗାନ୍ଧିଙ୍କ ସାବରମତୀ ଆଶ୍ରମକୁ ଯାଇଥିଲେ । ସେଠାରେ ଦିନକୁ ୮ ଘଣ୍ଟା କରି ୧୦ ମାସ ତାଲିମ ପାଇଲେ । ସେଠାରେ ତାଙ୍କ ସାଙ୍ଗରେ ଥିଲେ ନେପାଳର ଗାନ୍ଧି କୁହାଯାଉଥିବା ତୁଳସୀ

ମେହେର । ସେ ଲେଙ୍ଗୁଟି ପିନ୍ଧୁଥିଲେ । ଯାଙ୍କ ଛଡ଼ା ଥିଲେ ବିଶିଷ୍ଟ ଦାର୍ଶନିକ ଧୀରେନ୍ଦ୍ର ମୋହନ ଦତ୍ତ । ଦେହ ତାଙ୍କର ଫୁଙ୍ଗୁଳା, ଛୋଟ ଖଦି ପିନ୍ଧନ୍ତି । ଗାନ୍ଧିଙ୍କ ଲାଇବ୍ରେରିରେ ବହୁ ପ୍ରକାର radical ବହି ଭିତରେ ନବବାବୁ ସେଠାରେ Blockଙ୍କ Sexual Life Men ଏବଂ ନିରୀଶ୍ୱରବାଦୀ ଦାର୍ଶନିକ Bradlaughଙ୍କ ବହି ପଢ଼ିଥିଲେ । ଏଇଠି ତାଙ୍କର Havlock Ellisଙ୍କ ସହିତ ପରିଚୟ ହୁଏ । ସେଠାରୁ ନବବାବୁ ସେହି ବର୍ଷ ଡିସେମ୍ବର ମାସକୁ ଫେରିଲେ । ଫେରିଲା ବେଳକୁ ଗୟାଠାରେ କଂଗ୍ରେସ ଅଧିବେଶନ ବସୁଥାଏ । ତାଙ୍କର ଆଣ୍ଠୁ ଲୁଚୁନଥିବା ଖଦଡ଼ ଲୁଗା ପିନ୍ଧା ଓ ଦାଢ଼ି ବଢ଼େଇଥିବା ଚେହେରାକୁ ଦେଖି ଓଡ଼ିଶାର ପ୍ରତିନିଧିମାନେ, ଏପରିକି ଝିଆରୀ ଅନ୍ନପୂର୍ଣ୍ଣା ବି ତାଙ୍କୁ ହଠାତ୍ ଚିହ୍ନିପାରିନଥିଲେ ।

**ସମାଜସେବା ଓ ସମାଜସଂସ୍କାର :**

୧୯୨୨ ମସିହା ଜାନୁଆରିଠାରୁ ଜୁନ୍ ପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନ ସ୍ଥାନରେ ଘରପୋଡ଼ି ଲାଗିଲା । ଏହା ଏକ ସଂକ୍ରାମକ ରୋଗ ଭଳି ସହରରୁ ସହର ବ୍ୟାପିଥିଲା । ଏହା ପ୍ରଥମେ ଆରମ୍ଭ ହୁଏ କଟକରୁ । ବିଭିନ୍ନ ସାହିରେ ନିଆଁ ଲାଗିବା ସଙ୍ଗେସଙ୍ଗେ ଦିନରେ ବି ନିଆଁ ଲାଗି ଆତଙ୍କ ସୃଷ୍ଟି ହୋଇଥିଲା । ପୋଲିସ କହୁଥାଏ, କଂଗ୍ରେସବାଲାଏ ଏହା କରୁଛନ୍ତି ଓ କଂଗ୍ରେସ ଲୋକେ କହୁଥାନ୍ତି ଯେ ପୋଲିସଦ୍ୱାରା ଏ ଅଗ୍ନିକାଣ୍ଡ ହେଉଛି । ଏଣୁ ସାହି ମଧ୍ୟକୁ ପୋଲିସ ଲୋକଙ୍କୁ ଛାଡ଼ିଦିଆଯାଉନଥାଏ ।

ନବକୃଷ୍ଣ ଚୌଧୁରୀ ବହୁବାର ରାତିରେ ନିଆଁ ଲିଭାଇବାକୁ ଯାଇ ସକାଳକୁ ଫେରନ୍ତି । ନଡ଼ା ଓ ବାଉଁଶର ପାଉଁଶ ତଥା କଳା ବୋଳିହୋଇ ଘରେ ପହଞ୍ଚିଲା ବେଳକୁ ତାଙ୍କୁ କେହି ଚିହ୍ନିପାରନ୍ତି ନାହିଁ । ଥରେ ନିଆଁଧାସ ବାଜି ତାଙ୍କ ହାତ ଓ ପିଠି ସିଝିଯାଇଥିଲା । ହଇଜା ରୋଗୀଙ୍କ ସେବା ପାଇଁ ତାଙ୍କର ମୋଟେ ଭୟ ନଥାଏ । ପୂର୍ବତନ ବିଚାରପତି ହରିହର ମହାପାତ୍ର ପାଠ ପଢୁଥିଲା ବେଳେ ଥରେ ଏମିତି ହଇଜାରେ ପଡ଼ିଥିଲେ । ନବକୃଷ୍ଣ ଚୌଧୁରୀ ଏବଂ ଗୋପବନ୍ଧୁ ଚୌଧୁରୀ ତାଙ୍କର ସେବା ଶୁଶ୍ରୂଷା କରିଥିଲେ ବୋଲି ହରିହର ମହାପାତ୍ର ତାଙ୍କ ଆତ୍ମଜୀବନୀରେ ପ୍ରକାଶ କରିଛନ୍ତି । ତାହା ଅବଶ୍ୟ ନବବାବୁଙ୍କ ବିବାହ ପରର ଘଟଣା । ସେ ହଇଜା ରୋଗୀଙ୍କ ସେବା କରି ଘରକୁ ଫେରିଲେ ପଟାସ ପର୍‌ମାଙ୍ଗାନେଟ୍ ପାଣିରେ ଧୁଆଧୋଇ ହୁଅନ୍ତି ।

ନବବାବୁ ପ୍ରଚଳିତ ପ୍ରଥା ଓ ସଂସ୍କାରକୁ ମାନୁନଥିଲେ । ଗ୍ରହଣ ବା ପରାଗ ଲାଗିଲେ ସମସ୍ତେ ଉପବାସ ରହିଲା ବେଳେ ନବବାବୁ ପୁତୁରା ଓ ଝିଆରୀଙ୍କୁ ନେଇ ଏଣ୍ଣୁତେଣ୍ଣୁ ଖାଆନ୍ତି । ସେଥିରେ ମା' ପଦ୍ମାବତୀ ଅସନ୍ତୁଷ୍ଟ ହେଲେ ନବବାବୁ ହସନ୍ତି । କହନ୍ତି, ''ବୋଉ, ତୁ ବ୍ୟସ୍ତ ହୁଅନା; ଦେଖିବା, କଅଣ ହେଉଛି ।'' ତାଙ୍କର ପିଲାଦିନରୁ ଗୋଟିଏ ଖିଆଲ

ଥିଲା...ଦେଖିବା, କଅଣ ହେଉଛି...। ଅର୍ଥାତ୍ ପରୀକ୍ଷା କରି ନଦେଖିଲା ପର୍ଯ୍ୟନ୍ତ ସେ ସନ୍ତୁଷ୍ଟ ହେଉନଥିଲେ ।

ଏହି 'ଦେଖିବା କଅଣ ହେଉଛି' ପାଇଁ ପୁତୁରା ବୁଲୁଙ୍କ ସହିତ ପିମ୍ପୁଡ଼ିଗାତ ଖୋଳିବାଠାରୁ ଆରମ୍ଭ କରି ଘରଚଟିଆ ବସା ଖେଳେଇ ଦେଖିବା ପର୍ଯ୍ୟନ୍ତ କଥାଯାଏ । ପରୀକ୍ଷା କରି ପ୍ରମାଣ ନପାଇବା ପର୍ଯ୍ୟନ୍ତ ସେ ସନ୍ତୁଷ୍ଟ ହେଉନଥିଲେ । ଆଶ୍ଚର୍ଯ୍ୟ ଲାଗେ, ସେ ବିଜ୍ଞାନ ନପଢ଼ି କାହିଁକି ଦର୍ଶନ ପଢ଼ିବା ଆଡ଼େ ମନ ବଳାଇଲେ । ଦିନେ ତାଙ୍କର ଜଣେ ହରିଜନ ସାଙ୍ଗ ଶ୍ରୀଧର ସାମଲଙ୍କୁ ଘରକୁ ଖାଇବାକୁ ଡାକିଲେ । ଶ୍ରୀଧରଙ୍କ ଖାଇବା ବାସନ ସେ ନିଜେ ଧୋଇଲେ । ତାହା ଦେଖି ତାଙ୍କ ପୁତୁରା ଓ ଝିଆରୀ ଭାବୁଥିଲେ, ଦାଦା ଏକ ଅସମ୍ଭବ କାମ କଲେ ।

ସ୍ୱାମୀ ବିଚିତ୍ରାନନ୍ଦ ଦାସ କୁହନ୍ତି, ଟୁଆଁ ଯୋଗୁଁ ସେ କଟକରେ ଅନାଥାଶ୍ରମ ପ୍ରତିଷ୍ଠା କରିଥିଲେ । ଦିନେ ସେ ଗୋଟିଏ ସ୍ତ୍ରୀଲୋକକୁ ସଙ୍ଗରେ ନେଇ ବିଚିତ୍ରାନନ୍ଦବାବୁଙ୍କ ବସାରେ ପହଞ୍ଚି କହିଲେ, ''ଏହାକୁ ଘରୁ ବାହାର କରିଦେଇଛନ୍ତି । କେହି ଆଶ୍ରୟ ଦେଉନାହାନ୍ତି । ମୁଁ ଯାଉଛି, ଏହାକୁ ସେଲ୍‌ଟର୍ (ଖ୍ରୀଷ୍ଟିଆନମାନଙ୍କ ଅନାଥାଶ୍ରମ, ଯେଉଁଠି ଅନାଥମାନଙ୍କୁ ଆଶ୍ରା ଦେଇ ଖ୍ରୀଷ୍ଟିଆନ କରାଯାଉଥିଲା)ରେ ଛାଡ଼ିବି; ଆପଣ ଆପଣଙ୍କ ଧର୍ମକୁ ଧରି ବସିଥାଆନ୍ତୁ !'' ସେହିଦିନୁ ବିଚିତ୍ରାନନ୍ଦ ଦାସ ଅନାଥାଶ୍ରମ ସ୍ଥାପନ କରିବାକୁ ସ୍ଥିର କଲେ । ତାଙ୍କ ସାଙ୍ଗ ପ୍ରହ୍ଲାଦ ସାହୁଙ୍କୁ ମଧୁମେହ ହୋଇଥିଲା ଶୁଣି ସେ କେଉଁଠୁକେଉଁଠୁ, ବୁଲି ବୁଲି, ଅଦିନିଆ ଜାମୁକୋଳି ଆଣନ୍ତି । କେଉଁଠାରୁ ଶୁଣିଥିଲେ ଯେ ମଧୁମେହ ପାଇଁ କୁଆଡ଼େ ଜାମୁକୋଳି ଭଲ କାମ କରେ । ଅନ୍ୟର ଦୁଃଖରେ କିଭଳି ନିଜେ ସେ ବେଦନା ପାଉଥିଲେ ଓ ତା'ର ଲାଘବ ପାଇଁ ଯଥୋନାସ୍ତି ଚେଷ୍ଟା କରୁଥିଲେ, ତାହାର ଅନେକ ଦୃଷ୍ଟାନ୍ତ ରହିଛି । ଯୁବକ ବେଳର ସମାଜସେବା ତାଙ୍କର ପରବର୍ତ୍ତୀ ଜୀବନରେ ଆହୁରି ବ୍ୟାପକ କ୍ଷେତ୍ରକୁ ପ୍ରସାରିତ ହୋଇଥିଲା ।

## ଅଲକାଶ୍ରମର କବି :

୧୯୨୨ ମସିହା ଫେବୃଆରି ୨୩ ତାରିଖରେ ଜଗତସିଂହପୁର (ପୂର୍ବର ନାମ ହରିହରପୁର)ରେ ସତ୍ୟବାଦୀ ବନବିଦ୍ୟାଳୟ ଢାଞ୍ଚାରେ ଏକ ଜାତୀୟ ବିଦ୍ୟାଳୟ ସ୍ଥାପିତ ହୋଇଥାଏ । ସେଠାରେ, ଜଗତସିଂହପୁର ମାଇନର ସ୍କୁଲର ଅଧ୍ୟକ୍ଷ ପଦ ତ୍ୟାଗ କରି ଆସିଥିବା କିଶୋରୀଚରଣ କାନୁନ୍‌ଗୋ, ଟ୍ରେନିଂ ସ୍କୁଲ ଛାଡ଼ି ଆସିଥିବା ପ୍ରାଣକୃଷ୍ଣ ପଢ଼ିହାରୀ, ଦ୍ୱାରିକାନାଥ ମହାପାତ୍ର, ଦେବେନ୍ଦ୍ରନାଥ କାନୁନ୍‌ଗୋ, ରାଜକିଶୋର ଦାସ ଓ ଗୋକୁଳାନନ୍ଦ ମହାନ୍ତିଙ୍କ ଛଡ଼ା ଗୋପବନ୍ଧୁ ଚୌଧୁରୀ ଓ ନବକୃଷ୍ଣ ଚୌଧୁରୀ ପିଲାମାନଙ୍କୁ ପଢ଼ାନ୍ତି । ଗୋଟିଏ ସମୟରେ ସେଠାରେ ୧୨୦ ଜଣ ପର୍ଯ୍ୟନ୍ତ ଛାତ୍ର ହୋଇଯାଇଥିଲେ । ଅସହଯୋଗ

ଆନ୍ଦୋଳନ ଡାକରାରେ ୬ଷ୍ଠ, ୭ମ ଶ୍ରେଣୀରୁ ସ୍କୁଲ ଛାଡ଼ି ଆସିଥିବା ଅନେକ ପିଲା ସେହି ଜାତୀୟ ବିଦ୍ୟାଳୟରେ ଥାଆନ୍ତି । ଏମାନଙ୍କ ମଧ୍ୟରେ ଉଦୟନାଥ ଷଡ଼ଙ୍ଗୀ, ରାମକୃଷ୍ଣ ନନ୍ଦ, ସୁଦର୍ଶନ ପ୍ରହରାଜ, କୃଷ୍ଣଚନ୍ଦ୍ର ପ୍ରଧାନ, ବିଶ୍ୱନାଥ ନନ୍ଦ, ଲକ୍ଷ୍ମୀଧର ପଣ୍ଡାଙ୍କ ନାମ ଉଲ୍ଲେଖଯୋଗ୍ୟ । ଶିକ୍ଷକ ଓ ଛାତ୍ର ସମସ୍ତଙ୍କ ପାଇଁ ଗୋଟିଏ ଗୋଟିଏ ଲୁଗାବୁଣା ତନ୍ତ ପଡ଼ିଥାଏ । ବହିପଢ଼ାଠାରୁ ସୂତା କାଟିବା ଓ ବିଶେଷ ଭାବରେ ଲୁଗା ବୁଣିବା ହିଁ ପ୍ରଧାନ ଶିକ୍ଷା ବୋଲି ବିବେଚିତ ହେଉଥାଏ । ସୁନ୍ଦର ଧଡ଼ିଯୁକ୍ତ ସରୁ ଧୋତି ଓ ଶାଢ଼ି ବୁଣିବାରେ ପ୍ରତିଯୋଗିତା ଚାଲେ ।

ପାଠପଢ଼ା ଭିତରେ ଫକୀରମୋହନଙ୍କ ଛ'ମାଣ ଆଠଗୁଣ୍ଠ, ନନ୍ଦକିଶୋର ବଳଙ୍କ 'ଶର୍ମିଷ୍ଠା', କୃପାସିନ୍ଧୁ ମିଶ୍ରଙ୍କ 'ବାରବାଟୀ ଦୁର୍ଗ', ଷ୍ଟୋରିଜ୍ ଫ୍ରମ୍ ଟାଗୋର୍ (ଇଂରାଜୀ ବହି), ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସଙ୍କଳିତ ଇଂରାଜୀ ପ୍ରବନ୍ଧ ଶିକ୍ଷା ଓ ଆଚାର୍ଯ୍ୟ ହରିହରଙ୍କ ଲିଖିତ ଇଂରାଜୀ ଗ୍ରାମାର୍ ପଢ଼ା ହେଉଥିଲା । ଶିକ୍ଷକମାନେ ଥିଲେ ଅତି ଉଚ୍ଚକୋଟୀର । ଏଣୁ ଯେଉଁ ସମୟତକ ପାଠପଢ଼ା ହେଉଥିଲା, ସେତକ ପାଠ ଥିଲା ଅତି ଉପାଦେୟ । ସେ ପଟେ ମାଛଗାଁ କେନାଲ ଓ ଏ ପଟେ ପୋତିହୋଇପଡ଼ିଥିବା ଅଳକା ନଈ । ମଝିରେ ବିରାଟ ଆମ୍ବତୋଟାରେ ଅଳକାଶ୍ରମର ପରିବେଶ ଖୁବ୍ ଆକର୍ଷଣୀୟ ଥିଲା । ସନ୍ଧ୍ୟା ହୋଇଆସିଲେ ପିଲାଏ ଗୋଲ୍ ହୋଇ ବସି 'ଅଖିଳ ବ୍ରହ୍ମାଣ୍ଡପତି'...ବା 'କୋଟି ଜଗତର ରାଜରାଜେଶ୍ୱର' ଆଦି ପ୍ରାର୍ଥନା କରନ୍ତି ।

ନବକୃଷ୍ଣ ଚୌଧୁରୀଙ୍କ ପ୍ରେରଣାରେ ପାର୍ବତୀଚରଣ ମହାନ୍ତି ଓ ସୁଲତାନ୍ ଖାଁ ଜଗତ୍‌ସିଂହପୁରରେ ଏକ ପାଠାଗାର ପ୍ରତିଷ୍ଠା କରିବା ଦିଗରେ ତତ୍ପର ହୋଇଉଠିଲେ । ନିବେଦନ ପତ୍ର ଛପାଯାଇ ଚାନ୍ଦା ଆଦାୟର ଉଦ୍ୟମ ହୋଇଥିଲା । ଘରନିର୍ମାଣ ବି ଆରମ୍ଭ ହୋଇଯାଇଥିଲା, କିନ୍ତୁ ଆଶାନୁରୂପ ଚାନ୍ଦା ନମିଳିବାରୁ ଓ ପାର୍ବତୀବାବୁ ଅନ୍ୟତ୍ର ଚାଲିଯିବାରୁ ପାଠାଗାର ଯୋଜନା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ନବବାବୁ ଅଳକା ନଈକୂଳକୁ ପିଲାମାନଙ୍କୁ ନେଇ ଦେଶବିଦେଶର ନାନା କଥା ଓ ଖବର, ଇଂରାଜୀ ଖବରକାଗଜ ପଢ଼ି ଶୁଣାନ୍ତି ଏବଂ ସେ ସମ୍ପର୍କରେ ନାନା କଥା କହନ୍ତି । ଦିନେ ସେ ପ୍ରସ୍ତାବ କଲେ ଯେ ଏକ ହାତଲେଖା ପତ୍ରିକା ବାହାରୁ ଓ ତା'ର ନାମ ରହୁ 'ଅଳକା' । ଇତିପୂର୍ବରୁ ଉଦୟନାଥ ଷଡ଼ଙ୍ଗୀ ଲୁଚାଇଲୁଚାଇ 'ଅଳକା' ନାମରେ ଏକ କବିତା ଲେଖିଥାନ୍ତି । ସେ ସମୟରେ କବିତା ଲେଖା ଥିଲା ଏକ ସରମର କଥା । ଜାଣିଲେ ଅନ୍ୟମାନେ 'କବି', 'କୋବି' ଆଦି କହି ଥଟ୍ଟା କରିବେ ବୋଲି ସେ ଅତି ଗୁପ୍ତରେ ତାହାକୁ ନିଜ ପେଟରାରେ ଲୁଚାଇ ରଖିଥାନ୍ତି । ଦିନେ ନବବାବୁ ଉଦୟନାଥ ଷଡ଼ଙ୍ଗୀଙ୍କୁ ଡକାଇପଠାଇଲେ । ଉଦୟନାଥବାବୁ ଶଙ୍କିତ ହୋଇ ଦୂରରୁ ଦେଖିଲେ ନବବାବୁଙ୍କ ହାତରେ ତାଙ୍କର 'ଅଳକା' କବିତାଟିକୁ । ସେଇଟିକୁ ତାଙ୍କ ସାଙ୍ଗ ଲକ୍ଷ୍ମୀଧର

ପଣ୍ଡା ତାଙ୍କ ଅଗୋଚରରେ ଆଣି ନବବାବୁଙ୍କୁ ଦେଇଥାନ୍ତି । କବିତାଟି ପଢ଼ି ନବବାବୁ ଖୁବ୍ ଖୁସି ହୋଇ ଉଦୟନାଥବାବୁଙ୍କୁ ପ୍ରଶଂସା କଲେ । ସେହି କବିତାଟି ହାତଲେଖା 'ଅଳକା' ପତ୍ରିକାରେ ବାହାରିଲା । ୮୮ ବର୍ଷ ବୟସର ଉଦୟନାଥ ଷଡ଼ଙ୍ଗୀ ତାଙ୍କ ରୋଗଶଯ୍ୟାରେ କବିତାଟିର ପ୍ରଥମ ପଦଟି ମନେପକାଇ ଏହି ଲେଖକ ଆଗରେ ଗୋଟିଏ ପଦ ଆବୃତ୍ତି କରିଥିଲେ–

''କାହିଁ ତୋ'ର ସେହି ଗୌରବ
ରଉରବ ତୂ ଏବେ
'ଅଳକା' ଥିଲୁ ତୂ ଅଳକା
ହରିପୁରର ଯେବେ ।''

ସେହି ବର୍ଷ ଅଳକାଶ୍ରମର ବାର୍ଷିକ ଉତ୍ସବର ପୁରୋଧା ହୋଇ ଆସିଥିଲେ ଗୋପବନ୍ଧୁ ଦାସ । ତାଙ୍କ ସଙ୍ଗରେ ଆସିଥିବା ପଣ୍ଡିତ କୃପାସିନ୍ଧୁ ମିଶ୍ର ହାତଲେଖା 'ଅଳକା' ପତ୍ରିକାଟିର ଉନ୍ମୋଚନ କରି ଲେଖା ଓ ଛବିଗୁଡ଼ିକର ଉଚ୍ଚ ପ୍ରଶଂସା କରିଥିଲେ । ଉତ୍ସବକୁ ନିମନ୍ତ୍ରିତ ହୋଇ ଆସିଥିବା ଲକ୍ଷ୍ମୀନାରାୟଣ ସାହୁ କବିତାଟିକୁ ନେଇ ତାଙ୍କ ସମ୍ପାଦିତ 'ସହକାର'ରେ ପୂରାପୂରି ପ୍ରକାଶ କରିଦେଇଥିଲେ ।

ସେହିଭଳି 'ଅଳକା' ନାମରେ ଅନ୍ୟ ଏକ ଚମତ୍କାର କବିତା ଲେଖିଥିଲେ ରାମକୃଷ୍ଣ ନନ୍ଦ । ତାଙ୍କ ହାତଲେଖା ଚମତ୍କାର ଥିବାରୁ ସେ ପତ୍ରିକାର ମୂଳରୁ ଶେଷ ପର୍ଯ୍ୟନ୍ତ ସବୁତକ ଉତାରିଥିଲେ ଏବଂ ମଲାଟକୁ ନିଜ ହାତରେ ଚିତ୍ର କରି ଆକର୍ଷଣୀୟ କରିପାରିଥିଲେ । ସେହି ହାତଲେଖା ପତ୍ରିକା ବାଳିକା ଅନ୍ନପୂର୍ଣ୍ଣାଙ୍କ ମନରେ ଏଭଳି ଗଭୀର ରେଖାପାତ କରିଥିଲା ଯେ ୭୦ ବର୍ଷ ପରେ ବି ଅନ୍ନପୂର୍ଣ୍ଣା ମହାରଣା ତା'ର କେତେକ ଅଂଶ ଲେଖକ ଆଗରେ ଗାଇଯାଇଥିଲେ । ସେତକ ଏହିଭଳି–

ସୁଖ ସ୍ୱପ୍ନ ତା'ର ଯାଇଛି ଭାଜି,
ଅପେୟ ଆଜି ଅଳକା ପାଣି,
ଅଳକାର ସେହି ନବୀନ ଗାଥା
ପରାଣ ବ୍ୟଥା, ଦିଅଇ ଆଣି ।

ଦିନ ଥିଲା ଯେବେ ଅଳକା ବାଳୀ
ଭଉଁରି ଖେଳି, ସଙ୍ଗିନୀ ମେଳେ,
ଅତଡ଼ା ଖାଇ, ଭୀଷଣ ବେଗେ
ଧାଉଁଥିଲା ସେ ସାଗର କୋଳେ ।

ସେହି ଅଳକାରେ ବଣିକ ତରୀ
ବାହି ନାଉରି, ଲଗାଏ ଗାନ୍,
ଅଳକାକୁ ମୋର ମୁକ୍ତ କର,
ମୁକ୍ତ କର, ହେ ଭଗବାନ !

ଅଳକାରେ ଦିନେ ଇଂରେଜ ତରୀ,
ବଜାଇ ଭେରୀ, ଅଇଲା ପଶି
ଶୁଣିବା କଥା, ସେହି ଦିନଠାରୁ
ସ୍ୱାଧୀନତା ତା'ର ଯାଇଛି ଖସି ।

ଯେଉଁ ଅଳକା ଏବେ ଏକ ଦଳପୂର୍ଣ୍ଣ ନାଳ, ପୂର୍ବେ ସେଇଟି ସୁନାବ୍ୟା ଥିଲା ଓ ପର୍ତ୍ତୁଗୀଜ ଏବଂ ଇଂରେଜ ନାବିକମାନେ ସେହି ନଦୀରେ ହରିହରପୁର (ଜଗତସିଂହପୁରର ପୂର୍ବ ନାମ) ଆସୁଥିଲେ । ଜଗତସିଂହପୁର ପାଖ ଫିରିଙ୍ଗି କୁଦ ତା'ର ସାକ୍ଷୀ ହୋଇ ରହିଛି । ମହାନଦୀରେ ଆନିକଟ ହୋଇ ତାଳଦଣ୍ଡା କେନାଲ ମାଛଗାଁ କେନାଲ ହେବାପରେ ଉକ୍ତ ନଦୀଟିର ଗତିପଥ ରୁଦ୍ଧ ହୋଇ ତାହା କ୍ରମେ ପୋତିହୋଇଗଲା । ଦୁଇ କବି ସେଇ ଅଳକାର ବିଲୁପ୍ତ ଗରିମା ସ୍ମରଣ କରି ଏହି କବିତା ଦୁଇଟି ଲେଖିଛନ୍ତି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ୭୫ ବର୍ଷ ତଳେ ଓଡ଼ିଆରେ ମାତ୍ର ତିନିଟି ପତ୍ରିକା ଥିଲା । ସେ ସମୟରେ ୬ଷ୍ଠ ଶ୍ରେଣୀରୁ ପଢ଼ା ଛାଡ଼ି ଆସିଥିବା ଉଦୟନାଥ ଷଡ଼ଙ୍ଗୀ ଓ ରାମକୃଷ୍ଣ ନନ୍ଦ ଆଦିଙ୍କ କବିତା ଗୋପବନ୍ଧୁ ଦାସ, କୃପାସିନ୍ଧୁ ମିଶ୍ର ଓ ଲକ୍ଷ୍ମୀନାରାୟଣ ସାହୁଙ୍କ ଦ୍ୱାରା ଆଦୃତ ହେବା, ଲେଖକମାନଙ୍କୁ କେତେ ଆନନ୍ଦ ଓ ପ୍ରେରଣା ଦେଇନଥିବ !

ଏହି ଘଟଣାର ୬୦ ବର୍ଷ ପରେ ଥରେ ଉଦୟନାଥ ଷଡ଼ଙ୍ଗୀ ଅନୁଗୋଳ ବାଜି ରାଉତ ଛାତ୍ରାବାସର ବାର୍ଷିକ ଉତ୍ସବର ମୁଖ୍ୟ ଅତିଥି ହୋଇ ଯାଇଥାନ୍ତି । ସେତେବେଳକୁ ନବବାବୁ ଅସୁସ୍ଥ । ଜରୁରୀକାଳୀନ ଅବସ୍ଥାରେ ବନ୍ଦୀ ହୋଇ ସେ ରୋଗାକ୍ରାନ୍ତ ହୋଇଥାନ୍ତି । ଚାଲିବାର ଓ ଦେଖିବାର ଶକ୍ତି କମିଯାଇଥାଏ । ଉଦୟନାଥବାବୁ ଆସିଛନ୍ତି ଶୁଣି ସେ ଆଶ୍ରମର ଅତିଥିଭବନ ପର୍ଯ୍ୟନ୍ତ ଆସୁଥାନ୍ତି । ଉଦୟନାଥବାବୁ ତାହା ଦେଖି କିଛି ବାଟ ଆଗେଇ ଚାଲିଗଲେ, କାହିଁକି ଏତେ କଷ୍ଟ କରି ଆସିଲେ ବୋଲି କହିଲେ । ବହୁଦିନ ପରେ ଦେଖା ବୋଲି କହି ନବବାବୁ ତାଙ୍କୁ କୁଣ୍ଢେଇପକେଇଲେ । ଉପରଓଳି ସଭା ହେଲା । ପ୍ରଧାନ ଅତିଥି ବାଜିରାଉତ ଛାତ୍ରାବାସର ସେ ବର୍ଷର ହାତଲେଖା ପତ୍ରିକା 'ବାଜି'ର ଉନ୍ମୋଚନ କରି ୬୦ ବର୍ଷ ତଳ ଅଳକାଶ୍ରମର ସ୍ମୃତିଚାରଣ କରିଥିଲେ । 'ଅଳକା' ପତ୍ରିକାରେ ତାଙ୍କ କବିତା କିଭଳି ପ୍ରଶଂସିତ ହୋଇ 'ସହକାର' ଭଳି ସେ ସମୟର ବିଖ୍ୟାତ ପତ୍ରିକାରେ ସ୍ଥାନ ପାଇଥିଲା,

ତାହା ବର୍ଣ୍ଣନା କରିଥିଲେ । ସେହି ସୁଦୂର ଅତୀତରେ, ୬ଷ୍ଠ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିବା କିଶୋରର କବିତା ଛାପାପତ୍ରିକାରେ ଦେଖି ଉଦୟନାଥବାବୁଙ୍କର ରୋମାଞ୍ଚ ଘଟିଥିଲା । ଏହି ଘଟଣା ବର୍ଣ୍ଣନା କରିବା ସଙ୍ଗେସଙ୍ଗେ ଉଦୟନାଥବାବୁ କହିଥିଲେ ଯେ ସେ ଯଦି ପରବର୍ତ୍ତୀ କାଳରେ ଜଣେ ଲେଖକ ଓ କବି ଭାବରେ ଜଣାଶୁଣା ହେଲେ, ତାର ମୂଳରେ ଥିଲା ନବକୃଷ୍ଣ ଚୌଧୁରୀଙ୍କ ପ୍ରେରଣା ଓ ପ୍ରୋତ୍ସାହନ ।

ଅଳକାଶ୍ରମରୁ ଆସି, କିଛି ବର୍ଷ ପରେ, ନବବାବୁ ତରିକୁନ୍ଦରେ ତାଙ୍କର ଥିବା ଏକ ଜମିରେ ଫାର୍ମ କଲେ । ସେହିଠାରୁ ସେ ସମାଜବାଦୀ ଦଳର ମୁଖପତ୍ର 'ସାରଥି' ପତ୍ରିକା ସମ୍ପାଦନ କରୁଥିଲେ । ତାହା ଅବଶ୍ୟ ବେଶିଦିନ ତିଷ୍ଠିନଥିଲା । ପରବର୍ଷ ସାମ୍ୟବାଦୀମାନଙ୍କ ଆନୁକୂଲ୍ୟରେ 'ନବଯୁଗ ସାହିତ୍ୟ ସଂସଦ' ପ୍ରତିଷ୍ଠିତ ହେବାରେ ନବବାବୁଙ୍କର ପ୍ରୋତ୍ସାହନ ବି ଥିଲା । ହେଲେ, ଲେଖାଲେଖି ପ୍ରତି ତାଙ୍କର ଆଗ୍ରହ ଓ ଧୈର୍ଯ୍ୟ ନଥିଲା । ସେଥିଲାଗି ତାଙ୍କ ଲେଖା ଅତି ବିରଳ । ସବୁଜ ସାହିତ୍ୟ ଯୁଗର ଅନ୍ୟତମ ସ୍ରଷ୍ଟା ଓ ପ୍ରତିଷ୍ଠିତ ସାହିତ୍ୟିକ କାଳିନ୍ଦୀଚରଣ ପାଣିଗ୍ରାହୀ ତାଙ୍କ ଆତ୍ମଜୀବନୀର ୫୨୬ ପୃଷ୍ଠାରେ ପ୍ରକାଶ କରିଛନ୍ତି, ''ଏଥି ପୂର୍ବରୁ ନବବାବୁ ଯୁବନେତା, ଦାର୍ଶନିକ, ସାହିତ୍ୟିକ ଓ ଚିନ୍ତାନାୟକ ଭାବରେ ଜଣାଶୁଣା ହୋଇଥାନ୍ତି ।'' ନବବାବୁଙ୍କୁ କାଳିନ୍ଦୀ ପାଣିଗ୍ରାହୀ ସାହିତ୍ୟିକ କହିବା ଲେଖକ ସମେତ ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଲାଗେ । ନବଯୁଗ ସାହିତ୍ୟ ସଂସଦ ତରଫରୁ ପ୍ରକାଶିତ ହେଉଥିବା 'ଆଧୁନିକ' ପତ୍ରିକାରେ ସମ୍ପାଦକଙ୍କ ଅତି ତାଗଦାରେ ନବକୃଷ୍ଣ ଚୌଧୁରୀଙ୍କ ଦୁଇଟି ଲେଖା ପ୍ରକାଶିତ ହୋଇଥିଲା । ଏହି ସାର୍ଥକ ଲେଖା ଦୁଇଟି ବି ତାଙ୍କର ଅତି ପ୍ରିୟ ଭଗବତୀ ପାଣିଗ୍ରାହୀଙ୍କ ଏକାନ୍ତ ଅନୁରୋଧ ଯୋଗୁଁ ସମ୍ଭବପର ହୋଇଥିଲା । ୧୯୩୬ ଜୁନ୍ ସଂଖ୍ୟା ଆଧୁନିକରେ 'ବାଦାନୁବାଦ' ଶୀର୍ଷକ ଏକ ପ୍ରବନ୍ଧ ପ୍ରକାଶିତ ହେବା ପରେ ଜୁଲାଇ ସଂଖ୍ୟାରେ ବୈଜ୍ଞାନିକ ସାମ୍ୟବାଦ (୧) ବାହାରିଲା । କିନ୍ତୁ ବୈଜ୍ଞାନିକ ସାମ୍ୟବାଦର ପରବର୍ତ୍ତୀ ଅନୁକ୍ରମ ଆଉ ଲେଖକଙ୍କ କଲମରୁ ପ୍ରକାଶ ପାଇପାରିଲା ନାହିଁ । ଏହି 'ବାଦାନୁବାଦ' ଲେଖାର ପ୍ରାରମ୍ଭରେ ଲେଖା ପ୍ରତି ତାଙ୍କର ବିମୁଖତାର କାରଣ ସେ ଦର୍ଶାଇଛନ୍ତି । ଏହି ଲେଖାର ଶେଷ ପାରାଗ୍ରାଫ୍‌ରେ ଅଛି, ''କମ୍ରେଡ୍ ସମ୍ପାଦକ, କ୍ଷମା କରିବେ । ଆହୁରି କେତେକ ବିଷୟ ଏ ଚିଠିରେ ଲେଖିବାର ଇଚ୍ଛା ଥିଲେ ମଧ୍ୟ ଲେଖିବାର ସମୟ ନାହିଁ । ସାହିତ୍ୟ କ୍ଷେତ୍ରରେ ''ଆଧୁନିକ'' ବିପ୍ଳବ ଆଣିଛି । ତା'ଠାରୁ ଏକ ସଙ୍ଗୀନ୍ ବିପ୍ଳବ ରାଜନୀତି ଓ ଅର୍ଥନୀତି କ୍ଷେତ୍ରରେ ସମାସନ୍ନ । ବର୍ତ୍ତମାନ ସେଆଡ଼େ ମନ ନେବାକୁ ହେବ ।'' ନବକୃଷ୍ଣ ଚୌଧୁରୀଙ୍କ ଭଳି ରସଗ୍ରାହକ ଓ ଭାବଗ୍ରାହୀ, ସାହିତ୍ୟ ସୃଷ୍ଟି ଦିଗରେ କାହିଁକି ନୀରବ ରହିଲେ, ପୂର୍ବୋକ୍ତ ଦୁଇଟି ବାକ୍ୟରୁ ତା'ର କାରଣ ସୁସ୍ପଷ୍ଟ । ନବକୃଷ୍ଣ ଚୌଧୁରୀଙ୍କର ଲେଖା ବହୁତ କମ୍ ଉପଲବ୍ଧ ହେଉଥିବାରୁ ସମ୍ପୂର୍ଣ୍ଣ ଲେଖାଟି ନିମ୍ନରେ ପ୍ରଦତ୍ତ ହେଲା ।

**ବାଦାନୁବାଦ :**

କମ୍ରେଡ୍ ସମ୍ପାଦକ,

''ଆଧୁନିକ'' ସକାଶେ ଲେଖା ଦେବା ପାଇଁ ତମର ତାଗଦା ଉପରେ ତାଗଦା । ମାସିକପତ୍ରରେ ମୋ ଲେଖା ବାହାରିବ ଏ ଗୌରବର ଲୋଭ ମଧ ଭିତରୁ ମତେ ଠେଲା ଦେଉଛି । କିନ୍ତୁ ତମର ଓ ମୋର ନସୀବ୍ ଖରାପ । ଲେଖି ବସିଲାକ୍ଷଣି ମୋ ଭିତରେ ଯେଉଁ ଖରଦୃଷ୍ଟି ସମାଲୋଚକ ପୁରୁଷଟି ଅଛନ୍ତି ସେ ବିଘ୍ନ ପହଞ୍ଚଉଛନ୍ତି । ମୋ ଲେଖା ତମର ଓ ଅନ୍ୟ ପାଠକମାନଙ୍କ ମନକୁ ପାଇବ କି ନାହିଁ ତା ଜାଣିବା ପୂର୍ବରୁ ମୋରିଠାରୁ କାଟ ଖାଇ ଅଳିଆ ଟୋକେଇକୁ ଯାଉଛି । ଏପରି ଅବସ୍ଥାରେ ଉପାୟ କ'ଣ ? ବହୁତ ଭାବିଚିନ୍ତି ତମକୁ ଖଣ୍ଡେ ଲମ୍ବାଚିଠି ଲେଖି ସନ୍ତୁଷ୍ଟ କରିବାକୁ ଠିକ୍ କରିଛି ।

ପ୍ରଥମ ସଂଖ୍ୟା 'ଆଧୁନିକ' ପଢ଼ି ସାଧାରଣ ପାଠକଙ୍କ ମନରେ କି ପ୍ରତିକ୍ରିୟା ହେଉଛି ସେଟା ଜାଣିବା ପାଇଁ ''ଆଧୁନିକ''ର ବନ୍ଧୁ ଭାବରେ ମୁଁ ଟିକିଏ ଚେଷ୍ଟା କରିଥିଲି । ଭଗବାନ ବିଶ୍ୱାସଟା ମଣିଷ ମନରେ ସବୁଠାରୁ ବଦ୍ଧମୂଳ ଓ ଗଭୀର ସଂସ୍କାର ବୋଲି ଅନେକ ସମୟରେ ଧରି ନିଆଯାଇଥାଏ । ତା' ହୋଇଥିଲେ କାଳିନ୍ଦୀବାବୁଙ୍କ ''ବିଦାୟ ଭଗବାନ'' କବିତା ଉପରେ ସବୁଠାରୁ ବେଶି କୋପଦୃଷ୍ଟି ପଡ଼ିଥାନ୍ତା । କିନ୍ତୁ ବାସ୍ତବରେ ତା ହୋଇନାହିଁ । ବିବାହ ସମସ୍ୟା ପ୍ରବନ୍ଧଟି ହିଁ ସବୁଠାରୁ ବେଶି ଚାଞ୍ଚଲ୍ୟ ସୃଷ୍ଟି କରିଛି । ଏଥିରୁ ଅନୁମାନ ହୁଏ, ଭଗବାନ ବିଶ୍ୱାସଠାରୁ ସଭ୍ୟ ମଣିଷର ଯୌନ ସଂସ୍କାରଟା ବେଶି ବଦ୍ଧମୂଳ । ଫ୍ରଏଡ୍ ଆଦି ଆଧୁନିକ ମନସ୍ତତ୍ତ୍ୱବିଦ୍‌ମାନେ କହନ୍ତି ଯେ ଯୌନ ସଂସ୍କାରଟା ବେଶି ବଦ୍ଧମୂଳ ଓ ଯୌନବୃତ୍ତି ମଣିଷର ସବୁଠାରୁ ଶକ୍ତିଶାଳୀ ବୃତ୍ତି । ଆଧୁନିକ ମନସ୍ତତ୍ତ୍ୱର ଆଲୋଚନା ଯେ କରିନାହିଁ, ସେ ଆଦୌ କଳ୍ପନା କରିପାରିବ ନାହିଁ, ଏହି ଯୌନବୃତ୍ତି କେଡ଼େ ଶକ୍ତିଶାଳୀ । କାବ୍ୟ, ଇତିହାସ, ପୁରାଣଠାରୁ ଆରମ୍ଭ କରି ସରକାରୀ ଓ ଜମିଦାରି କଚିରି ପର୍ଯ୍ୟନ୍ତ ନାନାଠାରେ ଏହି ଯୌନବୃତ୍ତି ମଣିଷର ବ୍ୟକ୍ତିଗତ ତଥା ସାମାଜିକ ଜୀବନରେ କିପରି ଉତ୍ପାତ ଲଗାଇଛି, ତା'ର ଚିତ୍ର ଦେଖିବାକୁ ମିଳେ । ଏହାଛଡ଼ା ପ୍ରତ୍ୟେକ ବ୍ୟକ୍ତିର ବହୁ ଯୌନ ଅଭିଜ୍ଞତା ରହିଛି ଯାହାକି ଅନ୍ୟ ନିକଟରେ ଗୁପ୍ତ ହେଲେହେଁ ନିଜ ପାଖରେ ନୁହେଁ । ତଥାପି ଏ ସବୁକୁ ମିଶାଇଲେ ମଧ ଯୌନବୃତ୍ତିର ଶକ୍ତିର ଶହେ ଭାଗରୁ ଭାଗକର ସୁଦ୍ଧା ପରିଚୟ ମିଳେନାହିଁ । ଆଧୁନିକ ମନୋବିଜ୍ଞାନ ଏ କଥା ନିଃସନ୍ଦେହ ଭାବରେ ପ୍ରମାଣ କରିଦେଇଛି ଯେ, ମଣିଷର ଗୋଟିଏ ଅଚେତନ ସତ୍ତା ଅଛି । ତା'ର ତା ଜୀବନ ଉପରେ ସଚେତନ ମନଠାରୁ ଢେର୍ ବେଶି ପ୍ରଭାବ । ଯୌନବୃତ୍ତିର ଅସଲ କର୍ମକ୍ଷେତ୍ର ଏହି ଅଚେତନ ରାଜ୍ୟରେ । ମଣିଷ ତା'ର ବୁଦ୍ଧି ବିବେକ ଓ

ସଂଯମ ଶକ୍ତି ପ୍ରୟୋଗ କରି ତା'ର ବ୍ୟକ୍ତିଗତ ଓ ସାମାଜିକ ଜୀବନକୁ ନିୟନ୍ତ୍ରିତ କରିବାକୁ ହଜାର ଚେଷ୍ଟା କରି ସଫଳ ହୋଇପାରୁନାହିଁ ଏହି ''ଅଚେତନ''ର ପ୍ରଭାବ ଯୋଗୁଁ ।

ରସାୟନବିଜ୍ଞାନ ତତ୍ତ୍ୱ ନଜାଣି କୌଣସି ରାସାୟନିକ ଏକ୍ସ୍‌ପେରିମେଣ୍ଟ୍ କରିବା ଯେପରି ବିଡ଼ମ୍ବନା, ସେହିପରି ମଣିଷର ସଚେତନ ଓ ଅଚେତନ ମନର ତତ୍ତ୍ୱ ନ ଜାଣି ଜୀବନକୁ ନିୟନ୍ତ୍ରଣ କରିବାକୁ ଚେଷ୍ଟା କରିବା–ସମାଜ ତଥା ବ୍ୟକ୍ତି ପାଇଁ ନୈତିକ ବିଧିନିଷେଧ ଗଢ଼ିବା–ସେହିପରି ବିଡ଼ମ୍ବନା । ଆଦିମ କାଳରୁ ଆଜି ପର୍ଯ୍ୟନ୍ତ ମାନବ ସମାଜର ଇତିହାସ ଆଲୋଚନା କଲେ ଏବଂ ଏହି ବର୍ତ୍ତମାନ ଯୁଗରେ ମଧ୍ୟ ବିଭିନ୍ନ 'ସଭ୍ୟ' ଓ 'ଅସଭ୍ୟ' ଜାତିର ସାମାଜିକ ଓ ନୈତିକ ବିଧିବିଧାନର ବୈଚିତ୍ର୍ୟ ଲକ୍ଷ୍ୟ କଲେ ଖୁବ୍ ପରିଷ୍କାର ଜଣାପଡ଼େ, ମଣିଷ କେତେ ପ୍ରକାରର ଏକ୍ସ୍‌ପେରିମେଣ୍ଟ୍ କରିଛି ଓ କରୁଛି । କୃଷିବିଜ୍ଞାନ ନଜାଣି ଆମ ଗାଁର ଚାଷୀମାନଙ୍କର ବେଶି ଫଳ ଫଳେଇବା ପାଇଁ ଅଷ୍ଟଶମ୍ଭୁଙ୍କ ପାଦୁକ ଆଣି ଗଛରେ ଛିଞ୍ଚିବା ଯାହା, ମନୋବିଜ୍ଞାନ ଓ ସମାଜବିଜ୍ଞାନ ନ ଜାଣି ବ୍ୟକ୍ତିଗତ ଓ ସାମାଜିକ ଜୀବନକୁ ସୁସ୍ଥ ଓ ଉନ୍ନତ କରିବାପାଇଁ ଆମର ଅଧିକାଂଶ ବିଧିନିଷେଧ ଓ ଧାରଣା ମଧ୍ୟ ସେୟା । ବିବାହ ଗୋଟିଏ ଅତି ପ୍ରାଚୀନ ଓ ଆଦିମ ଯୌନ ବିଧିନିଷେଧମୂଳକ ଅନୁଷ୍ଠାନ । ଶ୍ରୀ ଉହଳୀୟ ''ଆଧୁନିକ''ରେ ଏହି ଅନୁଷ୍ଠାନଟିକୁ ବିଜ୍ଞାନର ଆଲୋକରେ ପରୀକ୍ଷା କରିବାକୁ ଚେଷ୍ଟା କରିଛନ୍ତି । କିନ୍ତୁ ତାଙ୍କର ଲେଖାଟି ଅତି ସଂକ୍ଷିପ୍ତ ହୋଇଥିବାରୁ ସେ ପାଠକଙ୍କ ସଂସ୍କାରରେ କେବଳ ଆଘାତ କରିବାକୁ ସମର୍ଥ ହୋଇଛନ୍ତି । ତେବେ ଏହି ଆଘାତ ଦେବା ଫଳରେ ଯଦି ଏ ବିଷୟରେ ବିଶଦ ଆଲୋଚନା ହୁଏ ତାହାହେଲେ ଭଲ ହେବ । କିନ୍ତୁ ମୁଁ ଦେଖୁଛି ଯେଉଁମାନେ ଶ୍ରୀ ଉହଳୀୟଙ୍କ ଲେଖାଟିକୁ ନିନ୍ଦା କରୁଛନ୍ତି, ସେମାନେ କେବଳ ନାକ ଟେକିବା ଛଡ଼ା ଆଉ କିଛି କରିବାକୁ ନାରାଜ । ଏପରି ଅବସ୍ଥାରେ ଶ୍ରୀ ଉହଳୀୟଙ୍କୁ ଅନୁରୋଧ, ସମାଜ ମଧ୍ୟରେ ଏ ବିଷୟରେ ବୈଜ୍ଞାନିକ ଚିନ୍ତା ଓ ବିଜ୍ଞାନ-ସମ୍ମତ ଧାରଣା ଯେପରି ବାସ୍ତବରେ ପ୍ରସାର ହେବ, ସେ ଉଦ୍ଦେଶ୍ୟରେ ଧାରାବାହିକ ଭାବରେ ଓ ବିଶଦ ଭାବରେ ବିବାହ ସମସ୍ୟା ସମ୍ବନ୍ଧରେ ଲେଖା ପ୍ରକାଶ କରନ୍ତୁ । ମୋର ମନେହୁଏ, ଦୁନିଆର ବିଭିନ୍ନ ଦେଶରେ ବିଭିନ୍ନ କାଳରେ ଯୌନ ମିଳନ ସମ୍ବନ୍ଧରେ କିପରି ବିଭିନ୍ନ ପ୍ରକାର ବିଧିନିଷେଧ ଓ ଧାରଣା ଥିଲା ଓ ଅଛି, ସେ ସମ୍ବନ୍ଧରେ କୌଣସି ମତାମତ ପ୍ରକାଶ ନ କରି କେବଳ ତାହାର ବର୍ଣ୍ଣନା ପ୍ରକାଶ କଲେ ପାଠକଙ୍କ ଦୃଷ୍ଟିର ସଂକୀର୍ଣ୍ଣତା ବହୁ ପରିମାଣରେ ଦୂର ହୋଇଯିବ । ଯାହା ଅଛି ତାହା ଦୁନିଆସାରା ଚିରକାଳ ଥିଲା, ଏହି ଧାରଣା ଦୂର ନ ହେବାଯାଏ, ଯାହା ଅଛି ତାହା ରହିବା ଉଚିତ କି ନା ଏକଥା ବିଚାର କରିବାପାଇଁ ଆମର ମନ ପ୍ରସ୍ତୁତ ହୁଏନାହିଁ ।

ବିବାହବନ୍ଧନରୁ ମୁକ୍ତ ହୋଇ ଯୌନ ସ୍ୱାଧୀନତା ଭୋଗ କରିବାପାଇଁ ଶ୍ରୀ ଉହଳୀୟ ନରନାରୀଙ୍କୁ ଆହ୍ୱାନ କରିଛନ୍ତି । ଯୌନ ସ୍ୱାଧୀନତା କଥାଟା ଶୁଣିଲାକ୍ଷଣି ହଠାତ୍ ଗୋଟିଏ

ଉଚ୍ଛୃଙ୍ଖଳ ଇନ୍ଦ୍ରିୟ ସମ୍ଭୋଗ ଓ ବ୍ୟଭିଚାରର ଚିତ୍ର ଆମ ଆଖିଆଗରେ ନାଚି ଯାଉଛି । ଏଟା ଆମର ରୁଗ୍‌ଣ ଓ ବିକାରଗ୍ରସ୍ତ ମାନସିକ ଅବସ୍ଥାର ଲକ୍ଷଣ । ଅସ୍ୱାଭାବିକ ଓ ଅସ୍ୱାସ୍ଥ୍ୟକର ସାମାଜିକ ବିଧିନିଷେଧ ଏପରି ମାନସିକ ଅବସ୍ଥାର ହେତୁ । ସେଦିନ ଜଣେ ଜାପାନ ଫେରନ୍ତା ବନ୍ଧୁଙ୍କଠାରୁ ଶୁଣୁଥିଲି ଯେ, ଜାପାନରେ ଅନେକ ପୁରୁଷ ସ୍ତ୍ରୀ ଉଲଗ୍ନ ହୋଇ ଏକା ଜାଗାରେ ଗାଧୋଇବାର ପ୍ରଥା ବହୁ କାଳରୁ ଥିଲା । ଏବେ ୟୁରୋପୀୟଙ୍କ ଶିକ୍ଷାରେ ସେମାନେ ଏ ପ୍ରଥାକୁ ଟିକିଏ ବଦଳେଇ ଦେଇଛନ୍ତି । ପୁରୁଷ ସ୍ତ୍ରୀ ଏକା ଜାଗାରେ ଉଲଗ୍ନ ହୋଇ ଗାଧୋଉଛନ୍ତି, ମଝିରେ ଗୋଟିଏ ପରଦା ରହୁଛି, କିନ୍ତୁ ପାଣିରୁ ବାହାରି ଲୁଗା ପିନ୍ଧିବାକୁ ଗଲାବେଳେ ପରସ୍ପର ସାମନାରେ ଯିବାଆସିବା କରୁଛନ୍ତି । ଏସବୁ କଥା କଳ୍ପନା କଲାକ୍ଷଣି ଆମର ଲାଳସାପୂର୍ଣ୍ଣ ମନରେ ବିକାର ଆସୁଛି; କିନ୍ତୁ ମୋର ବନ୍ଧୁ କହୁଥିଲେ, କୌଣସି ଜାପାନୀର ମନରେ ଏପରି ବିକାର ସେ ଲକ୍ଷ୍ୟ କରି ନାହାନ୍ତି । ସୋଭିଏଟ୍ ରୁଷିଆରେ ଯୌନ ସ୍ୱାଧୀନତାର ପରୀକ୍ଷା ଚାଲିଛି ବୋଲି ଶ୍ରୀ ଉତ୍କଳୀୟ ଲେଖିଛନ୍ତି । ଏଥିରୁ କେହି ଯେପରି ମନେ ନ କରନ୍ତି ସେଠାକାର ସ୍ତ୍ରୀ ପୁରୁଷମାନେ ଯଥେଚ୍ଛା ଇନ୍ଦ୍ରିୟର ସମ୍ଭୋଗରେ ଉନ୍ମତ୍ତ ରହିଛନ୍ତି । ଇଂଲଣ୍ଡ, ଆମେରିକା ଓ ୟୁରୋପୀୟ ଦର୍ଶକମାନେ ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି, ସୋଭିଏଟ ରୁଷର ସାଧାରଣ ଯୌନ ଜୀବନ ଅନ୍ୟ ଦେଶ ତୁଳନାରେ ସୁରୁଚିସମ୍ପନ୍ନ ଓ ଉନ୍ନତ । ତାର ଗୋଟିଏ କାରଣ, ରୁଷ ନାରୀ ଯୌନ ସ୍ୱାଧୀନତା ସଙ୍ଗେସଙ୍ଗେ ଆର୍ଥିକ ସ୍ୱାଧୀନତା ଲାଭ କରିଛି । ସମାଜର ବିବିଧ ସମସ୍ୟା ସମାଧାନର ଦାୟିତ୍ୱ ସେ ପୁରୁଷ ସହିତ ସମାନ ଭାବରେ ମୁଣ୍ଡେଇଛି । ସେ ନିଜକୁ ପୁରୁଷର ଭୋଗର ସାମଗ୍ରୀ ବୋଲି ଭାବିବାକୁ ଘୃଣା କରେ ଏବଂ ସେଥିସକାଶେ ପୁରୁଷର ଯୌନ ବାସନା ଜାଗ୍ରତ କରାଇଲା ଭଳି ବେଶଭୂଷା ବା ଭାବଭଙ୍ଗୀ ସେ କରେ ନାହିଁ । ଆମ ଦେଶ ପବିତ୍ର ଆଧ୍ୟାତ୍ମିକ ଦେଶ ବୋଲି ଏବେ ସୁଦ୍ଧା କେହିକେହି କହିଥାଆନ୍ତି । କିନ୍ତୁ କାଳିଦାସଙ୍କ ଠାରୁ ଆରମ୍ଭ କରି ଉପେନ୍ଦ୍ର ଭଞ୍ଜଙ୍କ ପର୍ଯ୍ୟନ୍ତ ଆମ ଦେଶର ପ୍ରତ୍ୟେକ କବି ନାରୀକୁ ପୁରୁଷର ସମ୍ଭୋଗର ସାମଗ୍ରୀ ଛଡ଼ା ଅନ୍ୟ କିଛି ଭାବରେ ଚିତ୍ରଣ କରିନାହାନ୍ତି । ସମସାମୟିକ ଭାରତୀୟ ଓ ଉତ୍କଳୀୟ ସମାଜର ଚିତ୍ର କାବ୍ୟମାନଙ୍କରୁ ମିଳେ । କୃଷ୍ଣ ଗୋପଲୀଳାର ଆମେ ଆଧ୍ୟାତ୍ମିକ ବ୍ୟାଖ୍ୟା କରିପାରୁ; କିନ୍ତୁ କାବ୍ୟ, ଇତିହାସ, ରତିଶାସ୍ତ୍ର ଆଦି ନାନା ସୂତ୍ରରୁ ଓ ଆମ ପ୍ରାଚୀନ ସାଆନ୍ତିଆ କାଳର ଯେଉଁ ସବୁ ବହୁମୂଲ୍ୟ ନମୁନା ଏବେସୁଦ୍ଧା ଆମ ଦେଶୀୟ ରାଜ-ଅନ୍ତଃପୁରମାନଙ୍କରେ ରହିଯାଇଛି, ସେଥିରୁ ପରିଷ୍କାର ଜଣାପଡୁଛି ଯେ, ଯୌନ ଭୋଗବିଳାସରେ ଆମ 'ଆଧ୍ୟାତ୍ମିକ' ଭାରତ ଜଡ଼ବାଦୀ ପାଶ୍ଚାତ୍ୟ ଦେଶମାନଙ୍କଠାରୁ ବହୁତ ଅଗ୍ରସର କରିଥିଲା ।

କମ୍ରେଡ୍ ସମ୍ପାଦକ, କ୍ଷମା କରିବ । ଆହୁରି କେତେକ ବିଷୟ ଏ ଚିଠିରେ ଲେଖିବାର ଇଚ୍ଛା ଥିଲେ ମଧ୍ୟ ଲେଖିବାର ସମୟ ନାହିଁ । ସାହିତ୍ୟ କ୍ଷେତ୍ରରେ 'ଆଧୁନିକ' ବିପ୍ଳବ ଆଣିବାକୁ

ବସିଛି । ତା'ଠାରୁ ଏକ ସଙ୍ଗୀନ୍ ବିପ୍ଳବ ରାଜନୀତି ଓ ଅର୍ଥନୀତି କ୍ଷେତ୍ରରେ ସମାସନ୍ନ । ବର୍ତ୍ତମାନ ସେଆଡ଼େ ମନ ଦେବାକୁ ହେବ । ସେ ବିପ୍ଳବ ଅବଶ୍ୟମ୍ଭାବୀ ଜାଣି ବାସ୍ତବରେ ପୁଞ୍ଜିପତିମାନଙ୍କ ମନରେ ଭୟ ଜନ୍ମିଲାଣି । କିନ୍ତୁ ଭାରତର ଆଧ୍ୟାତ୍ମିକତା ଓ ବୈଶିଷ୍ଟ୍ୟକୁ ପୁଞ୍ଜି କରି ଯେଉଁ ନେତା ଓ ଖବରକାଗଜବାଲାମାନେ କାରବାର ଚଳେଇଛନ୍ତି, ସେମାନେ କହୁଛନ୍ତି, ଏ ଦେଶ ମାଟିରେ ସାମ୍ୟବାଦ ମଞ୍ଜି ପୋତିଲେ ଗଛ ହେବ ନାହିଁ–ଗଛ ହେଲେ ଉଧେଇବ ନାହିଁ । ଆମ ଦେଶରେ କୋଉକୋଉ ଗଛ ବିଦେଶରୁ ଆସିଲେ ସୁଦ୍ଧା ଉଧେଇବ, କୋଉଗୁଡ଼ାକ ଉଧେଇବ ନାହିଁ, ସେକଥା ଯୋଉ ପୋଥି ଖଣ୍ଡକରେ ଅଛି, ସେ ପୋଥିଖଣ୍ଡକ ଏପର୍ଯ୍ୟନ୍ତ ମୋର ହସ୍ତଗତ ହୋଇନାହିଁ । ଯୋଉ ପୋଥିରେ ଅଛି–ବ୍ରାହ୍ମଣଙ୍କ ଛଡ଼ା ଆଉ କେହି ନଡ଼ିଆଗଛ ପକେଇବେ ନାହିଁ କିମ୍ବା ଯାହା ଘରେ ପୂର୍ବରୁ କେହି ପକାଇ ନାହାନ୍ତି ସେ ପକାଇବ ନାହିଁ– ଯା' ଘରେ ପୂର୍ବରୁ ଆଖୁ ନାହିଁ ସେ ଆଖୁ ଲଗେଇବ ନାହିଁ–ସେହି ପୋଥିରେ ବୋଧହୁଏ ଏ କଥାଟା ମଧ୍ୟ ଅଛି । ଯାହା ହେଉ, ଏ ବିଷୟରେ ପରେ ସମୟ ହେଲେ ଲେଖାଲେଖି କରିବି ।

ଇତି ।

ନବ ଚୌଧୁରୀ

ସେ ଅନ୍ୟାନ୍ୟ ବହୁ ବିଷୟରେ ବହି ପଢ଼ିବା ସଙ୍ଗେସଙ୍ଗେ ଜୀବନର ଶେଷ ପର୍ଯ୍ୟନ୍ତ ଆଧୁନିକ କବିତା ଉପଭୋଗ କରୁଥିଲେ । ଥରେ ସୁନନ୍ଦ କରଙ୍କ ରବିବାର 'ପ୍ରଜାତନ୍ତ୍ର'ରେ ପ୍ରକାଶିତ ଏକ କବିତା ପଢ଼ି ତହିଁର ଛନ୍ଦପ୍ରମାଦ ରାଧାମୋହନ ଗଡ଼ନାୟକଙ୍କୁ ଦର୍ଶାଇବାରେ ରାଧାମୋହନବାବୁ ବିସ୍ମିତ ହୋଇଥିଲେ ।* ସିଏ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ 'ମାଟିର ମଣିଷ' ପଢ଼ିସାରିଲା ପରେ ଆଖିରୁ ଲୁହ ପୋଛିଛନ୍ତି । ଦିନେ ଅନୁଗୋଳ ବଜାରରେ ଗିରିଜା ଦତ୍ତଙ୍କ ରକ୍ଷିତାଙ୍କୁ ଭିକ ମାଗୁଥିବା ଦେଖି ପିଲାଙ୍କ ଭଳି ଭୋ ଭୋ କାନ୍ଦିପକାଇଥିବାର ଲୋକ ଦେଖିଥିଲେ । ପୁଣି ଭଗବତୀ ପାଣିଗ୍ରାହୀଙ୍କ ଶୋକସଭାରେ ଭାଷଣ ନଦେଇପାରି ସେ ଖାଲି କାନ୍ଦିଥିଲେ । ସେ ଖାଲି କାନ୍ଦନ୍ତି ନାହିଁ; ହସିଲା ବେଳେ ବି ଅତି ପ୍ରାଣଖୋଲା ହସନ୍ତି । ସେ ସବୁରୁ ତାଙ୍କ ହୃଦୟର ସମ୍ବେଦନଶୀଳତା ଜଣାପଡ଼ିଥାଏ । ସେ କବି, ସାହିତ୍ୟିକ ମେଳରେ ଆଥାନ୍ତି, ସାହିତ୍ୟ ସୃଷ୍ଟି ପାଇଁ ପ୍ରେରଣା ଦିଅନ୍ତି, ଅଥଚ ଲେଖିବାକୁ କୁଣ୍ଠିତ । ବିଧାନସଭାରେ ଓ ଅନ୍ୟତ୍ର ଭାଷଣ ଦେଲାବେଳେ ସେ ଅନେକ ମୌଳିକ କଥା କହନ୍ତି, ଅଥଚ ତାଙ୍କର ସାହିତ୍ୟ କୃତି କିଛି ନାହିଁ । ଏଇଥିପାଇଁ ତାଙ୍କ ବହୁ ଗୁଣଗ୍ରାହୀମାନଙ୍କର ନବକୃଷ୍ଣ ଚୌଧୁରୀଙ୍କ ଉପରେ ଭାରି ଅଭିଯୋଗ ଓ ଅଭିମାନ । ଅନ୍ୟମାନେ ତାଙ୍କୁ କିଛି ଲେଖିବାକୁ କହିଲେ ସେ କହନ୍ତି 'ବହୁତ ଲେଖାହୋଇଛି' । ଆଉକିଛି କହିବାକୁ କହିଲେ ସେ କହନ୍ତି 'ବହୁତ କୁହାହୋଇଛି' ।

* ବସ୍ତିଆ ମେମୋରିଆଲ୍ ଟ୍ରଷ୍ଟ (ରାଉରକେଲା) ଆନୁକୂଲ୍ୟରେ ପ୍ରକାଶିତ 'ଶ୍ରଦ୍ଧାଞ୍ଜଳି'ର ଗଡ଼ନାୟକଙ୍କ ଲେଖା 'ସ୍ମୃତିପଥେ ନବକୃଷ୍ଣ ଚୌଧୁରୀ' ଦ୍ରଷ୍ଟବ୍ୟ ।

ମନେହୁଏ, ତାଙ୍କ ମନର କଥା ଥିଲା ଯେ ହଜାରହଜାର ବର୍ଷ ଧରି ବହୁ ଜ୍ଞାନୀ ଲୋକ ବହୁତ ମୂଲ୍ୟବାନ କଥା କହିଛନ୍ତି ଓ ବହୁ ମୂଲ୍ୟବାନ କଥା ଲେଖାହୋଇଛି, କିନ୍ତୁ ସେସବୁ କାର୍ଯ୍ୟକାରୀ ହୋଇପାରିନାହିଁ । ଆଉ ଅଧିକ ଲେଖି ଲାଭ କଅଣ ? ଏହାଛଡ଼ା କିଛି ଲେଖିଲେ ସେ ଭାବୁଥିଲେ ଯେ ସେଭଳି କଥା ଅନ୍ୟମାନେ ଲେଖିଛନ୍ତି, ଏଣୁ ତାଙ୍କ ଲେଖାରେ ନୂଆ କିଛି ନାହିଁ । ଜୀବନର ଶେଷ ବେଳକୁ ଆତ୍ମଜୀବନୀଟିଏ ଲେଖିଥିଲେ, ତାହା ହୋଇଥାନ୍ତା ଓଡ଼ିଆ ସାହିତ୍ୟର ଏକ ସମ୍ପଦ । ଆତ୍ମଜୀବନୀ କଥା କହିଲେ ତ କ୍ଷେପିଉଠନ୍ତି, ଆଉ ତାଙ୍କ ଜୀବନୀ ଲେଖିବାକୁ ସମସ୍ତଙ୍କୁ ନିରୁତ୍ସାହିତ କରିଆସିଛନ୍ତି । ଅଥଚ ସାଧାରଣ ମଣିଷ ଭଳି ତାଙ୍କ ଯୌବନରେ ରୋମାଣ୍ଟିସିଜ୍‌ମ୍‌ର ଝଲକ ମିଳେ ; ପୁଣି ବିଦ୍ରୋହୀ ଓ ବିପ୍ଳବୀ ଏବଂ ସାଧକର ଗରିମା ବି ଦେଖିବାକୁ ମିଳେ ।

**ସରଳା ଦେବୀ ଓ ଫ୍ରିଡା ଦାସ :**

ସରଳା ଦେବୀ ଓଡ଼ିଶାର ଜଣେ ପ୍ରତିଭାବତୀ ମହିଳା । ସେ କୌଣସି ଉଚ୍ଚ ବିଦ୍ୟାଳୟରେ ନପଢ଼ିଥିଲେ ବି ଘରୋଇ ଭାବରେ ପଢ଼ି ସୁଦକ୍ଷା ନାରୀନେତ୍ରୀ ଭାବରେ ପ୍ରତିଷ୍ଠିତ ହୋଇପାରିଥିଲେ । ସେ ହେଉଛନ୍ତି, 'ନବବାବୁଙ୍କ ମଧୁର ସମ୍ପର୍କୀୟ ନିତ୍ୟାନନ୍ଦ କାନୁନ୍‌ଗୋ(ଟୁଙ୍ଗୁ)ଙ୍କ ଭଉଣୀ 'ଦୁଃଖୀ' । ନିତ୍ୟାନନ୍ଦବାବୁଙ୍କ ବାପା ବାଳମୁକୁନ୍ଦ କାନୁନ୍‌ଗୋଙ୍କର ଝିଅ ନଥାଏ । ଗୋଟିଏ ପିଲାର ମା'କୁ ସେତେବେଳେ ହତଭାଗୀ ବୋଲି ବିଚାର କରାଯାଉଥିଲା । ଏଣୁ ବାଳମୁକୁନ୍ଦବାବୁଙ୍କ ସ୍ତ୍ରୀ ହେମନ୍ତକୁମାରୀ ନିଜ ଯାଆଙ୍କଠାରୁ ଦୁଃଖୀଙ୍କୁ ଝିଅ କରି ଆଣିଥିଲେ । ତାଙ୍କର ଚେହେରା ଥିଲା ଚମତ୍କାର । ପିଲାଦିନରୁ ତାଙ୍କର ସୁପ୍ତ ପ୍ରତିଭାର ବେଶ୍ ସୂଚନା ମିଳୁଥିଲା । ସେ ଥିଲେ ନବବାବୁଙ୍କଠାରୁ ବୟସରେ ଅଢ଼େଇ ବର୍ଷ ସାନ । ବାଖରାବାଦର ଗୋକୁଳାନନ୍ଦ ଚୌଧୁରୀଙ୍କ କୋଠାଠାରୁ ଚାରିଛଅଟି କୋଠା ପରେ ବାଳମୁକୁନ୍ଦ କାନୁନ୍‌ଗୋଙ୍କ କୋଠା । ରାୟବାହାଦୁର ରାଜକିଶୋର ଦାସ ଉଭୟ ରମାଦେବୀ ଓ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ମାମୁ । ଏଣୁ ନିତ୍ୟାନନ୍ଦ କାନୁନ୍‌ଗୋ (ଟୁଙ୍ଗୁ) ଓ ନବକୃଷ୍ଣ ଚୌଧୁରୀ (ଟୁକ)ଙ୍କ ମଧ୍ୟରେ ପାରିବାରିକ ସମ୍ପର୍କ ବେଶ୍ ଘନିଷ୍ଠ । ଉଭୟ ପରିବାରରେ ପିଲାମାନଙ୍କ ମଧ୍ୟରେ ପିଲାଦିନରୁ ଯା'ଆସ । ସରଳା ଦେବୀ ୧୪ ବର୍ଷରେ ଭାଗୀରଥି ମହାପାତ୍ରଙ୍କୁ ବିବାହ କରିଥିଲେ ଓ କଟକ ଛାଡ଼ି ଜଗତ୍‌ସିଂହପୁର ଚାଟରା ଗାଁରେ ରହିଲେ । କଟକରେ ଥିବା ପର୍ଯ୍ୟନ୍ତ ଅବିବାହିତ କାଳରେ ସେ ଓଡ଼ିଆ ଛଡ଼ା ଇଂରାଜୀ, ସଂସ୍କୃତ ଆଦି ପଢ଼ିଥିଲେ ଏବଂ ଦେଶବିଦେଶ କଥା ଜାଣୁଥିଲେ । କିନ୍ତୁ ବିବାହ ପରେ ତାଙ୍କର ବିକାଶ ଅନେକ ପରିମାଣରେ ରୁଦ୍ଧ ହୋଇଗଲା । ତଥାପି ୧୯୨୧ ମସିହା ଅସହଯୋଗ ଆନ୍ଦୋଳନ ବେଳକୁ ସେ କଟକ ଆସିଯାଇଥିଲେ ଓ ସ୍ୱରାଜ୍ୟାଶ୍ରମକୁ ଯାଆସ କରୁଥିଲେ । ତାଙ୍କର ବୌଦ୍ଧିକ

ବିକାଶ ପାଇଁ ନବବାବୁଙ୍କର ଖୁବ୍ ଆଗ୍ରହ ଥିଲା । ତେଣୁ ସେ ସରଳା ଦେବୀଙ୍କୁ ଏ ଦିଗରେ ନାନାପ୍ରକାର ସହାୟତା କରୁଥିଲେ ।

୧୯୨୨ ବେଳକୁ ସାରଙ୍ଗଧର ଦାସ ଜାପାନ, ଯୁକ୍ତରାଷ୍ଟ୍ର, ଫିଲିପାଇନ୍ସ ଦେଇ ଓଡ଼ିଶା ଫେରିଥାନ୍ତି । ସେ ସେତେବେଳକୁ ଚିନିଶିଳ୍ପ ସମ୍ପର୍କରେ ଜଣେ ବିଶେଷଜ୍ଞ । ଓଡ଼ିଶାରେ ଓ ବିଶେଷ ଭାବରେ ଢେଙ୍କାନାଳରେ ବ୍ୟାପକ ଆଖୁଚାଷ ଓ ଚିନି କାରଖାନା ପାଇଁ ତାଙ୍କର ପରିକଳ୍ପନା ଥିଲା । ସେ ତାଙ୍କର ପତ୍ନୀ ଫ୍ରିଡାଙ୍କ ସହିତ କଟକର କ୍ୟାଣ୍ଟନ୍‌ମେଣ୍ଟ୍ ରୋଡ୍‌ରେ ରହୁଥାନ୍ତି । ଫ୍ରିଡା ଆମେରିକାର ଝିଅ । ୧୯୨୨ ଶେଷ ବେଳକୁ ଅସହଯୋଗ ଆନ୍ଦୋଳନର ତାପ କମିଯିବା କାରଣରୁ ରାଜନୀତିକ ପରିସ୍ଥିତି ମାନ୍ଦା ଥାଏ । ନବବାବୁ ଅଳକାଶ୍ରମକୁ ଯିବା ଛଡ଼ା କଟକର ଏହି ପରିବାର ସହିତ ଘନିଷ୍ଠ ସମ୍ପର୍କରେ ଆସିଥିଲେ । ଫ୍ରିଡା ବି ସମୟ-ସମୟରେ ଗୋପବନ୍ଧୁ ଚୌଧୁରୀଙ୍କ ଘରକୁ ଆସୁଥିଲେ । ନବବାବୁ ଫ୍ରିଡାଙ୍କ ଆଧୁନିକ ଦୃଷ୍ଟିକୋଣ ଓ ବିଚାରଧାରା ଦ୍ୱାରା ଖୁବ୍ ପ୍ରଭାବିତ ହୋଇଥିଲେ ଓ ସରଳା ଦେବୀଙ୍କୁ ବି ତାଙ୍କ ସହିତ ସାକ୍ଷାତ କରାଇଥିଲେ । ଫ୍ରିଡା ତାଙ୍କ 'ମ୍ୟାରେଜ୍ ଟୁ ଇଣ୍ଡିଆ' ବହିରେ ନବବାବୁଙ୍କ କଥା ଉଲ୍ଲେଖ କରି ଲେଖିଛନ୍ତି ଯେ–ମାଳତୀ ଦେବୀ ଓଡ଼ିଶାର ସର୍ବୋତ୍କୃଷ୍ଟ ଯୁବକଙ୍କ ପାଣି ଗ୍ରହଣ କରି ଧନ୍ୟ ହୋଇଛନ୍ତି । ୧୯୩୦ ଲବଣ ସତ୍ୟାଗ୍ରହରେ ମହିଳାମାନଙ୍କ ଅବଦାନ ଉପରେ ସେ 'ଅନ୍‌ଟୁ ଦି ସନ୍' ନାମକ ଏକ ଚମତ୍କାର ଉପନ୍ୟାସ ଲେଖିଥିଲେ । ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲାବେଳେ ସେ ଓଡ଼ିଶା ଆସିଥିଲେ । ସେତେବେଳକୁ ସେ ସାରଙ୍ଗଧର ଦାସଙ୍କ ଠାରୁ ବିଚ୍ଛିନ୍ନ । ନବବାବୁ ସେମାନଙ୍କର ପୁନର୍ମିଳନ ଲାଗି ଚେଷ୍ଟା କରିଥିଲେ ହେଁ ବିଫଳ ହୋଇଥିଲେ । ୧୯୬୨ ମସିହାରେ ସେ ଶେଷଥର ଭାରତବର୍ଷ ଆସିଥିଲେ । ବହୁ ବର୍ଷ ପର୍ଯ୍ୟନ୍ତ ନବବାବୁଙ୍କ ସହିତ ତାଙ୍କର ଚିଠିପତ୍ର ଆଦାନପ୍ରଦାନ ହେଉଥିଲା । ସରଳା ଦେବୀ, ମାଳତୀ ଦେବୀ ଓ ରମାଦେବୀଙ୍କ ଆଗରୁ ସେ ସାଧାରଣ କାର୍ଯ୍ୟରେ ଓ ରାଜନୈତିକ କ୍ଷେତ୍ରରେ ଅଂଶଗ୍ରହଣ କରିଥିଲେ । ଅସହଯୋଗ ଆନ୍ଦୋଳନ ଭଙ୍ଗା ପଡ଼ିଯିବା ପରେ ବି, ତାଙ୍କର ପ୍ରୋତ୍ସାହନରେ, ଭାଗୀରଥି ମହାପାତ୍ର ଆଉ ଓକିଲାତି କରିବାକୁ ଫେରିନଥିଲେ । ଲବଣ ସତ୍ୟାଗ୍ରହ ସମୟରେ ସେ ଗଞ୍ଜାମ ଜିଲ୍ଲାର ନେତୃତ୍ୱ ନେଇଥିଲେ ଓ ଗିରଫ ହୋଇ ମାନ୍ଦ୍ରାଜ ପ୍ରେସିଡେନ୍ସିର ସୁଦୂର ଭେଲୋର୍ ଜେଲ୍‌ରେ ଲକ୍ଷ୍ମୀବାଈଙ୍କ ସହ ସହବନ୍ଦୀ ଥିଲେ । କରାଚୀଠାରେ କଂଗ୍ରେସ ଅଧିବେଶନ ବସିଥିଲା ବେଳେ ସେ ଯେଉଁ ଭାଷଣ ଦେଇଥିଲେ, ତାହା ସମସ୍ତଙ୍କୁ ଚମତ୍କୃତ କରିଥିଲା । ସେହି ଭାଷଣରେ ଓଡ଼ିଶାରେ ପରବର୍ତ୍ତୀ କଂଗ୍ରେସ ଅଧିବେଶନ ବସିବା ଲାଗି ସେ ପ୍ରସ୍ତାବ ଦେଇଥିଲେ । ଗାନ୍ଧିଜୀଙ୍କ ହରିଜନ ଆନ୍ଦୋଳନ

ସମୟରେ ଖଲିକୋଟ୍‌ରେ ସେ ଯେଉଁ ଜ୍ୱାଳାମୟୀ ଭାଷଣ ଦେଇଥିଲେ, ତାହା ବହୁ ଲୋକଙ୍କୁ ଉଦ୍‌ବୁଦ୍ଧ କରିଥିଲା । ତାଙ୍କ ଭାଷଣରେ ମୁଗ୍ଧ ଓ ପ୍ରଭାବିତ ହୋଇ ସେଠାକାର ଚନ୍ଦ୍ରଶେଖର ସାମନ୍ତ ନିଜ ହାତର ସୁନାମୁଦି କାଢ଼ି ସଭାସ୍ଥଳରେ ହରିଜନ ପାଣ୍ଠିକୁ ଦାନ କରିଥିଲେ । ୧୯୩୭ ନିର୍ବାଚନରେ ସେ ମହିଳା ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ସେହି ସମୟର ବିଧାନସଭାର ବିବରଣୀରୁ ତାଙ୍କର ଇଂରାଜୀ ଓ ଓଡ଼ିଆ ଭାଷଣ ପଢ଼ିଲେ ଆଶ୍ଚର୍ଯ୍ୟ ଲାଗେ ଯେ ମାତ୍ର ଅପର-ପ୍ରାଇମେରୀ ପର୍ଯ୍ୟନ୍ତ ପାଠ ପଢ଼ିଥିବା ମହିଳାଟିଏ କିଭଳି ଏପରି ଉଚ୍ଚକୋଟୀର ଭାଷଣ ଦେଉଥିଲେ । ଯାହା ଜଣାଯାଏ, ତାଙ୍କର ଏଭଳି ପ୍ରତିଭାର ବିକାଶ ପଛରେ ନବକୃଷ୍ଣ ଚୌଧୁରୀଙ୍କ ପ୍ରତ୍ୟକ୍ଷ ପ୍ରୋତ୍ସାହନ ଥିଲା । ସରଳା ଦେବୀଙ୍କ ବୈବାହିକ ଜୀବନ ମୋଟେ ସୁଖକର ନଥିଲା । ଏଣେ ନିଜେ ସ୍ୱାଧୀନ ଭାବରେ ତିଷ୍ଠି ନିଜର ବିକାଶ କରିବା ଓ ଦେଶ ପାଇଁ କିଛି କରିବା ତାଙ୍କ ପକ୍ଷରେ ସେ ସମୟରେ ଅସମ୍ଭବ ଥିଲା ।

୧୯୨୫ ମସିହା ବେଳକୁ ଜାତୀୟ ଆନ୍ଦୋଳନ ପୂରା ମାତ୍ରା ଧରିଥାଏ । ନବକୃଷ୍ଣ ଚୌଧୁରୀ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଅନ୍ନଦାଶଙ୍କର ରାୟଙ୍କ ସଙ୍ଗରେ ବାହାରିଲେ କପିଳାସ ପର୍ବତରେ ତିନିମାସ କଟାଇବାକୁ । ଅବଶ୍ୟ ସେତେଦିନ ରହିନପାରି ୧୫ ଦିନ ରହି ଫେରିଆସିଲେ । ସେହି ସମୟରେ ଦୁଇ ବନ୍ଧୁ ଦୁଃଖୀଙ୍କ (ସରଳାଦେବୀଙ୍କ ଘରର ନାମ) ଦୁଃଖମୋଚନ ବିଷୟରେ ବିଚାର କଲେ । ସ୍ଥିର କଲେ, ଉଭୟେ ରୋଜଗାର କରି ସରଳାଙ୍କ ଭଳି ଜଣେ ବିଦୁଷୀଙ୍କୁ ସ୍ୱାଧୀନ ଜୀବନଯାପନ ଲାଗି ସହାୟତା କରିବେ । ଏହି ସମୟରେ ବିଖ୍ୟାତ ଅର୍ଥନୀତିବିତ୍ ଡଃ ତାରକାନାଥ ଦାସ ଶାନ୍ତିନିକେତନରେ ଗ୍ରାମ୍ୟ ଅର୍ଥନୀତି ସମ୍ପର୍କରେ ଭାଷଣ ଦେଉଥିବା କଥା ଜଣାଯିବାରୁ ନବକୃଷ୍ଣ ଚୌଧୁରୀ ତାଙ୍କ ବକ୍ତୃତା ଶୁଣିବା ଲାଗି ଶାନ୍ତିନିକେତନ ଚାଲିଗଲେ ଓ ଅନ୍ନଦାଶଙ୍କର ରାୟ ଆଇ.ସି.ଏସ୍. ପରୀକ୍ଷା ପାଇଁ ପ୍ରସ୍ତୁତ ହେବା ଦିଗରେ ଲାଗିପଡ଼ିଲେ । ହୋଇପାରେ, ନବବାବୁଙ୍କର ସରଳା ଦେବୀଙ୍କ ସହିତ ଘନିଷ୍ଠତାକୁ ଲାଘବ କରିବା ଲାଗି ଗୋପବନ୍ଧୁ ଚୌଧୁରୀ ତାଙ୍କୁ ଏଭଳି ଏଇ ବାଟରେ ପଠାଇଦେଇଥିଲେ । ନବବାବୁ ଓ ସରଳା ଦେବୀଙ୍କ ସମ୍ପର୍କ କେଉଁ ସ୍ତରର ଥିଲା, ତାହା କେହି ନିର୍ଦ୍ଧାର୍ଯ୍ୟ ଭାବରେ କହିପାରନ୍ତି ନାହିଁ । ତେବେ, ଏ ସମ୍ପର୍କରେ ନବବାବୁଙ୍କର ଫ୍ରିଡାଙ୍କୁ ଲେଖିଥିବା କେତେକ ପତ୍ର ଉଭୟଙ୍କ ସମ୍ପର୍କ ଦିଗରେ ଅନେକ ଆଲୋକପାତ କରେ ।

ଫ୍ରିଡାଙ୍କ ସହିତ ନବକୃଷ୍ଣ ଚୌଧୁରୀଙ୍କ ବହୁ ବର୍ଷ ଧରି ପତ୍ରାଳାପ ହୋଇଥିଲା । ସେଥିରୁ ୧୬ଖଣ୍ଡ ପତ୍ର ଏବେ ଉପଲବ୍ଧ । ସେଗୁଡ଼ିକ ମଧ୍ୟରୁ ୧୯୨୨ ମସିହା ଓ ୧୯୨୩ ମସିହାର ପତ୍ରଗୁଡ଼ିକ ବେଶ୍ ଚିତ୍ତାକର୍ଷକ । ସେଥିରୁ ତାଙ୍କ ଜୀବନର ରୋମାଣ୍ଟିକ୍ ଅଧ୍ୟାୟର

ଝଲକ ମିଳେ । ଏହି ପତ୍ରଗୁଡ଼ିକରେ ସେ ଫ୍ରିଡାଙ୍କ ପ୍ରତି ନିଜର ଆନ୍ତରିକତା ତଥା ତାଙ୍କୁ ଘାରିଥିବା ସରଳାଦେବୀଙ୍କ ସମସ୍ୟାବଳୀ ବର୍ଣ୍ଣନା କରିଛନ୍ତି । ସରଳା ପ୍ରତିଷ୍ଠିତ ଘରର ଝିଅ ଓ ବୋହୂ । ସେ ବିବାହର ପ୍ରାଥମିକ କାଳରେ ଏକପ୍ରକାର ବନ୍ଧନରେ ରହିଥିଲେ ଏବଂ ଶାରୀରିକ ଅସୁସ୍ଥତା ସାଙ୍ଗକୁ ମାନସିକ ଯାତନା ଭୋଗ କରୁଥିଲେ । ନବବାବୁଙ୍କର ତାଙ୍କ ସହିତ ପତ୍ରାଳାପ ଥାଏ । ତାଙ୍କର ଦୁରବସ୍ଥା କଥା ଭାଇ ଟୁଙ୍ଗୁ ମଧ୍ୟ ଜାଣନ୍ତି । କିନ୍ତୁ ସେ ଶାଶୁଘର ଛାଡ଼ି ଆସିଲେ ବାଳମୁକୁନ୍ଦ କାନୁନ୍‌ଗୋଙ୍କ ଭଳି ଲୋକ ତାଙ୍କୁ ଘରେ ସ୍ଥାନ ଦେବେ ନାହିଁ । ଏଣୁ ସେ ସ୍ୱାଧୀନ ଭାବରେ ରହିବାପାଇଁ ଆର୍ଥିକ ବ୍ୟବସ୍ଥା ଦରକାର । ଏସବୁ ଚିଠିରୁ ଜଣାଯାଏ ଯେ ସରଳା ଦେବୀ ନବବାବୁଙ୍କ ଠାରୁ ସେଭଳି ପ୍ରତିଶ୍ରୁତି ପାଇଲେ ଶାଶୁଘର ଛାଡ଼ିଦେଇ ଆସିବାକୁ ପ୍ରସ୍ତୁତ । ଏଥିପାଇଁ ବିଭିନ୍ନ ରୋଜଗାର ପନ୍ଥା ନବବାବୁ ଚିନ୍ତା କରିଛନ୍ତି ଏବଂ ଫ୍ରିଡାଙ୍କ ପରାମର୍ଶ ମଧ୍ୟ ମାଗିଛନ୍ତି । ବ୍ୟାଙ୍କ୍ ଆଦିରେ କାମ କରିବାକୁ ତାଙ୍କର ମନ ବଳୁନଥାଏ । ଏହି ସମୟକୁ ଅହମଦାବାଦରେ କଂଗ୍ରେସ ଦଳ ତରଫରୁ ଖଦୀ ଉତ୍ପାଦନ ଲାଗି ଟ୍ରେନିଙ୍ଗ ନେବାକଥା ଜଣାଗଲା । ସେହି ଟ୍ରେନିଂ ନେଲେ ନବବାବୁ କିଛି ରୋଜଗାର କରିପାରିବେ ବୋଲି ଚିନ୍ତା କରି ଅହମଦାବାଦ ଯାଇଥିବା କଥା ସେସବୁ ପତ୍ରରୁ ଜଣାପଡ଼େ । ସେଠାରୁ ସେ ସରଳାଙ୍କ ଚିକିତ୍ସା ଓ ଶିକ୍ଷା ଦାୟିତ୍ୱ ନେଇପାରିବେ ବୋଲି ଚିଠି ଦେଇଛନ୍ତି । ସେହି ଚିଠିରେ ବି ସେ ଫ୍ରିଡାଙ୍କ ପ୍ରତି ତାଙ୍କର ଆନ୍ତରିକତା କଥା ଉଲ୍ଲେଖ କରିଛନ୍ତି । ଦୁଇ ନାରୀଙ୍କ ପ୍ରତି ଦୁର୍ବଳତା ଥିଲେ ଜଣକୁ ଅନ୍ୟର କଥା କୁହାଯାଏ ନାହିଁ । କିନ୍ତୁ ନବବାବୁ ଏକା ଚିଠିରେ ଫ୍ରିଡ଼ାଙ୍କ ପ୍ରତି ତାଙ୍କର ଗଭୀର ଆନ୍ତରିକତା କଥା ଉଲ୍ଲେଖ କରିବା ସଙ୍ଗେସଙ୍ଗେ ସରଳାଙ୍କ ପ୍ରତି କର୍ତ୍ତବ୍ୟ କଥା ଲେଖିଛନ୍ତି । ପୁଣି ସାବରମତୀ ଆଶ୍ରମର ଜଣେ ଏଗାର ବର୍ଷିୟା ଝିଅ ପ୍ରତି ତାଙ୍କର ପ୍ରେମ କଥା ସେହି ଚିଠିରେ ଲେଖା ଅଛି । ସେହି ସୁନ୍ଦରୀ ଝିଅଟି ବି ତାଙ୍କୁ ପାଗଳ କରୁଛି ବୋଲି ସେ ଖୋଲାଖୋଲି ଲେଖିଛନ୍ତି । ପାଶ୍ଚାତ୍ୟ ମହିଳା ଫ୍ରିଡା ବିଭିନ୍ନ ସ୍ତରର ଏହି ପ୍ରେମକୁ ଠିକଣା ଭାବରେ ବୁଝିଛନ୍ତି । ସେହି ତରଳ ଯୌବନର ଉତ୍ତାଳତାର ବିଭିନ୍ନ ଝଲକ ଏହି ପତ୍ରଗୁଡ଼ିକରୁ ଜାଣିହୁଏ । ସେହିସବୁ ଚିଠିରେ କେବେ ଶେଷରେ ଲେଖିଛନ୍ତି 'ତୁମର ଟୁଆଁ', ନ ହେଲେ 'ତୁମର ପ୍ରିୟ ଫିସ୍' । ଫ୍ରିଡା ବି ତାଙ୍କୁ 'ଟୁଆଁ' ବୋଲି ସମ୍ବୋଧନ କରିଛନ୍ତି । ଅହମଦାବାଦରୁ ୨୦-୦୭-୧୯୨୨ ତାରିଖରେ ସେ ଫ୍ରିଡାଙ୍କୁ ଯେଉଁ ଚିଠି ଲେଖିଛନ୍ତି, ସେଥିରୁ ଜଣାଯାଏ ଯେ ସରଳାଙ୍କୁ ସେ ସାହାଯ୍ୟ କରିବାକୁ ଚାହାନ୍ତି । ଏକଥା ଖୋଲାଖୋଲି ରମାଦେବୀଙ୍କୁ ମଧ୍ୟ ଜଣାଇଛନ୍ତି । ସେହି ଚିଠିରେ ସେ, ତାଙ୍କର ଦୃଷ୍ଟିକୁ ଲୁବ୍ଧ କରିଥିବା ୧୧ ବର୍ଷୀୟା କିଶୋରୀ ନାଁ ଲକ୍ଷ୍ମୀ ବୋଲି ଫ୍ରିଡାଙ୍କୁ ଜଣାଇଛନ୍ତି । ଏବଂ 'ମିନୁ' ବୋଲି ଆଉ ଏକ ଝିଅ କଥା ଉଲ୍ଲେଖ କରିଛନ୍ତି । ଫ୍ରିଡ଼ାଙ୍କର ଅତ୍ୟନ୍ତ ଆପଣାର ବୋଲି ସେ ନିଜ ନାଁ ଫିସ୍ ଦେଇଥିବା କଥା ଏହି ଚିଠିର ଶେଷରୁ ଜଣାଯାଏ । ଭଲପାଇବା ରଙ୍କୁଣା

ଟୁଆଁ ଏହି ଅବସ୍ଥାରେ ବିଭିନ୍ନ ଝିଅଙ୍କ ପ୍ରତି ତାଙ୍କର ଆକର୍ଷଣ ଫ୍ରିଡାଙ୍କୁ ଖୋଲାଖୋଲି ଲେଖିବାରେ ସଙ୍କୋଚ ପ୍ରକାଶ କରିନାହାନ୍ତି ।

୩୧-୦୭-୧୯୨୨ ତାରିଖରେ ସେହିଠାରୁ ଯେଉଁ ଚିଠି ଲେଖିଛନ୍ତି, ତହିଁରୁ ଜଣାଯାଏ ଯେ ନିତ୍ୟାନନ୍ଦ କାନୁନ୍‌ଗୋ ମଧ୍ୟ ସରଳାଙ୍କୁ ନବବାବୁଙ୍କ ସାହାଯ୍ୟ ଉଦ୍ୟମ ବିଷୟରେ ଜାଣିଥିଲେ ଓ ଏକଥା ତାଙ୍କ ମାମୁପୁଅ ନିକୁଞ୍ଜକିଶୋର ଦାସଙ୍କୁ (ମୃଷ୍ଟୁ) ମଧ୍ୟ ଜଣାଥିଲା । ସେଦିନ ଚିଠିରେ ସେ Ellen Keyଙ୍କର Evolution of–Love ନାମକ ପୁସ୍ତିକା ବୁକ୍‌ପୋଷ୍ଟରେ ପଠାଇବା ଲାଗି ଫ୍ରିଡାଙ୍କୁ ଅନୁରୋଧ କରିଛନ୍ତି ।

ସେହି ଚିଠିରେ ସେ ଲେଖିଛନ୍ତି ଯେ ଗାନ୍ଧିଙ୍କର ବ୍ରହ୍ମଚର୍ଯ୍ୟ ଏବଂ ସତ୍ୟାଗ୍ରହ ସହିତ ବ୍ରହ୍ମଚର୍ଯ୍ୟର ସମ୍ପର୍କ ଉପରେ ଆଶ୍ରମବାସୀଙ୍କ ସହିତ ଆଲୋଚନା କରିବେ । ଅନ୍ୟାନ୍ୟ ଭିତରେ ସେ ପଢ଼ିଥିବା ବହିମାନଙ୍କ ବିଷୟରେ ଉଲ୍ଲେଖ କରିବା ସଙ୍ଗେସଙ୍ଗେ 'ଆସ୍‌ପିରିନ୍' ଖାଇବା ଦରକାର ପଡ଼ିନାହିଁ ବୋଲି ଲେଖିଛନ୍ତି । ଏଥିରୁ ଜଣାଯାଏ ଯେ ସେ ଦିନକୁ ଆଠଘଣ୍ଟା ଆଶ୍ରମର ତାଲିମରେ ବ୍ୟସ୍ତ ରହୁଥିଲେ ମଧ୍ୟ ବିଭିନ୍ନ କାରଣରୁ ନାନା ଚାପ ମଧ୍ୟରେ ଦୈନିକ 'ଆସ୍‌ପିରିନ୍' ଖାଉଥିଲେ ।

ସେହି ୧୯୨୨ ମସିହାର ଏକ ରବିବାର ଦିନ ସେ ଫ୍ରିଡାଙ୍କୁ ପୁଣି ଏକ ଦୀର୍ଘ ପତ୍ର ଲେଖିଛନ୍ତି ଓ ସେଥିରେ ପ୍ରକାଶ କରିଛନ୍ତି ଯେ ସେ ଫ୍ରିଡାଙ୍କ ପତ୍ରକୁ ପାଞ୍ଚ ଛଅ ଥର ପଢ଼ିଥିଲେ । ଫ୍ରିଡା ଭାରତରୁ ଅନ୍ୟତ୍ର ଯିବା କଥା ତାଙ୍କୁ କିଭଳି ବ୍ୟଥିତ କରିଛି ; ସେସବୁ କଥା ସେ ଏ ଚିଠିରେ ଉଲ୍ଲେଖ କରିଛନ୍ତି । ଦୂରରେ ରହିଲେ ବି ତାଙ୍କର ଭାବ ଅତୁଟ ରହିବ ବୋଲି ସେ ପ୍ରକାଶ କରୁଛନ୍ତି । ସେହି ଅସ୍ଥିର ଅବସ୍ଥାରେ ଖଦଡ଼ କାମ ତାଙ୍କୁ କିଛି ପରିମାଣରେ ଆଶ୍ୱସ୍ତି ଦେଇଛି, ଯଦିଓ ପ୍ରତିଦିନ ପ୍ରାର୍ଥନାରୁ ସେ ବିଶେଷ କିଛି ଅନୁପ୍ରାଣିତ ହୋଇନାହାନ୍ତି । ସେଇଠି ଗାନ୍ଧିଙ୍କ କୌତୁକିଆ ଟିକି ନାତୁଣୀ (ହୀରାଲାଲ ଗାନ୍ଧିଙ୍କ ୪ବର୍ଷୀୟା ଝିଅ)କୁ ଦେଖି ଓ କଥାବାର୍ତ୍ତା କରି ସେ ଖୁବ୍ ଆନନ୍ଦ ଲାଭ କରୁଥିଲେ ବୋଲି ଚିଠିରେ ଲେଖିଛନ୍ତି ।

୧୯୨୩ ନଭେମ୍ବର ୧ ତାରିଖ ଦିନ ନବବାବୁ ଫ୍ରିଡାଙ୍କୁ ଅଳକାଶ୍ରମରୁ ଲେଖିଥିବା ଚିଠିରେ Holtଙ୍କ Freudian Wish ବହି ପଠାଇବା ପାଇଁ ଚାହିଁଛନ୍ତି । ଏହାଛଡ଼ା New Psychology ଏବଂ Modern Pedagogy ସମ୍ପର୍କୀୟ ବହିର ସନ୍ଧାନ ଦେବାକୁ ଲେଖିଛନ୍ତି ଓ ବମ୍ବେ ବା କଲିକତାର କୌଣସି ବନ୍ଧୁଙ୍କ ସୁପାରିଶ ବଳରେ ଭଲ ଲାଇବ୍ରେରିର ସଦସ୍ୟ ହେବା ଦିଗରେ ତାଙ୍କୁ ସାହାଯ୍ୟ କରିବାକୁ ଫ୍ରିଡାଙ୍କୁ ଅନୁରୋଧ କରୁଛନ୍ତି । ପୁଣି ୧୯୨୪ ଜାନୁଆରି ୧୬ ତାରିଖର ଅଳକାଶ୍ରମଠାରୁ ଯେଉଁ ଚିଠି ଲେଖିଛନ୍ତି, ସେଥିରେ ଉଲ୍ଲେଖ କରିଛନ୍ତି ଯେ ଜାତୀୟ-ସମସ୍ୟା ସମ୍ପର୍କରେ ସେ ଗାନ୍ଧିଙ୍କୁ ଚିଠି ଲେଖିଛନ୍ତି । ସେହି ଚିଠିରେ ସେ ରାଜ୍ୟ ମଧ୍ୟରେ ଉତ୍ସାହର ଅଭାବ ଯୋଗୁଁ ନିଜର ବ୍ୟସ୍ତତା ପ୍ରକାଶ କରିଛନ୍ତି । ଏଥିଲାଗି

ଏକ ବୌଦ୍ଧିକ କେନ୍ଦ୍ରର ଆବଶ୍ୟକତା ସମ୍ପର୍କରେ ଲେଖିବା ସଙ୍ଗେସଙ୍ଗେ ଅଳ୍ପ କିଛି ତରୁଣ ଆଦର୍ଶବାଦୀ ଯୁବକଙ୍କ କଥା ଉଲ୍ଲେଖ କରିଛନ୍ତି ।

ସେ ସବୁ ଚିଠିରେ ଆଉ କଲେଜରେ ନପଢ଼ି ନିଜେନିଜେ ପଢ଼ାପଢ଼ି କରିବା ଓ ନିଜର ଶକ୍ତି ତଥା ସଂଯମ ବୃଦ୍ଧି ଦିଗରେ ନିଜକୁ ନିୟୋଜିତ କରିବାର ପରିକଳ୍ପନା ଫ୍ରିଡାଙ୍କୁ ଜଣାଇଛନ୍ତି । ସରଳାଙ୍କ ସମସ୍ୟା ସମାଧାନ କରିବା ଦିଗରେ ନିଜର ଅସାମର୍ଥ୍ୟ ଲାଗି ଦୁଃଖପ୍ରକାଶ କରିବା ସଙ୍ଗେସଙ୍ଗେ ଏଥିଲାଗି ତାଙ୍କ ଭାଇଭାଉଜ ଆଦିଙ୍କର ପ୍ରଭାବ ପ୍ରତିବନ୍ଧକ ହୋଇଛି ବୋଲି ଜଣାଇଛନ୍ତି । ତାଙ୍କର ସରଳାଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ରହିବ ନାହିଁ ବୋଲି ସେ ସ୍ଥିର କରିଥିବା ସେ ଫ୍ରିଡାଙ୍କୁ ଲେଖିଛନ୍ତି ଓ ସେଇଥିଲାଗି ତାଙ୍କୁ ସାହାଯ୍ୟ କରିବାରେ ନିଜ ମନରେ କୌଣସି କଳୁଷତା ନାହିଁ ବୋଲି ବି ସେ ଘୋଷଣା କରିଛନ୍ତି । ସେ ଯାହାହେଉ ଏଥିଲାଗି ଦରକାର ହେଲେ, ସେ ପରିବାରଠାରୁ ଅଲଗା ହୋଇ କିଛି କରିବାକୁ ଭାବିଛନ୍ତି ବୋଲି ମଧ୍ୟ ସୂଚାଇଛନ୍ତି । ସେ ଆପାତତଃ ବିବାହ କରିବେ ନାହିଁ ବା କୌଣସି ପ୍ରେମରେ ଜଡ଼ିତ ହେବେ ନାହିଁ ଏବଂ ତାଙ୍କର ପ୍ରେମ ମାନସିକ ସ୍ତରରେ ରହିବ ବୋଲି ଏହି ଚିଠିରୁ ଜଣାଯାଏ । ସରଳା ଆତ୍ମନିର୍ଭରଶୀଳ ହେବା ପର୍ଯ୍ୟନ୍ତ ତାଙ୍କୁ ସାହାଯ୍ୟ କରିବା ଲାଗି ବନ୍ଧୁ ଭାବରେ ତାଙ୍କର କର୍ତ୍ତବ୍ୟ ରହିଛି ବୋଲି ସେ ଏସବୁ ଚିଠିରେ ଜଣାଇଛନ୍ତି ।

ଏହା ପର ପତ୍ରରେ ଆଉ ସରଳାଙ୍କ କଥା ନାହିଁ; ଅଛି ମିନୁ ଆଉ ତାଙ୍କ ମା'ଙ୍କ କଥା, ବିବାହ ଦିଗରେ ନିଜ ମା'ଙ୍କ ବିରୋଧ ବିଷୟ । ପରବର୍ତ୍ତୀ ପତ୍ରମାନଙ୍କରୁ ଫ୍ରିଡାଙ୍କ ସହିତ ପ୍ରେମ, ବନ୍ଧୁ ବା ଭଗିନୀ ଭଳି ଜଣାଯାଏ ଏବଂ ଏଭଳି ଆନ୍ତରିକତା ଉଭୟଙ୍କ ମଧ୍ୟରେ ବହୁକାଳ ଥିଲା । ଏସବୁ ସତ୍ତ୍ୱେ ଫ୍ରିଡା ଆସିଲେ ମାଳତୀ ଦେବୀ ଅସ୍ୱସ୍ତି ବୋଧ କରନ୍ତି ବୋଲି ଫ୍ରିଡା ଅନ୍ୟତ୍ର ପ୍ରକାଶ କରନ୍ତି । ସେ ଏହାପରେ ସାରଙ୍ଗଧର ଦାସଙ୍କୁ ଛାଡ଼ି ସ୍ୱଦେଶକୁ ଫେରିଯାଇଥିଲେ ।

ନବବାବୁ ମନ୍ତ୍ରୀ ହେଲା ପରେ ଫ୍ରିଡାଙ୍କୁ ଓଡ଼ିଶା ଆସିବା ଲାଗି ନିମନ୍ତ୍ରଣ କରିଛନ୍ତି । ଓଡ଼ିଶାରେ ତାଙ୍କର ପୂର୍ବପରିଚିତ ହରେକୃଷ୍ଣ ମହତାବ ଏବଂ ନିତ୍ୟାନନ୍ଦ କାନୁନ୍‌ଗୋ ମନ୍ତ୍ରୀ ହୋଇ ଯେଭଳି ଉତ୍ସାହର ସହ କାମ କରୁଥିଲେ, ତାହା ଦେଖିବା ପାଇଁ ସେ ଫ୍ରିଡାଙ୍କୁ ଡାକିଛନ୍ତି ।

ଶେଷଥର ପାଇଁ ୧୯୬୨ ମସିହାରେ ସେ ବାଙ୍ଗାଲୋର ଆସିଥିଲା ବେଳେ ଏହି ୧୬ଖଣ୍ଡ ଚିଠି ନବବାବୁଙ୍କ ପାଖକୁ ପଠାଇଦେଇଥିଲେ । କାରଣ ତାଙ୍କର ହଠାତ୍ ମୃତ୍ୟୁ ହୋଇଥିଲେ ଚିଠିଗୁଡ଼ିକ ହୁଏତ ଅନ୍ୟ କାହା ହାତରେ ପଡ଼ିଯିବ । ସେତେବେଳକୁ ନବବାବୁ ବିନୋବାଙ୍କ ସହ ଭୂଦାନ କାମରେ ଲାଗିଥାନ୍ତି ବୋଲି ବି ଫ୍ରିଡା ଖବର ରଖିଥିଲେ ।

ନବବାବୁଙ୍କ ନିକଟକୁ ଫ୍ରିଡାଙ୍କ ଲେଖିଥିବା ଚିଠି ଉପଲବ୍ଧ ନୁହେଁ ।

## ଶାନ୍ତିନିକେତନ ସମ୍ପର୍କ :

ଶାନ୍ତିନିକେତନରେ ନବବାବୁ ୧୯୨୫ ମସିହାରେ ଦଶମାସ ରହିଥିଲେ । ସେତେବେଳେ ତାଙ୍କର ସହପାଠୀ ଥିଲେ ଜି. ରାମଚନ୍ଦ୍ରନ୍, ବି. ଗୋପାଳ ରେଡ୍ଡି, ଆର୍ଯ୍ୟନାୟକମ୍, ସୟଦ୍ ମୁସ୍ତାଫ୍ ଅଲ୍ଲି ଓ ମାଡ୍ରାଜରୁ ବାହାରୁଥିବା ଟ୍ରିବ୍ୟୁନ୍‌ର ପରବର୍ତ୍ତୀକାଳୀନ ସମ୍ପାଦକ ବିଶ୍ୱେଶ୍ୱର ପ୍ରଭୃତି । ନବବାବୁ ଓ ରାମଚନ୍ଦ୍ରନ୍ ଏକାଠି ରୋଷେଇ କରି ଖାଆନ୍ତି । ସେଇଠି ରହିବା ଭିତରେ ସେ ରବୀନ୍ଦ୍ରନାଥଙ୍କ ଛଡ଼ା ଅନ୍ୟ ବିଶିଷ୍ଟ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିଥିଲେ । ବିଶ୍ୱଭାରତୀର ଲାଇବ୍ରେରି ତାଙ୍କର ଜ୍ଞାନପିପାସାକୁ ବହୁ ପରିମାଣରେ ତୃପ୍ତି ଦେଇଥିଲା । ଶାନ୍ତିନିକେତନର ପ୍ରଭାବ ତାଙ୍କ ଉପରେ ଗଭୀର ଛାପ ସୃଷ୍ଟି କରିଥିଲା ବୋଲି ତାଙ୍କ ଭଣଜା ଜିତେନ୍ଦ୍ରନାଥ ମହାନ୍ତି କହନ୍ତି । ଏଣୁ ଜୀବନର ଚଳତ୍ ଶକ୍ତି ଥିବା ପର୍ଯ୍ୟନ୍ତ ଯେତେବେଳେ ସମୟ ସୁବିଧା ପାଇଛନ୍ତି, ସେ ଶାନ୍ତିନିକେତନରେ କିଛି କାଳ କଟାଇଛନ୍ତି । ଶେଷ ଥରକ, ଜରୁରୀକାଳୀନ ପରିସ୍ଥିତି ପରେ, ସେ ମାଳତୀ ଦେବୀଙ୍କ ସହିତ ଯାଇଥିଲେ ଓ ସେଠାରେ ଆସି ତାଙ୍କ ସହିତ ମିଶିଥିଲେ ବହୁବର୍ଷର ବନ୍ଧୁ ଅନ୍ନଦାଶଙ୍କର ରାୟ ଓ ବନ୍ଧୁପତ୍ନୀ ଲୀଲା ରାୟ । ଏମାନେ ଅଧ୍ୟାପକ ଖଗେଶ୍ୱର ମହାପାତ୍ରଙ୍କ ସହ ପାଖର ଏକ ଆଦିବାସୀ ଗାଁକୁ ଯାଇ ସେଠାକାର ଲୋକଙ୍କ ସହିତ କିଛି ସମୟ କଟାଇଥିଲେ । ବିପ୍ଳବୀ ଓ ଏଣେ ଦେଖିବାକୁ ଗାଉଁଲି ବେଶଭୂଷାର ନବକୃଷ୍ଣ ଚୌଧୁରୀଙ୍କ ଗଭୀର କଳାବୋଧର ଉତ୍ସ ଏହି ଶାନ୍ତିନିକେତନରୁ ।

ନବବାବୁଙ୍କର ଏଇଠି ଦେଖାହୁଏ ମାଳତୀ ସେନ୍‌ଙ୍କ (ମିନୁ) ସହିତ । ତାଙ୍କର ତେଜୀୟାନ ଚେହେରା ନବବାବୁଙ୍କ ଦୃଷ୍ଟିଆକର୍ଷଣ କରିଛି । ସେ ବି ନବବାବୁଙ୍କ ଦ୍ୱାରା ଆକୃଷ୍ଟ ହୋଇଛନ୍ତି । ସେହି ଆଳାପ ଭିତରେ ବି ସେ ଓଡ଼ିଶାର ଜଣେ ଅଳ୍ପ ପଢ଼ାପଢ଼ି କରିଥିବା ବିଦୁଷୀ ମହିଳାଙ୍କ ଗୁଣଗାନ କରିଛନ୍ତି । ଶାନ୍ତିନିକେତନରୁ ସେ ଝିଆରୀ ଚୁନିଙ୍କୁ ଲେଖିଥିଲେ ଯେ ସେଠାରେ ନବବାବୁଙ୍କର ଏକ ଝିଅସାଙ୍ଗ ଥିଲେ, ଯାହାଙ୍କ ବୟସ ତା' ଠାରୁ ଆଠ ଦଶ ବର୍ଷ ଅଧିକ । ଚୁନିଅପା ଏ ଚିଠିର ତାତ୍ପର୍ଯ୍ୟ ବୁଝିପାରି ବୁଲୁଭାଇଙ୍କୁ ଚିଠିର ମର୍ମ ସମ୍ପର୍କରେ ଇସାରା ଦେଇଥିଲେ । ୧୯୨୫ରୁ ୧୯୨୬ ଜୁଲାଇ ପର୍ଯ୍ୟନ୍ତ ନବବାବୁ ନାନା ଦ୍ୱନ୍ଦ୍ୱ ଓ ନାନା ଦିଗର ଚାପ ମଧ୍ୟରେ ଗତି କରୁଛନ୍ତି ।

## ମୋଡ଼ :

ଶାନ୍ତିନିକେତନରୁ ଫେରି ନବବାବୁ ସର୍ଟ୍‌ହାଣ୍ଡ ଓ ଟାଇପ୍‌ରାଇଟିଂ ଶିଖିବା ଲାଗି କଲିକତାର ୩୭ ନମ୍ବର ହାରିସନ୍ ରୋଡ୍‌ରେ ରହିଲେ । ଡିଗ୍ରୀ ତ ନାହିଁ, ଏତକ ଶିଖିଗଲେ ସେ ସାମ୍ବାଦିକତା କରି କିଛି ରୋଜଗାର କରିପାରିବେ ବୋଲି ଭାବୁଥାନ୍ତି । ରୋଜଗାରକ୍ଷମ

ହେବା ତାଙ୍କ ନିଜ ପାଇଁ ଦରକାର ନଥିଲା । ଦୁଃଖୀକୁ ସ୍ୱାବଲମ୍ବୀ କରିବା ଦିଗରେ କପିଳାସଠାରେ, ବନ୍ଧୁ ଅନ୍ନଦାଶଙ୍କର ରାୟଙ୍କ ସହିତ ଯେଉଁ ପରିକଳ୍ପନା ହୋଇଥିଲା, ସେଇଥିପାଇଁ ଥିଲା ଏ ପ୍ରଚେଷ୍ଟା । ହାରିସନ୍ ରୋଡ୍‌ର ୩୭ ନମ୍ବର ଘର ପାଖାପାଖି ସ୍ଥାନ ସେତେବେଳେ ଲଢୁଆ ରାଜନୀତିର ଗୋଟିଏ ଗରମାଗରମ କେନ୍ଦ୍ର ହୋଇଥାଏ । ନବବାବୁ ସେଠାର ଜଣେ ସନ୍ତ୍ରାସବାଦୀଙ୍କ ବହିଦୋକାନକୁ ଯାଆନ୍ତି, ବହି ପଢ଼ିବା ନିଶାରେ ଓ ଶୁଣନ୍ତି ନାନା ଚାଞ୍ଚଲ୍ୟକର କଥା । ଏହି ଅବସରରେ ପ୍ରାୟ ନବବାବୁଙ୍କର ରୋମାଣ୍ଟିକ ସ୍ୱପ୍ନର ଅବସାନ ଘଟିଛି । ଆଖିଆଗରେ ଦେଶର ମୁକ୍ତି ଆହ୍ୱାନ । ଦୁଃଖୀଠାରୁ ଦୁଃଖିନୀ ଭାରତମାତାର ବନ୍ଧନ ଛିନ୍ନ ତାଙ୍କ ପାଇଁ ଆହୁରି ଗୁରୁତ୍ୱପୂର୍ଣ୍ଣ ହୋଇଛି । ଦୁଃଖୀ (ସରଳା ଦେବୀ) ଭାଗୁବାବୁଙ୍କୁ (ଭାଗୀରଥି ମହାପାତ୍ର) ଛାଡ଼ିବେ—ସେକଥା ତ ଓଡ଼ିଶାର ଜାତୀୟ ଆନ୍ଦୋଳନରେ ଭୂମିକମ୍ପ ସୃଷ୍ଟି କରିବ । କାରଣ ସେତେବେଳକୁ ଗୋପବନ୍ଧୁ ଦାସଙ୍କ ପଛକୁ ଥାଆନ୍ତି ଯୁବନେତା ଭାଗୀରଥି ମହାପାତ୍ର । ଦୁଃଖୀ ପୁଣି ଆଉଜଣେ ଯୁବନେତା ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ଭଉଣୀ । ତେଣୁ କଂଗ୍ରେସର ତିନି ତୁଙ୍ଗ ପରିବାରରେ ମହାବିଭ୍ରାଟ ଦେଖାଦେବ ଓ ତାହା ଜାତୀୟ ଆନ୍ଦୋଳନକୁ ହୁଲୁସ୍ଥୁଲ କରିଦେବ । ଏସବୁ କଥା ବିଚାର କରି ନବବାବୁ ପ୍ରାୟ ବିକଳ୍ପ ବ୍ୟବସ୍ଥାର ନିଷ୍ପତ୍ତି ନେଇଛନ୍ତି ।

**ବିବାହ :**

ମାଳତୀ ସେନ୍ (ମିନୁ) ସେତେବେଳେ ନିଉ ପାର୍କ ଷ୍ଟ୍ରିଟ୍‌ର ୧୦ ନମ୍ବର ଘରେ ନିଜ ପରିବାର ସହିତ ରହୁଥାନ୍ତି । ଉଭୟଙ୍କ ମଧ୍ୟରେ ଦେଖାସାକ୍ଷାତ ହୁଏ ଏବଂ ଉଭୟ ମଝିମଝିରେ ଏକାଠି ଶାନ୍ତିନିକେତନ ଯାଆନ୍ତି । ଥରେ ଫେରିଲା ବେଳକୁ ଟ୍ରେନ୍‌ରେ ହିଁ ନବବାବୁଙ୍କ ତରଫରୁ ବିବାହ ପ୍ରସ୍ତାବ ଉଠିଲା । ସେକଥା ଯେତେବେଳେ ଉଭୟ ପରିବାର ନିକଟରେ ପହଞ୍ଚିଲା, ତାହାକୁ ଉଭୟ ପରିବାରର ମୁଖ୍ୟ ଗ୍ରହଣ କରିପାରିନଥିଲେ । ମିନୁ ଥିଲେ ଏକ ପ୍ରତିଷ୍ଠିତ ବଙ୍ଗୀୟ କାୟସ୍ଥ ପରିବାରର, ପିଲାମାନଙ୍କ ମଧ୍ୟରେ ସବୁଠାରୁ ସାନ ଓ ଗେହ୍ଲା । ଭାଇମାନେ ମିନୁଠାରୁ ବୟସରେ ବେଶ୍ ବଡ଼ ଓ ପ୍ରତିଷ୍ଠିତ । ଭାଇମାନଙ୍କ ଲାଗି ଓ ମାମୁମାନଙ୍କ ପାଇଁ ଝିଅକୁ, ବି.ଏ. ପାସ୍ କରିନଥିବା ବେକାର ଯୁବକକୁ କିଭଳି ବିବାହ ଦେବେ, ତାହାହିଁ ହୋଇଥାଏ ସମସ୍ୟା । ଏଠାରେ ଉଲ୍ଲେଖ କରିବାର କଥା ଯେ, ମାଳତୀ ଦେବୀଙ୍କର ଅଜା ଥିଲେ କଟକ ଜିଲ୍ଲାମାଜିଷ୍ଟ୍ରେଟ୍ ତଥା ଜିଲ୍ଲା-ଜଜ୍ ସେବେଳର ଆଇ.ସି.ଏସ୍. । ବାପା ବି ଥିଲେ ବାର୍-ଆଟ୍-ଲ । ବାପା କିନ୍ତୁ ମିନୁଙ୍କ ପିଲାଦିନରୁ ଦେହତ୍ୟାଗ କରିଥିଲେ । ଏଭଳି ଉଚ୍ଚଶିକ୍ଷିତ ପରିବାର ପାଇଁ ନବକୃଷ୍ଣ ଚୌଧୁରୀଙ୍କ ଭଳି ପାତ୍ର ଖୁବ୍ ଆକର୍ଷଣୀୟ ନଥିଲେ । କିନ୍ତୁ ମିନୁର ଆଗ୍ରହ ଯୋଗୁଁ ସେମାନେ ଖବର ନେଇ ଜାଣିଲେ ଯେ ପାତ୍ରଙ୍କର କଟକରେ କୋଠା ଅଛି ଏବଂ ଚଳିବା ପାଇଁ କିଛି ସମ୍ବଳ ମଧ୍ୟ ରହିଛି ।

ଏହି ପ୍ରସ୍ତାବରେ ବିଶେଷ ଭାବରେ ବିରୋଧ କରି ଅଡ଼ିବସିଲେ ମା' ପଦ୍ମାବତୀ; ସେ ଘର ଛାଡ଼ି ପୁରୀ ପଳାଇଲେ । ନବବାବୁ ଏଣେ ନଛୋଡ଼ବନ୍ଦା । ରମାଦେବୀ ବୋହୂ ହିସାବରେ ଥିଲେ ସର୍ବାଳଙ୍କୃତା । ତଥାପି ସେ ରମାଦେବୀଙ୍କୁ ପ୍ରଥମରୁ ଟିକିଏଟିକିଏ ନାକ ଟେକୁଥିଲେ । ଏ ଝିଅ ପୁଣି ବ୍ରାହ୍ମ ଓ ବଙ୍ଗାଳୁଣୀ । ସେତେବେଳେ ବ୍ରାହ୍ମମାନଙ୍କୁ ଖ୍ରୀଷ୍ଟିଆନଙ୍କ ଠାରୁ ହୀନ ବିଚାର କରାଯାଉଥିଲା–ଯେହେତୁ ସେମାନେ ବର୍ଣ୍ଣସଙ୍କର; ନା ହିନ୍ଦୁ, ନା ଖ୍ରୀଷ୍ଟିଆନ୍ । ଏଣୁ ସେଭଳି ଝିଅ ସହିତ ବିବାହ ପ୍ରସ୍ତାବ କଥା ଶୁଣି ମା' ଖଡ୍ଗହସ୍ତା । ଏ ବିବାହର ଦ୍ୱନ୍ଦ୍ୱ ବିଷୟ ରମାଦେବୀ ତାଙ୍କ ଆତ୍ମଜୀବନୀ 'ଜୀବନ ପଥେ'ର 'ଟୁକ ବିଭାଘର' ଅଧ୍ୟାୟରେ ବିଶେଷ ଭାବରେ ବର୍ଣ୍ଣନା କରିଛନ୍ତି । ଏଣୁ ବିବାହ ପ୍ରସ୍ତାବ ଭାଙ୍ଗିବା ଲାଗି ପଦ୍ମାବତୀ ମାଳତୀ ଦେବୀଙ୍କ ମା'ଙ୍କ ନିକଟକୁ, ନବବାବୁଙ୍କ ନିନ୍ଦା କରି, ରଘୁ ମାଷ୍ଟ୍ରଙ୍କ ଦ୍ୱାରା ବେନାମୀ ଚିଠି ଲେଖି ପଠାଉଥିଲେ ଯେ ନବ ଦୁଶ୍ଚରିତ୍ର, ମଦ ଖାଏ ଇତ୍ୟାଦି । ବହୁ ଲୋକ ବୁଝାଇଲେ । ତଥାପି ସେ ଅଟଳ । ବିବାହ ପ୍ରସ୍ତାବ ଭାଙ୍ଗିବା ଉଦ୍ଦେଶ୍ୟରେ ସେ ରଘୁ ମାଷ୍ଟ୍ରଙ୍କ ଦ୍ୱାରା ଯେଉଁ ଚିଠି ଲେଖାଇ ମାଳତୀ ଦେବୀଙ୍କ ମା'ଙ୍କ ନିକଟକୁ ପଠାଇଥିଲେ, ସେଥିରେ ଭାବୀ ଶାଶୁ ସ୍ନେହଲତା ବିବ୍ରତ ହୋଇ ନବବାବୁଙ୍କ ନିକଟକୁ ଚିଠି ଲେଖିଛନ୍ତି । ତା'ର ଉତ୍ତରରେ ନବବାବୁ ଯେଉଁ ପତ୍ର ଲେଖିଥିଲେ, ତାହାର ସାରାଂଶରୁ ଜଣାଯାଏ ଯେ, ଏହି ବିବାହରେ ମା'ଙ୍କ ଏକାନ୍ତ ବିରୋଧକୁ ସମ୍ଭାଳିବା ତାଙ୍କ ପକ୍ଷରେ କଷ୍ଟକର ହୋଇଥିଲା । ଏକ ପକ୍ଷରେ ବିବାହ ପାଇଁ ନିଜର ଅଙ୍ଗୀକାର, ଅନ୍ୟପକ୍ଷରେ ମା'ଙ୍କର ଅନବରତ ଅଶ୍ରୁବର୍ଷଣ ମଧ୍ୟରେ ସେ କଅଣ କରିବେ, ସ୍ଥିର କରିପାରୁନଥାନ୍ତି । ଏହି ଚିଠିରୁ ତାଙ୍କ ମନର ଅବସ୍ଥା ବେଶ୍ ବୁଝିହୁଏ । ସଠିକ ନିଷ୍ପତ୍ତିରେ ପହଞ୍ଚିବା ଲାଗି ସେ ଦୁଇଦିନ ଉପବାସ କରିଥିଲେ ବୋଲି ଭାବୀ ଶାଶୁଙ୍କୁ ଲେଖିଛନ୍ତି ଓ ନିଜେ ଏକ ଅତି ସରଳ ଜୀବନ ବାଛିନେଇଛନ୍ତି ବୋଲି ଜଣାଇଛନ୍ତି । ଏଣୁ ମା'ଙ୍କ କଥାକୁ ନମାନି ବିବାହ କଲେ ମିନୁଙ୍କୁ ଏକ କଠିନ ଜୀବନ ଭିତରେ ଯିବାକୁ ହେବ ବୋଲି ସେ ଉକ୍ତ ଚିଠିରେ ସୂଚନା ଦେଇଛନ୍ତି ।

ଏହି ଚିଠିର ୮୪ ଦିନ ପରେ ଗୋପବନ୍ଧୁ ଚୌଧୁରୀ ସ୍ନେହଲତାଙ୍କଠାରୁ ଅନ୍ୟ ଏକ ଚିଠି ପାଇଛନ୍ତି । ସେ ଚିଠି ସହିତ ରଘୁ ମାଷ୍ଟ୍ରଙ୍କ ଦ୍ୱାରା ଲିଖିତ ଚିଠିଟି ଗୋପବାବୁଙ୍କ ନିକଟକୁ ଫେରିଆସିଛି । ଏହାର ଉତ୍ତରରେ ଗୋପବାବୁ ଚିଠିରେ ବିବାହ ସମ୍ପର୍କରେ ନିଜର ସ୍ଥିତି ଓ ମତ ସ୍ନେହଲତାଙ୍କୁ ଜଣାଇଛନ୍ତି । ମା'ଙ୍କ ଅନିଚ୍ଛା ସତ୍ତ୍ୱେ ନବବାବୁ ବିବାହ କଲେ ଗୋପବାବୁ ମା'ଙ୍କୁ ଛାଡ଼ିପାରିବେ ନାହିଁ ବୋଲି ଏହି ଚିଠିରେ ଲେଖିଛନ୍ତି । ଏମିତି ଅଛିଣ୍ଡା ଅବସ୍ଥା କିଛି କାଳ ଚାଲିଲା । ଶେଷରେ ପଦ୍ମାବତୀଙ୍କ ଭାଇ ହରି ମହାନ୍ତି ଏବଂ ବିଜୁ ପଟ୍ଟନାୟକଙ୍କ ବାପା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଆସି ତଙ୍କୁ ବୁଝାବୁଝି କରିବାରୁ ସେ ଶେଷରେ ନଇଁଲେ । ୧୯୨୭ ମସିହା ଜୁଲାଇ ମାସରେ ହିନ୍ଦୁ ପଦ୍ଧତିରେ ବିଭାଘର ହେଲା । ପୁତୁରା ବୁଲୁ

(ମନମୋହନ ଚୌଧୁରୀ) ମାର୍କୁଣ୍ଡି ହୋଇ ଯାଇଥାନ୍ତି । ଆତ୍ମଜୀବନୀ 'କସ୍ତୁରୀମୃଗ ସମ'ରେ ସେ ବର୍ଣ୍ଣନା କରିଛନ୍ତି ଯେ ବରଯାତ୍ରୀ ଭାବରେ ଯାଇଥିଲେ ଭାଗୀରଥି ମହାପାତ୍ରଙ୍କ ବାପା ଦୁର୍ଗାଚରଣ ମହାପାତ୍ର, ଗୋପବନ୍ଧୁ ଚୌଧୁରୀ, ଉପେନ୍ଦ୍ରକିଶୋର ଦାସ, ନିତ୍ୟାନନ୍ଦ କାନୁନ୍‌ଗୋ, ନଗେନ୍ଦ୍ରନାଥ ଦାସ, ଶ୍ରୀଧର ମହାନ୍ତି ପ୍ରଭୃତି ଅନେକ ବିଶିଷ୍ଟ ବ୍ୟକ୍ତି ଏବଂ ସେଆଡୁ ଯୋଗ ଦେଇଥାନ୍ତି ଦୀର୍ଘଦିନର ବନ୍ଧୁ ଅନ୍ନଦାଶଙ୍କର ରାୟ ଓ ଶାନ୍ତିନିକେତନର ବନ୍ଧୁ ବି. ଗୋପାଳ ରେଡଡୀଙ୍କ ଭଳି କେତେକ ବ୍ୟକ୍ତି । ବିବାହ ଲୋଅର ସର୍କୁଲାର ରୋଡ୍‌ର ଗୋଟିଏ ଘରେ ହେଲା । କନ୍ୟାପକ୍ଷ ଲୋକଙ୍କର ବହୁତ ଭିଡ଼ । ମାଳତୀ ସେନ୍‌ଙ୍କ ପିଉସୀଝିଅ ଭଉଣୀ ବୁଲୁ, କଟକରେ ଅନେକ ବର୍ଷ ଥିବାରୁ, ଚୌଧୁରୀ ପରିବାର ସହିତ ପରିଚିତ ଥିଲେ । ମାର୍କୁଣ୍ଡି ବେଶ ହୋଇଥିବା ବୁଲୁବାବୁଙ୍କୁ ସେ ମହିଳାମହଲକୁ ଭିଡ଼ିନେଇ ଠିଆକରିଦେଲେ ଏକ କାଳି କନ୍ୟା ସାମ୍‌ନାରେ । କହିଲେ, ''ଏଇ ଦ୍ୟାଖୋ ତୋମାର କାକୀମା ।''

ଏହାର ପରଦିନ ରବୀନ୍ଦ୍ରନାଥଙ୍କ ସ୍ତ୍ରୀ ତାଙ୍କ ଝିଅଙ୍କ ପାଖକୁ ଏହି ବିବାହର ଖବର ଜଣାଇ ଲେଖିଛନ୍ତି, ''କାଲ୍ ମିନୁର ବିୟେ ହୟେଗେଲ ଏକ ଓଡ଼ିଆ ଛେଲେର ସଙ୍ଗେ । ଛେଲେଟି ଦେଖ୍‌ତେ ଶୁନ୍‌ତେ ବାଙ୍ଗାଲୀର ମତ, ଆର୍ ଶିକ୍ଷିତ । ଅଳ୍ପ ବୟସ । ତା'ର ନାମଟା ନବ ଚୌଧୁରୀ ।'' (୧୯୯୪ ମସିହା ପୂଜା ସଂଖ୍ୟା 'ଦେଶ' ପତ୍ରିକାରେ ପ୍ରକାଶିତ ରବୀନ୍ଦ୍ରନାଥଙ୍କ ସ୍ତ୍ରୀଙ୍କର ତାଙ୍କ ଝିଅ ପାଖକୁ ପତ୍ର ଦ୍ରଷ୍ଟବ୍ୟ ।)

ମିନୁଙ୍କୁ କୁହାଯାଇଥାଏ, ଓଡ଼ିଆ ପରମ୍ପରା ଅନୁସାରେ ସେ କେଉଁଠି କିପରି ବିଧିବିଧାନ ଅନୁସାରେ କାର୍ଯ୍ୟ କରିବେ । ସେ ତ ଏସବୁ ଜାଣିନଥାନ୍ତି, ଏଣୁ ବେଳେବେଳେ ଅଜାଗାରେ ଓଲଗି ବି ହେଲେ । ହେଲେ, ସେସବୁ ବାଛିବାକୁ ଘରେ ବିଶେଷ କେହି ନଥିଲେ । ବନ୍ଧୁବାନ୍ଧବଙ୍କ ସହଯୋଗ ବିଶେଷ ନଥିଲା କି ବୋହୂକୁ ସଙ୍ଖୋଳିବା ପାଇଁ ଗହଳି ନଥିଲା ।

ବିବାହ ପାଇଁ ତ ପଦ୍ମାବତୀ ଦେବୀ ଅଗତ୍ୟା ରାଜି ହେଲେ ; ହେଲେ, ବିବାହ ପରେ ରମାଦେବୀଙ୍କୁ ମୁଣ୍ଡ ଛୁଆଁଇ ହଲପ କରାଇଥିଲେ ଯେ ସେ ବି ବୋହୂ ହାତରୁ ଖାଇବେ ନାହିଁ । ଏଣୁ ବିବାହର ୫ ବର୍ଷ ପର୍ଯ୍ୟନ୍ତ ରମାଦେବୀ ମାଳତୀ ଦେବୀଙ୍କ ହାତରନ୍ଧା ଖାଇ ନଥିଲେ । ୧୯୩୨ ମସିହା ହରିଜନ ଆନ୍ଦୋଳନରେ, ଦି' ଯାଆ ଯୋଗଦେବା କାଳରେ, ରମାଦେବୀ ମାଳତୀ ଦେବୀଙ୍କ ସଙ୍ଗରେ ଖାଇଲେ । ପଦ୍ମାବତୀ ୧୯୫୫ ମସିହାରେ ଦେହତ୍ୟାଗ କଲେ । ତାଙ୍କର ଶେଷ ସମୟକୁ ମାଳତୀ ଦେବୀ ତାଙ୍କର ଅନେକ ସେବା କରିଥିଲେ । ଶାଶୁ ସେଥିରେ ସନ୍ତୁଷ୍ଟ ହୋଇ ଶେଷ ଜୀବନରେ ବୋହୂଙ୍କ ରନ୍ଧା ଖାଇଥିଲେ ।

ମାଳତୀ ଦେବୀ ଆସିବା ପରେ ଚୌଧୁରୀଘରର ବହୁ ସାଂସ୍କୃତିକ ଉନ୍ନତି ହେଲା । ସେ ତ ଅତି ଉନ୍ନତ ବୀଣା ବଜାଇପାରନ୍ତି ଓ ଗୀତ ବି ଗାଆନ୍ତି ଅତି ଚମତ୍କାର । ପ୍ରତିଦିନ

ପ୍ରଭାତରୁ ଓ ସନ୍ଧ୍ୟା ପରେ ବୀଣାବାଦନ ପାଖଆଖ ପଡ଼ୋଶୀଙ୍କୁ ନୂଆନୂଆ ଲାଗିଲା । ରବୀନ୍ଦ୍ର ସଙ୍ଗୀତର ନିର୍ଝର ତ ଯେତେବେଳେ ସେତେବେଳେ ଚାଲେ । ଗୋକୁଳାନନ୍ଦ ଚୌଧୁରୀଙ୍କ ଘର ପାଖକୁ ଲାଗି ଅଭୟ ଚୌଧୁରୀ ଓ ଜ୍ୟୋତିରିନ୍ଦ୍ର ଜୋଆରଦାର୍‌ଙ୍କ ଘର । ବିଭାଘର ବେଳେ ଯେଉଁଭଳି ଭୋଜିଭାତ ହୋଇ ବନ୍ଧୁବାନ୍ଧବ ଓ ସାହିଭାଇ ଖାଆନ୍ତି, ଏ ବିବାହରେ ସେଭଳି ହୋଇନଥିଲା । ଏଣୁ ଜ୍ୟୋତିରିନ୍ଦ୍ର ଜୋଆରଦାର୍ ଓ ଅଭୟ ଚୌଧୁରୀ ବିବାହର ଅଳ୍ପ କେଇଦିନ ପରେ ନବବାବୁଙ୍କ ନିକଟରେ ଦାବି କଲେ ଯେ ବିବାହଭୋଜି ଖାଇବେ ଓ ସଙ୍ଗୀତ ଶୁଣିବେ । ଭୋଜି ବଦଳରେ ଅବଶ୍ୟ ସାମାନ୍ୟ ଜଳଯୋଗ ହେଲା ଏବଂ ବୀଣାବାଦନ ଓ ସଙ୍ଗୀତ ଆସର ହେଲା । ଏତକ ସରିଲା ପରେ ଏମାନେ ଜିଦ୍ ଧରିଲେ, ନା, ହେଲା ନାହିଁ, ରୀତିମତ ଭୋଜି ହେଉ । ଜ୍ୟୋତିରିନ୍ଦ୍ର ଓ ଅଭୟ ପଡ଼ୋଶୀଘର ପିଲା ; ପୁତୁରା ବୁଲୁବାବୁଙ୍କର ଖୁବ୍ ସାଙ୍ଗ । ସେମାନଙ୍କ ବାଧ୍ୟବାଧକତାରେ ଏକ ଛୋଟ ଧରଣର ଭୋଜି ହୋଇ ଅଳ୍ପ କେତେକ ଘନିଷ୍ଠ ବନ୍ଧୁଙ୍କୁ ନିମନ୍ତ୍ରଣ କରାଯାଇଥିଲା । ମାଳତୀ ଦେବୀ ଆସିବା ପରେ ଚୁନୀ (ଅନ୍ନପୂର୍ଣ୍ଣା) ବୀଣା ବଜାଇବା ଓ ଗୀତ ବୋଲିବା ଶିଖିଲେ । ଗଣେଶ ଓ ସରସ୍ୱତୀ ପୂଜା ଉପଲକ୍ଷରେ ରଙ୍ଗିନ କାଗଜ ଆଦି ବ୍ୟବହାର ନକରି ଫୁଲପତ୍ର ଆଦି ଦେଇ ସାଜସଜ୍ଜାର ଶୈଳୀ ଚାଲୁ ହେଲା । ବୁଲୁବାବୁଙ୍କର ପିଲାଦିନରୁ ଚିତ୍ରକଳା ଦିଗରେ ଖୁବ୍ ଆଗ୍ରହ ଓ ଦକ୍ଷତା ଥିଲା । କିନ୍ତୁ ଖୁଡ଼ୀ ଆସିବା ପରେ ତାଙ୍କ ପ୍ରଭାବରେ ଅବନୀନ୍ଦ୍ରନାଥ, ନନ୍ଦଲାଲ ବସୁ ଓ ଗଗନେନ୍ଦ୍ରନାଥ ଠାକୁର ପ୍ରଭୃତିଙ୍କ ଚିତ୍ରର କୌଶଳ ଚୁନୀ ଓ ବୁଲୁ ଶିଖିଗଲେ । ଚୌଧୁରୀ ଘରେ ସଂସ୍କୃତିର ଏକ ନୂଆ ପୁଟ ଦେଖାଦେଲା । ଏହାଛଡ଼ା ପିଲା ଦୁହିଁଙ୍କର ଚାଲିଚଳନରେ ବହୁ ଉନ୍ନତି ହେଲା । ଶୋଇବା ପୂର୍ବରୁ ଗୋଡ଼ଧୋଇବାଟା ମାଳତୀ ଦେବୀ ଶାଶୁଘରେ ଚଳେଇଲେ । ଚୁନୀଙ୍କର ମୁଣ୍ଡ ବାଳରେ ରୁପି ଦେଖି ସେ ନିଜ ହାତରେ କେଶକୁ ଛୋଟ ଛୋଟ କରିଦେଲେ–ଚୁନୀ ବି ଆଧୁନିକା ଦେଖାଗଲେ । ଏହି ସମୟରେ ଜଣେ ସନ୍ତ୍ରାସବାଦୀଙ୍କୁ ନବବାବୁ ଓ ମହତାବବାବୁ ସାଇକେଲ୍‌ରେ ନେଇ ନବବାବୁଙ୍କ ଗାଁ ଖେରସରେ ରଖାଇଥିଲେ । ମାଳତୀ ଦେବୀ ତାଙ୍କୁ ନିଜର ମାମୁପୁଅ ଭାଇ ବୋଲି ପରିଚୟ ଦେଇଥିଲେ । ପରେ ସେ କଟକରେ ପୋଲିସ ଦ୍ୱାରା ଧରାପଡ଼ିଥିଲେ ।

**ନୀଡ଼ ରଚନା :**

ଏସବୁ ସତ୍ତ୍ୱେ ଶାଶୁ ବୋହୂଙ୍କ ଆଡ଼ଛାଡ଼ ନବବାବୁ ଓ ମାଳତୀ ଦେବୀଙ୍କୁ ଭାରି ବାଧିଲା । ମାଳତୀ ଦେବୀଙ୍କୁ ଅଛୁଆଁ ଭଳି ବ୍ୟବହାର କରାଗଲା । ଗୋକୁଳାନନ୍ଦ ଚୌଧୁରୀଙ୍କର ଜଗତସିଂହପୁର ପାଖ ତରିକୁନ୍ଦରେ କିଛି ଜମି ଓ ବଖରାଏ ଘର ଥିଲା । ନବବାବୁ ପ୍ରଥମେ ଯାଇ ସେହିଠାରେ ରହି ଉନ୍ନତ ଧରଣର ଚାଷର ଯୋଜନା କଲେ । ସେ ଗୋରୁଗାଈଙ୍କ

ସଙ୍ଗରେ ଏକ ଘରେ ରହୁଥିଲେ । ମାଳତୀ ଦେବୀଙ୍କ ଭାଇ ସେ ଘରକୁ ଦେଖି ଆଉ ଏକ ଘର ପାଇଁ ଏକହଜାର ଟଙ୍କା ଦେଇଥିଲେ । ଘର ତିଆରି ପରେ ନବବାବୁ ମାଳତୀ ଦେବୀଙ୍କୁ ସେଠାକୁ ନେଇଗଲେ । ସେଠାରେ ସେ ଉନ୍ନତ ଧରଣର ଆଖୁ, ଆଳୁ ଓ ଚିନାବାଦାମ ଚାଷ କରାଇଲେ, ଉନ୍ନତ ଧରଣର ଗୁଡ଼ ତିଆରି ପଦ୍ଧତି ଚାଷୀଙ୍କୁ ଶିଖାଇଲେ । ସାବରମତୀ ଆଶ୍ରମ ଓ ଶାନ୍ତିନିକେତନରୁ ଆହରଣ କରିଥିବା ଅଭିଜ୍ଞତା ଏହିଠାରେ ପ୍ରୟୋଗ କରାଗଲା । ନବକୃଷ୍ଣ ଚୌଧୁରୀଙ୍କ ସୁରୁଚିପୂର୍ଣ୍ଣ ଚାଲିଚଳନ ଓ ମାଳତୀ ସେନ୍‌ଙ୍କ ରୁଚିସମ୍ପନ୍ନ ଜୀବନ ପୂରା ନୂଆ ମୋଡ଼ ନେଇଚାଲିଲା । ସେମାନେ ପୂରାପୂରି ଗାଉଁଲି ହୋଇଗଲେ ଏବଂ ଚଷା ଚାଷୁଣୀଙ୍କ ସଙ୍ଗରେ ମିଶିଗଲେ । ତେବେ ଏଠାକାର ଜୀବନ ମାଳତୀ ଦେବୀଙ୍କ ପାଇଁ ପ୍ରଥମେ ଭାରି କଷ୍ଟଦାୟକ ହୋଇଛି । ଗାଧୁଆଘର ଓ ପାଇଖାନା ନାହିଁ । ଖାଇବା ପୂରାପୂରି ଭିନ୍ନ ଢଙ୍ଗର । ମୋଟା ଖଦଡ଼ ପିନ୍ଧିବାକୁ ହୁଏ । ଜିଲ୍ଲା ବୋର୍ଡ଼ ସଭ୍ୟ ଭାବରେ ନବବାବୁ ଯେଉଁ ସାମାନ୍ୟ ଗସ୍ତ ଖର୍ଚ୍ଚ ପାଇଥାନ୍ତି, ସେଇଥିରେ କଷ୍ଟେମଷ୍ଟେ ଚଳନ୍ତି । ନବବାବୁ କିଭଳି ତାଙ୍କୁ ପୂରା ଚାଷୁଣୀ କରିଦେଇଛନ୍ତି, ସେହି ଦୁଃଖ ମାଳତୀ ଦେବୀ ଉଭୟଙ୍କର ବନ୍ଧୁ ଅନ୍ନଦାଶଙ୍କର ରାୟଙ୍କ ପାଖକୁ ଚିଠିରେ ଜଣାଇଥିଲେ । ଉଭୟ ହରିଜନ ଓ ମୁସଲମାନଙ୍କ ଘରେ ଚଳପ୍ରଚଳ ହେଲେ, ନୈଶ ବିଦ୍ୟାଳୟ ଚଳାଇଲେ ଏବଂ ପ୍ରଚଳିତ ଅନ୍ଧବିଶ୍ୱାସ ଦୂର କରିବା ଭଳି ବାତାବରଣ ସୃଷ୍ଟି କଲେ । ମାଳତୀ ଦେବୀ ହରିଜନଙ୍କ ଘରକୁ ଯାଉଥିବାରୁ ଓ ହରିଜନମାନେ ତାଙ୍କ ଘରକୁ ଆସୁଥିବାରୁ ଭାରି ସମାଲୋଚନା ହୋଇଥିଲା । ଏସବୁ ସତ୍ତ୍ୱେ ସେ ଗାଉଁଲି ସ୍ତ୍ରୀ ଲୋକଙ୍କ ସାଙ୍ଗରେ ମିଶି ତାଙ୍କଠାରୁ ପିଲାଙ୍କୁ ଖେଳେଇବା ଓଡ଼ିଆ ଗୀତ ସବୁ ଶିଖିଲେ ।

ମାରିଗଲି କାଣ୍ଡଶର, ମହାନଦୀ ପାଣି କଳା ଘୁମର,
ବୋଉଲୋ !
ଦେଖିଲେ ମାରଇ ଡର ।
ବା
ବାଇଆ ମାଆର ସରୁ କାଟେଣୀ
ପୁତାକୁ ପିନ୍ଧାଏ ପାଟ ପତନୀ ।

ଚୁନୀ (ଝିଆରୀ) ଯେତେବେଳେ ତରିକୁନ୍ଦ ଆସନ୍ତି ସେ ତାଙ୍କୁ ଏସବୁ ଗୀତ ଶୁଣେଇବା ସଙ୍ଗେସଙ୍ଗେ ଆହୁରି ଗାଉଁଲି ଗୀତ ସଂଗ୍ରହ କରିବାକୁ ପ୍ରବର୍ତ୍ତାଉଥିଲେ । ବୁଲୁ ଓ ଚୁନୀ ତ ଅନେକ ସମୟରେ ଆସନ୍ତି; ଆହୁରି ଆସନ୍ତି ବାଗଲପୁରର ଗୌରାଙ୍ଗ ଚରଣ ଦାସ । ବାଗଲପୁର ପାଖ ହୋଇଥିବାରୁ ଗୌରାଙ୍ଗବାବୁଙ୍କ ସଙ୍ଗରେ ସେ ଗାଁର ଅନେକ ଲୋକ ତରିକୁନ୍ଦ ଯା'ଆସ କରନ୍ତି ।

୧୯୨୮ ଜୁନ୍ ମାସରେ ମାଳତୀ ଦେବୀଙ୍କର ପ୍ରଥମ ସନ୍ତାନ ବୁବୁ (ଉତ୍ତରା)ର ଜନ୍ମ । ସେଇଥିପାଇଁ ପିଲା ଜନ୍ମ ହେବାର କେତେ ମାସ ପୂର୍ବରୁ ମାଳତୀ ଦେବୀ ବାପଘରକୁ ଚାଲିଯାଇଥିଲେ । କଲିକତାର ଚିତ୍ତରଞ୍ଜନ ସେବା ସଦନରେ ବୁବୁର ଜନ୍ମ । ଏହି ଶୁଭ ସମ୍ବାଦ ବେଳକୁ ଏକ ଦୁଃଖଦ ଘଟଣା ଚୌଧୁରୀ ପରିବାରକୁ ମ୍ରିୟମାଣ କରିପକାଇଥିଲା । ଠିକ୍ ବୁବୁ ଜନ୍ମର ଅଳ୍ପ ଦିନ ପରେ ଉତ୍କଳମଣି ଗୋପବନ୍ଧୁଙ୍କ ତିରୋଧାନ ଘଟିଲା । ତାଙ୍କର ବିୟୋଗ, ଚୌଧୁରୀ ପରିବାର ପାଇଁ, ଏକାନ୍ତ ଆପଣାର ମୁରବିଟିଏ ହରେଇବା ଭଳି ଲାଗିଥିଲା । ବୁବୁ ଜନ୍ମ ହେବାର କିଛିଦିନ ପରେ ସେମାନେ କଟକ ଆସିଲେ । ଝିଅର ଲାଳନପାଳନ ବୈଜ୍ଞାନିକ ଢଙ୍ଗରେ ଆରମ୍ଭ ହୋଇଥାଏ । ସାର୍ ଟ୍ରୁବି କିଙ୍ଗ୍‌ଙ୍କର ଶିଶୁପାଳନ ବିଷୟକ ଖଣ୍ଡେ ବହି ଏ ଦିଗରେ ପଥପ୍ରଦର୍ଶକ ହୋଇଥାଏ । ସବୁ ଜିନିଷ, ଏପରିକି ବାସନକୁସନ ସିଝେଇ, ଫୁଟେଇ ଜୀବାଣୁଶୂନ୍ୟ କରାଯାଇଥାଏ । ଘଣ୍ଟା ଦେଖି ଠିକ୍ ନିର୍ଦ୍ଧାରିତ ସମୟରେ ଖାଇବାକୁ ଦିଆଯାଏ । ଝାଡ଼ା, ପରିସ୍ରା ପାଇଁ ପାତ୍ର ବ୍ୟବହାର କରାଯାଏ ଓ ନିର୍ଦ୍ଦିଷ୍ଟ ସମୟରେ ଗାଧୋଇ ଦେବା, ଖୁଆଇବା ଏବଂ ଝାଡ଼ା କରାଇବାର ଅଭ୍ୟାସ କରାଯାଏ ଓ ବେଶି କୋଳକାଖ କରିବାକୁ ଦିଆଯାଏ ନାହିଁ ଇତ୍ୟାଦି । ତେବେ, ଏଥିରେ ସବୁଠାରୁ ନୂଆ କଥା ଥାଏ, ନବବାବୁଙ୍କର ଝିଅର କାମ କରିବା । ସେ ଯୁଗରେ ବାପା, ବଡ଼ବାପା, ଦାଦାମାନେ (ମର୍ଦ୍ଦମାନେ) ଛୋଟ ପିଲାଙ୍କୁ କୋଳ କରିବା ବି ସଙ୍କୋଚର ବିଷୟ ଥିଲା । ଏହା ଥିଲା ପୁରୁଷୋଚିତ ଆତ୍ମସମ୍ମାନର ବାଧକ । ଶିଶୁର ଲାଳନପାଳନ ମାଇପୀ କାମ । ସେଇଟା କରି ବସିଲେ ମରଦଙ୍କୁ ଲାଜ ମାଡ଼ିବ । ପିଲା ଚାରି ପାଞ୍ଚ ବର୍ଷର ହେଲେ ଯାଇ ବାପା ଦାଦାଙ୍କ ଦୃଷ୍ଟିକୁ ସେ ଆସିବ—ସେମାନେ ତାକୁ ଧମକେଇବେ, ଚୁମୁଟିବେ, ଆକଟ କରିବେ ଇତ୍ୟାଦି । ସେହି ଯୁଗରେ ନବବାବୁଙ୍କର ଏଭଳି ନୂଆ କାରବାର ଏକବାର ବୈପ୍ଳବିକ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କ ଦେଖାଦେଖି ବୁଲୁ ଓ ଚୁନୀ ବୁବୁର କାମରେ ଟିକିଏ ଟିକିଏ ହାତ ଦେଲେ । ବିଶ୍ୱନାଥ ପରିଡ଼ା ଓ ଆଳିର ବଳଦେବ ଦାସ ଆଦି ଯେଉଁମାନେ କଟକ ବା ତରିକୁନ୍ଦ ଆସି ରହୁଥିଲେ, ସେମାନେ ବି ଏଥିରେ ପ୍ରଭାବିତ ହୋଇ ସେହିପରି କାମ କଲେ ।

ତେବେ, ପିଲାଙ୍କୁ ପାଳି ମଣିଷ କରିବା ଯେ ଏକ ଗୁରୁତ୍ୱପୂର୍ଣ୍ଣ ଓ ଆନନ୍ଦଦାୟକ କାର୍ଯ୍ୟ ଏବଂ ପୁରୁଷମାନେ ସେଥିରେ ସହଯୋଗ କରିବା କଥା, ଏହି ନୂଆ ଢଙ୍ଗ କଟକରେ ନବବାବୁହିଁ ଚଳାଇଥିଲେ । କାଳିନ୍ଦୀଚରଣ ପାଣିଗ୍ରାହୀଙ୍କର ନନ୍ଦିନୀଙ୍କ ପୂର୍ବରୁ କେତେଗୁଡ଼ିଏ ପିଲା ମରିଯାଇଥିଲେ । ନବବାବୁଙ୍କ ତାଙ୍କ ସହିତ ଖୁବ୍ ବନ୍ଧୁତା । ନନ୍ଦିନୀଙ୍କ ଜନ୍ମ ବେଳକୁ କାଳିନ୍ଦୀବାବୁ ନବବାବୁଙ୍କଠାରୁ ଶିଶୁପାଳନ ବହି ଓ କେତେକ ପରାମର୍ଶ ପାଇଥିଲେ ବୋଲି ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ।

ବୁବୁ ଟିକିଏ ବଡ଼ ହେବାରୁ ନବବାବୁ ତାହାର ନାଁ ଦେଲେ ଉତ୍ତରା । କିନ୍ତୁ ଉତ୍ତରା ନାଁ ଝିଅର ବିଧବା ଯୋଗ ହେବ ବୋଲି ବାପା ମା ଉତ୍ତରା ନାଁ ଦିଅନ୍ତି ନାହିଁ । ଜେଜେମା ପଦ୍ମାବତୀ ଏହିକଥା ଉଠାଇବାରୁ ନବବାବୁ କହିଥିଲେ ଯେ ବୁବୁ ଯଦି ଅଭିମନ୍ୟୁ ଭଳି ବୀର ସ୍ୱାମୀ ପାଇ ବିଧବା ହୁଏ ତ ଆମର ଶୋଚନା କରିବାର କିଛି ନାହିଁ ।

ବୁବୁ ଟିକିଏ ବଡ଼ ହୋଇଗଲା ପରେ ସମସ୍ତେ ଗଲେ ସେହି ତରିକୁନ୍ଦ ଚାଷଘରକୁ । ତରିକୁନ୍ଦ ସେପଟେ ସାତପୁରା ଗାଁ, ମଝିରେ ଗୋଟିଏ ଛୋଟ ସ୍ରୋତସ୍ୱିନୀ । ବାପ, ମା ଓ ଝିଅ ଯାଆନ୍ତି ସେଇ ନାଳକୁ ଗାଧୋଇ । ସେପଟ ସାତପୁରା ଗାଁର ସ୍ତ୍ରୀ ପୁରୁଷ ବି ସେଠାକୁ ଗାଧୋଇ ଆସନ୍ତି । ମୋଟା ଖଦଡ଼ ଶାଢ଼ିକୁ ମାଳତୀ ଦେବୀ ଚୁପୁଡ଼ି ନପାରିବାରୁ ଦୁଇଜଣଯାକ ମିଶି ଶାଢ଼ିଟା ଚୁପୁଡ଼ନ୍ତି । ସେହି ଗାଧୁଆ ତୁଠରେ ଗାଁ ମାଇପେ, ମର୍ଦ୍ଦ ଲୋକଟା ମାଇପର ଲୁଗା ଚୁପୁଡୁଥିବା ଦେଖି, ମୁହଁ ମୋଡ଼ନ୍ତି । ସେହି କଥା ଗାଁ ମାଇପିମହଲରେ ଖୁବ୍ ଚର୍ଚ୍ଚା ହୁଏ । ଏ ଟିପ୍ପଣୀ ବାଖରାବାଦ ଚୌଧୁରୀଘରେ ବି ପହଞ୍ଚେ । ମାଳତୀ ଦେବୀ କଟକ ଆସିଲେ ମା' ତାଙ୍କୁ ଆକଟ କରି କହନ୍ତି, ''ତୁ ଆଉ ଯାହା କରୁଛୁ କର, ମୋ' ପୁଅକୁ ତୋ ଲୁଗା ଧୁଆନା ।''

ନବକୃଷ୍ଣ ଚୌଧୁରୀ ତରିକୁନ୍ଦ ଫାର୍ମରେ ଥିବାବେଳେ ସେଠାକୁ ବହୁ ବିଶିଷ୍ଟ ବ୍ୟକ୍ତି ଆସନ୍ତି । ଦେଶବିଦେଶର ବିଭିନ୍ନ ସମସ୍ୟାର ଆଲୋଚନା ହୁଏ । ସେହି ସମୟକୁ କଣ୍ଟାପଡ଼ାର ଗୁରୁଚରଣ ମହାନ୍ତି ଇଂଲଣ୍ଡରୁ ଫେରିଥାନ୍ତି । ସେ ବିଲାତରେ ଥିଲାବେଳେ ପ୍ରଗତିବାଦୀ ରାଜନୀତି ଓ ଶ୍ରମିକ ଦଳରେ ମିଶିଥିଲେ । ସେ ହିଁ ନବବାବୁଙ୍କୁ ସମାଜବାଦୀ ଚିନ୍ତାଧାରା ଦିଗରେ ଆକୃଷ୍ଟ କରାଇଥିଲେ । ଏହା ପୂର୍ବରୁ ସମାଜବାଦ ସମ୍ପର୍କରେ ତାଙ୍କର ଧାରଣା ବହି ଓ ଖବରକାଗଜ ପଢ଼ାରେ ସୀମିତ ଥିଲା । ଗୁରୁଚରଣବାବୁ ତରିକୁନ୍ଦ ଫାର୍ମକୁ ବହୁବାର ଆସିଥିଲେ ଓ ନବବାବୁଙ୍କର ତାଙ୍କ ସହିତ ଭାବର ବେଶ୍ ମେଳ ଥିଲା । ଦୁର୍ଭାଗ୍ୟକୁ ସେ ଅଳ୍ପ କାଳ ପରେ ଯକ୍ଷ୍ମା ରୋଗରେ ଦେହତ୍ୟାଗ କଲେ ।



## ❀ ଚତୁର୍ଥ ଅଧ୍ୟାୟ ❀

# ସଂଗ୍ରାମୀ ନବକୃଷ୍ଣ

**ଲବଣ ସତ୍ୟାଗ୍ରହ :**

କଂଗ୍ରେସ ଆନ୍ଦୋଳନର ଏକ ଗୌରବମୟ ଅଧ୍ୟାୟ ହେଉଛି ଲବଣ ସତ୍ୟାଗ୍ରହ । ଗୁଜରାତ ପରେ ଓଡ଼ିଶାରେ ହିଁ ଏହା ବ୍ୟାପକ ଆକାର ଧାରଣ କରିଥିଲା । ସେହି ଲବଣ ସତ୍ୟାଗ୍ରହ ବେଳକୁ ଇଂରେଜ ସରକାରର ଲୁଣମରା ଆଇନକୁ ଭାଙ୍ଗିବା ଛଡ଼ା ଚୌକିଦାରୀ ଟିକସ ନ ଦେବା ପାଇଁ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଉତ୍ତର ବାଲେଶ୍ୱରର ବାଲିଆପାଳ ଓ ଭୋଗରାଇ ଅଞ୍ଚଳରେ ଏହା ବିଶେଷ ଭାବରେ ସଫଳ ହୋଇଥିଲା । ନବକୃଷ୍ଣ ଚୌଧୁରୀ ବାଲେଶ୍ୱରର ଶ୍ରୀଜଙ୍ଗଠାରେ ଟିକସବନ୍ଦ ଆନ୍ଦୋଳନ କରି ୧୯୩୦ ମସିହା ଜୁଲାଇ ମାସରେ ପ୍ରଥମଥର ପାଇଁ ଜେଲ୍ ଯାଇଥିଲେ ଓ ପ୍ରାୟ ଚାରିମାସ ପରେ ନଭେମ୍ବର ମାସ ୮ ତାରିଖରେ ଖଲାସ ହୋଇଥିଲେ । ଏହି ସମୟରେ କଟକ ଜେଲ୍‌ର ୧୪ ନମ୍ବର ୱାର୍ଡ୍‌ରେ ସେ ବହୁ ତରୁଣ ସତ୍ୟାଗ୍ରହୀ-ବନ୍ଦୀଙ୍କ ସହ ରହିବାର ସୁଯୋଗ ଲାଭ କରିଥିଲେ । ନୂଆ ହୋଇ ଜେଲ ଭିତରକୁ ଆସିଥିବା ତରୁଣ ବନ୍ଦୀମାନଙ୍କ ମନକୁ ହାଲୁକା କରିବା ଲାଗି ସେ ସେମାନଙ୍କ ସହିତ ତାସ୍, ଚେସ୍ ଓ ଡୁଡୁ ଖେଳୁଥିଲେ । ସେହି କେତେ ମାସ ମଧ୍ୟରେ ନବବାବୁ ବନ୍ଦୀମାନଙ୍କର ଏତେ ଆପଣାର ହୋଇଯାଇଥିଲେ ଯେ ସେ ଜେଲ୍‌ରୁ ଖଲାସ ହେବା ବେଳକୁ ବାଲେଶ୍ୱରର ସହବନ୍ଦୀ ଉପେନ୍ଦ୍ର ପଣ୍ଡା ତାଙ୍କ ଉଦ୍ଦେଶ୍ୟରେ ଏକ ହାସ୍ୟୋଦ୍ଦୀପକ କବିତା ଲେଖି ବୋଲିଥିଲେ । ସେଇଟି ଏହିପରି–

ଆସରେ ଭାଇ ସଙ୍ଗୀତ ଗାଇ
ଦେବା ବିଦାୟ, ହେଲା ସମୟ ।
ବିଦାୟ ଗୀତି, ଏକତା ପ୍ରୀତି
ସେ ନୁହେଁ ଚିର ବିଦାୟ ।
ଜୀବନ ଥିବା ଯାକେ ମହୀରେ
ଲୋକ ହିତସାଧନ କାହିଁରେ ?

ନମ୍ବରେ ନମ୍ବରେ ଟୁକୁରୀ ସଜା
ଢେଗେ ଗଙ୍ଗା ଭରା
ଧଡ଼ରଧଡ଼ର ଫଡ଼ରଫଡ଼ର
ହୁଏ ରାତି ସାରା ।
ବ୍ରଜେନ ବାବୁର ମଧୁର ବାଣୀ
ଏକଆଖିଆ ଠାଣି,
କଞ୍ଚା ସାରୁ ଲାଲୁଆ ଭେଣ୍ଡି
ନିଶ୍ଚେ ଆଣିବ ଟାଣି ।
(ନବବାବୁ ନିଶ୍ଚେ ଆଣିବ ଟାଣି)
ପାର ହେଲ, ପ୍ରାଚୀର ଦ୍ୱାର
ଫେରିଚାହିଁଲ ନାହିଁ !
(କା'ର) ଅଶ୍ରୁ-ସିକ୍ତ ଶିଶିର ନେତ୍ର
ପାଇଁ ହୋଇଲ ବାଇ ?
(ନବବାବୁ, ଫେରିଚାହିଁଲ ନାହିଁ !)

ବନ୍ଦିଶାଳାରେ ପ୍ରତ୍ୟେକ ବନ୍ଦୀଙ୍କ ଶୋଇବା ଲାଗି ଗୋଟିଏ ଗୋଟିଏ ମାଟିପିଣ୍ଡି ଥାଏ । ରାତିରେ ଶୋଇବା ଘରେ ପରିସ୍ରା କରିବାକୁ ହୁଏ । ସେଥିଲାଗି ଏକ ଡ୍ରମ୍ ଥାଏ । ସେହି ସ୍ଥାନକୁ ଯିବା ଲାଗି ଖଣ୍ଡେ ଟିଣ ଚଦର ପଡ଼ିଥାଏ । ରାତିରେ ବନ୍ଦୀମାନେ ପରିସ୍ରା କରିବାକୁ ସେହି ଟିଣ ଉପରେ ଗଲାଆସିଲା ବେଳେ ଫଡ଼ରଫଡ଼ର ଶବ୍ଦ ହେଉଥାଏ ।

ତରୁଣ ବନ୍ଦୀମାନଙ୍କ ମନକୁ ହାଲୁକା କରିବା ଲାଗି ସବୁ କିଛି କରୁଥିଲେ ବି ବନ୍ଦିଶାଳାରେ ତାଙ୍କ ମନରେ ନିଆଁ ଜଳୁଥିଲା । ବନ୍ଦିଶାଳାରୁ ଫେରି ସେ ହଜାରିବାଗ୍ ଜେଲ୍‌ରେ ଥିବା ଗୋପବନ୍ଧୁ ଚୌଧୁରୀଙ୍କୁ ଯେଉଁ ଚିଠି ଲେଖିଥିଲେ, ତାହା ଗୋପବନ୍ଧୁବାବୁ ୧୧-୧୧-୧୯୩୦ ତାରିଖରେ ପାଇ, ସେ ବିଷୟ, ପର ଦିନ ଡାଏରିରେ ଉଲ୍ଲେଖ କରିଛନ୍ତି ।

'କାଲି ଆଉ ଗୋଟିଏ କଥା ଟିପି ନାହିଁ, ଭୁଲିଯାଇଛି । ଟୁକ ଚିଠିରେ ତ ବୁଲୁ ଚୁନୀ ପ୍ରଭୃତିଙ୍କ ଖବର, ଘର, ବନ୍ଦୋବସ୍ତ ଇତ୍ୟାଦି ଖବର ଥିଲା; ତା' ଛଡ଼ା ତା'ର ଜେଲ୍ ଅନୁଭୂତିର ଫଳ ଓ ଭାବୀ କର୍ମପନ୍ଥା ସେ ଟୁମ୍ବକରେ ଭାରି ସୁନ୍ଦର ରୂପେ ଲେଖିଛି । ମୁଁ ସେଥିରୁ ନକଲ କରି ଦେଉଛି--

''ମୋ ଦେହ ମନ ଭଲ ଅଛି । ଚାରି ମାସ ବସିଯାଇ କାମ କରିବାକୁ ଅସ୍ଥିର ହୋଇପଡ଼ିଛି । ବୁଢ଼ା Fearlessness ସମ୍ବନ୍ଧେ ଯାହା ଲେଖିଛି, ତାକୁ ଅକ୍ଷରେ ଅକ୍ଷରେ ପାଳିବାକୁ ହେବ; ଏହା ଭଲ ରକମ ଉପଲବ୍ଧି କରି ବାହାରିଛି । ଆମ ଏଠି ସମ୍ପତ୍ତି ନାଶ ଭୟ

ସବୁଠାରୁ ବଦ୍ଧମୂଳ । ମୁଁ ଆମ ନେତା ଓ କର୍ମୀମାନଙ୍କ କଥା କହୁଛି । ଲୋକଙ୍କର ତ ଏ ଭୟ ରହିବା କଥା । ବରଂ ଆମ ଲୋକେ desparately ଗରିବ ବୋଲି ଅନ୍ୟାନ୍ୟ ପ୍ରଦେଶଠାରୁ ଆମ ଏଠି ଲୋକଙ୍କ ପକ୍ଷେ ସେ ଭୟ ଛାଡ଼ିବା ସହଜସାଧ୍ୟ । ଦରକାର କେବଳ ଆଦର୍ଶ–କହିବା ବାହୁଲ୍ୟ ଏ ସମ୍ପର୍କରେ ଭୟହୀନତାର ଆଦର୍ଶ ଆମେ କେହି ଦେଖାଇନାହୁଁ । ମୁଁ ପୁଣିଥରେ ବାଧ୍ୟ ହୋଇ ବିଶ୍ରାମ ନେବା ପୂର୍ବରୁ ଏହି ଭାବଟି ଆମ ସହକର୍ମୀମାନଙ୍କ ମଧ୍ୟରେ ପୂରାଇବାକୁ ଚାହେଁ ଏବଂ ଏହିପରି ଗୋଟିଏ ଭୟହୀନ ସର୍ବତ୍ୟାଗୀ ଦଳ ସୃଷ୍ଟି କରିବାକୁ ଚାହେଁ ।

ମୁଁ ଉପଲବ୍ଧି କରିଛି ଯେ ଯେଉଁ ତ୍ୟାଗର ଏକ ସୀମା ଅଛି Thus far no further ସେ ତ୍ୟାଗ, ତ୍ୟାଗ ନୁହେଁ । ତା' ମୂଳରେ ଲାଭକ୍ଷତି ହିସାବର spirit ରହିଛି । ଉତ୍କଳର ଆନ୍ଦୋଳନ ଶେଷ ପର୍ଯ୍ୟନ୍ତ ଚଳାଇବା ଆମ ହାତର କଥା ନୁହେଁ । ମୋ' ମତରେ, ଆମର ଶକ୍ତି ଲଗାଇ କାମ କଲା ପରେ, ସର୍ବସ୍ୱ ତ୍ୟାଗ କଲା ପରେ, ଯଦି ଆମ ପରେ କେହି ବାହାରି କାମ ନଚଳାନ୍ତି, ତାହାହେଲେ ଦୁଃଖ କରିବା ଉଚିତ ନୁହେଁ । ଏହି spiritରେ କାମ ନକଲେ ଆମ ଉତ୍କଳରେ ଅନ୍ତତଃ କିଛି କାମ ହେବନାହିଁ; କେବଳ mark time କରିବା ହିଁ ହେବ ଶେଷ ପର୍ଯ୍ୟନ୍ତ । କାରଣ ଏଠି ଏତେ ଅଳ୍ପ ଲୋକ ବାହାରିଛନ୍ତି ଯେ ସେମାନେ ଯଦି ସବୁବେଳେ ଶେଷ ପର୍ଯ୍ୟନ୍ତ କୌଣସିମତେ କାମଟା ଚଳାଇବା କଥା ଭାବନ୍ତି, ତାହାହେଲେ ଯେଉଁ କାମରେ risk, ସେ କାମରେ ହାତ ଦେବେ ନାହିଁ–ଅର୍ଥାତ୍ ଏ ଆନ୍ଦୋଳନରେ ଠିକ୍ spirit ଅନୁସାରେ କାମ କରିପାରିବେ ନାହିଁ । ତା'ଠାରୁ ଶତଗୁଣ ଶ୍ରେୟଃ ଅଳ୍ପସଂଖ୍ୟକ ଲୋକ ଗୋଟାଏ ଜ୍ୱଳନ୍ତ ଆଦର୍ଶ ଦେଖାଇ ଅସୀମ ସାହସ ଓ ନିର୍ଭୀକତାର ପରିଚୟ ଦେଇଯିବେ । ତାହାହେଲେ ଆଉ କିଛି ନ ହେଉ, ଭବିଷ୍ୟତ ବଂଶଧରମାନେ ସେଥିରୁ ପ୍ରେରଣା ପାଇବେ ।''

ଏହି ପତ୍ରଟିରୁ ନବକୃଷ୍ଣ ଚୌଧୁରୀଙ୍କର ଜୀବନାଦର୍ଶ ପରିସ୍ଫୁଟ ହୋଇଯାଏ ଏବଂ ଜୀବନର ଶେଷ ପର୍ଯ୍ୟନ୍ତ ସେ ସେହି ପଥରେ ଅବିଚଳିତ ରହିଥିଲେ । ୧୯୩୧ ଖ୍ରୀଷ୍ଟାବ୍ଦରେ ଗାନ୍ଧି-ଇର୍‌ଉଇନ୍ ଚୁକ୍ତି ହେବାପରେ ପ୍ରସ୍ତାବିତ ପୁରୀ କଂଗ୍ରେସ୍ ଅଧିବେଶନ ପରିଚାଳନା ଲାଗି ନବବାବୁ ହିନ୍ଦୁସ୍ତାନୀ ସେବାଦଳ ଦ୍ୱାରା ସଙ୍ଗଠିତ ସ୍ୱେଚ୍ଛାସେବକ ତାଲିମ୍ ଶିବିରରେ ଯୋଗ ଦେଲେ । ଅବଶ୍ୟ ପୁରୀଠାରେ କଂଗ୍ରେସ ଅଧିବେଶନ ପୂର୍ବରୁ ପୁଣି ଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା । ୧୯୩୨ ଖ୍ରୀଷ୍ଟାବ୍ଦରେ ପୁଣି ଆନ୍ଦୋଳନ ଆରମ୍ଭ ହେବାରୁ ନବବାବୁ ଗିରଫ ହୋଇ କଟକ ଜେଲ୍‌ରୁ ହଜାରିବାଗ୍ ଜେଲ୍‌କୁ ବଦଳିହୋଇଯାଇଥିଲେ । ୧୯୩୧ ଖ୍ରୀଷ୍ଟାବ୍ଦର କାର୍ତ୍ତିକ ପୂର୍ଣ୍ଣିମା ପରଦିନ ତାଙ୍କ ପୁଅ କାଲୁର ଜନ୍ମ । ତା'ସତ୍ତ୍ୱେ ମାଳତୀ ଦେବୀ ସେହି ୧୯୩୨ ମସିହାରେ ଟିକି ପୁଅକୁ ନେଇ ଜେଲ୍ ଗଲେ ଓ ଶାଶୁଙ୍କ ପାଖରେ ରହିଲେ, ତିନି ବର୍ଷର ଝିଅ ଉତ୍ତରା । ଗୋପବନ୍ଧୁ ଚୌଧୁରୀ ଏବଂ ମାଳତୀ ଦେବୀ, ସମସ୍ତେ ହଜାରିବାଗ୍ ଜେଲ୍‌ରେ

ରହିବା ଫଳରେ ଜେଲ୍ ସେମାନଙ୍କ ପାଇଁ ଘର ଭଳି ହୋଇଗଲା । ଏହି ୧୯୩୨ ମସିହାରେ ଜେଲ୍‌ରେ ଥିବାବେଳେ, ନବକୃଷ୍ଣ ଚୌଧୁରୀ ଓ ସମତାଳରେ ମିନୁ ମାସାନୀ, ୟୁସୁଫ୍ ମେହେର୍‌ଅଲି, ଅଶୋକ ମେହେଟ୍ଟା ଓ ଜୟପ୍ରକାଶ ନାରାୟଣ ଆଦି ବଡ଼ ବଡ଼ ନେତା ଏବଂ ସୁରେନ୍ଦ୍ର ଦ୍ୱିବେଦୀ, ମନମୋହନ ଚୌଧୁରୀ, ରବୀନ୍ଦ୍ରମୋହନ ଦାସ, ଗୌରଚନ୍ଦ୍ର ଦାସ, ଗୌରାଙ୍ଗ ଚରଣ ଦାସ ଆଦିଙ୍କୁ ଅହିଂସା-ଅସହଯୋଗ କଥାଟା ମନକୁ ପାଉ ନଥାଏ । ସେମାନେ ଟାଣୁଆ କାର୍ଯ୍ୟକ୍ରମ ନେବା କଥା ଚିନ୍ତା କରୁଥାନ୍ତି, ଯଦିଓ ଦେଶର ମୁକ୍ତି ଦିଗରେ ଗାନ୍ଧିଜୀଙ୍କ ନେତୃତ୍ୱକୁ ଅସ୍ୱୀକାର କରିହେଉନଥାଏ ।

**ଗୋପବନ୍ଧୁ ଚୌଧୁରୀ :**

ଏକାଥାଳିରେ ଖାଇଆସିଥିବା ଏବଂ ଦେଶ ତଥା ଜନତାର ସେବା ଲାଗି ନିଜକୁ ଉତ୍ସର୍ଗ କରିଦେଇଥିବା ଗୋପବନ୍ଧୁ ଚୌଧୁରୀ ଓ ନବକୃଷ୍ଣ ଚୌଧୁରୀଙ୍କ ଅଲଗା ବାଟର ସୂଚନା ମିଳିଥିଲା, ଦୁଇ ଭାଇଙ୍କର ଦୁଇ ଆଶ୍ରମରୁ । ଜଣେ ଅଳକାଶ୍ରମରେ ଓ ଅନ୍ୟଜଣକ ତରିକୁନ୍ଦ ଫାର୍ମରେ । ଗୋପବନ୍ଧୁ ଚୌଧୁରୀ ଥରେମାତ୍ର ଜିଲ୍ଲା ବୋର୍ଡ଼ ନିର୍ବାଚନରେ ଅଂଶଗ୍ରହଣ କରିଥିଲେ । ତାହା ପରେ ଆଉ ନାହିଁ । ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ସେ ସାରା ଜୀବନ ରଚନାତ୍ମକ କାମରେ ନିଜକୁ ନିୟୋଜିତ କଲେ । ଅବଶ୍ୟ ଥରେ ୧୯୩୮ ମସିହାରେ, ପରିସ୍ଥିତିର ଚାପରେ, ଉତ୍କଳ ପ୍ରଦେଶ କଂଗ୍ରେସର ସଭାପତି ହୋଇଥିଲେ । କିନ୍ତୁ ସେଥିରେ ତାଙ୍କର ମନ ନଥିଲା । ରାଜ୍ୟର ସବୁଠାରୁ ଅଧିକ ବନ୍ୟାପ୍ଳାବିତ ବରୀ ଅଞ୍ଚଳକୁ କେନ୍ଦ୍ର କରି ସେ ଦୀର୍ଘକାଳ ଧରି ଖଦୀ, ହରିଜନ ସେବା, ଗ୍ରାମ ସଫେଇ, ନିରକ୍ଷରତା ଦୂରୀକରଣ, ଗୋସେବା, ମହୁଚାଷ, ଖଜୁରି ଗୁଡ଼ ତିଆରି, ମୌଳିକ ଶିକ୍ଷା ଓ କୁଷ୍ଠରୋଗୀଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ । ବିଭିନ୍ନ ସମୟରେ କଂଗ୍ରେସ ନେତା ଭାବରେ ଜେଲ୍‌ରେ ଅବଶ୍ୟ ଦୁଇଭାଇଙ୍କର ଭେଟ ହୁଏ ଓ କେବେକେବେ କଟକ ବାଖରାବାଦ ଘରେ ବା ବରୀ ଆଶ୍ରମରେ ଉଭୟଙ୍କର ଭେଟାଭେଟି ହୁଏ । ନବବାବୁ ୧୯୩୩ ମସିହାରେ ସମାଜବାଦୀ ଦଳର ଶୁଭ ଦେଇ କୃଷକ ଆନ୍ଦୋଳନ ଓ ଗଡ଼ଜାତ ଆନ୍ଦୋଳନ ଆଦି କରି କଂଗ୍ରେସ ସୋସାଲିଷ୍ଟ ପାର୍ଟିର କର୍ମକର୍ତ୍ତା ହେଲେ ଏବଂ ୧୯୩୭ ନିର୍ବାଚନ ତଥା ୧୯୪୬, ୧୯୫୦ ଓ ୧୯୫୨ ନିର୍ବାଚନରେ ଲଢ଼ିଲେ ଏବଂ ମନ୍ତ୍ରୀ ତଥା ମୁଖ୍ୟମନ୍ତ୍ରୀ ହେଲେ । କ୍ଷମତା ରାଜନୀତି ଆଡ଼କୁ ନବବାବୁ ଯାଇଥିଲେ ବି ଦୁଇ ଭାଇଙ୍କ ମଧ୍ୟରେ ତିକ୍ତତା ନଥିଲା । ସାନଭାଇ ତାଙ୍କ ପଦାଙ୍କ ଅନୁସରଣ କଲେ ନାହିଁ ବୋଲି ଗୋପବାବୁ କେବେ ତାଙ୍କୁ ଶ୍ରଦ୍ଧାରୁ ବଞ୍ଚିତ କରିନାହାନ୍ତି । ଅବଶ୍ୟ ବେଳେବେଳେ ପାରିବାରିକ ସମାବେଶରେ ଗୋପବାବୁ କଂଗ୍ରେସ ସରକାରର କିଛି କାର୍ଯ୍ୟକଳାପକୁ ବଙ୍କେଇ ସମାଲୋଚନା କଲେ ନବବାବୁ ବି ଗାନ୍ଧିବାଦୀମାନଙ୍କ କାର୍ଯ୍ୟରେ

ଉଲ୍ଲେଖହୀନତାକୁ ବଙ୍କେଇ ଓଲଟା ଜବାବ ଦିଅନ୍ତି । କିନ୍ତୁ ସେସବୁ ଅତି ମାର୍ଜିତ ଭାବରେ ଓ ସୂକ୍ଷ୍ମରେ ସୂକ୍ଷ୍ମରେ କରାଯାଏ ।

ଭୂ-ଦାନ ଆନ୍ଦୋଳନ ଆରମ୍ଭ ହେଲାବେଳେ ନବବାବୁ ମୁଖ୍ୟମନ୍ତ୍ରୀ ଥାଇ ସେ ଆନ୍ଦୋଳନରେ ସହଯୋଗ କଲେ । ତାଙ୍କ ପାଇଁ ସେ ଆନ୍ଦୋଳନ ଥିଲା ଭୂ-ସଂସ୍କାରର ପରିପୂରକ । ଭୂ-ଦାନ ଆନ୍ଦୋଳନରେ ସହଯୋଗ କଲେ ବି ଯେଉଁଠି ଗରିବ ଓ ଭୂମିହୀନମାନେ ଆନ୍ଦୋଳନ କରୁଥିଲେ ଏବଂ ଯେଉଁଠି ଯେକୌଣସି ଅନ୍ୟାୟ ଅତ୍ୟାଚାର ହେଉଥିଲା, ତାକୁ ପ୍ରତିହତ କରିବା ଲାଗି ଅଣ୍ଟା ଭିଡ଼ିଦେଉଥିଲେ । ଏପରିକି ଶେଷ ଆଡ଼କୁ ନକ୍‌ସଲ୍‌ପନ୍ଥୀଙ୍କୁ ସହାୟତା କଲେ ଓ କମ୍ୟୁନିଷ୍ଟ ତଥା ନକ୍‌ସଲପନ୍ଥୀଙ୍କ ଲଢୁଆପଣିଆକୁ ପ୍ରଶଂସା କରୁଥିଲେ । କିନ୍ତୁ ଗୋପବନ୍ଧୁ ଚୌଧୁରୀଙ୍କ ସଂଗ୍ରାମ ଥିଲା ଭିନ୍ନଧରଣର । ଦୀର୍ଘକାଳ ଧରି ବରୀ ଅଞ୍ଚଳରେ ସେ ଗଠନମୂଳକ କାମ କରିଆରେ ଯେଉଁ ଜନଚେତନା ସୃଷ୍ଟି କରିଥିଲେ, ତାରି ପରିଣାମ ସ୍ୱରୂପ ଅଗଷ୍ଟ ଆନ୍ଦୋଳନ କାଳରେ ବରୀ ଅଞ୍ଚଳର ଲୋକେ ସହିଦ ହେବା ଛଡ଼ା ବହୁସଂଖ୍ୟକ ଲୋକ କାରାବରଣ କରିଥିଲେ । ୧୯୫୧-୫୨ରେ କୋରାପୁଟର ଗୁଣୁପୁର ତାଲୁକର କୁଜେନ୍ଦ୍ରୀଠାରେ ଯେଉଁ ଭୂ-ସତ୍ୟାଗ୍ରହ ହୋଇଥିଲା ତାହା ଭୂ-ଦାନର ପରିପୂରକ ନୁହେଁ ବୋଲି ଗୋପବନ୍ଧୁ ଚୌଧୁରୀ ବିଚାର କରୁଥିଲେ । ସେ ଭୂ-ଦାନ କାର୍ଯ୍ୟକ୍ରମରେ କୋରାପୁଟ ଉଦ୍ଦେଶ୍ୟରେ ଆସିଥିଲେ ବି, ଭୂ-ସତ୍ୟାଗ୍ରହ ଦେଖି ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ବଦଳାଇ, କଳାହାଣ୍ଡି ଜିଲ୍ଲା ଆଡ଼େ ଚାଲିଯାଇଥିଲେ । ସେତେବେଳକୁ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ । ସେ ଆଇନ୍‌ର ସୀମାକୁ ଓ ଆଦିବାସୀଙ୍କ ଲଢ଼ିବାର କ୍ଷମତାକୁ ବିଚାର କରି ଭୂ-ସତ୍ୟାଗ୍ରହକୁ ଏକ ବାସ୍ତବବାଦୀ ମୋଡ଼ ଦେଇଥିଲେ । ଭାଇ, ଭାଉଜ, ପୁତୁରା, ଝିଆରୀ ଓ ସ୍ତ୍ରୀ ବି ଭୂ-ଦାନ ଆନ୍ଦୋଳନରେ ଯୋଗ ଦେଇଥିବାରୁ ସେ ରାଜନୀତିରେ ବୀତସ୍ପୃହ ହୋଇ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିଥିଲେ । ଦୁଇଭାଇ ଗରିବଙ୍କ ପାଇଁ ଆତ୍ମୋତ୍ସର୍ଗ କରିଥିଲେ ମଧ୍ୟ ଦୁହିଁଙ୍କର କାମର ତରିକା ଥିଲା ଭିନ୍ନ ଓ ବିଭିନ୍ନ ଘଟଣାକୁ ଦୁଇଭାଇ ଭିନ୍ନ ଭାବରେ ଦେଖୁଥିଲେ । ବ୍ରହ୍ମପୁର ଜେଲରେ ୧୯୪୪ ଜାନୁଆରି ୨୬ ତାରିଖରେ ଜାତୀୟ ପତାକା ଉଡ଼ାଇବା ଲାଗି ଗୋପବନ୍ଧୁ ଚୌଧୁରୀ ବିରୋଧ କରିଥିଲେ–ବନ୍ଦୀ ଭାବରେ ଏଭଳି କାମ ତାଙ୍କ ଦୃଷ୍ଟିରେ ଥିଲା ଅସମୀଚୀନ । କିନ୍ତୁ ନବକୃଷ୍ଣ ଚୌଧୁରୀ ଏହି ଉଦ୍ୟମକୁ ଉତ୍ସାହିତ କରିବା ସଙ୍ଗେସଙ୍ଗେ ନିଜେ ମାଡ଼ ଖାଇଥିଲେ । ନବବାବୁ ମଧ୍ୟ ଶେଷବେଳକୁ ବିନୋବାଙ୍କୁ ସମାଲୋଚନା କରିବାକୁ ଛାଡ଼ିନଥିଲେ । ଅଥଚ ଗୋପବନ୍ଧୁ ଚୌଧୁରୀ ଶେଷ ପର୍ଯ୍ୟନ୍ତ ବିନୋବାଙ୍କ ପ୍ରତି ଅନୁରକ୍ତ ଥିଲେ । ସେ ନିର୍ବାଚନ-ରାଜନୀତିଠାରୁ ନିଜକୁ ଅଲଗା ରଖିଥିଲେ । କିନ୍ତୁ ନବବାବୁ କଂଗ୍ରେସ ଦଳ ଛାଡ଼ିଲା ପରେ ୧୯୬୭ରେ କଂଗ୍ରେସ ହଟାଓ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିଥିଲେ ଓ ୧୯୭୫ ମସିହାରେ ଇନ୍ଦିରା ଗାନ୍ଧିଙ୍କ ଜରୁରୀକାଳୀନ ଅବସ୍ଥା ବିରୋଧରେ ସ୍ୱର ଉତ୍ତୋଳନ କରି କାରାବରଣ କରିଥିଲେ ।

**କଂଗ୍ରେସ-ସୋସାଲିଷ୍ଟ କର୍ମୀ ସଂଘ :**

ହଜାରିବାଗ ଜେଲ୍‌ରୁ ଖଲାସ ହେଲା ପରେ ନବବାବୁଙ୍କ ଜୀବନର ନୂତନ ଅଧ୍ୟାୟ ଆରମ୍ଭ ହେଲା । ସେ ପର୍ଯ୍ୟନ୍ତ କଂଗ୍ରେସ ଥିଲା ଓକିଲ, ଛୋଟ ଜମିଦାର, ଡାକ୍ତର ଓ ବଡ଼ ଚାଷୀଙ୍କ ମଧ୍ୟରେ ସୀମାବଦ୍ଧ ଏବଂ ଲକ୍ଷ୍ୟ ଥିଲା ଦେଶର ସ୍ୱାଧୀନତା । ଜନସାଧାରଣଙ୍କ ମୌଳିକ ସମସ୍ୟାର ସମାଧାନ ସେମାନଙ୍କ କାର୍ଯ୍ୟକ୍ରମ ଭିତରେ ନଥିଲା । ଓଡ଼ିଶାର ସାଧାରଣ ଲୋକଙ୍କ ମୌଳିକ ସମସ୍ୟାକୁ ହାତକୁ ନେବା ଏବଂ ସେମାନଙ୍କୁ କଂଗ୍ରେସ ଦଳ ସହିତ ସଂଶ୍ଳିଷ୍ଟ କରିବା ଲାଗି ପ୍ରଥମ ଉଦ୍ୟମ ହୁଏ, ତରିକୁନ୍ଦର ଚାଷ ଘରେ ।

ସେଠାରେ ପ୍ରଥମେ ଏକ 'ଅନୁଶୀଳନ କ୍ୟାମ୍ପ୍' ଆରମ୍ଭ ହୁଏ ଏବଂ କଂଗ୍ରେସ ସଙ୍ଗଠନ ମଧ୍ୟରେ ଏକ ସାମ୍ୟବାଦୀ ଶାଖା ଗଠନ ପାଇଁ ନିଷ୍ପତ୍ତି ନିଆଯାଏ । ୧୯୩୩ ଫେବୃଆରି ମାସରେ ଏହି ଉଦ୍ଦେଶ୍ୟରେ ଯେଉଁ ଐତିହାସିକ ବୈଠକ ଡକାଯାଇଥିଲା, ତହିଁରେ ଯୋଗ ଦେଇଥିଲେ ଗୌରଚନ୍ଦ୍ର ଦାସ, ଗୌରାଙ୍ଗଚରଣ ଦାସ, ସୁଧୀରଚନ୍ଦ୍ର ଘୋଷ, ଡାକ୍ତର ନୃପେନ୍ ସେନ, ମନମୋହନ ଚୌଧୁରୀ ଓ ସୁରେନ୍ଦ୍ରନାଥ ଦ୍ୱିବେଦୀ । ହରେକୃଷ୍ଣ ମହତାବଙ୍କୁ ସେହି ବୈଠକକୁ ନିମନ୍ତ୍ରଣ କରାଯାଇଥିଲା । ସେ ନଆସି କରୁଣାକର ପାଣିଗ୍ରାହୀ ଆଦି କେତେଜଣଙ୍କୁ ଦର୍ଶକ ଭାବରେ ପଠାଇଥିଲେ । ସେହି ରାତିର ଗୋପନ ଆଲୋଚନା ପରେ 'ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀ ସଂଘ' ନାମକ ଏକ ସଙ୍ଗଠନ ଗଢ଼ାଗଲା । ସେତେବେଳେ ସୋସାଲିଷ୍ଟ ଅର୍ଥରେ ସାମ୍ୟବାଦୀ ଶବ୍ଦଟି ବ୍ୟବହୃତ ହେଉଥିଲା । ଏହି ଘଟଣା ପରେ ପରେ ରବି ଘୋଷ, ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ, ଭଗବତୀ ପାଣିଗ୍ରାହୀ, ଦିବାକର ପଟ୍ଟନାୟକ ଓ ଗତିକୃଷ୍ଣ ସ୍ୱାଇଁ ଏବଂ ଲୋକନାଥ ରାୟ ଆଦି ଏହି ସଙ୍ଗଠନରେ ଯୋଗ ଦେଇଥିଲେ । ଅବଶ୍ୟ ନୃପେନ୍ ସେନ୍ ଓ ସୁଧୀର ଘୋଷ ଏହା ସହିତ ବେଶିଦିନ ରହିପାରିଲେ ନାହିଁ ଓ ମନମୋହନ ଚୌଧୁରୀ, ଗୋପବନ୍ଧୁ ଚୌଧୁରୀଙ୍କ ନିର୍ଦ୍ଦେଶରେ, ଗାନ୍ଧିବାଦୀ ନେତା ସତୀଶ ଚନ୍ଦ୍ର ଦାସଗୁପ୍ତଙ୍କ ସୋଦ୍‌ପୁର ଆଶ୍ରମରେ ତାଲିମ ପାଇବାକୁ ଚାଲିଗଲେ । ସେହିଠାରେ ବିଚାର ହେଲା ଯେ ସାମ୍ୟବାଦୀ ହେବାକୁ ହେଲେ ସର୍ବହରା ହେବାକୁ ହେବ ଓ ସାଧାରଣ ଲୋକଙ୍କ ସହ ନିଜକୁ ମିଶାଇଦେବାକୁ ପଡ଼ିବ । ନିଜର କାର୍ଯ୍ୟ ଓ ଆଚରଣରେ ଏହା ପ୍ରତିଫଳିତ ନହେଲେ ଲୋକେ ଏହି ଆଦର୍ଶକୁ ବିଶ୍ୱାସ କରିବେ ନାହିଁ । ଏହି ବିଚାରକୁ ପ୍ରଥମେ କାର୍ଯ୍ୟକାରୀ କରାଗଲା ନବକୃଷ୍ଣ ଚୌଧୁରୀଙ୍କ କୃଷି ଫାର୍ମରେ–ସେ ଏହାକୁ 'ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀ ସଂଘ' ମାର୍ଫତରେ ଦେଇଦେଲେ । ସାମ୍ୟବାଦର ବାର୍ତ୍ତାବହ ଭାବରେ ସେହି ବର୍ଷ ମଇ ପହିଲା ବେଳକୁ 'ସାରଥି' ନାମକ ଏକ ସାପ୍ତାହିକ ବାହାରିଲା । ମାଳତୀ ଦେବୀଙ୍କ ଅଳଙ୍କାର ବିକ୍ରି ହୋଇ ସେହି ପତ୍ରିକା କିଛି କାଳ ଚାଲିଲା । ମାର୍କ୍ସଙ୍କ ବିଖ୍ୟାତ ଆହ୍ୱାନ 'ଦୁନିଆର ଶ୍ରମିକ ଏକ ହୁଅ' ଏହାର ମଲାଟରେ ଛପାଯାଉଥିଲା ।

## ମଇ ଦିବସ :

ସାମ୍ୟବାଦୀ ଆନ୍ଦୋଳନର ଅୟମାରମ୍ଭ ସ୍ୱରୂପ ୧୯୩୩ ମସିହାର ମଇ ପହିଲା ପାଳନ କରାଯିବାର ସିଦ୍ଧାନ୍ତ ହେଲା । ସେ ସମୟକୁ କଟକରେ ଯଦିଓ ଅଳ୍ପ ସଂଖ୍ୟକ ଶ୍ରମିକ ଥିଲେ, ସେମାନଙ୍କୁ ମନେଇ ସଙ୍ଗଠନ ମଧ୍ୟକୁ ଆଣିବା ହଠାତ୍ ସମ୍ଭବପର ହେଉନଥାଏ । ଏଣୁ 'ସାରଥି' ଛାପା ହେଉଥିବା, କବିରାଜ ରାଧାନାଥ ଶତପଥୀଙ୍କ ହାତଚଳା ପ୍ରେସ୍‌ର ଦୁଇଜଣ ଶ୍ରମିକ ଆଉ ଦଶ ବାରଜଣ ସୋସାଲିଷ୍ଟ ସେଦିନ ଓଡ଼ିଶାରେ ପ୍ରଥମ କରି ମଇ ଦିସବ ପାଳନ କଲେ । ଏଇ ଚଉଦ ପନ୍ଦରଜଣ ଉକ୍ତ ପ୍ରେସ୍‌ଠାରୁ ପ୍ଲାକାର୍ଡ଼ ଧରି 'ଦୁନିଆର ଶ୍ରମିକ ଏକ ହୁଅ' ଧ୍ୱନି ଦେଇ କଟକ ସହରର ମୁଖ୍ୟ ରାସ୍ତାରେ ଶୋଭାଯାତ୍ରା କରି ଗୌରୀଶଙ୍କର ପାର୍କରେ ଏକ ସଭା କଲେ । ନବବାବୁ ସେହି ଶୋଭାଯାତ୍ରାର ଆଗେ ଆଗେ ଚାଲିଥାନ୍ତି । ସଭାରେ ସେ ମଇ ଦିବସର ତାତ୍ପର୍ଯ୍ୟ ବୁଝାଇଲେ । ସେ ପର୍ଯ୍ୟନ୍ତ ଶୋଭାଯାତ୍ରାରେ ମହାତ୍ମାଗାନ୍ଧି କୀ ଜୟ, ଭାରତମାତା କୀ ଜୟ ଭଳି ଧ୍ୱନି ଶୁଣିବାକୁ ମିଳୁଥିଲା । ଏଣୁ 'ଦୁନିଆର ଶ୍ରମିକ ଏକ ହୁଅ' ଧ୍ୱନି ଥିଲା କଟକ ପାଇଁ ସମ୍ପୂର୍ଣ୍ଣ ଅଭିନବ । ଏହି ସମୟ ପରେ ହିଁ ସର୍ବଭାରତୀୟ ସ୍ତରରେ କଂଗ୍ରେସ-ସୋସାଲିଷ୍ଟ ପାର୍ଟି ଗଠିତ ହୋଇଥିଲା । ଏହି ଦୃଷ୍ଟିରୁ ଦେଖିଲେ କଂଗ୍ରେସ-ସୋସାଲିଷ୍ଟ ପାର୍ଟିର ଅଧିବାସ ଯେ ଓଡ଼ିଶାରେ ଏବଂ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ହୋଇଥିଲା, ତାହା କହିବା ଅସମୀଚୀନ ହେବନାହିଁ । ଅବଶ୍ୟ ଅଳ୍ପ ସମୟ ପରେ ସେ 'ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀ ସଂଘ'କୁ ସର୍ବଭାରତୀୟ କଂଗ୍ରେସ-ସୋସାଲିଷ୍ଟ ପାର୍ଟିରେ ଅନ୍ତର୍ଭୁକ୍ତ କରାଇଥିଲେ ।

ଏହି ସମୟରେ ସେ କିଭଳି ଅସ୍ଥିର ହୋଇପଡ଼ିଥିଲେ ଓ କଂଗ୍ରେସର ସେପର୍ଯ୍ୟନ୍ତ ହୋଇଆସିଥିବା କାର୍ଯ୍ୟଧାରାରୁ ଅଧିକ ସକ୍ରିୟ କିଛି କରିବା ଲାଗି ବ୍ୟଗ୍ର ହୋଇପଡ଼ିଥିଲେ, ତାହା ତାଙ୍କର ୧୯୩୩ ମସିହାର ୮ ସେପ୍ଟେମ୍ବର ଓ ୯ ଅକ୍ଟୋବର ତାରିଖର, ଜବାହରଲାଲ ନେହେରୁଙ୍କୁ ଲେଖିଥିବା ଚିଠିରୁ ଜଣାପଡ଼େ । ସେହି ଚିଠିରେ ସେ ଗାନ୍ଧିଜୀଙ୍କର ୟଙ୍ଗ୍ ଇଣ୍ଡିଆର ୧୯୩୧ ମସିହାର ଜୁନ୍ ୧୮ ତାରିଖର ଏକ ଲେଖା ବି ପଠାଇ ନିଜ ଅଭିମତକୁ ସାବ୍ୟସ୍ତ କରିଥିଲେ । ଅକ୍ଟୋବର ୧୫ ତାରିଖରେ ନେହେରୁ ଆଲହାବାଦରୁ ତା'ର ଉତ୍ତର ଦେଇଛନ୍ତି ।

## ନେହେରୁଙ୍କ ସହିତ ପତ୍ରାଳାପ :

### ନେହେରୁଙ୍କୁ ପ୍ରଥମ ପତ୍ର

ପ୍ରିୟ ସାଥୀ !

୧୯୨୧ ମସିହାଠାରୁ ଜାତୀୟ କଂଗ୍ରେସରେ ଯୋଗ ଦେଇ ମୁଁ ଗାନ୍ଧିଜୀଙ୍କ ଅନୁଗାମୀ ଭାବରେ ନିଷ୍ଠାର ସହ କାର୍ଯ୍ୟ କରିଆସିଛି । ଆମର ମହାନ୍ ନେତା ଗାନ୍ଧିଜୀଙ୍କ କାର୍ଯ୍ୟକୁ

ସମାଲୋଚନା କରିବା ପୂର୍ବରୁ, କହିରଖେ ଯେ ଗାନ୍ଧିବାଦକୁ ଏକ ଜୀବନ୍ତ ଓ ବର୍ଦ୍ଧିଷ୍ଣୁ ଶକ୍ତି ଭାବରେ ମୁଁ ଗ୍ରହଣ କରିନେଇଛି । ମୋ' କ୍ଷୁଦ୍ର ବିଚାରରେ ଗାନ୍ଧିବାଦ, ଗାନ୍ଧିଜୀଙ୍କ ବ୍ୟକ୍ତିଗତ ନୈତିକତା, ତାଙ୍କ ଚିନ୍ତାଧାରା, ବଦ୍ଧମୂଳ ଧାରଣା ଓ ସଂସ୍କାର ସ୍ତର ଅତିକ୍ରମ କରିଗଲାଣି । ବ୍ୟକ୍ତିର ନୈତିକ ଅଭ୍ୟୁତ୍‌ଥାନ-ଆଭିମୁଖ୍ୟକାମୀ ଗାନ୍ଧିବାଦଠାରୁ ବୈପ୍ଳବିକ ଆନ୍ଦୋଳନ-ପଦ୍ଧତିଦାୟକ ଗାନ୍ଧିବାଦ ପୂରାପୂରି ଅଲଗା । ସ୍ୱାଧୀନତା ଲାଭ ଆମର ଆଶୁ ରାଜନୈତିକ ଲକ୍ଷ୍ୟ । ସେହି ଲକ୍ଷ୍ୟ ସାଧନ ବିଚାରରୁ ପ୍ରଥମୋକ୍ତ ମାର୍କା ଗାନ୍ଧିବାଦର ଉପଯୋଗିତା ବହୁତ କମ୍ । ଯେଉଁ ଗାନ୍ଧିବାଦ ଆମକୁ ମାନ୍ଦାଦଳିଆଙ୍କଠାରୁ ଉଦ୍ଧାର କରିବା ସଙ୍ଗେସଙ୍ଗେ ଅସଙ୍ଗଠିତ ହିଂସା ଓ ରାଜନୈତିକ ହତ୍ୟା ଆଦି ହତାଶାମୂଳକ ଅନ୍ଧଗଳିରୁ ନୂଆବାଟ ଦେଖାଇଲା, ସେହି ଧରଣର ଗାନ୍ଧିବାଦ ଆମ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଏବଂ ପ୍ରତ୍ୟକ୍ଷ ଭାବରେ ଉପଯୋଗୀ । ଆତ୍ମଘାତୀ ଓ ଅଦୂରଦର୍ଶୀ ହିଂସାରେ ଛନ୍ଦିହୋଇପଡ଼ିଥିବା ବିଶ୍ୱ ଲାଗି ଲଢୁଆ ଗାନ୍ଧିବାଦ ହିଁ ଗାନ୍ଧିଜୀଙ୍କର ମୌଳିକ ଅବଦାନ । ଏହି ଧରଣର ଗାନ୍ଧିବାଦ ଆମ ଦେଶରେ ନୂଆ ଉତ୍ସାହ ଓ ପ୍ରେରଣା ସୃଷ୍ଟି କରିଛି । ସେହି ବାଟରେ ଠିକଣା ଭାବରେ ଶେଷ ପର୍ଯ୍ୟନ୍ତ ଚାଲିଲେ ଆମର ବିଜୟ ସୁନିଶ୍ଚିତ ।

ଗାନ୍ଧିବାଦ ଏକ ଉଚ୍ଚକୋଟୀର ବିଚାରଧାରା । ସେଥିରେ ଗୂଢ଼ ଓ ଗୁପ୍ତ ତତ୍ତ୍ୱ କିଛି ନାହିଁ । ଗାନ୍ଧିଜୀ ଦ୍ୱିତୀୟବାର ଅନଶନ ପରେ, ଜେଲ୍‌ରୁ ଆସିଲା ପରଠାରୁ ସାଧାରଣ ମଣିଷର ବିଚାର ଓ ବୋଧଗମ୍ୟ ହେଲାଭଳି ଢଙ୍ଗରେ ନକହି, ଏଭଳି ଭାବରେ କାର୍ଯ୍ୟ କରୁଛନ୍ତି ଓ ତାକୁ ବୁଝାଉଛନ୍ତି, ଯାହାକୁ କି ସାଧାରଣ ଲୋକେ ବୁଝିପାରିବ ନାହିଁ ଓ ତା' ପଛରେ ବୋଧଗମ୍ୟ ଯୁକ୍ତି ବି ନାହିଁ । ତାଙ୍କ କହିବାରୁ ଜଣାଯାଏ, ଯେଭଳି ସେ କୌଣସି ଅଲୌକିକ ଆଧ୍ୟାତ୍ମିକ ଅନୁଭୂତି ଲାଭ କରି, ଯାହା ଦିଗ୍‌ଦର୍ଶନ ପାଇଲେ, ତାହାହିଁ କହୁଛନ୍ତି ଓ କରୁଛନ୍ତି । ଆମେ ସବୁ ସେସବୁ ପଢ଼ି ବାଉଳା ହୋଇଯାଉଛୁ । ଏହାଫଳରେ ଦେଶରେ ଚାଲିଥିବା ଆନ୍ଦୋଳନର ଅବସ୍ଥା ଶୋଚନୀୟ ହୋଇପଡ଼ିଲାଣି । ଜଣେ ବ୍ୟକ୍ତିର ଆଧ୍ୟାତ୍ମିକ ଅବବୋଧ ଉପରେ ଭରସା କରି ଚାଲିଲେ ଯାହା ହୁଏ, ତାହାହିଁ ହେଲାଣି । ସେହି ବ୍ୟକ୍ତିଙ୍କ ତିରୋଧାନ ସହିତ ଆନ୍ଦୋଳନ ଅବସାନ ଘଟିବାକୁ ବାଧ୍ୟ ।

ଗାନ୍ଧିଜୀଙ୍କ ଉପଦେଶ ଅନୁସାରେ କଂଗ୍ରେସ ସଭାପତି ଗୋପନୀୟତା ବର୍ଜନ ପାଇଁ ନିଷ୍ପତ୍ତି ନେଇଛନ୍ତି । ଏଣୁ ଆନ୍ଦୋଳନ କାଳର ସମସ୍ତ ଗୋପନୀୟତା ପରିହାର କରିବାକୁ ହେବ । ଏଥିରୁ ସ୍ପଷ୍ଟ ଯେ ଗାନ୍ଧିଜୀ ଓ ଅନ୍ୟ କଂଗ୍ରେସ ନେତାମାନେ ଏହି ସଙ୍କଟ ସମୟରେ ଆନ୍ଦୋଳନର ଦାୟିତ୍ୱ ନେବାକୁ ଅନିଚ୍ଛୁକ । ଆମେ ଗୋପନୀୟତା ଉପରେ ଗାନ୍ଧିଜୀଙ୍କ ମନୋଭାବକୁ ପସନ୍ଦ କରୁଛୁ । ସାଧାରଣ ସମୟରେ ବି ଗୋପନୀୟତା ସତ୍ୟାଗ୍ରହର ପରିପନ୍ଥୀ । ହିଂସା ଏହାଠାରୁ ହଜାରେ ଗୁଣ ପରିତ୍ୟାଜ୍ୟ । କିନ୍ତୁ ଅସାଧାରଣ ପରିସ୍ଥିତିରେ

ନିଜେ ମାରିବା ଓ ମାରିବା ଲାଗି ଅନ୍ୟକୁ ଉତ୍ସାହିତ କରିବା ଭଳି ହିଂସା ମଧ୍ୟ ସତ୍ୟାଗ୍ରହର ପରିପନ୍ଥୀ ନୁହେଁ, ଏପରିକି ସତ୍ୟାଗ୍ରହର ସହାୟକ ବୋଲି ବିଚାର କରାଯାଏ ।

ମୁଁ ଏ ସମ୍ପର୍କରେ ଗାନ୍ଧିଜୀଙ୍କ ବୁଅର୍ ଯୁଦ୍ଧ ବେଳର ଓ ପ୍ରଥମ ମହାସମର କାଳରେ ସୈନ୍ୟବାହିନୀରେ ଅନ୍ତର୍ଭୁକ୍ତ ହେବା ଲାଗି ପ୍ରବର୍ତ୍ତନ କଥା ଦର୍ଶାଉଛି । ତାଙ୍କ ବଗିଚାରେ ମାଙ୍କଡ଼ ଫସଲ ନଷ୍ଟ କଲେ ସେଗୁଡ଼ିକୁ ମାରିବା ଯଥାର୍ଥ ବୋଲି ବି ଗାନ୍ଧିଜୀ କହିଛନ୍ତି । ଏଭଳି ତାଙ୍କର ଅନେକ କଥା ଓ କାମକୁ ଏ ସମ୍ପର୍କରେ କୁହାଯାଇପାରିବ । ମୁଁ ଅନୁଭବ କରୁଛି ଯେ ବେଳେବେଳେ ଏଭଳି ଗୋପନୀୟତା ଅବଲମ୍ବନ କରାଯାଇଥାଏ, ଯାହାକି ଅନୈତିକତାର କାରଣ ହୋଇଥାଏ । ଏହା ମୋ'ର ଦୃଢ଼ ବିଶ୍ୱାସ ଯେ ଗୋପନୀୟତାକୁ ତାତ୍ତ୍ୱିକ ଭାବରେ ଅଗ୍ରାହ୍ୟ କରାଯାଉଛି ସତ୍ୟ, କିନ୍ତୁ ପରିସ୍ଥିତିର ଚାପରେ ତାହାକୁ ଗ୍ରହଣ କରିବାରେ ସଙ୍କୋଚ ହେଉନାହିଁ । ଏଇଥିରୁ ପ୍ରବଞ୍ଚନା ସୃଷ୍ଟି ହେଉଛି ଓ ସେଇଥିରୁ ସୃଷ୍ଟି ହେଉଛି ଅନୈତିକତା । ଗୋପନୀୟତାକୁ ତତ୍ତ୍ୱଗତ ଭାବରେ ଗ୍ରହଣ କରାଯାଉନଥିବାରୁ ତା'ର ସୀମା ଓ ସମୟୋପଯୋଗିତା ସମ୍ପର୍କରେ କୌଣସି ବିଧିବିଧାନ ନାହିଁ । ଏହାରି ଫଳରେ ଆମ କର୍ମୀମାନେ ଅନେକ ସମୟରେ ଗୋପନୀୟତାର ଅଚିନ୍ତନୀୟ ଓ ହାସ୍ୟାସ୍ପଦ ସୀମା ପର୍ଯ୍ୟନ୍ତ ଚାଲିଯାଉଛନ୍ତି । ଅବଶ୍ୟ ଅନୈତିକତା ପାଇଁ ବହୁ ବାଟ ଅଛି । ଏକ ଗଣଆନ୍ଦୋଳନ ଲାଗି ସବୁ ପ୍ରକାର ଅନୈତିକ ପ୍ରଭାବ ତଥା କାରଣକୁ ନିବାରଣ କରିବା ଲାଗି ନେତାମାନେ ସଦା ଜାଗ୍ରତ ରହିବା ଆବଶ୍ୟକ ।

ଦେଶର ନେତୃତ୍ୱ ଉପରେ ଏବେ ଅତି ଗୁରୁଦାୟିତ୍ୱ ପଡ଼ିଛି । ଗାନ୍ଧିଜୀ ନିଜେ ସେଭଳି ନେତୃତ୍ୱର ଦାୟିତ୍ୱ ନେବା ଲାଗି ଅନିଚ୍ଛୁକ । ହେଲେ, ବୈପ୍ଳବିକ କଂଗ୍ରେସ ସଙ୍ଗଠନକୁ ଠିକଣା ବାଟରେ ଛାଡ଼ିବା ଦିଗରେ ତାଙ୍କର ଦାୟିତ୍ୱ ରହିଛି ବୋଲି ମୋ'ର ଛୋଟିଆ ବିଚାରରେ ମୁଁ ଭାବୁଛି । ତାଙ୍କ ପକ୍ଷରେ ଜେଲ୍‌ର ବାହାରେ ରହିବା, ଆନ୍ଦୋଳନର ସ୍ୱାର୍ଥ ଦୃଷ୍ଟିରୁ, ହୁଏତ ସମ୍ଭବପର ହୋଇନଥାନ୍ତା ଓ ତାହା ବି ଉଚିତ ହୋଇନଥାନ୍ତା । କିନ୍ତୁ ଦୌଲତରାମ୍‌ଜୀ, କୃପାଳିନୀ, ସୟେଦ୍ ମହମ୍ମଦ, ବୁଲାଭାଇ ଦେଶାଇ, ପ୍ରଫୁଲ୍ଲ ଘୋଷ ଓ ଟଣ୍ଡନଙ୍କ ଭଳି ତାଙ୍କର ବଛାବଛା ସହକର୍ମୀଙ୍କୁ ନେଇ ସେ ଏକ କେନ୍ଦ୍ରୀୟ କମିଟି ଗଠନ କରାଇପାରିଥାନ୍ତେ । ସେହି କମିଟି ବିଭିନ୍ନ ପ୍ରଦେଶ ବୁଲି ଅବସ୍ଥାର ଗଭୀର ଅନୁଧ୍ୟାନ କରି କଂଗ୍ରେସ ସଙ୍ଗଠନ ମଧ୍ୟରୁ ହଲହଲିଆ ଏବଂ ପଛେଇରହିଯିବା ଲୋକଙ୍କୁ ବାଦ୍ ଦିଅନ୍ତେ ଏବଂ ବିଭିନ୍ନ ଆନୁଷଙ୍ଗିକ ସଙ୍ଗଠନ ପାଇଁ କାର୍ଯ୍ୟକ୍ରମ ସ୍ଥିର କରନ୍ତେ । ଇତିମଧ୍ୟରେ କଂଗ୍ରେସ ବାହାରେ କେତେକ ଗୁପ୍ତ ସଙ୍ଗଠନ ଆପେଆପେ ଗଢ଼ିଉଠିଛି । ଗାନ୍ଧିଜୀ ସେସବୁକୁ ଭାଙ୍ଗିଦେବାପାଇଁ ନକହି ସେଗୁଡ଼ିକୁ ସାଙ୍ଗଠନିକ ସ୍ୱୀକୃତି ଦେବା ଲାଗି କଂଗ୍ରେସ ନେତାମାନଙ୍କୁ ଉପଦେଶ ଦେବା ଉଚିତ ହୋଇଥାନ୍ତା । ସେଭଳି ଆହୁରି ଅନେକ ସଙ୍ଗଠନ ଦେଶ ସାରା ଗଢ଼ିଉଠିଥାନ୍ତା ଏବଂ ପୂର୍ବୋକ୍ତ କେନ୍ଦ୍ରୀୟ କମିଟି

ସେଗୁଡ଼ିକୁ ନିୟନ୍ତ୍ରଣ କରନ୍ତେ ତଥା ଦିଗ୍‌ଦର୍ଶନ ଦିଅନ୍ତେ । ବର୍ତ୍ତମାନ ପରିସ୍ଥିତିରେ ଏଭଳି କିଛି ପଦକ୍ଷେପ ନେବା ନିହାତି ଦରକାର ।

ଏବେ ଗାନ୍ଧିଜୀ ଏକ ଭିନ୍ନ ବାଟ ଧରିଛନ୍ତି । କଂଗ୍ରେସ ସଙ୍ଗଠନର ହୁଗୁଳା ଏବଂ ଗୋଳମାଳିଆ ପରିସ୍ଥିତିକୁ ସୁଧାରିବା ଲାଗି ଆପଣ ହିଁ ଏକମାତ୍ର ବ୍ୟକ୍ତି ବୋଲି ଆମେ ବିଚାରୁଛୁ । ବିପ୍ଳବ ଭିତରେ ଅନେକ ସମୟରେ ଜୁଆର ଭଟ୍ଟା ଆସିଥାଏ । ଆମେ ଏବେ ଏକ ଭଟ୍ଟା ସମୟରେ ପହଞ୍ଚିଯାଇଛୁ ବୋଲି ସମସ୍ତଙ୍କୁ ସ୍ପଷ୍ଟ ଜଣାଯାଉଛି । ଜନସାଧାରଣ ଆମ ଆନ୍ଦୋଳନଠାରୁ ସବୁପ୍ରକାର ଉତ୍ସାହ ହରାଇଛନ୍ତି । ତାହା ଆସି, କେବଳ ଆଇନ୍ ଅମାନ୍ୟ କରି, ଜେଲ୍ ଯିବାରେ ସୀମାବଦ୍ଧ ହୋଇଗଲାଣି । ଏହାଫଳରେ ଜନସାଧାରଣ ଉନ୍ମାଦନା ପାଇପାରୁ ନାହାନ୍ତି । ଲୋକମାନଙ୍କର ଏକ ଅସ୍ପଷ୍ଟ ଧାରଣା ଥିଲା ଯେ ଆମ ଆନ୍ଦୋଳନ ଫଳରେ ଯେଉଁ ସ୍ୱରାଜ ଆସିବ, ତଦ୍ୱାରା ଲୋକମାନଙ୍କର ଅର୍ଥନୈତିକ ଅବସ୍ଥା ସୁଧୁରିବ । କେତେକ କାରଣରୁ ଲୋକଙ୍କର ସେହି ଧାରଣା ଭଣ୍ଡୁର ହେବାକୁ ବସିଲାଣି । ଏହାର ପ୍ରଥମ କଥା ହେଲା ଯେ ୧୯୩୨–୩୩ ଆନ୍ଦୋଳନ କାଳରେ କଂଗ୍ରେସ କିଛି ଆଖିଦୃଶିଆ ଦେଖାଇ ପାରିଲା ନାହିଁ । ଆଉ ଲୋକଙ୍କର ଗୋଟିଏ ଧାରଣା ହୋଇଯାଇଛି ଯେ ଆମ ଆନ୍ଦୋଳନ ଫଳରେ କୃଷିଜାତ ଦ୍ରବ୍ୟର ମୂଲ୍ୟ କମିଗଲା । ଏହାଫଳରେ ଚାଷୀମାନେ ଆମଠାରୁ ଦୂରେଇ ଯାଇଛନ୍ତି । ଏଭଳି ଏକ ସନ୍ଦେହ ଦୂର କରିବା ଦିଗରେ କଂଗ୍ରେସ କିଛି କରିନାହିଁ । ଅବଶ୍ୟ ଯେଉଁ ପ୍ରଦେଶ ବା ଜିଲ୍ଲାର କଂଗ୍ରେସ ଲୋକଙ୍କଦ୍ୱାରା କୃଷକ ଆନ୍ଦୋଳନ ହୋଇଛି, ସେଠାକାର ଅବସ୍ଥା ହୁଏତ ଭିନ୍ନ ହୋଇଥିବ । କିନ୍ତୁ ସାଧାରଣ ଭାବରେ ଯାହା ଦେଖାଯାଉଛି, ଖାଲି ଆଇନ୍ ଅମାନ୍ୟ କରି ଜେଲ୍ ଯିବା ଆମର କାମ ହୋଇଛି । ଲୋକଙ୍କୁ ସଙ୍ଗଠିତ କରିବା ଏବଂ ସେମାନଙ୍କ ସମର୍ଥନ ଲାଭ କଲା ଭଳି କିଛି କାମ ଆମେ କରୁନାହୁଁ ।

କଂଗ୍ରେସ ବୁର୍ଜୁଆ (ବଡ଼ଲୋକିଆ)ଙ୍କ ପ୍ରଭାବରୁ ନିଜକୁ ମୁକ୍ତ କରିପାରିନାହିଁ । ଧନୀ, ଜମିଦାର ଓ ସାହୁକାରଙ୍କୁ କ୍ଷତି କଲାଭଳି କିଛି କର୍ମପନ୍ଥା ନେବା ଲାଗି କଂଗ୍ରେସ ଗୋଟିଏ ସମୟରେ ଡରୁଥିଲା । ଆମ ଆନ୍ଦୋଳନ ପ୍ରଥମ ଅବସ୍ଥାରେ, ଯେତେବେଳେ ଲୋକଙ୍କ ମଧ୍ୟରେ ଜାତୀୟ ଚେତନା ସୃଷ୍ଟି କରିବାର ପର୍ଯ୍ୟାୟରେ ଥିଲା, ସେତେବେଳେ, ସେଭଳି କରିବା ହୁଏତ ଠିକ୍ ଥିଲା । ଆଜି କିନ୍ତୁ ଅବସ୍ଥା ବହୁତ ଆଗେଇଛି, ବିଦେଶୀ ଶାସକକୁ ମୁକାବିଲା କରିବାର ବେଳ ଆସିଛି । ଏଭଳି ପରିସ୍ଥିତିରେ କଂଗ୍ରେସ ନିଜର ସମସ୍ତ ଲଢୁଆ ଶକ୍ତିକୁ ଜୋର୍‌ସୋର୍‌ରେ ଲଗାଇଦେବା ଦରକାର । ଉଚ୍ଚ ଏବଂ ମଧ୍ୟବିତ୍ତ ଶ୍ରେଣୀର ଲୋକେ ୧୯୩୦ରେ ଯେଉଁ ପର୍ଯ୍ୟନ୍ତ ଯାଇଥିଲେ, ତା'ଠାରୁ ଅଧିକ ଆଗେଇବାକୁ ଅନିଚ୍ଛୁକ । କାରଣ ଅଧିକ ଲଢୁଆ କାର୍ଯ୍ୟକ୍ରମ ନିଆଗଲେ ସେମାନଙ୍କ ସମ୍ପତ୍ତି ଉପରେ ଆଞ୍ଚ୍ ଆସିବ ।

ଏହା ଅତି ପରିଷ୍କାର ଯେ ଅହିଂସା ସଂଗ୍ରାମରେ ସେହିମାନେ ଏକା ବିଦେଶୀ ଶକ୍ତିଠାରୁ କ୍ଷମତା ଛଡ଼ାଇଆଣିପାରିବେ ନାହିଁ । ଏଥିଲାଗି ଜନସାଧାରଣଙ୍କର ସକ୍ରିୟ ଅଂଶଗ୍ରହଣ ଆବଶ୍ୟକ । ଲୋକେ ତ ହତାଶାରେ ରହିଛନ୍ତି; କିନ୍ତୁ କେବଳ ଏକ ରାଜନୈତିକ ଲକ୍ଷ୍ୟ ସାଧନ ପାଇଁ ସେମାନଙ୍କ ମଧ୍ୟରେ ଆଲୋଡ଼ନ ସୃଷ୍ଟି କରିବା ଅସମ୍ଭବ । ସେମାନେ ରାଜନୀତିକ ପରାଧୀନତାର ଲାଞ୍ଛନାଠାରୁ ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥାକୁ ଅଧିକ ଉତ୍ପୀଡ଼କ ବୋଲି ବିଚାରନ୍ତି । ସେମାନେ ବ୍ରିଟିଶ୍ ଶାସନ ବିରୋଧରେ ଠିଆହେବେ, ଯଦି ସେମାନଙ୍କର ବିଶ୍ୱାସ ଆସେ ଯେ ତା'ରି ସାଥିରେ ଏ ଦେଶରୁ ଦେଶୀୟ ଜମିଦାର ଓ ପୁଞ୍ଜିପତିମାନଙ୍କର ଶାସନ ଲୋପ ପାଇବ । ଅର୍ଥାତ୍ ସେମାନଙ୍କ ମଧ୍ୟରେ ଜାଗରଣ ସୃଷ୍ଟି ହେବ । ସେହି କାର୍ଯ୍ୟକ୍ରମ ସିଧାସଳଖ ବିଦେଶୀ ଶାସନ ଲୋପ କରିବା ସଙ୍ଗେସଙ୍ଗେ ଅସମତାପୂର୍ଣ୍ଣ ଅର୍ଥନୈତିକ ଓ ସାମାଜିକ ବ୍ୟବସ୍ଥାର ଲୋପ ସାଧନ କରିବ । ଏହା ହେଲେ ଏହି ଉଚ୍ଚ ଓ ମଧ୍ୟବିତ୍ତ ଶ୍ରେଣୀ ଖୋଲାଖୋଲି କଂଗ୍ରେସ ବିରୋଧରେ ଠିଆ ହୋଇଯିବେ । ସେହି ଲଢ଼େଇରେ ଏହି ଦୁଇ ଶ୍ରେଣୀ ଦେଇଦେଇ ମୌଖିକ ସହାନୁଭୂତି ଦେବେ ଏବଂ ତଦ୍ୱାରା ଜୟଲାଭ କରିବା ଅସମ୍ଭବ । ଉକ୍ତ ସଂଗ୍ରାମରେ ଜନସାଧାରଣଙ୍କ ସହଯୋଗ ଅପରିହାର୍ଯ୍ୟ ହେଉଥିବାରୁ ଆମକୁ ସେଥିପାଇଁ ଯେଉଁ ମୂଲ୍ୟ ଦେବାକୁ ପଡ଼ିବ, ସେଥିପାଇଁ ଆମେ ପ୍ରସ୍ତୁତ ହୋଇଯିବା ଆବଶ୍ୟକ । ଅର୍ଥାତ୍ ଆମ ସଂଗ୍ରାମରେ ସାଧାରଣ ଲୋକଙ୍କର ସହଯୋଗ ଲାଭ ପାଇଁ ଆମର ଉପର ଶ୍ରେଣୀମାନଙ୍କର ଚକ୍ଷୁଶୂଳ ହେବାକୁ ହେବ ।

କରାଚୀ କଂଗ୍ରେସ ପୂର୍ବରୁ ବି କଂଗ୍ରେସ ଅନୁଷ୍ଠାନ ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନର ଆବଶ୍ୟକତା ଅନୁଭବ କରିଥିଲା । ୧୯୨୯ ମସିହା ମଇ ୨୪ ଓ ୨୫ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟି ଏହା ଗ୍ରହଣ କରିଥିଲା; ଦ୍ୱିତୀୟ ଗୋଲ୍ ଟେବୁଲ ବୈଠକରେ ମହାତ୍ମା ଗାନ୍ଧି ନିଜେ ବି ଏହା ସ୍ପଷ୍ଟ କରିଥିଲେ । ଏପରିକି ନିରନ୍ନଙ୍କ ଲାଗି ଧନିକ ଶ୍ରେଣୀର ଲୋପ କଥା ବି ସେ ଉକ୍ତ ବୈଠକରେ ଉଲ୍ଲେଖ କରିଥିଲେ । ଦୁଃଖର କଥା ଯେ ଏଥିପାଇଁ ଯେଉଁ ସାହସ ଦରକାର, କଂଗ୍ରେସ ସେଭଳି ସାହସ ଦେଖାଇପାରିନାହିଁ । କୁହାଯାଇପାରେ ଯେ ଗାନ୍ଧି ବ୍ୟକ୍ତିଭାବରେ ନିଜ ଢଙ୍ଗରେ ସେହି ସାମାଜିକ ସମାନତା ପାଇଁ କିଛି କାର୍ଯ୍ୟ କରୁଛନ୍ତି । କିନ୍ତୁ ତାଙ୍କ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ଏକ ପ୍ରଥମ ଶ୍ରେଣୀର ବୈପ୍ଳବିକ ଆନ୍ଦୋଳନ ହେବା ପରିବର୍ତ୍ତରେ ପୂରାପୂରି ଏକ ସଂସ୍କାରମୂଳକ କାର୍ଯ୍ୟରେ ପର୍ଯ୍ୟବସିତ ହୋଇଛି ।

ପରିଶେଷରେ ମୁଁ ଆପଣଙ୍କୁ ବିଶେଷ ଭାବରେ ଅନୁରୋଧ କରିବି ଯେ ଏକ ଲଗାତର ଏବଂ ଦୀର୍ଘ ସଂଗ୍ରାମ ପାଇଁ ଯେଉଁ କଂଗ୍ରେସ କର୍ମୀ ବିଭିନ୍ନ ପ୍ରଦେଶରେ ଅନେଇ ରହିଛନ୍ତି, ଆପଣ ସେମାନଙ୍କୁ ନେଇ ଏକ ଛୋଟ ସଙ୍ଗଠନ ଗଢ଼ନ୍ତୁ । ବର୍ତ୍ତମାନ କଂଗ୍ରେସର ଯେଉଁ

ଅବକ୍ଷୟ ଦେଖା ଦେଇଛି, ତଦ୍ବାରା ତାହାକୁ ରୋକିହେବ । ଖୁବ୍ ବଡ଼ ଧରଣର ବିକ୍ଷୋଭ ବା ଶସ୍ତା ଗୌରବଲାଭର ଯୁଗ ଚାଲିଯାଇଛି । ଦିନ ଥିଲା, ଯେତେବେଳେ ସେଭଳି କାର୍ଯ୍ୟର ଆବଶ୍ୟକତା ଥିଲା; କିନ୍ତୁ ତା'ର ସମୟ ଚାଲିଯାଇଛି । ସେଭଳି କାର୍ଯ୍ୟ ଆମକୁ ହତାଶା ଆଡ଼କୁ ହିଁ ନେଇଯିବ ।

ସୁଖର କଥା ଯେ ଅନେକ ପୂର୍ବତନ ସନ୍ତ୍ରାସବାଦୀ ରାଜନୈତିକ ହତ୍ୟାର ଅସାରତା ଉପଲବ୍ଧି କରି ରାଜନୀତିକ ସଂଗ୍ରାମ ସହିତ ସାମାଜିକ ସଂଗ୍ରାମର ଆବଶ୍ୟକତା ଉପଲବ୍ଧି କରି ସେହି ଦିଗରେ କାମକରିବା ଆରମ୍ଭ କରିଛନ୍ତି । ଗାନ୍ଧିଜୀଙ୍କ ବର୍ତ୍ତମାନର କାର୍ଯ୍ୟକ୍ରମ ସହିତ ସାଙ୍ଗଠନିକ କ୍ଷେତ୍ରରେ ଆନ୍ଦୋଳନ ଦିଗରେ ଗୁରୁତ୍ୱପୂର୍ଣ୍ଣ ବହୁମୁଖୀ କାର୍ଯ୍ୟକ୍ରମମାନ ନିଆ ନ ହେଲେ ତାହା ସ୍ୱାଧୀନତା ପାଇଁ ଉଦ୍‌ଗ୍ରୀବ ଲୋକମାନଙ୍କ ମନକୁ ମୋଟେ ପାଇବ ନାହିଁ ।

ଆପଣଙ୍କର ବିଶ୍ୱସ୍ତ<br>
(ସ୍ୱା)ନବ ଚୌଧୁରୀ<br>
ତାରିଖ ୮-୯-୩୩

## ନେହେରୁଙ୍କୁ ଦ୍ୱିତୀୟ ପତ୍ର

ପ୍ରିୟ ସାଥୀ ! କଟକ

ଏଥି ସହିତ ଲେଖା ଚିଠିଟି ଆପଣ ପୁନାରେ ଥିବା ସମୟରେ ପଠାଇଥିଲି । କିନ୍ତୁ ଯେଉଁ ବନ୍ଧୁଙ୍କ ଜରିଆରେ ମୁଁ ସେଇଟିକୁ ଆପଣଙ୍କ ପାଖକୁ ପଠାଇଥିଲି, ସେ ଉକ୍ତ ସମୟରେ ବମ୍ବେ ଚାଲିଯାଇଥିବାରୁ ଚିଠିଟି ଆପଣଙ୍କ ହସ୍ତଗତ ହୋଇପାରିଲା ନାହିଁ । ସେହି ସମୟ ପରେ ଆପଣ ଆପଣଙ୍କ ଅଭିମତ ପରିଷ୍କାର କରିଦେଲେଣି । ତଦ୍ବାରା ଆମେ ଆପଣଙ୍କ ଉପରେ ଯେଉଁ ବିଶ୍ୱାସ ରଖିଛୁ, ତାହାର ଯଥାର୍ଥତା ପ୍ରତିପାଦିତ ହୋଇଯାଇଛି । ତଦ୍ବାରା ଆପଣ ଗାନ୍ଧିଜୀଙ୍କ ପ୍ରତି ଆପଣଙ୍କ ବିଶ୍ୱସ୍ତତା ପ୍ରତିପାଦନ କରିବା ସଙ୍ଗେସଙ୍ଗେ କଅଣ କରଣୀୟ ଓ କେଉଁଟି ବର୍ଜନୀୟ, ତାହା ଦର୍ଶାଇଦେଇଛନ୍ତି ।

କହିବାର କଥା ଏହି ଯେ ଆମ ପ୍ରଦେଶରେ ଅଳ୍ପ କିଛି କର୍ମୀ ଅଛନ୍ତି, ଯେଉଁମାନେ ଆପଣଙ୍କ ପ୍ରଦର୍ଶିତ ବାଟରେ କିଛି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଗ୍ରହଣ କରିବା ଲାଗି ଉଦ୍‌ଗ୍ରୀବ ହୋଇ ରହିଛନ୍ତି ।

ସେହି କାର୍ଯ୍ୟକ୍ରମରେ ଗାନ୍ଧିଜୀଙ୍କ ସମର୍ଥନ, ଓ ଯଦି ସମ୍ଭବ, ନେତୃତ୍ୱ ମିଳିପାରିଲେ ବହୁତ ବଡ଼ କଥା ହୁଅନ୍ତା । କରାଚୀ କଂଗ୍ରେସ ପରେ ଗୋଟିଏ ସମୟରେ ଗାନ୍ଧିଜୀ ବି ସେଭଳି କାର୍ଯ୍ୟକ୍ରମ ଲାଗି ଖୁବ୍ ଗୁରୁତ୍ୱର ସହ ବିଚାର କରୁଥିଲେ ଯାହାର, ମୌଳିକ ଭାବରେ,

ଆପଣଙ୍କ କାର୍ଯ୍ୟକ୍ରମ ସହିତ ସାମଞ୍ଜସ୍ୟ ରହିଛି । କିନ୍ତୁ କାର୍ଯ୍ୟକାରୀ କମିଟି ତାହାକୁ ଅଗ୍ରାହ୍ୟ କରିଦେଲା ।

୧୯୩୧ ଜୁନ୍ ୧୮ ତାରିଖ ''ୟଙ୍ଗ୍ ଇଣ୍ଡିଆ''ରେ ତାଙ୍କ ଲେଖା 'ଛାୟା ନୁହେଁ ମୂଳବସ୍ତୁ' ଆପଣଙ୍କ ଗୋଚରାର୍ଥେ ପଠାଇଲି । ସେ ସମୟର ପରିସ୍ଥିତି, ବର୍ତ୍ତମାନଠାରୁ, କିଛି ପରିମାଣରେ ଭିନ୍ନ ଥିଲା । ସେ ସମୟରେ ଆନ୍ଦୋଳନ ଚୂଡ଼ାନ୍ତ ଶିଖରରେ ପହଞ୍ଚିଥିଲା । ବିଭିନ୍ନ ଗୋଷ୍ଠୀ ରାଜି ନହେବାରୁ ଗାନ୍ଧିଜୀ ଉକ୍ତ କାର୍ଯ୍ୟକ୍ରମରେ ପରିବର୍ତ୍ତନ ପାଇଁ ଉପଦେଶ ଦେଇଥିଲେ । ବର୍ତ୍ତମାନ ପରିସ୍ଥିତି ଅତି ଖରାପ ଆଡ଼କୁ ଗତି କରୁଛି । କଂଗ୍ରେସକୁ ନିଜର ସ୍ଥିତି ସୁଦୃଢ଼ କରିବାପାଇଁ ତୁରନ୍ତ ସେହି ଦିଗରେ କିଛି କରିବାକୁ ପଡ଼ିବ । ଉକ୍ତ ଲେଖାରୁ ଗାନ୍ଧିଜୀଙ୍କ ପ୍ରତି ଗଭୀର ଅନ୍ତର୍ଦୃଷ୍ଟିର ପରିଚୟ ମିଳେ । ଦୁଃଖର କଥା, ସେ ଲଣ୍ଡନରୁ ଫେରିଆସିଲା ପରେ ସେହି ଢଙ୍ଗରେ କାମ ଆରମ୍ଭ କଲେନାହିଁ । ୧୯୩୨ ଓ ୧୯୩୩ର ଅଭିଜ୍ଞତା ପରେ ସେ ଯେଉଁ କାର୍ଯ୍ୟକ୍ରମର ଆବଶ୍ୟକତା ଉପରେ ଏତେ ବେଶି ଗୁରୁତ୍ୱ ଦେଉଥିଲେ ସେସବୁ, ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକ ପୂର୍ବାବସ୍ଥାଠାରୁ, ଆହୁରି ଜରୁରି ହୋଇଉଠିଛି ।

ଏହି ଲେଖା ଶେଷ କରିବା ପୂର୍ବରୁ ଉତ୍କଳ ଭଳି ଏକ ପଛୁଆ ରାଜ୍ୟ ଲାଗି ଆପଣ କିଛି ସମୟ ଓ ଦୃଷ୍ଟି ଦେବା ଲାଗି ପୁଣିଥରେ ଅନୁରୋଧ କରୁଛି ।

ଆପଣଙ୍କର ବିଶ୍ୱସ୍ତ
(ସ୍ୱା)ନବ ଚୌଧୁରୀ
ତାରିଖ ୯-୧୦-୧୯୩୩

**ଜବାହରଲାଲଙ୍କ ଉତ୍ତର**

ଆନନ୍ଦ ଭବନ
ଆଲହାବାଦ,
ଅକ୍ଟୋବର ୧୫, ୧୯୩୩

ପ୍ରିୟ ସାଥୀ !

ତୁମର ଦୁଇଟିଯାକ ଚିଠି ପାଇଲି । ମୁଁ ଖୁବ୍ ଆଗ୍ରହର ସହ ସେଗୁଡ଼ିକ ପଢ଼ିଲି । ତୁମେ ଯାହା କହିଛ, ତହିଁରୁ ଅନେକରେ ମୁଁ ତୁମ ସହ ପୂରାପୂରି ଏକମତ । କିନ୍ତୁ କାର୍ଯ୍ୟ କରିବା ଲାଗି ଗୁପ୍ତ ସଙ୍ଗଠନର ଆବଶ୍ୟକତା ସମ୍ପର୍କରେ ତୁମେ ଯାହା କହିଛ, ସେ ଦିଗରେ ମୁଁ ଏକମତ ହୋଇପାରୁନାହିଁ । ମୁଁ ଭାବୁଛି, କେତେକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ଗୋପନୀୟତାକୁ ଏକ ସମ୍ଭାବ୍ୟ ତଥା କାର୍ଯ୍ୟକାରୀ ପନ୍ଥା ଭାବରେ ନିଆଯାଇପାରେ । ସେ ଦିଗରେ ମୋ'ର

ମୋଟେ ଆପତ୍ତି ନାହିଁ । କିନ୍ତୁ ବର୍ତ୍ତମାନ ପରିସ୍ଥିତିରେ ଗୋପନ ସଙ୍ଗଠନ ଓ କାର୍ଯ୍ୟ ମୋଟେ ଆମକୁ ସାହାଯ୍ୟ କରିବ ନାହିଁ । ଏହା ମାନେ ନୁହେଁ ଯେ ଆମେ ଆମ ଭିତରେ ଘରୋଇ ଆଲୋଚନା ଓ ପରାମର୍ଶ କରିବା ନାହିଁ । ସେଥିପାଇଁ କୌଣସି ସମୟରେ ବାଧା ନାହିଁ । ଆମ ଲଢ଼େଇ ମୂଳତଃ ଜନସାଧାରଣଙ୍କ ନୈତିକତା ଉପରେ ଆଧାରିତ । ସେଥିଲାଗି ଗୋପନୀୟ ପଦ୍ଧତି ମୋଟେ ଉପଯୋଗୀ ନୁହେଁ ବୋଲି ମୋ'ର ପୂର୍ଣ୍ଣ ଧାରଣା । ଆମର ଆନ୍ଦୋଳନକୁ ଯଦି ଆମେ ମୁଖ୍ୟତଃ ଗଣଆନ୍ଦୋଳନର ରୂପ ଦେବାକୁ ଚାହୁଁଥାଉ ତ ତାହା ପୂରାପୂରି ଖୋଲା ଆନ୍ଦୋଳନର ରୂପ ନେବାକୁ ବାଧ୍ୟ । ଖୋଲାଖୋଲି ଆଇନ-ଅମାନ୍ୟ-ମୂଳକ ସତ୍ୟାଗ୍ରହ ଏବଂ ଗୋପନୀୟ ପଦ୍ଧତିର ଆନ୍ଦୋଳନ ମଧ୍ୟରେ କେତେକ ଫରକ୍ ରହିଛି । ଗୋପନୀୟ ଆନ୍ଦୋଳନରେ ବହୁ ଲୋକଙ୍କୁ ସମ୍ପୃକ୍ତ କରାଯାଏ ନାହିଁ । ଜର୍ମାନୀ ଆନ୍ଦୋଳନ ବର୍ତ୍ତମାନ ସେହିଭଳି ଗୋପନୀୟ ପଦ୍ଧତିରେ ଚାଲିଛି । ସେଠାକାର ପରିସ୍ଥିତି ବିଚାର କରି ସେମାନେ ଜାଣିଶୁଣି ସେଭଳି ପନ୍ଥା ଗ୍ରହଣ କରିଛନ୍ତି । ତାହା କରିବାକୁ ହେଲେ ଆମକୁ ପୂରାପୂରି ନୂଆ କୌଶଳ ଅବଲମ୍ବନ କରିବାକୁ ହେବ । ଗଣଆନ୍ଦୋଳନ ଯେଉଁଠି ସମ୍ଭବପର ନୁହେଁ, ସେହିଠାରେ ହିଁ ସେଭଳି ଗୋପନୀୟ ପଦ୍ଧତିର ସହାୟତା ନେବାକୁ ହୋଇଥାଏ । ପରବର୍ତ୍ତୀ କାଳରେ ଖୁବ୍ ଏକ ବଡ଼ ସଂଗ୍ରାମ କରିବା ଲାଗି ସେପରି ପଦ୍ଧତିର ଆଶ୍ରୟ ନିଆଯାଇଥାଏ । ଆମ ଦେଶରେ ଆମେ ଖୋଲାଖୋଲି ଆଇନ୍ ଅମାନ୍ୟ ବାଟ ବାଛିଛୁ । ଲୋକଙ୍କ ମେରୁଦଣ୍ଡ ଟାଣ କରିବା ପାଇଁ ଓ ଚରିତ୍ର ଗଠନ ଲାଗି ଆମେ ଏଭଳି ପଦ୍ଧତି ଗ୍ରହଣ କରିବା ଖୁବ୍ କଷ୍ଟକର । ବର୍ତ୍ତମାନ ପାଇଁ ଆନ୍ଦୋଳନ ମାନ୍ଦା ଧରିଥିଲେ ବି ସଂଗ୍ରାମକୁ ଆଗେଇନେବା ଲାଗି ଆମର ଯଥେଷ୍ଟ ସାମର୍ଥ୍ୟ ରହିଛି; ଯଦିଓ ତାହା ଟିକିଏ ଧୀର ଗତିରେ ଚାଲିବ । ଜାତୀୟ ତଥା ଆନ୍ତର୍ଜାତୀୟ ପରିସ୍ଥିତି ବିଚାରରୁ ବର୍ତ୍ତମାନ ପାଇଁ, ଆମେ ଚଳାଇଆସିଥିବା ପଦ୍ଧତିରେ, ଆମକୁ ଆଗେଇବାକୁ ହେବ । କୌଣସି ସମୟରେ ଏକ ଗୁରୁତ୍ୱପୂର୍ଣ୍ଣ ଆନ୍ତର୍ଜାତୀୟ ଘଟଣା ଆରମ୍ଭ ହୋଇଗଲେ, ଆମେ କିନ୍ତୁ ଆଉ ନିଶ୍ଚଳ ରହିପାରିବା ନାହିଁ । ଏଣୁ ମୁଁ ଭାବୁଛି ଯେ ଆମ କାମ ଖୋଲାଖୋଲି ଭାବରେ ଚାଲୁ ଓ ତା'ରି ସାଙ୍ଗେସାଙ୍ଗେ ଲଢୁଆ ରୂପ ନେଉ । ଏହାରି ସଙ୍ଗେସଙ୍ଗେ ଆମ ଭିତରେ ଘରୋଇ ପରାମର୍ଶ ଓ ଗୋଷ୍ଠୀଗତ କାର୍ଯ୍ୟ ବି ଚାଲୁ । ଗାନ୍ଧିଜୀ ପୁନାରୁ ଠିକ୍ ଏହି ମର୍ମରେ ଏକ ଚିଠି ଦେଇଥିଲେ । ଗାନ୍ଧିଜୀଙ୍କ ପତ୍ର ସହିତ ସେସବୁ ପତ୍ରାଳାପର ଏକ ନକଲ ପଠାଉଛି ।

ସବୁ ପ୍ରଦେଶରେ ଲଗାତର ଲଢ଼େଇ ପାଇଁ ଆଗଭର କଂଗ୍ରେସ କର୍ମୀମାନଙ୍କର ଏକ ଛୋଟ ଗୋଷ୍ଠୀ ଗଢ଼ାଯିବା ସମ୍ପର୍କରେ ତୁମେ ଯେଉଁ ପ୍ରସ୍ତାବ ଦେଇଛ, ସେ ସମ୍ପର୍କରେ ମୁଁ ଏକମତ । ଆମ ପ୍ରଦେଶରେ ଆମେ ଠିକ୍ ସେଇଆହିଁ କରୁଛୁ । ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରର କର୍ମୀମାନଙ୍କୁ ବୁଝାଉଛୁ ଓ ସେମାନେ ନିଜ ଜିଲ୍ଲାରେ ବି ସେଭଳି ଆଲୋଚନା କରନ୍ତୁ

ବୋଲି ଆମେ ପରାମର୍ଶ ଦେଇଛୁ । ଆମେ ଯେଉଁ ପ୍ରସ୍ତାବ ଗ୍ରହଣ କରିଛୁ, ତା'ର ଏକ ନକଲ ତୁମ ପାଖକୁ ପଠାଉଛି । ବିଭିନ୍ନ ଜିଲ୍ଲାକୁ ଆମେ ଇତିମଧ୍ୟରେ ଆହୁରି ସୁବିସ୍ତୃତ ନିର୍ଦ୍ଦେଶନାମା ପଠାଇବାକୁ ପ୍ରସ୍ତାବ କରିଛୁ ।

ଏହା ଅର୍ଥ, ଆମକୁ ଖୋଲାଖୋଲି ଭାବରେ ଟାଣୁଆ ଅସହଯୋଗ ଆନ୍ଦୋଳନ ଚଳାଇବାକୁ ହେବ ଏବଂ ସେହି ଲଢ଼େଇ ଭିତରେ ଆମେ ଆମ କର୍ମୀମାନଙ୍କୁ ନୂଆ ଆଦର୍ଶବାଦ ଦିଗରେ ଅବଶ୍ୟ ଶିକ୍ଷିତ କରିବାକୁ ହେବ । ଏହା କଷ୍ଟ କାମ; କିନ୍ତୁ ଏହାଛଡ଼ା ଅନ୍ୟ ପନ୍ଥା ନାହିଁ । କେତେକ ଲୋକ ଭାବନ୍ତି ଯେ ଆମେ ଲଢ଼େଇ ବନ୍ଦ କରିଦେଲେ ସଙ୍ଗଠନକୁ ଆହୁରି ଭଲ ଭାବରେ ଗଢ଼ିପାରନ୍ତୁ । ମୁଁ ଭାବୁଛି ଏହା ଭୁଲ୍ । କାରଣ ଆମେ ଲଢ଼େଇ ବନ୍ଦ୍ କରିଦେଲେ ବି ସରକାର ଯେ ଖୋଲାଖୋଲି ଆଉ କିଛି କରିବାକୁ ସୁବିଧା ଦେବେ, ଏହା ଅସମ୍ଭବ । ଲଢ଼େଇ ବନ୍ଦ କରିଦେଲେ ପୂରାପୂରି ନିରାଶା ଘୋଟିଯିବ ।

ତୁମ କହିବା ପରି ସବୁ ବଡ଼ ଲଢ଼େଇରେ ଜୁଆର ଭଟ୍ଟା ଥାଏ । ଏଥିରେ ନିରାଶ ହେବା ଉଚିତ ନୁହେଁ । ଭାରତର ବର୍ତ୍ତମାନ ପରିସ୍ଥିତିରେ ମୁଁ ଅନ୍ତତଃ ନିରାଶ ନୁହେଁ । ବ୍ରିଟିଶ୍ ସରକାରଙ୍କ ଉଚ୍ଚସ୍ତରର ପ୍ରତିନିଧିମାନେ ଯେଉଁ ବଡ଼ବଡ଼ କଥା କହୁଛନ୍ତି, ସେସବୁ ଫାଙ୍କିବାଜ । ସମଗ୍ର ଆନ୍ତର୍ଜାତୀୟ ପରିସ୍ଥିତି ଆମ ସପକ୍ଷରେ ରହିଛି, ସେହି ସୁଯୋଗ ନେବା ଲାଗି ଆମେ ସେମାନଙ୍କ ଫାଶରେ ପଡ଼ିଯିବା ଉଚିତ ନୁହେଁ । ମୁଁ ଭାବୁଛି, ବର୍ତ୍ତମାନ ଜାତୀୟସ୍ତରରେ କ୍ଷମତା ହାସଲ କରିବାର ସଂଗ୍ରାମକୁ ସ୍ଥାନୀୟ ଅର୍ଥନୈତିକ ସଂଗ୍ରାମ ଆଡ଼କୁ ହଠାତ୍ ମୁହାଁଇ ନେବା ସମ୍ଭବପର ନୁହେଁ । ବର୍ତ୍ତମାନ ଉଭୟ କର୍ମୀ ଓ କୃଷକମାନେ ହାଲିଆ ହୋଇପଡ଼ିଛନ୍ତି । ଏଣୁ ସେମାନଙ୍କ ଆଶୁ ସମସ୍ୟା ଉପରେ ବି ସେମାନଙ୍କୁ ହଠାତ୍ ତତେଇହେବନାହିଁ । ଯେଉଁଠି ସମ୍ଭବ ସେଭଳି କାମ ହାତକୁ ନିଆଯାଉ । ତେବେ, ଆମକୁ ମୁଖ୍ୟତଃ ଜାତୀୟ ମୁକ୍ତି ସଂଗ୍ରାମ ଲାଗି ଜୋର୍ ଦେବାକୁ ହେବ । ଏହାକୁ ଆମକୁ ସାଧାରଣ ଲୋକଙ୍କ ସାମାଜିକ ଓ ଅର୍ଥନୈତିକ ସଂଗ୍ରାମ ଆଡ଼କୁ ବି ମୁହାଁଇବାକୁ ହେବ । ଦେଖିବାକୁ ଗଲେ, ଏହା ଏକ ନୂତନ ଆଦର୍ଶବାଦ । ଏ ସମ୍ପର୍କରେ ଖବରକାଗଜମାନଙ୍କରେ ମୋର ଲେଖା ବାହାରୁଥିବାର ତୁମ ଦୃଷ୍ଟିକୁ ଆସୁଥିବ ।

ତୁମ ପ୍ରଦେଶକୁ ଆମେ ଭୁଲିନାହୁଁ ବୋଲି ତୁମକୁ ଦୃଢ଼ ପ୍ରତିଶ୍ରୁତି ଦେଉଛି । କିନ୍ତୁ ବର୍ତ୍ତମାନ ଯାହା ପରିସ୍ଥିତି, ସେଥିରେ କେବଳ ସହାନୁଭୂତି ଛଡ଼ା ଅଧିକ କିଛି ସାହାଯ୍ୟ କରିବା ସମ୍ଭବପର ନୁହେଁ ।

ଶୁଭେଚ୍ଛା ସହ
ତୁମର ଆନ୍ତରିକ
(ସ୍ୱା)ଜ. ନେହେରୁ

## କଂଗ୍ରେସ-ସୋସାଲିଷ୍ଟ ପାର୍ଟି :

'ସାରଥି' ହିଁ ଓଡ଼ିଶାର ସାହିତ୍ୟ ଓ ରାଜନୀତି କ୍ଷେତ୍ରରେ ନୂଆ ଯୁଗ ସୃଷ୍ଟି କରିଥିଲା । ତା'ର ଭାଷା ଅବଶ୍ୟ ଶ୍ରମିକ, ଚାଷୀମୂଲିଆ ଓ ସର୍ବହରାର ଭାଷା ନଥିଲା । କିନ୍ତୁ ସେଇ ନୂତନତାର ସ୍ୱାଦ ପାଇ ବହୁ ଛାତ୍ର ଓ ଯୁବକ 'ସାରଥି'ର ମାର୍ଗ ଅନୁସରଣ କଲେ । ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀ ସଂଘକୁ ଏଣିକି ଏକ ସାଙ୍ଗଠନିକ ରୂପ ଦିଆଗଲା । ତହିଁରେ ନବକୃଷ୍ଣ ଚୌଧୁରୀ ସାଧାରଣ ସମ୍ପାଦକ ଓ ମାଳତୀ ଦେବୀ କୋଷାଧ୍ୟକ୍ଷ ହେଲେ । ସଙ୍ଘର କିଛି ନିୟମ ବି ଗଢ଼ାଗଲା ।

ତେଣେ ସର୍ବଭାରତୀୟ ସ୍ତରରେ ସୋସାଲିଷ୍ଟ ପାର୍ଟି ଗଠନ ପାଇଁ ଉଦ୍ୟମ ହୋଇଥାଏ । ୧୯୩୩ ଜାନୁଆରିରୁ ଜୟପ୍ରକାଶ ନାରାୟଣ, ମିନୁ ମାସାନୀ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ଅଶୋକ ମେହେଟ୍ଟା ଆଦି ବର୍ଷେ କାଳ ମହାରାଷ୍ଟ୍ରର ନାସିକ ଜେଲ୍‌ରେ ବନ୍ଦୀ ଥିଲେ । ସେହି ସମୟରେ ସେମାନେ ସୋସାଲିଷ୍ଟ ପାର୍ଟି ଗଢ଼ିବାର ନିଷ୍ପତ୍ତି ନେଇଥିଲେ । ସେମାନେ ରୁଷୀୟ ସାମ୍ୟବାଦକୁ ବହୁ ପରିମାଣରେ ମଡେଲ୍ ହିସାବରେ ନେଇଥିଲେ ବି, ଭାରତୀୟ କ୍ଷେତ୍ରରେ ଗାନ୍ଧି ଓ କଂଗ୍ରେସକୁ ବାଦ୍ ଦେଇ ତିଷ୍ଠିବା ଅସମ୍ଭବ ମନେକରି, କଂଗ୍ରେସକୁ ସମାଜବାଦୀ ଢାଞ୍ଚାରେ ପକାଇବାକୁ ଅଧିକ ସମୀଚୀନ ମନେକଲେ । ଏଣୁ ପ୍ରସ୍ତାବିତ ଗୋଷ୍ଠୀର ନାମ 'କଂଗ୍ରେସ ସୋସାଲିଷ୍ଟ ପାର୍ଟି' ରଖିଲେ । କଂଗ୍ରେସ ତରଫରୁ କେତେକଙ୍କଠାରୁ ବିରୋଧ ଦେଖାଦେଲେ ମଧ୍ୟ ଜବାହରଲାଲ ନେହେରୁଙ୍କ ସମର୍ଥନ ଯୋଗୁଁ ଏଥିଲାଗି ବିଶେଷ ଅସୁବିଧା ଦେଖାଦେଇ ନଥିଲା । ବିହାର ଓ ଉତ୍ତର ପ୍ରଦେଶରୁ ଏବଂ ବମ୍ବେରୁ ବହୁ ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଏଥିରେ ଯୋଗଦେଲେ । ସେମାନଙ୍କ ମଧ୍ୟରେ ଆଚାର୍ଯ୍ୟ ନରେନ୍ଦ୍ର ଦେବ ଓ ଗଙ୍ଗାଶରଣ ସିଂହ ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ ।

୧୯୩୪ ଅକ୍ଟୋବର ୨୧ ଓ ୨୨ରେ ବମ୍ବେର ୱାର୍ଲିଠାରେ ସର୍ବଭାରତୀୟ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ସମ୍ମିଳନୀ ବସିଥିଲା । ସେଥିଲାଗି ସବୁ ପ୍ରଦେଶରେ ଉଣାଅଧିକେ ଉତ୍ସାହ ଦେଖାଯାଇଥିଲା ଓ ସବୁଆଡୁ ପ୍ରତିନିଧି ଆସିଥିଲେ । ଏହି ଉଦ୍ଦେଶ୍ୟରେ ନବକୃଷ୍ଣ ଚୌଧୁରୀଙ୍କ ବାଖରାବାଦ ଘରେ ଏକ ସମ୍ମିଳନୀ ବସି ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀସଂଘକୁ ସର୍ବଭାରତୀୟ କଂଗ୍ରେସ-ସୋସାଲିଷ୍ଟ ପାର୍ଟିରେ ମିଶାଇ ଦେବାକୁ ସ୍ଥିର କରାଗଲା । ସେହି ପ୍ରଥମ ଅଧିବେଶନରେ ପ୍ରାଣନାଥ ପଟ୍ଟନାୟକ କଂଗ୍ରେସ-ସୋସାଲିଷ୍ଟ ପାର୍ଟିର ଓଡ଼ିଶା ଶାଖାର ପ୍ରଥମ ସଭାପତି ଭାବରେ ନିର୍ବାଚିତ ହେଲେ । ପରବର୍ତ୍ତୀ ବର୍ଷ ଭଗବତୀ ପାଣିଗ୍ରାହୀ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଓଡ଼ିଶା ଶାଖାର ସମ୍ପାଦକ ହେଲେ । ୱାର୍ଲି ସମ୍ମିଳନୀରୁ ଫେରି କଂଗ୍ରେସ ସୋସାଲିଷ୍ଟମାନେ ଓଡ଼ିଶାରେ ନିଜର କାର୍ଯ୍ୟକ୍ରମ ଭାବରେ ଚାଷୀ ଆନ୍ଦୋଳନ ଆରମ୍ଭ କଲେ । କାରଣ ସେତେବେଳକୁ ଓଡ଼ିଶାରେ ଶ୍ରମିକ ଶ୍ରେଣୀ ନଥାଏ ଏବଂ

ମୂଲିଆମାନଙ୍କୁ ସଙ୍ଗଠିତ କରିବାର ପରିସ୍ଥିତି ନଥାଏ । ଏଣୁ ସେମାନେ ଜମିଦାରଙ୍କ ଶୋଷଣ ଓ ଅତ୍ୟାଚାରରେ ତଳିତଳାନ୍ତ ହୋଇପଡୁଥିବା ଚାଷୀଙ୍କୁ ସଙ୍ଗଠିତ କରିବାରେ ଲାଗିଲେ । ତଥାପି କୃଷକ ଆନ୍ଦୋଳନ ପାଇଁ ଧ୍ୱନି ଥିଲା, 'ଚାଷୀମୂଲିଆ ଏକ ହୁଅ', 'ଜମିଦାରୀ ଶୋଷଣ ଲୋପ ପାଉ' । କୃଷକମାନଙ୍କ ମଧ୍ୟରେ ସଙ୍ଗଠନ ଗଢ଼ିବା ପୂର୍ବରୁ ସେମାନଙ୍କର ବିଭିନ୍ନ ସମସ୍ୟା ହାତକୁ ନିଆଗଲା । ସେତେବେଳକୁ ଓଡ଼ିଶାରେ ବାରମ୍ବାର ପ୍ରବଳ ବନ୍ୟା ହୋଇ ଚାଷୀ ସର୍ବସ୍ୱାନ୍ତ ହେଉଥିଲା । ଫସଲ ସମୂଳେ ନଷ୍ଟ ହେଲେ ବି ଖଜଣାରୁ ତ୍ରାହି ମିଳୁନଥିଲା । ଏଣୁ ବନ୍ୟା ସମୟରେ ରିଲିଫ୍ କାମ କରିବା ଓ ଫସଲହାନି ବର୍ଷ ଖଜଣା ଛାଡ଼୍ କରିବାର ଦାବି ନେଇ କୃଷକ ସଂଘର କର୍ମୀ ଓ ନେତାମାନେ ଲାଗିପଡ଼ିଲେ । ଏହାରି ମାଧ୍ୟମରେ ଚାଷୀମାନଙ୍କର ଅନ୍ୟାନ୍ୟ ସମସ୍ୟାକୁ ବି ନିଆହେଲା ।

କିନ୍ତୁ ତାତ୍ପର୍ଯ୍ୟର କଥା ଏହି ଯେ କୃଷକ ସଙ୍ଗଠନର ମୁଖ୍ୟମାନେ କେହି କୃଷକ ନଥିଲେ, ବରଂ ଥିଲେ ଛୋଟ ଜମିଦାର । ଥରେ ଏହି ସମୟରେ କୃଷକ ସଂଘ ନେତାମାନଙ୍କର ଏକ ବୈଠକ କାଳିଗଳିର ସୁବାରାଓଙ୍କ ଘରର ପରବର୍ତ୍ତୀ ଏକ ଦୋମହଲା କୋଠାରେ ବସିଥିଲା । ସେହି ବୈଠକ ଆରମ୍ଭ ହେବାର କିଛି ସମୟ ପରେ ଜାତୀୟ କବି ବୀରକିଶୋର ଦାସ ପହଞ୍ଚି ସମବେତ ମଣ୍ଡଳୀ ଆଡ଼େ ଆଖି ବୁଲାଇ କହିଲେ "ସବୁ ବିଲେଇଯାକ ବସି ତ ମୂଷାମାନଙ୍କର ମଙ୍ଗଳ ପାଞ୍ଚୁଛନ୍ତି !" ଶ୍ରମିକ ଆନ୍ଦୋଳନର ନେତାମାନେ ନିଜେ ଶ୍ରମିକ ନୁହନ୍ତି ସତ, କିନ୍ତୁ ମାଲିକ ନୁହନ୍ତି; ଅଥଚ ଓଡ଼ିଶାର କୃଷକ ଆନ୍ଦୋଳନରେ ଯେଉଁମାନେ ପ୍ରଥମ ଅବସ୍ଥାରେ ନେତୃତ୍ୱ ନେଇଥିଲେ, ସେମାନେ ଥିଲେ ଛୋଟ ଜମିଦାର । ଏହି ଶ୍ରେଣୀର ଜଣେ ଥିଲେ ନିତ୍ୟାନନ୍ଦ କାନୁନ୍‌ଗୋ । ତାଙ୍କ କଟକ ପ୍ରାସାଦକୁ ଦେଖିଲେ ଯେକୌଣସି ଲୋକ ଜାଣିପାରିବ ଯେ ସେ କେଡ଼େ ସୋସାଲିଷ୍ଟ ! ଅବଶ୍ୟ ସେହି ଶ୍ରେଣୀର ନେତାମାନଙ୍କର, କୃଷକ ଆନ୍ଦୋଳନର ପ୍ରଥମ ଅବସ୍ଥାରେ, କିଛି କ୍ଷତି ହେବାର ନଥିଲା । କିନ୍ତୁ ନବକୃଷ୍ଣ ଚୌଧୁରୀ ଯେତେବେଳେ ମୁଖ୍ୟମନ୍ତ୍ରୀ ଭାବରେ ଓଡ଼ିଶାରେ ବୈପ୍ଳବିକ ଭାଗଚାଷୀ ଆଇନ୍ ପ୍ରଣୟନ କଲେ, ଏହି ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ଶ୍ରେଣୀର ଲୋକେ ନବବାବୁଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରି ତାଙ୍କୁ ମୁଖ୍ୟମନ୍ତ୍ରିତ୍ୱରୁ ତଡ଼ିଦେଇଥିଲେ ।

୧୯୩୪ରୁ ୧୯୩୬, ଏହି ତିନିବର୍ଷ ମଧ୍ୟରେ ଓଡ଼ିଶାର କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ କୃଷକ ଆନ୍ଦୋଳନ ବେଶ୍ ଆଗେଇଥିଲା । ଏହାଛଡ଼ା ଗଞ୍ଜାମ ଜିଲ୍ଲାରେ ବିଶ୍ୱନାଥ ଦାସ, ଉମାଚରଣ ପଟ୍ଟନାୟକ, ଦିବାକର ପଟ୍ଟନାୟକ ଓ ବିଶେଷ ଭାବରେ ବନମାଳୀ ମହାରଣା ଓ ଗୋବିନ୍ଦ ପ୍ରଧାନଙ୍କ ନେତୃତ୍ୱରେ ଯେଉଁ ରୟତ ଆନ୍ଦୋଳନ ହୋଇଥିଲା, ନବକୃଷ୍ଣ ଚୌଧୁରୀ ସେସବୁ ସହିତ ସହଯୋଗ କରୁଥିଲେ ଓ ସଭାସମିତିରେ ଯୋଗ ଦେଉଥିଲେ । ତାଙ୍କରି ସଂସ୍ପର୍ଶରେ ଆସି ବନମାଳୀ ମହାରଣା ଓ ଗୋବିନ୍ଦ ପ୍ରଧାନ କଂଗ୍ରେସ ସୋସାଲିଷ୍ଟ

ପାର୍ଟିରେ ଯୋଗ ଦେଇଥିଲେ । ଅନେକ ସମୟରେ ନବବାବୁ ନିଜେ ନଯାଇ ମାଳତୀ ଦେବୀ, ସୁରେନ୍ଦ୍ର ଦ୍ୱିବେଦୀ ଓ ଗୌରାଙ୍ଗ ଚରଣ ଦାସଙ୍କୁ ସେସବୁ ଅଞ୍ଚଳକୁ ପଠାଉଥିଲେ ।

ଓଡ଼ିଶାରେ କୃଷକମାନଙ୍କର ପ୍ରଥମ ସମ୍ମିଳନୀ ୧୯୩୫ ମସିହା ଜୁନ୍ ୧୦ ତାରିଖରେ କଟକ ଟାଉନ୍ ହଲ୍‌ରେ ହୋଇଥିଲା ଓ ସେଥିରେ ସଭାପତିତ୍ୱ କରିଥିଲେ ଗୋଦାବରୀଶ ମିଶ୍ର । ଉକ୍ତ ସମ୍ମିଳନୀରେ ବଢ଼ି ମରୁଡ଼ି ପାଇଁ ଖଜଣା ଛାଡ଼ହିଁ ମୁଖ୍ୟ ଦାବି ଥିଲା । ସେହି ବର୍ଷ ଅଗଷ୍ଟ ୧୦ ତାରିଖ ଦିନ ଓଡ଼ିଶାର କୃଷକଙ୍କ ଆନୁଷ୍ଠାନିକ ସଙ୍ଗଠନ, କୃଷକ ସଂଘ ଗଠିତ ହୋଇଥିଲା । ତାହାର ପ୍ରଥମ ସଭାପତି ଥିଲେ ହରେକୃଷ୍ଣ ମହତାବ ଓ ଯୁଗ୍ମ ସମ୍ପାଦକ ଥିଲେ ମାଳତୀ ଦେବୀ ଓ ସୁରେନ୍ଦ୍ର ଦ୍ୱିବେଦୀ । ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ୍‌ରେ ଏକ ବ୍ୟବସ୍ଥା ଥାଏ ଯେ ଶସ୍ୟହାନିର ପ୍ରମାଣ ପାଇଲେ, ସରକାର ଖଜଣାର ଏକଚତୁର୍ଥାଂଶ ଛାଡ଼ ଦେବେ । କିନ୍ତୁ ସେ ସମୟରେ ବ୍ରିଟିଶ ସରକାର ଓ ରାଜାଜମିଦାରଙ୍କ ପ୍ରତି ଏତେ ଡର ଥିଲା ଯେ ଲୋକେ ଦରଖାସ୍ତରେ ଦସ୍ତଖତ ଦେବାକୁ ବି ଡରୁଥିଲେ । ଏଭଳି ଏକ ଘଟଣା ସୁରେନ୍ଦ୍ରନାଥ ଦ୍ୱିବେଦୀ ତାଙ୍କ 'ମୋ ଜୀବନ ସଂଗ୍ରାମ' ବହିରେ ବର୍ଣ୍ଣନା କରିଛନ୍ତି । ଏଣୁ ପ୍ରଥମ ଅବସ୍ଥାରେ କୃଷକ ଆନ୍ଦୋଳନରେ ସମ୍ପୃକ୍ତ ବ୍ୟକ୍ତିମାନଙ୍କୁ କେତେ ଅସୁବିଧାରେ କାର୍ଯ୍ୟ କରିବାକୁ ହେଉଥିଲା, ତାହା ଅନୁମେୟ । ଏହି କୃଷକ ନେତା ଓ କର୍ମୀମାନେ କଂଗ୍ରେସ ଦଳରେ ଏକ ନୂଆ ମୋଡ଼ ସୃଷ୍ଟି କଲେ ଓ ନୂଆ ରୂପ ଦେଲେ । ଏମାନଙ୍କ ମୁହଁରୁ ଶୁଣାଗଲା, 'କି ହେବ ସେ ସ୍ୱରାଜ୍ୟ ନେଇ, ଯଦି ମୋ'ର ନ ପୂରେ ପେଟ, ଖଟିଖଟି ଚାଷୀମୂଲିଆ ମଲେଣି, ଚଷିଚଷି ଦାନା କନା ନିଅଣ୍ଟ' ଇତ୍ୟାଦି ଗୀତ । ପୁଣି କଂଗ୍ରେସ-ସୋସାଲିଷ୍ଟମାନେ ଗାଇଲେ 'କହ କହ କେଉଁ ଜାତି ପାଇଛି ମୁକତି କରି ହାରିହୁରି ଗୁହାରି... ।' ମାଳତୀ ଦେବୀ ଓ ତାଙ୍କର ଅନ୍ତରଙ୍ଗ ଗୌରାଙ୍ଗ ଚରଣ ଦାସ ଏବଂ ମୋହନ ଦାସ ତଥା ସୁରେନ୍ଦ୍ର ଦ୍ୱିବେଦୀ ଆଦି ଜମିଦାରବିରୋଧୀ ଭାଷଣମାନ ଦେଇ ଚାଷୀ ତଥା ସାଧାରଣ ଲୋକଙ୍କୁ ସଙ୍ଗଠିତ କଲେ ଏବଂ କଂଗ୍ରେସ ପ୍ରତି ଶହଶହ ସଂଖ୍ୟାରେ ବିପ୍ଳବୀ ଯୁବକ ଆକର୍ଷିତ ହେଲେ । ହରେକୃଷ୍ଣ ମହତାବ ବହୁଦିନ ପର୍ଯ୍ୟନ୍ତ କୃଷକ ସଂଘର ସଭାପତି ଭାବରେ ବିଭିନ୍ନ ସଭାସମ୍ମିଳନୀରେ ଯୋଗ ଦେଉଥିଲେ । ୧୯୩୫ ମସିହା ସେପ୍ଟେମ୍ବର ପହିଲାରେ ନିଖିଳ ଭାରତ କୃଷକ ଦିବସ ରୂପେ ପାଳିତ ହୋଇଥିଲା । ସେହି ଉପଲକ୍ଷରେ ଓଡ଼ିଶାର କଟକ, ପୁରୀ, ବାଲେଶ୍ୱର ଓ ଗଞ୍ଜାମ ଜିଲ୍ଲାରେ ୧୫୦ଟି ସ୍ଥାନରେ ସଭା କରାଯାଇଥିଲା ।

ଏବର ନୂଆ ପିଢ଼ିର ଲୋକମାନେ ସ୍ୱାଧୀନତା ସଂଗ୍ରାମର କିଛି କଥା ପଢ଼ିବାକୁ ପାଇଲେ ବି ଅନେକ କଥା ବିଶ୍ୱାସ କରିବାକୁ ଅସମର୍ଥ । ରାଜା, ଜମିଦାର ଓ ସାହୁକାରଙ୍କ ଅତ୍ୟାଚାର ଏବଂ ଶୋଷଣ କଅଣ, ତାହା ସେମାନେ ଜାଣନ୍ତି ନାହିଁ । ଓଡ଼ିଶାର ସେହି ସମୟର କୌଣସି ଜଣାଶୁଣା ଉପନ୍ୟାସ ଏହି ଅତ୍ୟାଚାର ଓ ଶୋଷଣ ଉପରେ ଆଧାରିତ

ହୋଇ ଲେଖାଯାଇନାହିଁ । ଆଜିକାଲିକାର ଯୁବକ ବିଶ୍ୱାସ କରିପାରିବେ ନାହିଁ ଯେ ମାତ୍ର ୬୦ ବର୍ଷ ତଳେ ଛୋଟଛୋଟ ଜମିଦାରଙ୍କ ଘର ଆଗରେ କେହି ସଫା ଲୁଗା ପିନ୍ଧି ବା ଛତା ଧରି ଯାଇପାରୁନଥିଲେ । ଜୋତା ପିନ୍ଧି ଗଲେ ମାଡ଼ ଖାଉଥିଲେ । ଜମିଦାରଙ୍କୁ ଦେଖିଲେ କାକୁସ୍ଥ ହୋଇ ଚାଲୁଥିଲେ, ବାକିଆ ଖଜଣା ଲାଗି ମାଡ଼ ଓ ନିର୍ଯାତନା ସହୁଥିଲେ ଏବଂ ଘର କୋରଖ ହେଉଥିଲା । ଚାଷୀମାନଙ୍କ ମଧ୍ୟରୁ କେହି ସମୃଦ୍ଧ ହୋଇଗଲେ ବା ହେଣ୍ଟିଲେ ସେମାନଙ୍କୁ ମାଡ଼ ମାରିବା ଲାଗି ଏକ 'ମୃଦଙ୍ଗ ଘର' ଥିଲା । ଏଣୁ ଅଣଖିଆ ପାଖ ବାଗଲପୁରରେ ଯେଉଁ ପ୍ରଥମ ଚାଷୀ ସମ୍ମିଳନୀ ହୋଇଥିଲା, ସେଥିରେ ନବବାବୁ ପ୍ରଥମ ପ୍ରସ୍ତାବ ଦେଲେ ଯେ ଜମିଦାର ବା ମହାଜନଙ୍କୁ କେହି ଭୂଇଁରେ ମୁଣ୍ଡ ଲଗାଇ ମୁଣ୍ଡିଆ ମାରିବେ ନାହିଁ, ସିଧା ନମସ୍କାର କରିବେ । ସେ ସମୟକୁ ଏହା ବି ଥିଲା ଖୁବ୍ ବଡ଼ କଥା । ଏହା ଫଳରେ ସେମାନଙ୍କୁ ଅବଶ୍ୟ ଧନୀ ଚାଷୀଙ୍କର ଚକ୍ଷୁଶୂଳ ହେବାକୁ ପଡ଼ିଥିଲା । ଚାଷୀର ଶୋଷଣକଷଣ ଦୂର କରିବାପାଇଁ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ମୋହନ ଦାସ, ଗତିକୃଷ୍ଣ ସ୍ୱାଇଁ, ପ୍ରାଣନାଥ ପଟ୍ଟନାୟକ, ଫନି ପାଲ, ପରମାନନ୍ଦ ମହାନ୍ତି ଆଦି ଯେଉଁମାନେ ଲଢ଼େଇ କରିଥିଲେ, ତାହାର ଏକ ସ୍ମୃତିଚାରଣ କରନ୍ତି ସେ ସମୟରେ କୃଷକ ସଂଘର ତରୁଣ କର୍ମୀ ଓ ପରବର୍ତ୍ତୀ କାଳର ପ୍ରଖ୍ୟାତ ସମାଜବାଦୀ ନେତା, ଜଗତସିଂହପୁରର ଲୋକନାଥ ରାୟ ।

୧୯୩୩ ମସିହାରେ କାଠଯୋଡ଼ି ନଦୀର ଡାହାଣପଟେ ଖଣ୍ଡେଇତାଠାରେ ଏକ ବିରାଟ ଘାଇ ହୋଇ ପୁରୀ ସଦର ସବ୍‌ଡିଭିଜନ ପୂରାପୂରି ନାରଖାର ହୋଇଯାଇଥାଏ । ରିଲିଫ୍ କାମରେ ନବକୃଷ୍ଣ ଚୌଧୁରୀ, ମାଳତୀଦେବୀ, ସୁଧୀର ଘୋଷ ଓ ଲୋକନାଥ ରାୟ ଆଦି ବହୁ କଂଗ୍ରେସ ଲୋକ ଲାଗିପଡ଼ିଥାନ୍ତି । ଲୋକନାଥ ରାୟ ପୁରୀ ଜିଲ୍ଲାର ନୂଆହାଟ ରିଲିଫ୍ ସେଣ୍ଟର୍ ଦାୟିତ୍ୱରେ ଥାଆନ୍ତି । ପ୍ରାୟ ବର୍ଷକରୁ ଅଧିକ ସମୟ କାକଟପୁର, ଗୋପ ଓ ଜଗତସିଂହପୁର ଧୋୟା ଅଞ୍ଚଳର ରିଲିଫ୍ କାମ କରି ତାଙ୍କର ସେ ଅଞ୍ଚଳ ସହିତ ଭଲ ସମ୍ପର୍କ ହୋଇଯାଇଥାଏ ।

୧୯୩୪ ମସିହାରେ ସେସବୁ ଅଞ୍ଚଳର ଜମିଦାରମାନଙ୍କ ଅତ୍ୟାଚାରରୁ ଲୋକଙ୍କୁ ରକ୍ଷା କରିବା ଲାଗି ଗ୍ରାମେ ଗ୍ରାମେ ଚାଷୀମାନଙ୍କୁ କୃଷକ ସଂଘର ସଭ୍ୟ କରାଗଲା ଓ କୃଷକ ସଂଘ କମିଟି ଗଢ଼ାଗଲା । ଜମିଦାରଙ୍କ ପାଖରେ ବେଠି, ଭେଟି, ଦାଖଲଖାରଜ ରୋଷମ, ଖାତାଫାଡ଼, ବାହାଚିନା, ଖରଡ଼ାପଣି ପ୍ରଭୃତି ବିଭିନ୍ନ ଶୋଷଣରେ ଚାଷୀମାନେ ସର୍ବସ୍ୱାନ୍ତ ହେଉଥିଲେ । ରାଜାମାନଙ୍କ ରାଜ୍ୟରେ ତ ଆହୁରି କଡ଼ା ଶାସନ ଓ ଶୋଷଣ ଚାଲିଥିଲା । ଆଜିକାଲିର ଲୋକମାନଙ୍କ ପାଇଁ ଏସବୁ ନୂଆ ଶବ୍ଦ, କିନ୍ତୁ ୬୦ ବର୍ଷ ତଳେ ଏହା ବିରୁଦ୍ଧରେ ଲଢ଼ି ବହୁ ନେତା ଓ କର୍ମୀ ବହୁ ଯାତନା ଭୋଗିଥିଲେ । ତେଣୁ ସେସବୁ ସମ୍ପର୍କରେ କିଛି ଧାରଣା ଦେବା ଆବଶ୍ୟକ ମନେହୁଏ ।

ଜମିଦାର ତ ବହୁତ ଉଚ୍ଚର, ସେମାନଙ୍କ ଗୁମାସ୍ତାମାନଙ୍କର ଶୋଷଣ ଓ ଉତ୍ପାତ କହିଲେ ନସରେ । କଟକ ବକ୍ସିବଜାର ଭଗତ ଜମିଦାରଙ୍କର ନିମାପଡ଼ାର ବିଷ୍ଣୁପୁର ଅଞ୍ଚଳରେ ଏକ ବିରାଟ ଜମିଦାରି ଥିଲା । ତାଙ୍କ ଗୁମାସ୍ତା, କଟକ ଜିଲ୍ଲାର ବରଜୁ ମହାନ୍ତିଙ୍କ ଅତ୍ୟାଚାରରେ ସମସ୍ତେ ଡରିହରି ଥାଆନ୍ତି । କେଉଟ ପ୍ରତିଦିନ ମାଛ ଦେବ, ଚୁଡ଼ା ଦେବ । ବାରିକ ପ୍ରତିଦିନ ଘଷିମୋଡ଼ିଦେବ । ଗୋପାଳ ପ୍ରତିଦିନ ଦୁଧ, ଛେନା ଓ ଘିଅ ଦେବ ଇତ୍ୟାଦି । ଏହାଛଡ଼ା ନାନାପ୍ରକାର ଭେଟି ଦେବାକୁ ହୁଏ ଓ ବେଠି ଖଟିବାକୁ ହୁଏ । କଚେରି ସାମ୍ନାରେ କେହି ଛତା ଧରି, କଠଉ ପିନ୍ଧି ଯାଇପାରିବେ ନାହିଁ । ବରଜୁ ମହାନ୍ତି ସମସ୍ତଙ୍କୁ ଶଳା ବୋଲି ସମ୍ବୋଧନ କରନ୍ତି । ତାଙ୍କୁ ନିମାପଡ଼ା ବଜାରରେ ମଧ୍ୟ ଭୟ । କିଛି ଅମାନ୍ୟ କଲେ ମାଡ଼ ।

ଗୋପାଳ ଦନେଇ ବେହେରା ପ୍ରତିଦିନ ଦହି, ଛେନା, ଘିଅ ଦେଇଦେଇ ନୟାନ୍ତ । ସେ ତା' ଦୁର୍ଦ୍ଦଶା ଦିନେ ଚାଷୀନେତା ମୋହନ ଦାସଙ୍କୁ ଜଣାଇଲା । ମୋହନବାବୁ ସାହସ ଦେଇ କହିଲେ, ''ଦନେଇ, ମୁଁ ତୋ' ପଛରେ ଅଛି; ସାହସ ବାନ୍ଧି ନିମାପଡ଼ା ବଜାରରେ ହଲ୍ଲା କର, ଶଳା ବରଜୁ ମହାନ୍ତି, ହେ ଶଳା ବରଜୁଆ ।'' ଦନେଇ ତାହାହିଁ କଲା । ସେହିଦିନୁ ଲୋକଙ୍କ ସାହସ ବଢ଼ିଗଲା । ଛୋଟଠାରୁ ବଡ଼ ସମସ୍ତେ, ବରଜୁ ମହାନ୍ତିଙ୍କୁ ଦେଖିଲେ ରଡ଼ି ଛାଡ଼ନ୍ତି 'ଶଳା ବରଜୁ ମହାନ୍ତି' । ଶେଷରେ ବରଜୁ ମହାନ୍ତି ଆଉ ସେଠାରେ ରହିନପାରି କଟକ ପଳେଇଗଲେ । ସେହିଦିନଠାରୁ ମହୀଦାସ ମଠ, ଦକ୍ଷିଣ ପାର୍ଶ୍ୱ ମଠ, ଉତ୍ତର ପାର୍ଶ୍ୱ ମଠ, ପ୍ରହରାଜପୁର ମିଆଁ ଜମିଦାର ଓ କୋଠଦେଶ ଜମିଦାରଙ୍କ ବିରୋଧରେ ଆନ୍ଦୋଳନ ତେଜିଲା ।

**ବେଠି :**

ରାଜା ଓ ଜମିଦାରଙ୍କର ଚାଷକାମ, ଘରଛପର, ବିବାହ ଉତ୍ସବ ଆଦିରେ ବିନା ପାରିଶ୍ରମିକରେ ପ୍ରଜାମାନଙ୍କୁ କାମ କରାଇବା ।

**ଭେଟି :**

ରାଜା ଓ ଜମିଦାରମାନଙ୍କ ସିଂହାସନ ଆରୋହଣ, ବିବାହ ଓ ସୁନିଆଁ (ଏକ ବାର୍ଷିକ ଅଭିଷେକ) ବେଳେ ସରୁ ଚାଉଳ, ବଡ଼ କଦଳୀକାନ୍ଧି, କ୍ଷୀର, ଘିଅ, ମାଛ, କାଠ ଉପକରଣ, ଲୁହାର କିଛି ଉପକରଣ ମାଗଣାରେ ପ୍ରଜାମାନେ ଦିଅନ୍ତି । ଏସବୁରେ ତ୍ରୁଟି ହେଲେ ଲୋକଙ୍କୁ ନାନା ପ୍ରକାର ଶାରୀରିକ ଦଣ୍ଡ ଦିଆଯାଉଥିଲା ।

ଅଧିକାଂଶ ଚାଷୀଙ୍କର ନିଜର ଜମି ନଥିଲା । ସେମାନେ ଜମିଦାର ଓ ବଡ଼ବଡ଼ ଚାଷୀଙ୍କ ଜମି ଚାଷ କରୁଥିଲେ । ଚାଷ କରି ଯାହା ପାଉଥିଲେ, ସେଥିରେ ବର୍ଷକ ପୂରୁ

ନଥିଲା । ଏଣୁ ସେମାନେ ରାଜା, ଜମିଦାର ଓ ଜମିମାଲିକମାନଙ୍କଠାରୁ ଚଡ଼ା ସୁଧରେ ଋଣ ନେବାକୁ ବାଧ ହେଉଥିଲେ ।

ଜମିଦାରଙ୍କ ଖାତାରେ ପୁରୁଷପୁରୁଷ ଧରି କରଜ ବଢ଼ିବଢ଼ି ଚାଲେ । ଫସଲ ଅମଳ ହେବା ମାତ୍ରେ ସେଥିରୁ ଜମିଦାର ଋଣ ବାବଦକୁ କିଛି ନେଇଯାଆନ୍ତି । ଏହା ପରେପରେ ସେହି ଫସଲକୁ ଚାଷୀ ପୁଣି କରଜକରି ଆଣେ । କାକଟପୁର ଅଞ୍ଚଳରେ ପୁରୀର ବଡ଼ ବଡ଼ ମଠମାନଙ୍କର ବହୁ ଜମି ଓ ଜମିଦାରି ଥିଲା । ଏଣୁ କାକଟପୁର ଅଞ୍ଚଳରେ ସେତେବେଳେ ଏକ ପ୍ରବାଦ ଥିଲା, 'ଯାହା ଖାଉଥିବୁ ପେଟକୁ, ଯାହା ବଳିଯିବ ମଠକୁ ।'

**ଖାତାଫାଡ଼ :**

ଯେଉଁ ଚାଷୀର ଜମି ଥିଲା, ତାକୁ ବିକିବାର ଅଧିକାର ତା'ର ନଥିଲା । ସେଥିପାଇଁ ଜମିଦାରଙ୍କଠାରୁ ଅନୁମତି ଆଣିବାକୁ ହେଉଥିଲା ଏବଂ ସେଥିଲାଗି ଏକ ଫିସ୍ ଦେବାକୁ ପଡୁଥିଲା । ଜମିଟି ଗୋଟିଏ ଲୋକର ଖାତାରୁ ଅନ୍ୟ ଲୋକର ଖାତାକୁ ଯିବା ପାଇଁ ଯେଉଁ ଫିସ୍ ନିଆ ହେଉଥିଲା, ତାକୁ 'ଦାଖଲ ଖାରଜ ରୋଷମ୍' କୁହାଯାଉଥିଲା ।

**ବାହାଚିନା :**

ପ୍ରଜାର ପୁଅଝିଅ ବିବାହ ପ୍ରସ୍ତାବ ଉଠିଲେ, ଜମିଦାରଙ୍କ ଘରକୁ ବଡ଼ କଦଳୀ କାନ୍ଧି ବା ଭାର ଦେଶୀ ଆଳୁ, କିଛି ମୁଗଡାଲି ଓ ଘିଅ ଏବଂ କିଛି ପଇସା ଭେଟି ଦେବାକୁ ହେଉଥିଲା । ଏହାକୁ 'ବାହାଚିନା' କୁହାଯାଉଥିଲା ।

**ଖରଡ଼ାପାଣି :**

ଖଜଣା ରସିଦ କାଟିବା ବେଳେ ଯେଉଁ ଅତିରିକ୍ତ ପାଉଣା ଆଦାୟ ହେଉଥିଲା, ତାକୁ 'ଖରଡ଼ାପାଣି' କୁହାଯାଉଥିଲା ।

ପ୍ରଜାର ବିବାହ, ବ୍ରତ ବେଳେ ଆମ୍ବଡାଳ, ନୂଆବଟୁ ଆଦି ଦରକାର ହୁଏ ଏବଂ ଜାଳ ବି ଦରକାର ପଡ଼େ । ପ୍ରଜାକୁ ନିଜ ଜମିର ଗଛରୁ ଫଳ ତ ଦୂରର କଥା, ପତ୍ରଟିଏ ନେବା ପାଇଁ ବି ଫିସ୍ ଦେଇ ରସିଦ୍ କାଟିବାକୁ ହେଉଥିଲା । ଠିକ୍ ସେହିପରି ନିଜ ଜମିରେ ଥିବା ପୋଖରୀରୁ ମାଛ ମାରି ଖାଇବାର ଅଧିକାର ତା'ର ନଥିଲା । ଏସବୁ ଅଧିକାର ପାଇଁ ଓ ଅନ୍ୟାୟ ପାଉଣା ଲାଗି କୃଷକକୁ ଆନ୍ଦୋଳନ କରିବାକୁ ହେଉଥିଲା ।

୧୯୩୪ରୁ ୧୯୩୬ ପର୍ଯ୍ୟନ୍ତ ତିନିବର୍ଷ କାଳ କଟକ, ପୁରୀ, ବାଲେଶ୍ୱର ଓ ଗଞ୍ଜାମ ଜିଲ୍ଲାରେ ଏହି ଉଦ୍ଦେଶ୍ୟରେ ସଭା, ସମ୍ମିଳନୀମାନ ଚାଲିଲା । ୧୯୩୪-୩୫ ମସିହାରେ ବର୍ତ୍ତମାନର ଜଗତସିଂହପୁର ଜିଲ୍ଲା ଅନ୍ତର୍ଗତ ହରିଶପୁରରେ ଲାହା ବଂଶୀୟ ଜମିଦାର

ବେଆଇନ ଭାବରେ ଟଙ୍କାକେ ତିନିଅଣା ଖଜଣା ବୃଦ୍ଧି କରିଥିବାରୁ ତାଙ୍କ ବିରୋଧରେ, 'ବାଲିକୁଦାର ଗାନ୍ଧି' ବୋଲି କୁହାଯାଉଥିବା ହରେକୃଷ୍ଣ ବିଶ୍ୱାଳ ଆଦି ଆନ୍ଦୋଳନ କରିଥିଲେ । ତାହା ପଛରେ ନବକୃଷ୍ଣ ଚୌଧୁରୀଙ୍କ ପ୍ରେରଣା ଥିଲା । ନିତ୍ୟାନନ୍ଦ କାନୁନ୍‌ଗୋ ଆଦିଙ୍କ ଦ୍ୱାରା ଜମିଦାର ଓ ପ୍ରଜାମାନଙ୍କ ମଧ୍ୟରେ ମିଳାମିଶା ହୋଇଥିଲା । ଏହିଭଳି ପୂର୍ବତନ କୁଜଙ୍ଗ ଜମିଦାରଙ୍କ ବିରୋଧରେ ହୋଇଥିବା ୨୯ ମୌଜା ପ୍ରଜା ଆନ୍ଦୋଳନ ବେଳେ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀ ପ୍ରଜାଙ୍କ ପକ୍ଷରେ ସହାୟତା କରି ସଭା କରିଥିଲେ । ୧୯୩୬ ମାର୍ଚ୍ଚ ୩୦ ତାରିଖରେ କଟକରେ ହିଁ ପ୍ରଥମ ବଡ଼ଧରଣର ଚାଷୀ ସମ୍ମିଳନୀ ହୋଇଥିଲା । ମୋହନଲାଲ୍ ଗୌତମ ସେଥିରେ ସଭାପତିତ୍ୱ କରିଥିଲେ । ସେହି ସମ୍ମିଳନୀରେ ପ୍ରାୟ ଦଶହଜାରରୁ ଅଧିକ ଚାଷୀ ଯୋଗ ଦେଇଥିଲେ । ସମ୍ମିଳନୀ ପାଇଁ ଗୋଦାବରୀଶ ମିଶ୍ରଙ୍କ ସଭାପତିତ୍ୱରେ ଏକ ଅଭ୍ୟର୍ଥନା ସମିତି ଗଢ଼ାଯାଇଥିଲା । ୧୯୩୬ ଜୁନ୍ ମାସରେ ପୁରୀ ଜିଲ୍ଲାର ନୂଆହାଟଠାରେ ଯେଉଁ ଚାଷୀ ସମ୍ମିଳନୀ ହୋଇଥିଲା, ସେହି ସମ୍ମିଳନୀର ଦାୟିତ୍ୱ ଥିଲା ଲୋକନାଥ ରାୟଙ୍କ ଉପରେ । ପୂର୍ବରୁ ରିଲିଫ୍ କାମ କରିବା ଭିତରେ ସେ ଏ ଅଞ୍ଚଳ ସହିତ ବେଶ୍ ପରିଚିତ ଥିଲେ । ନବକୃଷ୍ଣ ଚୌଧୁରୀ ସେହି ସମ୍ମିଳନୀରେ ସଭାପତି ହେବାର ସ୍ଥିର ହେଲା । ସେ ଯେଉଁ ବାଟେ ଯିବେ, ତାହା ତାଙ୍କୁ ଲୋକନାଥବାବୁ ବତାଇ ଦେଇଥିଲେ । ଅନ୍ୟ ସୁବିଧା ନଥିବାରୁ ଏବଂ ଶଗଡ଼ରେ ଯିବା ବାଟ ଖୁବ୍ ବୁଲାଣି ଥିବାରୁ ସେ ଚାଲିଚାଲି ଯିବେ ବୋଲି କହିଥିଲେ । ସଭାର ପୂର୍ବ ଦିନ ପହଞ୍ଚିବେ ବୋଲି ଲୋକନାଥବାବୁ ତାଙ୍କୁ ଅନୁରୋଧ କରିଥାନ୍ତି ।

ସମ୍ମିଳନୀ ଲାଗି କାକଟପୁର, ଗୋପ, ନିମାପଡ଼ା ଓ ଜଗତସିଂହପୁର ଥାନାର ପାଖଆଖ ଅଞ୍ଚଳରେ ଏକମାସ ଧରି ପ୍ରଚାର ଚାଲିଥାଏ । ସମ୍ମିଳନୀ ପୂର୍ବଦିନ ରାତି ୮ଟା ପର୍ଯ୍ୟନ୍ତ ନବବାବୁ ପହଞ୍ଚିନଥା'ନ୍ତି । ଲୋକନାଥବାବୁ ବିବ୍ରତ ହୋଇ, କହିଥିବା ବାଟରେ ପାଞ୍ଚ କିଲୋମିଟର ପର୍ଯ୍ୟନ୍ତ ଜହ୍ନଆଲୁଅରେ ଚାଲିଚାଲି ଗଲେ । ପ୍ରାଚୀ ନଦୀ କଡ଼ର ଏକ ବଣ ଭିତର ଦେଇ ତିନିଜଣ ଲୋକ ଆସୁଥିବାର ସେ ଦେଖିଲେ । ଦୁଇଜଣ ମୁଣ୍ଡରେ କିଛି କିଛି ମୁଣ୍ଡାଇଥା'ନ୍ତି ଓ ପଛ ଜଣକ ଛତାରେ ଲୁଗା ଗଣ୍ଠିଲି ବାନ୍ଧି ପିଠି ଆଡ଼କୁ ପକାଇ ଚାଲିଥାନ୍ତି । ସେମାନେ କେହି ବାଟୋଇ ହୋଇଥାଇପାରନ୍ତି ଭାବି ଲୋକନାଥବାବୁ ପଚାରିଲେ, ''ହେ ମଉସା ! ଏ ବାଟରେ କେହି କଟକରୁ ଆସିବାର ଦେଖିଛ କି ?''

ନବବାବୁ ପଛରୁ ଡାକ ଦେଲେ, ''ସେ ପରା ତୋତେ ଖୋଜୁଛନ୍ତି ।''

ଆଉ ଲୋକନାଥବାବୁଙ୍କ ଆନନ୍ଦ କହିଲେ ନସରେ । ସଭାରେ କେତେ ଲୋକ ହେବେ, କିଭଳି ପ୍ରଚାର ହୋଇଛି, କେତେ ପଇସା ଖର୍ଚ୍ଚ ହେବ, କେଉଁଠୁ ଆଣିଲ, କିଏ ଦେଲେ ଇତ୍ୟାଦି ଇତ୍ୟାଦି ପଚାରିଲେ ।

ସେମାନେ ଆସି ନୂଆହାଟ କ୍ୟାମ୍ପରେ ପହଞ୍ଚିବା ଖବର ପାଇ ବହୁ ଲୋକ ଆଖପାଖରୁ ଆସି ଜମା ହୋଇଗଲେ । ତା'ପରେ ନବବାବୁ ଏକ ନଡ଼ିଆପତ୍ର ବୁଣା ଛପାରେ ବିଶ୍ରାମ ନେଲେ । ସେ ନିଜ ଗୋଡ଼ ନିଜ ହାତରେ ଘଷିବା ଦେଖି ଲୋକନାଥବାବୁ ତାଙ୍କ ଗୋଡ଼ ଘଷିବା ପାଇଁ ଆଗଭର ହେବାରୁ ନବବାବୁ ଓଲଟି ଲୋକନାଥବାବୁଙ୍କ ଗୋଡ଼ ଘଷିବାକୁ ଉଦ୍ୟତ ହେଲେ । କହିଲେ, ''ମୁଁ ତ ସକାଳୁ ମାତ୍ର ୨୪ ମାଇଲ ବାଟ ଆସିଛି । କିନ୍ତୁ ତୁ ତ ଶହଶହ ଗାଁ ବୁଲିଛୁ । ତୁ ଆଗ ଘଷା ଖାଇବୁ ।'' ଲୋକନାଥବାବୁ ଏଥିରେ ସଙ୍କୁଚିତ ଓ ଲଜ୍ଜିତ ହୋଇଗଲେ ।

ସମ୍ମିଳନୀର ଅଭ୍ୟର୍ଥନା ସମିତିର ସଭାପତି ପଦ୍ମଚରଣ ସାମନ୍ତସିଂହାରଙ୍କ ତରଫରୁ ଖାଇବା ବ୍ୟବସ୍ଥା ହୋଇଥିଲା । ଧୋଇଆ ଅଞ୍ଚଳର ମୋଟା ଚାଉଳ ସଙ୍ଗରେ ମୁଗ, ସାରୁ ଓ କଖାରୁର ଡାଲମା ହୋଇଥାଏ । ଆମିଷ ଖାଇବା ଲୋକଙ୍କ ପାଇଁ ଝୋଳର ବ୍ୟବସ୍ଥା ହୋଇଥିଲା । ସମସ୍ତେ ଏକାଠି ଖାଇବସିଲେ । ଗୋକୁଳମୋହନ ରାୟ ଚୂଡ଼ାମଣି ତରତର ହୋଇ ଖାଇଲା ବେଳେ ଏକ ଗରମ ସାରୁ ତାଙ୍କ ତାଲୁରେ ଲାଗିଯିବାରୁ ସେ ବ୍ୟସ୍ତ ହୋଇପଡ଼ିଲେ । ନବବାବୁ ଥଟ୍ଟା କରି କହିଲେ, ''ସର୍ବହରା ଚାଷୀ ସମ୍ମିଳନୀକୁ ଆସି ମାଂସଝୋଳ ଖାଉଛ । ତେଣୁ ପ୍ରାୟଶ୍ଚିତ୍ତ ହେଲା ।''

ପରଦିନ ସଭାରେ ବିଭିନ୍ନ ଅଞ୍ଚଳର ବହୁ ଲୋକ ଯୋଗଦେଇଥିଲେ । ସ୍ୱାଧୀନତା ଆନ୍ଦୋଳନ, ଗଣତନ୍ତ୍ର, ଗଣତାନ୍ତ୍ରିକ ସମାଜବାଦ, ଶ୍ରେଣୀ ଚେତନା ଓ କୃଷକ ସଙ୍ଗଠନ ଉପରେ ସେ ଅଳଙ୍କାରବିହୀନ ଦୀର୍ଘ ତାତ୍ତ୍ୱିକ ଭାଷଣ ଦେଇଥିଲେ । ମାଇକ୍ ନଥାଏ ; ତଥାପି ଲୋକେ ଘଣ୍ଟା ଘଣ୍ଟା ଧରି ସେ ଭାଷଣ ଶୁଣିଥିଲେ । ଏହିପରି ଅସଂଖ୍ୟ ସଭାକୁ ଅନେକ ସମୟରେ ବହୁ ବାଟ ଚାଲିଚାଲି ଯାଇ ସେ ଓଡ଼ିଶାର କୃଷକ ଆନ୍ଦୋଳନ ଓ କୃଷକ ସଙ୍ଗଠନ ଗଢ଼ିଥିଲେ । ୧୯୩୬ ମସିହା ସେପ୍ଟେମ୍ବର ମାସରେ ପ୍ରାଣନାଥ ପଟ୍ଟନାୟକଙ୍କ ଉଦ୍ୟମରେ ଖୋର୍ଦ୍ଧାର ଚାନ୍ଦମାରି ପଡ଼ିଆରେ ଯେଉଁ ବିରାଟ କୃଷକ ସମ୍ମିଳନୀ ହୋଇଥିଲା, ତହିଁରେ ସଭାପତିତ୍ୱ କରିଥିଲେ ନବକୃଷ୍ଣ ଚୌଧୁରୀ । ଏହାଛଡ଼ା ଯଦୁମଣି ମଙ୍ଗରାଜ, ରାଜକୃଷ୍ଣ ବୋଷ, ମୋହନ ଦାସ ଓ ପ୍ୟାରୀଶଙ୍କର ରାୟ ଆଦି ସେହି ସମ୍ମିଳନୀରେ ବିଶିଷ୍ଟ ବକ୍ତା ଭାବରେ ଯୋଗ ଦେଇଥିଲେ । ସେହି ବର୍ଷ ଅକ୍ଟୋବର ମାସରେ ପୁରୀର ଗୁଣ୍ଡିଚାବାଡ଼ିଠାରେ ଅନ୍ୟ ଏକ ସମ୍ମିଳନୀରେ ପୁରୀ ସଦର ସବ୍‌ଡିଭିଜନର ଚାଷୀଙ୍କର ସମାବେଶ ହୋଇ ଜମିଦାର, ମଠ ମହନ୍ତଙ୍କ ଶୋଷଣ ଓ ଅତ୍ୟାଚାରକୁ ବିରୋଧ କରାଯାଇଥିଲା ।

୧୯୩୭ ମସିହାରେ କଟକ ଜିଲ୍ଲାର ବାଗଲପୁରଠାରେ ଏବଂ ପୁରୀ ଜିଲ୍ଲାର ବଳଙ୍ଗାଠାରେ ବିରାଟ ଚାଷୀ ସମାବେଶ ହୋଇଥିଲା, କିନ୍ତୁ ୧୯୩୮ ମସିହାର ଜେନାପୁର ଚାଷୀ ସମ୍ମିଳନୀ ଥିଲା ପୂରାପୂରି ଐତିହାସିକ । ଏହିଠାରୁହିଁ ହୁଏ ଗଡ଼ଜାତ ଆନ୍ଦୋଳନର

ଅୟମାରମ୍ଭ । ଏହାରି ଭିତରେ ଏକ ଦୁର୍ଭାଗ୍ୟଜନକ ଘଟଣା ଘଟିଥିଲା । ପୂର୍ବରୁ କୁହାଯାଇଥିବା ଖଣ୍ଡେଇତା ଘାଇ ହେବାପରେ ନବବାବୁ, ମାଳତୀ ଦେବୀ, ସୁଧୀର ଘୋଷ ଓ ସୁରେଶ ନାମକ କର୍ମୀ ଅରିଲୋ-ଝାରପଡ଼ା ରିଲିଫ୍ କ୍ୟାମ୍ପରେ କାମ କରୁଥିଲେ । ସେତେବେଳକୁ କଂଗ୍ରେସର କର୍ମୀମାନେ ଆତ୍ମରକ୍ଷା କରିବା ଲାଗି ଅନ୍ୟାନ୍ୟ କୌଶଳ ସହିତ ଛୁରୀ ଖେଳ ଶିଖିଥିଲେ । ସୁରେଶ ଏକ ଭାରସାମ୍ୟହୀନ ଯୁବକ । ସେ ଦିନେ ଏକ ଛୁରୀ ପଜାଉଥିବା ଦେଖି କିଏ ଜଣେ ପଚାରିଲା, ''କାହିଁକି ପଜାଉଛୁ ?'' ସୁରେଶ ଉତ୍ତର ଦେଲା ''ଆଜି କାହାକୁ ମାରିବି ।'' ସେ କଥାକୁ କେହି ଗୁରୁତ୍ୱ ଦେଇନଥିଲେ; କାରଣ ସୁରେଶର ରଙ୍ଗଢଙ୍ଗ ସମସ୍ତେ ଜାଣନ୍ତି । ରାତିରେ ସୁଧୀର ଘୋଷଙ୍କ ସହିତ ସୁରେଶର କଅଣ ଯୁକ୍ତିତର୍କ ହେବାରୁ ସୁରେଶ ଛୁରୀ ଧରି ସୁଧୀରବାବୁଙ୍କୁ ମାରିବାକୁ ଉଦ୍ୟମ କଲା । ନବବାବୁ ତାକୁ ଧରାଧରି କରିବାକୁ ଚେଷ୍ଟା କରିବାରୁ ସେ ତାଙ୍କ କବଳରୁ ଛାଟିପିଟି ହୋଇ ପଳାଇଲା । ତାହାପରେ ନବବାବୁ ନିଜ ଦେହରେ କିଛି ଅଣ୍ଡାଥଣ୍ଡା ଅନୁଭବ କରିବାରୁ ସୁଧୀରବାବୁଙ୍କୁ ଦେଖିବାକୁ ଡାକିଲେ । ସେ ପିନ୍ଧିଥିବା ଜାକେଟ ତଳୁ ରକ୍ତ ଦେଖାଗଲା । ସଙ୍ଗେସଙ୍ଗେ ତାଙ୍କୁ ଶଗଡ଼ କରି କଟକ ଅଣାଗଲା । ମାଳତୀ ଦେବୀ ପିଲାମାନଙ୍କୁ ତାଙ୍କ ସାଙ୍ଗରେ ନେଇ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ଘରେ ସେହି ରାତିରେ ପହଞ୍ଚିଲେ । ଡାକ୍ତରଖାନାକୁ ନବବାବୁଙ୍କୁ ନିଆଯାଇ ଚିକିତ୍ସା କରାଗଲା । ଡାକ୍ତରମାନେ କହିଲେ ଯେ ଧାପକରେ ନବବାବୁ ବଞ୍ଚିଗଲେ । ଛୁରୀ କଲିଜା ପାଖରେ ପହଞ୍ଚିଥିଲା । ସେତେବେଳେ ଆଧୁନିକ ଅସ୍ତ୍ର ଚିକିତ୍ସାର ସୁବିଧା ନଥିଲା । ମୋଟା ଜବାହର ଜାକେଟ୍ ତାଙ୍କୁ ବଞ୍ଚେଇ ଦେଲା ବୋଲି କୁହାଯାଏ । ଏହି ସମୟକୁ ତାଙ୍କ ପୁଅ କାଲୁର ନାମ ଦିଆଯାଇଥାଏ ଅରବିନ୍ଦ । ସେହିଦିନ ସେ କଅଣ ଭାବିଲା କେଜାଣି, ସେଇ ତିନି ବର୍ଷର ପୁଅ କହିଲା, ''ମୋ' ନାଁ ଅରବିନ୍ଦ ନୁହେଁ, ମୋ' ନାଁ ବିନାୟକ ।''

୧୯୩୬ ମସିହା ପର୍ଯ୍ୟନ୍ତ ନବବାବୁ ତରିକୁନ୍ଦ ଫାର୍ମ ସହିତ ବେଶ୍ ଯୋଗାଯୋଗ ରଖିଥାନ୍ତି । ସେତେବେଳକୁ ଜଣାପଡ଼ିଲାଣି ଯେ ଜଗତସିଂହପୁର ଅଞ୍ଚଳର ନବକୃଷ୍ଣ ଚୌଧୁରୀ ୧୯୩୭ ନିର୍ବାଚନରେ ଠିଆ ହେବେ ଓ ତାଙ୍କ ସ୍ତ୍ରୀ ଶାନ୍ତିନିକେତନ-ଶିକ୍ଷିତା ଓ ଆଧୁନିକା । ସେହି ବର୍ଷ ଜଗତସିଂହପୁରରେ ନୂଆ ହୋଇ ହାଇସ୍କୁଲ ଖୋଲିଥାଏ ଓ ବିଷ୍ଣୁଚରଣ ମହାନ୍ତି ଅଷ୍ଟମ ଶ୍ରେଣୀରେ ପଢୁଥାନ୍ତି । ସେହି ଶ୍ରେଣୀରେ ରବୀନ୍ଦ୍ରନାଥଙ୍କର କେତେକ ଗଳ୍ପ ପଢ଼ା ଯାଉଥାଏ । ସେହି ସମ୍ପର୍କରେ ପଢ଼ାବେଳେ ସେହି ସ୍କୁଲରେ ଶାନ୍ତିନିକେତନ କଥା ଆଲୋଚିତ ହୋଇଥାଏ । ବିଷ୍ଣୁବାବୁ ଓ ତାଙ୍କର କେତେକ ସାଙ୍ଗ ଶାନ୍ତିନିକେତନରୁ ଶିକ୍ଷାପ୍ରାପ୍ତ ନବକୃଷ୍ଣ ଚୌଧୁରୀ ଓ ତାଙ୍କ ସ୍ତ୍ରୀ ମାଳତୀ ଦେବୀଙ୍କୁ ଦେଖିବାକୁ ଆଗ୍ରହର ସହ ତରିକୁନ୍ଦ ବାହାରିଲେ । ସେମାନଙ୍କ ଧାରଣା ଥିଲା, ଶାନ୍ତିନିକେତନରେ ଶିକ୍ଷିତ ବ୍ୟକ୍ତି ଜଣକ ନିଶ୍ଚୟ ଖୁବ୍ ଅସାଧାରଣ ହୋଇଥିବେ । ସେମାନେ ତରିକୁନ୍ଦ ଯାଇ ଦେଖିଲେ ଯେ ସିଏ ଏକବାର ସାଧାରଣ ମଣିଷ;

ମଜୁରିଆମାନଙ୍କ ସହିତ ମିଶି ବିଲ କାମ କରୁଥାନ୍ତି । ମୁଣ୍ଡରେ ତାଳପତ୍ର ଟୋପି ଏବଂ ଦେହରେ ଫତେଇ । ସେମାନେ ଶୁଣିଥିଲେ ଯେ ସିଏ ପୁଣି ଲାଟସଭା ପାଇଁ ଭୋଟ ଲଢ଼ିବେ, ଜମିଦାରର ପୁଅ ହୋଇ ବି ଲାଟ୍ ସଭାରେ ଚାଷୀମାନଙ୍କ ଲାଗି ଲଢ଼ିବେ । ବିଷ୍ଣୁବାବୁ ଏହାର ୨୧ ବର୍ଷ ପରର ଏକ ଘଟଣାର ସ୍ମୃତିଚାରଣ କରନ୍ତି । ସେ ସେତେବେଳକୁ କୋରାପୁଟ ଗୁଣୁପୁରର ମାଜିଷ୍ଟ୍ରେଟ ଓ ନବବାବୁ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ି ଭୂ-ଦାନ କାମରେ କୋରାପୁଟରେ ବୁଲୁଥାନ୍ତି । ସେ ସେହି ସମୟରେ ଦିନେ ରାୟଗଡ଼ାରୁ ବିଷମକଟକ ଦେଇ ଗୁଣୁପୁର ଫେରୁଥାନ୍ତି । କିଛି ବାଟ ଆଗକୁ ଦୁର୍ଗୀ ନାମକ ଏକ ବଡ଼ ଗାଁ । ବାଟରେ ଘୋର ଜଙ୍ଗଲ । ବାଘ ମାତିଥାଏ ବୋଲି ଜିଲ୍ଲା ମାଜିଷ୍ଟ୍ରେଟ ଘୋଷଣା କରିଥାନ୍ତି ଯେ ମଣିଷଖିଆ ବାଘକୁ ମାରିଲେ ପୁରସ୍କାର ଦିଆଯିବ । ସେହି ବାଟରେ ବିଷ୍ଣୁବାବୁ ଦେଖିଲେ ଚିତାଏ ଉଚ୍ଚ ବାଡ଼ି ଖଣ୍ଡେ ଧରି ଜଣେ ପତଳା ଲୋକ ଯାଉଛନ୍ତି । ପାଖ ହୋଇଯିବାରୁ ଚିହ୍ନିପାରିଲେ ଯେ ସେ ହେଉଛନ୍ତି ନବକୃଷ୍ଣ ଚୌଧୁରୀ; ମାତ୍ର ବର୍ଷକ ତଳର ମୁଖ୍ୟମନ୍ତ୍ରୀ ।

ବିଷ୍ଣୁବାବୁ ଜିପ୍ ଅଟକାଇ ତାଙ୍କୁ ନମସ୍କାର କଲେ ଓ ବାଘ ମାତିଛି ବୋଲି ଜଣାଇ ଜିପ୍‌ରେ ବାକିତକ ବାଟ ଯିବାପାଇଁ ଅନୁରୋଧ କଲେ । ଏହାଦ୍ୱାରା ସତେ ଯେମିତି ସେ ଏକ ଅପରାଧ କରିପକାଇଲେ । ତାଙ୍କୁ ଧନ୍ୟବାଦ ଦେବା ପରେ ନବବାବୁ କହିଥିଲେ, "ସେ ତାଙ୍କ ପଥ ଜାଣନ୍ତି ଏବଂ ପଥର ଭଲମନ୍ଦ ବି ଜାଣନ୍ତି । ଆଉ ତାଙ୍କ ସମ୍ପର୍କରେ ମୁଣ୍ଡ ନ ଖେଳାଇ ବାବୁ ତାଙ୍କ ବାଟରେ ଯାଆନ୍ତୁ ।" ଏହି ଘଟଣା ଯେତେବେଳେ ବିଷ୍ଣୁଚରଣ ମହାନ୍ତି ଅନ୍ୟମାନଙ୍କୁ କହନ୍ତି, କେହି ତାହା ବିଶ୍ୱାସ କଲେ ନାହିଁ । ନବକୃଷ୍ଣ ଚୌଧୁରୀ କୋରାପୁଟର ଡଙ୍ଗରିଆ କନ୍ଧ ଅଞ୍ଚଳରେ ବୁଲୁଥିଲେ ବୋଲି ପରେ ଖବରକାଗଜରେ ବାହାରିବା ପର୍ଯ୍ୟନ୍ତ ଅନ୍ୟମାନେ କହୁଥିଲେ ଯେ ବିଷ୍ଣୁବାବୁ ଭୁଲ୍‌ରେ ପ୍ରାୟ ନବବାବୁ ବୋଲି ଭାବି ଅନ୍ୟ କାହା ପାଖରେ ଦୁର୍ଗୀ ଜଙ୍ଗଲ ରାସ୍ତାରେ ଗାଡ଼ି ଅଟକାଇଥିଲେ ।

ଏହି ୧୯୩୬ ମସିହାରେ ତାଙ୍କର ବହୁବର୍ଷର ଘନିଷ୍ଠ ବନ୍ଧୁ କୁଶପୁରର ପ୍ରହ୍ଲାଦ ସାହୁଙ୍କର ମୃତ୍ୟୁ ଘଟିଛି । ସେ ତାଙ୍କ ଶବକୁ ନେଇ ଖାନନଗର ମଶାଣିରେ ସଂସ୍କାର କରି ତାଙ୍କ ସ୍ତ୍ରୀକୁ ନେଇ କୁଶପୁର ଯାଇଥିଲେ । ଏହାପରେ ନବବାବୁଙ୍କର ଶେଷ ପର୍ଯ୍ୟନ୍ତ ତାଙ୍କ ପରିବାର ସହିତ ଘନିଷ୍ଠ ସମ୍ପର୍କ ରହିଥିଲା ।

## ୧୯୩୭ ସାଧାରଣ ନିର୍ବାଚନ :

୧୯୩୭ ମସିହା ପ୍ରଥମ ଭାଗରେ ଓଡ଼ିଶା ବିଧାନସଭାର ନିର୍ବାଚନ ହେଲା । ପୂର୍ବ ବର୍ଷ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଅନୁଗୋଳ ଜିଲ୍ଲା ସାଙ୍ଗକୁ ଗଞ୍ଜାମ ଓ କୋରାପୁଟକୁ ମିଶାଇ ନୂଆ ଓଡ଼ିଶା ପ୍ରଦେଶ ହୋଇଥାଏ । ସେତେବେଳକୁ ପଣ୍ଡିତ ନୀଳକଣ୍ଠ

ଦାସ ଓଡ଼ିଶା ପ୍ରଦେଶ କଂଗ୍ରେସର ସଭାପତି ଓ କୃଷକ ଆନ୍ଦୋଳନର ନେତା ନବକୃଷ୍ଣ ଚୌଧୁରୀ ସାଧାରଣ ସମ୍ପାଦକ । ୧୯୩୪ରୁ ୧୯୩୬ ପର୍ଯ୍ୟନ୍ତ କଂଗ୍ରେସ ସୋସାଲିଷ୍ଟମାନେ ହିଁ କଂଗ୍ରେସକୁ ସକ୍ରିୟ କରି ରଖିଥାନ୍ତି । ଏଣୁ ନବବାବୁ ସେତେବେଳକୁ ଖୁବ୍ ପ୍ରଭାବଶାଳୀ ହୋଇଥାନ୍ତି । ତାଙ୍କ ବନ୍ଧୁ ହରେକୃଷ୍ଣ ମହତାବ ୧୯୩୩ରୁ ୧୯୩୭ ପର୍ଯ୍ୟନ୍ତ ମୁଖ୍ୟତଃ ନିଜ ଗାଁ ଅଗରପଡ଼ାରେ ରହି ଯାହା କିଛି କାର୍ଯ୍ୟ କରୁଥିଲେ । ସେ କେବଳ ବାଲେଶ୍ୱର ଜିଲ୍ଲା ଦାୟିତ୍ୱ ନେଲେ । ନୀଳକଣ୍ଠ ଦାସ ସମ୍ବଲପୁର, ଗଞ୍ଜାମ ଓ କୋରାପୁଟ ଜିଲ୍ଲାର ଏବଂ ନବକୃଷ୍ଣ ଚୌଧୁରୀ କଟକ ତଥା ପୁରୀ ଜିଲ୍ଲାର ପ୍ରାର୍ଥୀ ବାଛିବା ଦାୟିତ୍ୱରେ ରହିଲେ । ଇତିପୂର୍ବରୁ ଗାନ୍ଧିଜୀ କଂଗ୍ରେସ ଲୋକେ ଭୋଟ୍‌ରେ ଅଂଶ ଗ୍ରହଣ କରିବାକୁ ପସନ୍ଦ କରୁ ନଥିଲେ । ତେଣୁ କଂଗ୍ରେସ ନେତା ଓ କର୍ମୀମାନେ ପୂରା ଦମ୍‌ରେ ଭୋଟରେ ମାତିପାରୁନଥିଲେ । ଏଥର ନିର୍ବାଚନରେ କିନ୍ତୁ ଅଂଶଗ୍ରହଣ କରିବାକୁ ଗାନ୍ଧିଜୀ ସମ୍ମତି ଦେଲେ । ଏଣୁ ଭାରତ ସାରା ନିର୍ବାଚନ ଜମିଲା । ଜବାହରଲାଲ ନେହେରୁ ସେତେବେଳକୁ କଂଗ୍ରେସର ସଭାପତି । ସେ ଓଡ଼ିଶା ସମେତ ସାରା ଭାରତବର୍ଷ ବୁଲି ନିର୍ବାଚନ ପ୍ରଚାର ଚଳାଇଥିଲେ । ଏହାଫଳରେ ୩୭ଟି ସାଧାରଣ ସ୍ଥାନ ମଧ୍ୟରୁ କଂଗ୍ରେସ ୩୬ଟିରେ ବିଜୟଲାଭ କଲା । କେବଳ ଗୋବିନ୍ଦ ମିଶ୍ର ହାରିଯାଇଥିଲେ । ଏହି ବିରାଟ ବିଜୟ ପଛରେ ଥିଲା ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ଲୁଣମରା ଆନ୍ଦୋଳନର ସାଫଲ୍ୟ ଏବଂ କଟକ, ପୁରୀ, ବାଲେଶ୍ୱର ତଥା ଗଞ୍ଜାମରେ ହୋଇଥିବା କୃଷକ ଆନ୍ଦୋଳନର ପ୍ରଭାବ । ଏଣୁ କଂଗ୍ରେସ ପ୍ରାର୍ଥୀମାନେ ବହୁ ରାଜା, ଜମିଦାର ଓ ଧନୀ ଏବଂ ପ୍ରତିଷ୍ଠିତ ଲୋକଙ୍କୁ ହରାଇପାରିଥିଲେ; ଏପରିକି ଦସ୍ତଖତ ଜାଣିଥିବା ସମ୍ବଲପୁର ଜିଲ୍ଲାର ଫକୀର ବେହେରା ବି ଜଣେ ଅତି ଜଣାଶୁଣା ପ୍ରାର୍ଥୀଙ୍କୁ ପରାସ୍ତ କରିଥିଲେ ।

ଏଥରକ ନିର୍ବାଚନରେ ନବକୃଷ୍ଣ ଚୌଧୁରୀ ତିର୍ତ୍ତୋଲ-ଏରସମା ନିର୍ବାଚନମଣ୍ଡଳୀରୁ, ନିତ୍ୟାନନ୍ଦ କାନୁନ୍‌ଗୋ ଜଗତସିଂହପୁରରୁ ଓ ସରଳା ଦେବୀ ମହିଳା ନିର୍ବାଚନମଣ୍ଡଳୀରୁ, ଅଟଳ ବିହାରୀ ଆଚାର୍ଯ୍ୟ ସାଲେପୁରରୁ, ଯଦୁମଣି ମଙ୍ଗରାଜ କେନ୍ଦ୍ରାପଡ଼ାରୁ, ଲୋକନାଥ ମିଶ୍ର ପାଟକୁରାରୁ, ସହଦେବ ଦାସ ଆଳିରୁ, ପ୍ରାଣନାଥ ପଟ୍ଟନାୟକ ଖୋର୍ଦ୍ଧାରୁ, ମୋହନ ଦାସ ନିମାପଡ଼ାରୁ ଠିଆ ହୋଇ ନିର୍ବାଚିତ ହୋଇଥିଲେ । କିନ୍ତୁ ପ୍ରଦେଶ କଂଗ୍ରେସ କମିଟି ସଭାପତି ନୀଳକଣ୍ଠ ଦାସ, ପୂର୍ବତନ ସଭାପତି ହରେକୃଷ୍ଣ ମହତାବ ପ୍ରାର୍ଥୀ ହୋଇନଥିଲେ ।

ନବକୃଷ୍ଣ ଚୌଧୁରୀଙ୍କର ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ ଥାଆନ୍ତି ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟ ଓ ନିଜର ବନ୍ଧୁ ଦେବେନ୍ଦ୍ର କିଶୋର ଦାସ । ସେ ସମୟରେ ବ୍ରିଟିଶ ସରକାରଙ୍କର ଖୁବ୍ ପ୍ରିୟ ବିଶ୍ୱସ୍ତ ଓ ସମ୍ଭ୍ରାନ୍ତ ପ୍ରଜାମାନେ ତଥା ଅଫିସରମାନେ ରାୟସାହେବ, ରାୟବାହାଦୁର ଓ ଦେୱାନ ବାହାଦୁର ପଦବୀ ପାଉଥିଲେ । ଚିନ୍ତାମଣି ଆଚାର୍ଯ୍ୟ ବି ସରକାରୀ ଓକିଲ ଥିଲେ । ଏଣୁ କୁଜଙ୍ଗ ଜମିଦାରଙ୍କ ମ୍ୟାନେଜର ରାୟବାହାଦୁର ରାଜେନ୍ଦ୍ର କୁମାର ସେନ୍ ଏବଂ ଜମିଦାରିର

ସମସ୍ତ କର୍ମଚାରୀ ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟଙ୍କୁ ଜିତାଇବା ପାଇଁ ଲାଗି ପଡ଼ିଥିଲେ । ଚିନ୍ତାମଣି ଆଚାର୍ଯ୍ୟ ସାରଳା ଠାକୁରାଣୀଙ୍କ ମୁଖ୍ୟ ଟ୍ରଷ୍ଟୀ ଥିବାରୁ ଠାକୁରାଣୀଙ୍କ ସେବକମାନେ ଧଣ୍ଡା ଧରି ଗାଁ ଗାଁ ବୁଲି ଚିନ୍ତାମଣି ଆଚାର୍ଯ୍ୟଙ୍କୁ ଭୋଟ୍ ଦେବା ପାଇଁ ଶପଥ କରାଉଥିଲେ ।

କଂଗ୍ରେସ ପକ୍ଷର ନିର୍ବାଚନ ଦିଗର ମୁଖ୍ୟ ସଞ୍ଚାଳକ ଥିଲେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ନାରାୟଣ ବୀରବର ସାମନ୍ତ । ଲୁଣମରା ଆନ୍ଦୋଳନରେ ଏହି ଅଞ୍ଚଳର ବହୁ ଲୋକ ସମ୍ପୃକ୍ତ ଥିଲେ ଏବଂ ଜେଲ୍ ଯାଇଥିଲେ । ସେମାନେ ସବୁ ଭୋଟ୍ ପ୍ରଚାରରେ ମାତିଲେ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ଗାନ୍ଧିବାଦୀ ହରେକୃଷ୍ଣ ବିଶ୍ୱାଳ ଏହି ନିର୍ବାଚନରେ କେତେକ ଅଞ୍ଚଳର ଦାୟିତ୍ୱ ନେଇଥିଲେ । ତାଙ୍କ ଘର ଏରସମା ଥାନାକୁ ଲାଗି ବାଲିକୁଦା ଥାନାରେ ; ପୁଣି ହରେକୃଷ୍ଣ ବିଶ୍ୱାଳଙ୍କ ଶ୍ୱଶୁରଘର ଏରସମା ଥାନାର ଅରଡ଼ା ଗ୍ରାମରେ ।

ଏହି ଉପଲକ୍ଷରେ ଚମ୍ପାହାଟ-ଡିହସାହିଠାରେ ଏକ ନିର୍ବାଚନ ସଭା ହୋଇଥିଲା ; ଯେଉଁଠିକୁ ମାଳତୀ ଦେବୀ, ମାଗୁଣିଚରଣ କାନୁନ୍‌ଗୋ ଆଦି କୋଡ଼ିଏ ଜଣ କର୍ମୀ ଯାଇଥିଲେ । ସଭା ପରେ କର୍ମୀମାନେ ଦୁଇ ଦଳ ହୋଇଗଲେ; କେତେଜଣ ମାଳତୀ ଦେବୀଙ୍କ ସହିତ ତିରଣ-ଜଗନ୍ନାଥପୁର ଗଲେ । ଅନ୍ୟ ଦଳଟି ହରେକୃଷ୍ଣ ବିଶ୍ୱାଳଙ୍କ ନେତୃତ୍ୱରେ ଏରସମା ଆଡ଼େ ଗଲେ । ସେଦିନ ହୋଇଥାଏ ଏରସମା ହାଟ । ହାଟରେ ଆଉ କିଛି ଲୋକଙ୍କ ସହିତ ସମ୍ପର୍କ ହୋଇଯିବା ଥିଲା ଆସିବାର ଉଦ୍ଦେଶ୍ୟ । ରାତି ହୋଇଯିବାରୁ ନବବାବୁ ପଚାରିଲେ, ''ରାତିରେ ଭୋଜନ କେଉଁଠି ?'' ହରେକୃଷ୍ଣବାବୁ କହିଲେ ତାଙ୍କ ଶ୍ୱଶୁରଘରେ । ହାଟରୁ ଦୁଇ କିଲୋମିଟର ବାଟ । ନବବାବୁ କହିଲେ, ''ଭଲ କଥା, ଆଜି ଶ୍ୱଶୁରଘରେ ଭଲ ଭୋଜନ ହେବ ।''

ହାଟରେ ହରେକୃଷ୍ଣ ବିଶ୍ୱାଳଙ୍କର ବଡ଼ ଶଳା ଏ ଖବର ପାଇ ହାଟରୁ ଏକ ବଡ଼ ଭାକୁର ମାଛ କିଣି ଗାଁକୁ ନେଇଯାଇଥିଲେ । ଜହ୍ନରାତି ହୋଇଥାଏ । ନବବାବୁ ମାଗୁଣି କାନୁନ୍‌ଗୋଙ୍କୁ ଟିକିଏ ଦୂରକୁ ଡାକି କଅଣ କିଛି କହିଲେ । ସେ ଗାଁକୁ ରାସ୍ତା ନଥାଏ । ସମସ୍ତେ ଧାଡ଼ି ବାନ୍ଧି ହିଡ଼ରେ ଚାଲିଥାନ୍ତି । ଆଗରେ ଥାଆନ୍ତି ନବବାବୁ ଓ ସବା ପଛରେ ହରେକୃଷ୍ଣ ବିଶ୍ୱାଳ । ଜାତୀୟ ସଙ୍ଗୀତ ଗାନ ହେଉଥାଏ ଓ ମଝିରେମଝିରେ ଜୟଧ୍ୱନି ଦିଆଯାଉଥାଏ । ଶ୍ୱଶୁରଘର ଗାଁ ପାଖେଇ ଆସିବାରୁ ଆରମ୍ଭ ହୋଇଗଲା ସବାରି ଡାକ । ପୂର୍ବେ ଗୋପାଳମାନେ ସବାରିରେ ବର, କନ୍ୟା ବା ବୋହୂ ନେଲାବେଳେ ଗୀତ ମିଶା ଏକ ଡାକ ଛାଡ଼ି ଚାଲୁଥିଲେ । ସେହିଭଳି ଡାକ ଶୁଣି ଗାଁର ଛୋଟ ପିଲାଙ୍କଠାରୁ ବଡ଼ଙ୍କ ପର୍ଯ୍ୟନ୍ତ ଶତାଧିକ ଲୋକ ରୁଣ୍ଡ ହୋଇଗଲେ–କିଏ ଗାଁକୁ ଆସିଲା ? ବିବାହ ତିଥି ନାହିଁ କି ଗାଁର କୌଣସି ବୋହୂ ବି ଆସିବାର ନାହିଁ; ପୁଣି ସବାରି ମଧ୍ୟ ନାହିଁ ! ଗାଁ ଲୋକେ ଏ ପ୍ରଶ୍ନ ଉଠାଇବାରୁ

ନବବାବୁ କହିଲେ, ‘‘ତୁମ ଗାଁ କ୍ୱାଇଁ ନାଗପୁରର ହରେକୃଷ୍ଣ ବିଶ୍ୱାଳ ପଛରେ ଆସୁଛନ୍ତି ।’’ ହରିବାବୁ ବଡ଼ ଲାଜରେ ପଡ଼ିଗଲେ । ତାଙ୍କୁ ଦେଖି ଗାଁ ଲୋକେ ହୋ-ହୋ ହସରେ ଫାଟିପଡ଼ିଲେ । ପରେପରେ ସେହି ଗାଁରେ ଏକ ସଭା ହେଲା ।

ନିର୍ବାଚନ ଲାଗି ନୀଳକଣ୍ଠ ଦାସ ସମଗ୍ର ଓଡ଼ିଶା ପାଇଁ ପାଇଥିଲେ ଆଠହଜାର ଟଙ୍କା । ଏଣୁ ପ୍ରତି ନିର୍ବାଚନ ମଣ୍ଡଳୀ ପାଇଁ ଶହେରୁ ଦୁଇଶହ ପର୍ଯ୍ୟନ୍ତ ଟଙ୍କା ଦିଆଯାଇଥିବ । ବନ୍ଧୁ ନିତ୍ୟାନନ୍ଦ କାନୁନ୍‌ଗୋ ନବବାବୁଙ୍କ ନିର୍ବାଚନ ଲାଗି ଆଠଶହ ଟଙ୍କା ସାହାଯ୍ୟ କରିଥିଲେ । ଏହାଛଡ଼ା ଦୁଇହଜାର ଟଙ୍କା ଋଣ ହୋଇଥିଲା । ନବକୃଷ୍ଣ ଚୌଧୁରୀ ଦଳର ସାଧାରଣ ସମ୍ପାଦକ ଥିବାରୁ ତାଙ୍କୁ ନିଜ ନିର୍ବାଚନ ମଣ୍ଡଳୀ ଛଡ଼ା ଅନ୍ୟାନ୍ୟ ନିର୍ବାଚନ ମଣ୍ଡଳୀକୁ ଯିବାକୁ ହେଉଥିଲା ଓ ନେହେରୁଙ୍କ ସଙ୍ଗରେ ଗସ୍ତ କରିବାକୁ ହେଉଥିଲା । ସେଥିପାଇଁ ତାଙ୍କୁ କିଛି ଦିନ ଲାଗି ଏକ ମଟର ଗାଡ଼ି ଭଡ଼ାରେ ଆଣିବାକୁ ପଡ଼ିଥିଲା ।

ଲୋକମାନେ ନବବାବୁଙ୍କ ବିଜୟରେ ନିଶ୍ଚିତ ହୋଇ ଗୋଟିଏ ‘ବୋଲି’ ଚାଲୁ କରି-ଦେଇଥାନ୍ତି–‘ନବ ତ ନବ ; ଚିନ୍ତାମଣି ମଣି ହରେଇ ଯିବ ।’ ଆଚାର୍ଯ୍ୟଙ୍କ ସ୍ତ୍ରୀ ଟିକିଏ ଦାନ୍ତୁରୀ, ତାଙ୍କ ବାକ୍ସର ଚିହ୍ନ ଥାଏ ଲାଲ୍ । ଏଣୁ ତାଙ୍କୁ ଚିଡ଼େଇବା ଲାଗି କିଛି ଲୋକ ଚଳାଇଥାନ୍ତି– ‘ନାଲି ବାକ୍ସ କାହାର ? ଦାନ୍ତୁରୀ ଭାର୍ଯ୍ୟା ଯାହାର’ ।

ମନମୋହନ ଚୌଧୁରୀ ନବବାବୁଙ୍କ ଲାଗି ପ୍ରଚାର କରିବାକୁ ଏରସମା ଯାଇଥିଲେ । ସେତେବେଳେ ଭୋଟ ତିର୍ତ୍ତୋଲ ଓ ଏରସମା ଥାନାଠାରେ ୭-୮ ଦିନ ଧରି ହେଉଥିଲା । ଭୋଟରମାନେ ବହୁ ଦୂରରୁ ଆସୁଥିଲେ । ଭୋଟ୍ ବେଳକୁ ପହଞ୍ଚି ହେବନାହିଁ ବୋଲି ଏରସମା ଥାନାର କେତେକ ଭୋଟର୍ ପୂର୍ବ ଦିନ ସନ୍ଧ୍ୟା ପୂର୍ବରୁ ଏରସମାରେ ପହଞ୍ଚି ବିଭିନ୍ନ ଦଳ ହୋଇ ରୋଷେଇ କରୁଥାନ୍ତି । ରୋଷେଇରେ ଲାଗିପଡ଼ିଥିବା ଲୋକମାନଙ୍କୁ ମନମୋହନ ବାବୁ ପଚାରିଲେ, ‘‘କଅଣ ନବବାବୁଙ୍କୁ ଭୋଟ୍ ଦେବ ?’’

ସେହି ଗାଉଁଲି ଲୋକେ ବିରକ୍ତ ହୋଇ କହିଲେ, ‘‘ଆମେ ନବବାବୁ ଫବବାବୁ କିଏ ଜାଣୁନା, ଆମେ କଂଗ୍ରେସକୁ ଭୋଟ୍ ଦେବୁ ।’’

କଂଗ୍ରେସ ଦଳର ବାକ୍ସ ରଙ୍ଗ ଥାଏ ହଳଦିଆ । ପ୍ରାର୍ଥୀ ନାଁ ଅନେକ ଲୋକ ଜାଣି ନ ଥିଲେ । ଏହା ଖାଲି ତିର୍ତ୍ତୋଲ-ଏରସମା ନିର୍ବାଚନର ଚିତ୍ର ନଥିଲା, ଏହା ଥିଲା ସାରା ଓଡ଼ିଶାର ନିର୍ବାଚନ ହାଓ୍ୱା–ଲୋକେ କଂଗ୍ରେସକୁ, ମହାତ୍ମା ଗାନ୍ଧିଙ୍କୁ ଭୋଟ୍ ଦେବେ ।

ପ୍ରଥମ ଦିନ ଭୋଟ୍ ଆରମ୍ଭ ହେବା ପୂର୍ବରୁ ଚିନ୍ତାମଣି ଆଚାର୍ଯ୍ୟ ଏରସମା ଭୋଟ୍ କେନ୍ଦ୍ରଠାରୁ କିଛି ଦୂରରେ କାଠର ଏକ ଘେର କରି, ଆସୁଥିବା ଭୋଟରଙ୍କୁ ତାଙ୍କ ଲୋକଙ୍କ ଦ୍ୱାରା ଟାଣିନେଇ, ସାରଳା ଠାକୁରାଣୀଙ୍କ ପ୍ରସାଦ ଧରାଇ ହଲପ କରାଇ ତାଙ୍କୁ ଭୋଟ୍

ଦେବା ଲାଗି ପ୍ରବର୍ତ୍ତାଉଥାନ୍ତି । ଏହି ସମୟରେ ନବବାବୁ ଓ ସୁରେନ୍ଦ୍ରନାଥ ଦ୍ୱିବେଦୀ ଆଦି ପହଞ୍ଚି ଦେଖନ୍ତି ଯେ ତାଙ୍କ କର୍ମୀଙ୍କ ପାଖରେ କେହି ନାହାନ୍ତି । ନବବାବୁ ରାଗିଯାଇ ଗୋଡ଼ରୁ ଚପଲ ଉଠାଇ ଅତି ଅଶ୍ରାବ୍ୟ ଭାଷାରେ ଚିନ୍ତାମଣି ଆଚାର୍ଯ୍ୟଙ୍କୁ ଗାଳିଦେଲେ । ସେଇଥିରେ ଚିନ୍ତାମଣି ଆଚାର୍ଯ୍ୟ ହତବାକ୍ ହୋଇ ବିଚଳିତ ହୋଇଗଲେ । ଯେଉଁ ଭୋଟରମାନେ ନିଜ ଇଚ୍ଛା ବିରୁଦ୍ଧରେ ସେହି ଘେର ଭିତରକୁ ଟଣାହୋଇ ଯାଇଥିଲେ, ସେମାନେ ପାଟି କରି ନବବାବୁଙ୍କ ପାଖକୁ ଚାଲିଆସିଲେ ଏବଂ ମନ ଉଲ୍ଲାସରେ ଭୋଟ୍ ଦେଲେ । ଭୋଟରେ ଚିନ୍ତାମଣି ଆଚାର୍ଯ୍ୟ ପ୍ରଚୁର ଟଙ୍କା ଖର୍ଚ୍ଚ କରିଥିଲେ । ଦେବେନ୍ଦ୍ର କିଶୋର ଦାସ ମଟର ଲଞ୍ଚ ଦ୍ୱାରା କୁଜଙ୍ଗ ଅଞ୍ଚଳର ଭୋଟରଙ୍କୁ ବୁହାଇ ଆଣି ବି ଶୋଚନୀୟ ଭାବରେ ପରାସ୍ତ ହେଲେ । ଓଡ଼ିଶାର କଂଗ୍ରେସ ଦଳ ଆଶାତୀତ ସାଫଲ୍ୟ ଲାଭ କରିଥିବାରୁ ସର୍ବଭାରତୀୟ ନେତାଙ୍କ ଠାରୁ ସାବାସ୍ ପଦ ପାଇଲା ।

ନିର୍ବାଚନ ପରେ କଂଗ୍ରେସ ପ୍ରଥମେ ମନ୍ତ୍ରିମଣ୍ଡଳ ଗଢ଼ିବାକୁ ଅନିଚ୍ଛା ପ୍ରକାଶ କଲା । କାରଣ ୧ ୯୩୫ ଭାରତ ଶାସନ ଆଇନ ଅନୁସାରେ ବିଧାନସଭାର ବିଶେଷ କ୍ଷମତା ନ ଥାଏ; ଅଥଚ ଛୋଟଲାଟଙ୍କର ଅଖଣ୍ଡ କ୍ଷମତା ଥାଏ । ଏଣୁ ଓଡ଼ିଶା ସମେତ ସର୍ବତ୍ର ବେକଂଗ୍ରେସ ଦଳ ସରକାର ଗଢ଼ିଲେ ।

ଏହାପରେ ଲୋକପ୍ରତିନିଧିମାନଙ୍କ କ୍ଷମତା ସମ୍ପର୍କରେ ସରକାର ସମ୍ମତ ହେବାରୁ ଓଡ଼ିଶା ସମେତ ଅନ୍ୟତ୍ର କଂଗ୍ରେସ ସରକାର ଗଢ଼ିଲା । ନିର୍ବାଚନରେ ୩୬ ଜଣ କଂଗ୍ରେସ ବିଧାୟକ ମଧ୍ୟରୁ ୨୦ଜଣ ଖାସ୍ ନୀଳକଣ୍ଠ ଦାସଙ୍କର ମନୋନୀତ ସଦସ୍ୟ । ହେଲେ, ସେ ନିଜେ ବିଧାନସଭାକୁ ପ୍ରତିଦ୍ୱନ୍ଦ୍ୱିତା କରିନଥାନ୍ତି । ତାଙ୍କର ମତଲବ ଥାଏ ଯେ କଂଗ୍ରେସ ସଂଖ୍ୟାଗରିଷ୍ଠତା ଲାଭ କଲେ ତାଙ୍କର ବିଶ୍ୱସ୍ତ ମୋହନ ଦାସଙ୍କ ଭଳି କାହାକୁ ଇସ୍ତଫା ଦିଆଇ ସେ ୬ ମାସ ମଧ୍ୟରେ ସେହି ସ୍ଥାନରୁ ଆସିପାରିବେ । ଦଳର ନେତା ନିର୍ବାଚନ ପୂର୍ବରୁ ଭାଗୀରଥି ମହାପାତ୍ର, ହରେକୃଷ୍ଣ ମହତାବ, ନିତ୍ୟାନନ୍ଦ କାନୁନ୍‌ଗୋ ଏବଂ ନବକୃଷ୍ଣ ଚୌଧୁରୀ ଏକ ଯୋଜନା କରି ନୀଳକଣ୍ଠ ଦାସଙ୍କୁ ପ୍ରଧାନମନ୍ତ୍ରିତ୍ୱରୁ ବଞ୍ଚିତ କଲେ । ନବବାବୁଙ୍କର ନୀଳକଣ୍ଠ ଦାସଙ୍କ ପ୍ରତି ବିରୋଧ ଥିଲା ଆଦର୍ଶଗତ କାରଣରୁ; କିନ୍ତୁ ମହତାବ ନିଜର ଭବିଷ୍ୟତ ପଥ ପରିଷ୍କାର ପାଇଁ ତାଙ୍କ ବିରୋଧରେ ଏଭଳି ପେଞ୍ଚ ଖେଳିଥିଲେ । ସେମାନେ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ଜରିଆରେ ନିର୍ବାଚିତ ପ୍ରତିନିଧିମାନଙ୍କର ଏକ ବୈଠକ ଡାକି ନେତା ନିର୍ବାଚନ ପାଇଁ ଏକ ନିୟମ କରାଇଲେ ଯେ କେବଳ ନିର୍ବାଚିତ ପ୍ରତିନିଧିମାନଙ୍କ ମଧ୍ୟରୁ ହିଁ ଦଳର ନେତା ବଛାଯିବେ । ସେଭଳି ପରିସ୍ଥିତି ଦେଖି ନୀଳକଣ୍ଠବାବୁ ବିଶ୍ୱନାଥ ଦାସଙ୍କୁ ଦଳର ନେତା ରୂପେ ମନୋନୟନ କଲେ । ତାଙ୍କ ବିରୋଧୀମାନେ ବି ସେଥିରେ ରାଜି ହୋଇଗଲେ ।

କୁଆଡ଼େ ନୀଳକଣ୍ଠବାବୁ ଓ ବିଶ୍ୱନାଥ ଦାସଙ୍କ ମଧ୍ୟରେ କଥା ହୋଇଥିଲା ଯେ ସେ ପ୍ରଧାନମନ୍ତ୍ରୀ ଭାବରେ ନିର୍ବାଚିତ ହେଲାପରେ ନୀଳକଣ୍ଠବାବୁ ଅନ୍ୟ କାହାକୁ ଇସ୍ତଫା ଦିଆଇ ଉପନିର୍ବାଚନରେ ନିର୍ବାଚିତ ହୋଇ ଆସିବେ ଏବଂ ସେ ହିଁ ହେବେ ପ୍ରଧାନମନ୍ତ୍ରୀ । ଏହା ସରିବା ପରେ ମୁକୁନ୍ଦ ପ୍ରସାଦ ଦାସ ବାଚସ୍ପତି ଭାବରେ ନିର୍ବାଚିତ ହେଲେ । ଏହା ପରେପରେ ଭାଗୀରଥି ମହାପାତ୍ର-ମହତାବ ଗୋଷ୍ଠୀ ବିଶ୍ୱନାଥ ଦାସଙ୍କୁ ଆଣି ନିତ୍ୟାନନ୍ଦ କାନୁନ୍‌ଗୋଙ୍କ କୋଠାରେ ବନ୍ଦୀପ୍ରାୟ ରଖିଲେ । ନୀଳକଣ୍ଠବାବୁଙ୍କ ସହ ତାଙ୍କର ସମ୍ପର୍କ ନ ହୋଇପାରିବା ପାଇଁ ସବୁ ପ୍ରକାର ବ୍ୟବସ୍ଥା କରାଯାଇଥିଲା । ମୋହନ ଦାସ ନବକୃଷ୍ଣ ଚୌଧୁରୀଙ୍କ ଅନ୍ତରଙ୍ଗ ବନ୍ଧୁ ହୋଇଥିବାରୁ ସେ ବି ଇସ୍ତଫା ଦେଲେନାହିଁ । ତେଣେ ବିଶ୍ୱନାଥ ଦାସଙ୍କୁ ସବୁ ପ୍ରକାର ଦମ୍ଭ ଦିଆ ହେଲା । ଥରେ ଗାଦି ପାଇଗଲା ପରେ ବିଶ୍ୱନାଥ ଦାସ ଏହି ସୁଯୋଗକୁ ସଫଳ ଭାବରେ ପ୍ରୟୋଗ କରି ନିଜର ପ୍ରତିଷ୍ଠା ଓ ପ୍ରତିପତ୍ତି ବଢ଼ାଇବାରେ ସକ୍ଷମ ହୋଇଥିଲେ ।

## ବିଧାୟକ ନବକୃଷ୍ଣ :

ବିଶ୍ୱନାଥ ଦାସ ନୀଳକଣ୍ଠ ଦାସଙ୍କ ତରଫରୁ ପ୍ରଧାନମନ୍ତ୍ରୀ ହେଲେ ବି ପରବର୍ତ୍ତୀ କାଳରେ, ପୂର୍ବରୁ କୁହାଯାଇଥିବା ଚତୁଃଶକ୍ତି ଉପରେ ନିର୍ଭରଶୀଳ ହେଲେ । ଅନ୍ୟ ମନ୍ତ୍ରୀ ଓ ପାର୍ଲାମେଣ୍ଟାରୀ ସେକ୍ରେଟେରୀ ଏହିମାନଙ୍କ ପରାମର୍ଶରେ ହେଲେ । ମନ୍ତ୍ରିମଣ୍ଡଳ ହାତରେ ସୀମିତ କ୍ଷମତା ଥିବାରୁ ଏବଂ ଅନ୍ୟାନ୍ୟ କାରଣରୁ ସାରା ଭାରତର କଂଗ୍ରେସ ସୋସାଲିଷ୍ଟମାନେ ମନ୍ତ୍ରିମଣ୍ଡଳରେ ଯୋଗ ଦେଲେ ନାହିଁ । ଓଡ଼ିଶାର କଂଗ୍ରେସ ସୋସାଲିଷ୍ଟମାନଙ୍କ ସୁପାରିଶରେ ନିତ୍ୟାନନ୍ଦ କାନୁନ୍‌ଗୋ ମନ୍ତ୍ରୀ ହେଲେ ।

ରମାଦେବୀ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ଯେ ନବବାବୁ ନିଜେ ମନ୍ତ୍ରୀ ନହୋଇ ବୁଦ୍ଧିମାନର କାର୍ଯ୍ୟ କରିଛନ୍ତି ବୋଲି, ନିତ୍ୟାନନ୍ଦ କାନୁନ୍‌ଗୋ ତଥା ରମାଦେବୀଙ୍କ ମାମୁଁ ରାଜକିଶୋର ଦାସ କୁଆଡ଼େ କହିଥିଲେ । ସେ ମନ୍ତ୍ରୀ ନ ହୋଇ ବି ମନ୍ତ୍ରିମଣ୍ଡଳ ଜରିଆରେ ଚାଷୀଙ୍କ ସ୍ୱାର୍ଥରକ୍ଷା ଲାଗି ଆଇନ କରାଇଥିଲେ । ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ ହେବା ପୂର୍ବରୁ ଗଞ୍ଜାମ ରୟତ୍ ଆନ୍ଦୋଳନର ନେତା ଥିବାରୁ ତାଙ୍କଠାରୁ ବି ସହଯୋଗ ମିଳିଲା ।

କିନ୍ତୁ ମନ୍ତ୍ରିମଣ୍ଡଳ କାର୍ଯ୍ୟଭାର ଗ୍ରହଣ କରିବା ପରେ ବିଧାନସଭାରେ, ଏକ ସରକାରୀ କାର୍ଯ୍ୟ ଭାବରେ, ଭାରତ ସରକାରଙ୍କ ୧୯୩୫ ଆଇନକୁ ପ୍ରତ୍ୟାହାର କରିନିଆଯିବା ସମ୍ପର୍କରେ ଏକ ପ୍ରସ୍ତାବ ଅଣାଗଲା । ଖାଲି ଓଡ଼ିଶା ନୁହେଁ, ସବୁ କଂଗ୍ରେସଶାସିତ ପ୍ରଦେଶରେ ଏଭଳି ପ୍ରସ୍ତାବ ଅଣାଯାଇଥିଲା । ପ୍ରଧାନମନ୍ତ୍ରୀ ଦୃଢ଼ତାର ସହ ସେହି ପ୍ରସ୍ତାବକୁ ଇଂରେଜୀରେ ଉପସ୍ଥାପନ କରିଥିଲେ । ସରକାରଙ୍କ ପ୍ରସ୍ତାବ ପ୍ରଚାରିତ ହେବା ପରେ ଖଲିକୋଟ ରାଜା ତାହା ଉପରେ ଦୁଇଟି ସଂଶୋଧନ ପ୍ରସ୍ତାବ ପେଶ୍ କରିଥିଲେ ।

ପ୍ରଧାନମନ୍ତ୍ରୀଙ୍କର ମୁଖ୍ୟ ଯୁକ୍ତି ଥିଲା ଯେ ଅନ୍ୟ ଗୋଟିଏ ଜାତି, ସେ ଯେତେ ବିରାଟ ବା ଗୌରବମୟ ହୋଇଥାଉନା କାହିଁକି, ତା'ର ଅନ୍ୟ ଏକ ଜାତି ଉପରେ ଏକ ସମ୍ବିଧାନ ଲଦିଦେବାର ଅଧିକାର ନାହିଁ । ସେ ଆୟର୍ଲାଣ୍ଡ ଆଦି ଦେଶର ଇତିହାସର ଦୃଷ୍ଟାନ୍ତ ଦେଇଥିଲେ । ବ୍ରିଟିଶ ସରକାର ଏ ଦେଶକୁ ବିଭେଦଗ୍ରସ୍ତ କରି ରଖିବା ଲାଗି ଭାରତ ସରକାରଙ୍କ ୧୯୩୫ ମସିହା ଆଇନ କରିଛନ୍ତି, ଏଣୁ ତାହାକୁ କେବେ ଗ୍ରହଣ କରାଯାଇ ପାରେନା । ସେହି ଆଇନ ଭାରତବର୍ଷର ସବୁଶ୍ରେଣୀ ଦ୍ୱାରା ପ୍ରତ୍ୟାଖ୍ୟାନ ହୋଇଥିବାରୁ ସେଭଳି ଆଇନ ପ୍ରତ୍ୟାହୃତ ହେଉ ।

ମୂଳ ପ୍ରସ୍ତାବରେ ଉଲ୍ଲେଖ ଥିଲା ଯେ ଉକ୍ତ ଆଇନ କେତେକ ନିର୍ଦ୍ଦିଷ୍ଟ ମତଲବ ରଖି ବ୍ରିଟିଶ ସରକାର ଆଣିଥିଲେ । ଏହି ମତଲବ ଶବଟି ଖଲ୍ଲିକୋଟ ରାଜାଙ୍କ ଭଳି ବ୍ରିଟିଶ-ଭକ୍ତ ସହ୍ୟ କରିପାରିନଥିଲେ ଓ ଏହାକୁ ଉଠାଇଦେବା ଲାଗି ତାଙ୍କର ଯୁକ୍ତି ପେଶ୍ କରିଥିଲେ । ଏହାରି ଉତ୍ତରରେ ନବକୃଷ୍ଣ ଚୌଧୁରୀ ଯାହା କହିଥିଲେ, ତହିଁର କିଛି ଅଂଶ ଉଲ୍ଲେଖନୀୟ ।

''ଏ ଦେଶରେ ଏପରି ଲୋକ ଅଛନ୍ତି ଏବଂ ଏଭଳି ଶ୍ରେଣୀ ରହିଛନ୍ତି, ଯେଉଁମାନେ ନିଜ ଅନ୍ତରରେ ଏ ପରାଧୀନତାର ଅପମାନକୁ ନଭାବି ନିଜର ସ୍ୱାର୍ଥସାଧନ ପାଇଁ, ବା ନିଜର ଅଜ୍ଞତାବଶତଃ, ବ୍ରିଟିଶ ସାମ୍ରାଜ୍ୟବାଦକୁ ଘଣ୍ଟ ଘୋଡ଼ାଇବାକୁ ଅଗ୍ରସର ହେଉଛନ୍ତି; ଅଥବା ତାଙ୍କର ଆଶ୍ରୟ ଏବଂ ଅଭୟ ଛତ୍ର ତଳେ ଆତ୍ମରକ୍ଷା କରିବେ ବୋଲି ଏହି ସଭାରେ ସଫେଇ କରୁଛନ୍ତି । ଏହା ଅତ୍ୟନ୍ତ ପରିତାପର ବିଷୟ...''

(ଓଡ଼ିଶା ବିଧାନସଭାର ୧୯୩୭ ମସିହା ସେପ୍ଟେମ୍ବର ମାସ ୨୨ ତାରିଖ ବିବରଣୀର ୯୮୦ ପୃଷ୍ଠା ଦ୍ରଷ୍ଟବ୍ୟ ।)

୧୯୩୭ ଓ ୧୯୩୮ ମସିହାରେ ବିଧାନସଭାରେ ନବବାବୁ ଖୁବ୍ କମ୍ କହିଛନ୍ତି । ବରଂ ତାଙ୍କ ଗୋଷ୍ଠୀର ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ ଓ ସରଳା ଦେବୀ ଏବଂ ଗୋଦାବରୀଶ ମିଶ୍ର ଆଦି ବହୁବାର ଅଂଶଗ୍ରହଣ କରିଛନ୍ତି । ସେ ବିଶେଷ ଭାବରେ ଅଂଶଗ୍ରହଣ କରିଥିବା ବିଷୟଗୁଡ଼ିକ ହେଲା, ଦି ମାଡ୍ରାସ ଇଷ୍ଟେଟ୍ ଲ୍ୟାଣ୍ଡ (ଓରିଶା ଆମେଣ୍ଡମେଣ୍ଟ) ବିଲ୍ ୧୯୩୭, ଦି ଓରିଶା ଟେନାନ୍ସି (ଆମେଣ୍ଡମେଣ୍ଟ) ବିଲ୍ ୧୯୩୭, ଦି ମନିଲେଣ୍ଡରସ୍ ବିଲ୍ ୧୯୩୭ । ଏହାଛଡ଼ା ଆଳି ରାଜାଙ୍କ ନଅରରେ ମରିଥିବା ଏକ ଝିଅ ସମ୍ପର୍କରେ ପାଟନା ହାଇକୋର୍ଟ ଚିଫ୍ ଜଷ୍ଟିସ୍‌ଙ୍କ ମନ୍ତବ୍ୟ ଉପରେ ହୋଇଥିବା ଏକ ଉଲ୍ଲେଖଯୋଗ୍ୟ ଆଲୋଚନାରେ ସେ ଅଂଶଗ୍ରହଣ କରିଥିଲେ । ଇଂରାଜୀରେ କହିବାର ଖୁବ୍ ଦକ୍ଷତା ଥିଲେ ବି ମୂଳରୁ ସେ ଓଡ଼ିଆରେ ହିଁ କହିଛନ୍ତି । ତାଙ୍କ ଓଡ଼ିଆରେ କହିବା, ବହୁ ସଦସ୍ୟଙ୍କୁ ଓଡ଼ିଆରେ କହିବା ଲାଗି ଉତ୍ସାହିତ କରିଥିଲା । ଗୋଦାବରୀଶ ମିଶ୍ର ଆଦି ବିଶିଷ୍ଟ ସରକାରୀଦଳର ସଭ୍ୟ

ସେ ସମୟରେ ବିଧାନସଭାରେ ପ୍ରଶ୍ନ ପଚାରୁଥିଲେ ହେଁ ନବବାବୁ ମୋଟେ ଗୋଟିଏ ହେଲେ ପ୍ରଶ୍ନ ପଚାରି ନାହାନ୍ତି । ତାହାଙ୍କୁ ଲକ୍ଷ୍ୟ କଲେ ମନେହୁଏ, ସତେ ଯେପରି ସେ ଜଣେ ଛାୟାମନ୍ତ୍ରୀ ; ମନ୍ତ୍ରୀ ନହୋଇ ବି ସରକାରୀ ନୀତି ନିୟନ୍ତ୍ରକ ; ସାରଥି ।

ନବକୃଷ୍ଣ ଚୌଧୁରୀ କୃଷକ ଆନ୍ଦୋଳନ ଓ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ବିଶେଷ ଧ୍ୟାନ ଦେଉଥିବା ଯୋଗୁଁ ବିଧାନସଭା କାର୍ଯ୍ୟକୁ ବିଶେଷ ଗୁରୁତ୍ୱ ଦେଇନାହାନ୍ତି । ଏଣୁ ୧୯୩୯ ମସିହାର ବିଧାନସଭା ବିବରଣୀରୁ ତାଙ୍କ ଭାଷଣ ମୋଟେ ଦେଖିବାକୁ ମିଳେନାହିଁ । ୧୯୪୦ ମସିହାରେ ସେ ଗାନ୍ଧିଜୀଙ୍କ ଆହ୍ୱାନରେ ବ୍ୟକ୍ତିଗତ ସତ୍ୟାଗ୍ରହରେ ଅଂଶଗ୍ରହଣ କରି ବନ୍ଦୀ ହୋଇଥିବାରୁ ବି ସେ ସମୟର ବିଧାନସଭା ବିବରଣୀ ତାଙ୍କ ସମ୍ପର୍କରେ ନୀରବ । ପୁଣି ୧୯୪୨ ମସିହା ଫେବୃଆରି ୧୨ ତାରିଖ ବିବରଣୀରୁ ଜଣାପଡ଼େ ଯେ ନବକୃଷ୍ଣ ଚୌଧୁରୀ ଓ ମୋହନ ଦାସ ଭାରତ ରକ୍ଷା ଆଇନରେ ଗିରଫ ହୋଇଥିବାରୁ ସେଦିନ ବିଶ୍ୱନାଥ ଦାସ ଏ ସମ୍ପର୍କରେ ଏକ ମୁଲତବୀ ପ୍ରସ୍ତାବ ଆଣିଥିଲେ । ନବବାବୁ ବିଧାନସଭାକୁ ବିଶେଷ ଗୁରୁତ୍ୱ ଦେଉନଥିବା କଥା ଏସବୁରୁ ଜଣାପଡ଼େ ।

### Partially excluded Area Committee Report

୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ହେବା ଫଳରେ କୋରାପୁଟ, ଗଞ୍ଜାମର ମାଳ ଅଞ୍ଚଳ, କନ୍ଧମାଳ ଆଦି ଅନୁନ୍ନତ ଅଞ୍ଚଳ ଓଡ଼ିଶାର ଅନ୍ତର୍ଭୁକ୍ତ ହେଲା । ପୂର୍ବରୁ ଅନୁଗୋଳ ତଥା ସମ୍ବଲପୁରକୁ ମଧ୍ୟ ଅନୁନ୍ନତ ଅଞ୍ଚଳ ବୋଲି ସରକାର ମନେକରୁଥିଲେ । ଏ ଅଞ୍ଚଳର ଶାସନ ଉପକୂଳ ଜିଲ୍ଲାମାନଙ୍କଠାରୁ ଭିନ୍ନ ଥିଲା ଏବଂ ସେଠାରେ ସରକାର, ଜମିମାଲିକ ତଥା ସାହୁକାରମାନଙ୍କ ଦ୍ୱାରା ନାନାପ୍ରକାର ଶୋଷଣ ଚାଲିଥିଲା । ୧୯୩୭ ମସିହାରେ କଂଗ୍ରେସ ସରକାର ପ୍ରତିଷ୍ଠିତ ହେଲାପରେ ଏହି ଅଞ୍ଚଳର ସମସ୍ୟା ଓ ସେସବୁର ସମାଧାନ ଲାଗି ସୁପାରିଶ କରିବା ପାଇଁ ବିଶିଷ୍ଟ ସମାଜସେବୀ ଅମୃତଲାଲ୍ ଠକ୍କରଙ୍କ ନେତୃତ୍ୱରେ ସରକାର ଏକ କମିଟି ଗଢ଼ିଥିଲେ । ସେଥିରେ ଅନ୍ୟମାନଙ୍କ ମଧ୍ୟରେ ରାଧାକୃଷ୍ଣ ବିଶ୍ୱାସରାୟ ଓ ନବକୃଷ୍ଣ ଚୌଧୁରୀ ସଦସ୍ୟ ଥିଲେ ।

ସେହି କମିଟି ଉକ୍ତ ଅଞ୍ଚଳ ବୁଲି ନିମ୍ନ ସୁପାରିଶ କରିବା ସଙ୍ଗେ ସମ୍ବଲପୁର ଓ ଅନୁଗୋଳକୁ ଏହି ଅନୁନ୍ନତ ଅଞ୍ଚଳ ତାଲିକାରୁ ବାଦ୍ ଦେବା ଲାଗି ସୁପାରିଶ କରିଥିଲେ । ଉକ୍ତ କମିଟି ମାନ୍ଦ୍ରାଜ ପ୍ରଦେଶରେ ପ୍ରଚଳିତ ମୁସ୍ତାଦାରୀ ପ୍ରଥା ଭଳି, ରାଜସ୍ୱ ଶାସନ ବଦଳରେ ରୟତୱାରୀ ଅଞ୍ଚଳ ଭଳି ଖଜଣା ଆଦାୟ ପ୍ରଚଳନ କରିବା ଓ ସେଥିପାଇଁ ରସିଦ ଦେବା, ଆସ୍ତେ ଆସ୍ତେ ନିଶାନିବାରଣ ଓ ପୋଡୁ ଚାଷ ବନ୍ଦ କରିବା ପାଇଁ ମତ ଦେଇଥିଲେ । ଏହାଛଡ଼ା ଲଙ୍ଗଳ ଟିକସ ଭଳି ଅନ୍ୟାୟ କର ଓ ବେଠି, ଭେଟି ଉଠାଇବା ଏବଂ ତିନିଫୁଟ ପରିଧିଠାରୁ

ଛୋଟ ଗଛ ଚାଷୀ ନିଜ ଜମିରୁ ଅବାଧରେ କାଟିବାର ଅଧିକାର କଥା ସୁପାରିଶ କରିଥିଲେ । ଏ ସବୁ ଅଞ୍ଚଳରେ ଭାରତୀୟ ଜଙ୍ଗଲ ଆଇନ ପ୍ରବର୍ତ୍ତନ ପାଇଁ, ଶିକ୍ଷା, ସ୍ୱାସ୍ଥ୍ୟ ତଥା ଯୋଗାଯୋଗର ପ୍ରସାର ଲାଗି ଉକ୍ତ କମିଟି ସୁପାରିଶ କରିଥିଲେ । ଏ ଅଞ୍ଚଳର ଆୟବୃଦ୍ଧି ପାଇଁ ମଧ୍ୟ ସେମାନେ କେତେକ ପ୍ରସ୍ତାବ ଦେଇଥିଲେ ଓ ନିନ୍ଦିତ ଗୋତିପ୍ରଥା (କ୍ରୀତଦାସ ପ୍ରଥା ଭଳି ଏକ ପ୍ରଥା) ଲୋପ ପାଇଁ ବିଶେଷ ଗୁରୁତ୍ୱ ଦେଇଥିଲେ ।

Partially excluded Area Committee ରିପୋର୍ଟରେ ନବକୃଷ୍ଣ ଚୌଧୁରୀ ଏକ ସ୍ୱତନ୍ତ୍ର ମତ ଦେଇଥିଲେ । ଅନୁଗୋଳକୁ ଉପରଲିଖିତ ଅଞ୍ଚଳରୁ ବାଦ୍ ଦିଆହେଲେ ମଧ୍ୟ ଏହି ଅଞ୍ଚଳକୁ କଟକ ଜିଲ୍ଲାରେ ମିଶାଇ ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ ପ୍ରଚଳନ କରିବା ଏବଂ ସର୍ବରାକାରୀ ପ୍ରଥା ବଦଳରେ ଦରମାଦିଆ କର୍ମଚାରୀ ରଖାଯିବା ଲାଗି ସେ ପ୍ରସ୍ତାବ ଦେଇଥିଲେ । ସମଗ୍ର ସମ୍ବଲପୁରକୁ Partially excluded areaରୁ ବାଦ୍ ଦେଇ ତାହାକୁ ସାଧାରଣ ପ୍ରଶାସନିକ ଜିଲ୍ଲାରେ ପରିଣତ କରିବାକୁ ପ୍ରସ୍ତାବ ଦିଆଯାଇଥିଲେ ମଧ୍ୟ ସେଠାରେ ଆଦିବାସୀମାନଙ୍କର ଜମି ହସ୍ତାନ୍ତର ଉପରେ କଟକଣା ରଖିବା ଲାଗି, କେନ୍ଦୁପତ୍ର ବ୍ୟବସାୟ ଉପରେ ନିୟନ୍ତ୍ରଣ ରଖିବା ପାଇଁ ଏବଂ ଗୌନ୍ତିଆଙ୍କ ଦ୍ୱାରା ହେଉଥିବା ବେଠି, ବେଗାରି ଲୋପ ପାଇଁ ନବକୃଷ୍ଣ ଚୌଧୁରୀଙ୍କ ସ୍ୱତନ୍ତ୍ର ମତରେ ସୁପାରିଶ କରାଯାଇଥିଲା ।

ଏହି ଅନୁନ୍ନତ ଅଞ୍ଚଳମାନ ବୁଲି ସେଠାକାର ଲୋକଙ୍କ ସମ୍ପର୍କରେ ନବବାବୁ ଯେଉଁ ପ୍ରତ୍ୟକ୍ଷ ଅନୁଭୂତି ଲାଭ କରିଥିଲେ, ତାହା ତାଙ୍କର ପରବର୍ତ୍ତୀ କାଳର କାର୍ଯ୍ୟକଳାପରେ ସାହାଯ୍ୟକାରୀ ହୋଇଥିଲା ।

ଷାଠିଏ ବର୍ଷ ତଳେ ଚାଷୀର ନିଜ ଜମି ବିକ୍ରି କରିବାର ସ୍ୱଚ୍ଛନ୍ଦ ଅଧିକାର ନଥିଲା ଓ କିଣୁଥିବା ଲୋକଙ୍କୁ ତାଙ୍କ ଖାତାରେ ସେ ଜମି ଅନ୍ତର୍ଭୁକ୍ତ ହେବାଲାଗି ଫିସ୍ ଦେବାକୁ ପଡୁଥିଲା । ତା'ର ନିଜ ଜମିରେ ଥିବା ଗଛ ଏବଂ ପୋଖରୀର ମାଛ ଉପରେ ଅଧିକାର ନଥିଲା ଶୁଣିଲେ ଏବକାର ଯୁବକମାନଙ୍କୁ ଆଶ୍ଚର୍ଯ୍ୟ ଲାଗିବ । ଓଡ଼ିଆ ସାହିତ୍ୟରେ 'ଟମ କକାଙ୍କ କୁଟୀର' ଭଳି ବିଖ୍ୟାତ ଉପନ୍ୟାସ ନାହିଁ; ଯହିଁରୁ ଏବର ତରୁଣତରୁଣୀମାନେ ଏସବୁ ବର୍ଣ୍ଣନା ପାଆନ୍ତେ । ଗୋପୀନାଥ ମହାନ୍ତି କୋରାପୁଟର ସାହୁକାର ଶୋଷଣ କଥା ଲେଖିଛନ୍ତି ସତ; କିନ୍ତୁ ଉତ୍ତର ଓଡ଼ିଶାର କଟକ ଜିଲ୍ଲାରେ ବି ଜମିଦାରମାନେ ଯେଉଁ ଅତ୍ୟାଚାର କରୁଥିଲେ, ସେ ସମ୍ପର୍କରେ ଆମର ସାହିତ୍ୟିକମାନେ ନୀରବ । ଠିକ୍ ସେହିପରି ଗଡ଼ଜାତ ଅତ୍ୟାଚାର ସମ୍ପର୍କରେ କୌଣସି ଉପନ୍ୟାସ ନାହିଁ । ଏହାର କାରଣ ହୋଇପାରେ ଯେ ଫକୀରମୋହନଙ୍କ ଠାରୁ ଆରମ୍ଭ କରି ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପର୍ଯ୍ୟନ୍ତ ସାହିତ୍ୟିକମାନେ ରାଜା ଓ ଜମିଦାରମାନଙ୍କର ଅନୁଗ୍ରହପ୍ରାର୍ଥୀ ଥିଲେ ।

କଟକ ଜିଲ୍ଲାର ଆଳି ରାଜା (ଜମିଦାର) ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଏଭଳି ଉତ୍ପାତ କରୁଥିଲେ ଯେ ବ୍ରିଟିଶ ସରକାର ବି ସେସବୁ ସହ୍ୟ କରିନପାରି ତାଙ୍କ ଜମିଦାରିକୁ କିଛି ବର୍ଷ ଲାଗି କୋର୍ଟ ଅଫ୍ ୱାର୍ଡ୍‌ସ୍‌କୁ ନେଇଯାଇଥିଲେ । ସେତକ ସମୟ ଅତିବାହିତ ହେବାପରେ ଯେତେବେଳେ ଜମିଦାର ରାଜ୍ୟ ଫେରିପାଇଲେ, ସେହି ଉପଲକ୍ଷେ କେତେକ କର୍ମଚାରୀ ଏକ ଦରିଦ୍ର ଲୋକର ୧୫ ବର୍ଷର ସୁନ୍ଦରୀ ଝିଅକୁ କିଛି ଟଙ୍କା ଦେଇ କିଣି ରାଜାଙ୍କୁ ଉପହାର ଦେଇଥିଲେ । ସେହି ଝିଅ ଉପରେ ଏଭଳି ଅତ୍ୟାଚାର ହେଲା ଯେ ସେ ମାସକ ମଧ୍ୟରେ ଯୌନ-ଯନ୍ତ୍ରଣା ସହିନପାରି ମରିଗଲା । ଆଳି ପୋଲିସ ତା ଉପରେ ଏକ ମକଦ୍ଦମା ଆରମ୍ଭ କଲେ । ସେ ମକଦ୍ଦମା ଲଢ଼ିବା ପାଇଁ ବାପର ସାମର୍ଥ୍ୟ ନଥିଲେ ବି ଘଟଣାଟି ପାଟନା ହାଇକୋର୍ଟ ପର୍ଯ୍ୟନ୍ତ ଯାଇଥିଲା । ପାଟଣା ହାଇକୋର୍ଟର ମୁଖ୍ୟ ବିଚାରପତି, ଏ ସମ୍ପର୍କରେ ତଳ କୋର୍ଟର ଏବଂ ସରକାରଙ୍କ ଗଲ୍‌ତିକୁ ନିନ୍ଦା କରିବା ସଙ୍ଗେସଙ୍ଗେ, ଯେଉଁ ଲୋକମାନେ ଏଭଳି ଉଦ୍ଦେଶ୍ୟରେ ନିଜର ଝିଅକୁ ବିକ୍ରି କରନ୍ତି, ସେମାନଙ୍କୁ ଭର୍ତ୍ସନା କରିଥିଲେ ।

ଓଡ଼ିଶା ବିଧାନସଭାରେ ୧୯୩୮ ମସିହା ଫେବୃଆରି ୨ ତାରିଖ ଦିନ ଏହି ବିଷୟ ଉପରେ ଆଲୋଚନା ଆରମ୍ଭ କରି ଗୋଦାବରୀଶ ମିଶ୍ର ପ୍ରଶାସନକୁ ନିନ୍ଦା କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଜାତିକୁ ବିଚାରପତିଙ୍କ ଭର୍ତ୍ସନାକୁ ମଧ୍ୟ ସମାଲୋଚନା କରିଥିଲେ । ନବବାବୁ ସେହି ପ୍ରସଙ୍ଗରେ କହିବାକୁ ଯାଇ ବିଚାରପତିଙ୍କ ଭର୍ତ୍ସନା ସମ୍ପର୍କରେ ଗୋଦାବରୀଶବାବୁଙ୍କ ସହିତ ଦ୍ୱିମତ ହୋଇ କହିଥିଲେ ଯେ ''ଏହା ଲଜ୍ଜାର କଥା ଯେ ବ୍ରିଟିଶ ରାଜତ୍ୱରେ, ପରାଧୀନତା ଫଳରେ, ଆମ୍ଭେମାନେ ଯେ କି ଅବସ୍ଥାରେ ଅଛୁ, ତାହା ଉପଲବ୍ଧି କରୁନାହୁଁ । ଜାତିର ମର୍ଯ୍ୟାଦା, ଇଜ୍ଜତ ଯେ ସରକାର ଦେଇଦେବ, ଏହା ଆଶା କରିବା ଠିକ୍ ନୁହେଁ । ଏହି କଥା ଅନ୍ୟ ସଭ୍ୟ ଦେଶରେ ହୋଇଥିଲେ, ବ୍ୟକ୍ତିଗତ ସମ୍ମାନ ରକ୍ଷା ପାଇଁ, ନାରୀର ଇଜ୍ଜତ ରକ୍ଷା ପାଇଁ ପୋଲିସ, ମାଜିଷ୍ଟ୍ରେଟ୍ କିମ୍ବା ସରକାରର ବିନା ସାହାଯ୍ୟରେ ଯେକୌଣସି ଲୋକ ସେଇଠି ଏଭଳି ଅତ୍ୟାଚାରୀ ରାଜାର ଜୀବନ ସୁଦ୍ଧା ନେଇଥାନ୍ତା । ନିଜର ଇଜ୍ଜତ, ସମ୍ମାନ, ପଡ଼ୋଶୀର ସମ୍ପତ୍ତି, ବିଶେଷକରି ସ୍ତ୍ରୀଲୋକର ଇଜ୍ଜତ ରକ୍ଷା କରିବାପାଇଁ ଆମ୍ଭମାନଙ୍କର ଯେଉଁ ବ୍ୟକ୍ତିଗତ ଅଧିକାର ଅଛି, ତାହା ଆମ୍ଭେମାନେ ବ୍ୟବହାର କରି ଜାଣୁନାହୁଁ ।

''ଏ ସମ୍ବନ୍ଧରେ Lahore High Courtର ଗୋଟିଏ Judgement ପ୍ରତି ମୁଁ ଆପଣମାନଙ୍କର ଦୃଷ୍ଟି ଆକର୍ଷଣ କରୁଛି । ସେ କ୍ଷେତ୍ରରେ ଏହା ହୋଇଥିଲା ଯେ, କୌଣସି caseରେ evidence ଦେବା ନିମିତ୍ତ ଜଣେ Police Officer ଗୋଟିଏ ଚୌକିଦାରକୁ ବାଧ୍ୟ କରିଥିଲେ ; ମାତ୍ର ସେ ସେପରି ସାକ୍ଷ୍ୟ ଦେବନାହିଁ ବୋଲି ମନା କରିବାରୁ Officerଙ୍କ ଦ୍ୱାରା ନିର୍ଯାତିତ ହୋଇଥିଲା । ନିର୍ଯାତନା ସହି ନ ପାରି ସେ ଚୌକିଦାର Police ଅଫିସରର

ପ୍ରାଣ ନେଇଥିଲା । ତଳ କୋର୍ଟର ହାକିମ ସେହି ଚୌକିଦାରକୁ ଫାଶୀ ହୁକୁମ ଦେଇଥିଲେ । ମାତ୍ର High Courtରେ ସେ ନିର୍ଦ୍ଦୋଷରେ ଖଲାସ ହେଲା । ଏହି Judgementରେ ମାନ୍ୟବର Chief Justice comment କରି କହିଥିଲେ ଯେ, ଏ ଦେଶରେ ବାସ୍ତବିକ ଲୋକମାନେ ଯେପରି Police କର୍ମଚାରୀଙ୍କ ଦ୍ୱାରା ନିର୍ଯାତିତ ହୁଅନ୍ତି, ତାହା ବଡ଼ ଦୁଃଖ ଏବଂ କ୍ଷୋଭର ବିଷୟ । ଆଜି ଯଦି ଏ ଦେଶରେ ଲୋକେ self-defenceର ମହତ୍ତ୍ୱ ବୁଝି, ପୁଲିସମାନଙ୍କର ଏ ନିନ୍ଦନୀୟ କାର୍ଯ୍ୟର ପ୍ରତିଶୋଧ ନିଅନ୍ତେ, ତାହାହେଲେ ବୋଧହୁଏ ପୁଲିସମାନେ ଭବିଷ୍ୟତରେ ଏପରି ନିଃସଙ୍କୋଚରେ ଅତ୍ୟାଚାର କରିବାକୁ ସାହସ କରନ୍ତେ ନାହିଁ । ଏପରି ଦାୟିତ୍ୱହୀନ ଅତ୍ୟାଚାର ଏ ଦେଶରେ ବିରଳ ନୁହେଁ । ଏହି ଯେ ଗୋଟିଏ instance ଦେଖାଗଲା, ଏହିପରି କେତେ ଘଟଣା ଯେ ପ୍ରମାଣ ଅଭାବରୁ publicଙ୍କ ଦୃଷ୍ଟିରେ ପଡୁନାହିଁ, Police Officers ନାମ ନେବା ସକାଶେ ଓ ନିଜର ଆତ୍ମବଡ଼ିମା ବଜାୟ ରଖିବା ସକାଶେ, କେତେକ ନିରୀହ ଲୋକଙ୍କୁ torture କରନ୍ତି, ତା'ର ସୀମା ନାହିଁ । କିନ୍ତୁ ସାଧାରଣ ଯଦି ଏହିପରି ନିଜର ବ୍ୟକ୍ତିଗତ ଅଧିକାର ବ୍ୟବହାର କରନ୍ତେ, ତେବେ Government ମଧ୍ୟ ତା'ର କର୍ତ୍ତବ୍ୟ ବୁଝିପାରନ୍ତା । ବର୍ତ୍ତମାନ responsible Government ହୋଇଅଛି, ବା କେତେଜଣ ଲୋକସାଧାରଣଙ୍କ ପ୍ରତିନିଧି ମନ୍ତ୍ରିତ୍ୱ ଗ୍ରହଣ କରିଛନ୍ତି ବୋଲି, ଏ ଅତ୍ୟାଚାର ନିରାକରଣ ଆଶା କରିବା ବିଡ଼ମ୍ବନା । ଲାହୋରର Chief Justice ବୋଧହୁଏ ଏହା ଉପଲବ୍ଧି କରିଥିବାରୁ କହିଛନ୍ତି ଯେ ଏହିପରି social darkness, ଯେଉଁଠାରେ ଲୋକମାନେ self-defenceର ମର୍ଯ୍ୟାଦା ଜାଣନ୍ତି ନାହିଁ, ସେଠାରେ Police କର୍ମଚାରୀମାନଙ୍କୁ ବିଶେଷ ସାବଧାନ ହେବାପାଇଁ କଡ଼ା instruction ଦେବା ଦରକାର ।

''ଆପଣମାନେ ଭାବିବେ ନାହିଁ ଯେ ଏହା ଗୋଟିଏମାତ୍ର solitary instance । Hon'ble Chief Justice କହିଛନ୍ତି "Men of his class" ଏହିପରି କାର୍ଯ୍ୟ କରିବା ସହଜ । Men of his classର ଅର୍ଥ ଯେ କେବଳ ଜମିଦାର, ମୁଁ ତାହା କହୁନାହିଁ, ଯେକୌଣସି କ୍ଷମତାଶାଳୀ ଲୋକ–ସେ ଜମିଦାର ହେଉ, Deputy Magistrate ହେଉ ବା Police Sub-Inspector ହେଉ । ନାନା କ୍ଷେତ୍ରରେ, ନାନା ସ୍ଥାନରେ, ଆମ୍ଭେମାନେ ପ୍ରଚାର କରିବାକୁ ଯାଇ ମଫସଲରେ ଦେଖୁଛୁଁ ଯେ ଯାହା ହାତରେ କୌଣସି ନା କୌଣସି କ୍ଷମତା ଅଛି, ସେ ଏହିପରି କ୍ଷମତାର ଅପବ୍ୟବହାର କରୁଛି । ଲୋକମାନଙ୍କର ସେମାନଙ୍କର ସମ୍ମାନରକ୍ଷା କରିବା ସକାଶେ ଶକ୍ତି ବା ସାହସ ନାହିଁ । ଏହା ଉପଲବ୍ଧି କରିବା ସଙ୍ଗେସଙ୍ଗେ ମୁଁ କହି ରଖିଛି ଯେ ବର୍ତ୍ତମାନ ଯେଉଁ ସରକାର ଲୋକମାନଙ୍କଠାରେ ଦାୟୀ, ଗରିବ ପ୍ରଜାଙ୍କର ଭୋଟ୍ ଉପରେ ଯେ ସରକାର ପ୍ରତିଷ୍ଠିତ, ତାଙ୍କର ଏ ବିଷୟରେ ଯଥେଷ୍ଟ କର୍ତ୍ତବ୍ୟ ଅଛି । ଅବଶ୍ୟ steel framed I.C.S. ବା ଅନ୍ୟାନ୍ୟ କର୍ମଚାରୀ, ଯାହାଙ୍କ appointment ବା

ଅନ୍ୟାନ୍ୟ ବିଷୟରେ ମନ୍ତ୍ରୀମାନଙ୍କର ହସ୍ତକ୍ଷେପ କରିବା ଅଧିକାର ନାହିଁ, British Governmentଙ୍କ Agent ସେମାନଙ୍କର ସ୍ୱାର୍ଥ ଜଗୁଥିଲେ ମଧ, ସେମାନଙ୍କ ଉପରେ ଦଣ୍ଡବିଧାନ କରିବାର ଉପାୟ ନଥିଲେ ମଧ, ସରକାର ଖୁବ୍ ଟାଣ ହୋଇ କାର୍ଯ୍ୟ କରନ୍ତୁ ।

''ମଫସଲର ଚାରିଆଡ଼େ ବୁଲି ଆମ୍ଭେମାନେ ଦେଖୁଛୁଁ ଯେ କେବଳ ସ୍ତ୍ରୀଲୋକଙ୍କ ଉପରେ ନୁହେଁ, ମହାଜନ ଓ ଜମିଦାରମାନେ, ଖାତକ ଓ ଚାଷୀଙ୍କ ଉପରେ ଯେପରି ଅତ୍ୟାଚାର କରନ୍ତି, ପୁଲିସ ସେଥିପ୍ରତି ଦୃଷ୍ଟି ଦିଅନ୍ତି ନାହିଁ । ସେମାନେ ଏହିପରି କ୍ଷମତାଶାଳୀ ଲୋକମାନଙ୍କର ଦୋଷ ପ୍ରତି ଦୃଷ୍ଟି ନଦେଲେ, ସରକାର exemplary punishment ଦିଅନ୍ତୁ, ଯେପରିକି ସେମାନେ ବୁଝିପାରିବେ; ସେମାନେ ପ୍ରକୃତରେ କାହାର ଚାକର ଏବଂ କାହା ପାଇଁ ରହିଛନ୍ତି ।''

ସେହି ୧୯୩୭ ଓ ୧୯୩୮ ମସିହାରେ, ମାଡ୍ରାସ ଇଷ୍ଟେଟ୍ ଲ୍ୟାଣ୍ଡ (ଓଡ଼ିଶା ଆମେଣ୍ଡମେଣ୍ଟ) ବିଲ୍ ୧୯୩୭, ଅଣାଯାଇ ଗଞ୍ଜାମ ଓ କୋରାପୁଟ ଜିଲ୍ଲାର ଚାଷୀଙ୍କୁ ଜମିଦାରଙ୍କ ଶୋଷଣରୁ ରକ୍ଷା କରାଯିବାର ଉଦ୍ୟମ ହୋଇଥିଲା । ଏହି ସମୟରେ ମାନ୍ଦ୍ରାଜ ସମେତ ସେ ଦୁଇ ଜିଲ୍ଲାରେ ପ୍ରଚଳିତ ଆଇନ ଅନୁସାରେ ଚାଷୀକୁ ତା' ଅମଳ ଫସଲରୁ ଅଧେ ଜମିଦାରଙ୍କୁ ଦେବାକୁ ହେଉଥିଲା । କିନ୍ତୁ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାର ପକ୍କି ମାହାଲ ଜମିଦାରିର ପ୍ରଜାଙ୍କୁ ନିର୍ଦ୍ଦିଷ୍ଟ ଖଜଣା ଦେବାକୁ ପଡୁଥିଲା । କଂଗ୍ରେସ ସରକାରଙ୍କ ପୂର୍ବୋକ୍ତ ଆଇନ ବଳରେ ଗଞ୍ଜାମ ଓ କୋରାପୁଟ ଜିଲ୍ଲାର ଚାଷୀମାନଙ୍କୁ, ଉତ୍ତର ଓଡ଼ିଶାର ଚାଷୀମାନଙ୍କ ଭଳି, ନିର୍ଦ୍ଦିଷ୍ଟ ପରିମାଣ ଖଜଣା ଦେବାକୁ ବ୍ୟବସ୍ଥା ହେଲା, ଯାହାକି ପୂର୍ବପ୍ରଚଳିତ ପ୍ରଥାଠାରୁ ଅନେକ କମ୍ ଥିଲା ।

ସେହିଭଳି ଉତ୍ତର ଓଡ଼ିଶାର ଚାଷୀମାନଙ୍କ ନିଜ ଜମିର ଗଛ ଓ ପୋଖରୀର ମାଛ ଉପରେ ଅବାଧ ଅଧିକାର ପ୍ରତିଷ୍ଠିତ ହେଲା, ଜମି ବିକ୍ରି କଲେ ଖାତାଫାଡ଼୍ ବାବଦ (ଦାଖଲ ଖାରଜ ରୋଷମ) ଦେୟ ଉଠିଗଲା । ଏହାଛଡ଼ା ସାହୁକାର (ମହାଜନ) ସୁଧରେ ତଳିତଳାନ୍ତ ହେଉଥିବା ଚାଷୀଙ୍କ ସୁରକ୍ଷା ଲାଗି ବ୍ୟବସ୍ଥା ହେଲା । ଏଥିରେ ବ୍ୟବସ୍ଥା ରହିଲା ଯେ ମହାଜନ ବା ସାହୁକାର ତା'ର ପ୍ରାପ୍ୟ ପାଇଁ ଜମିକୁ ମାମୁଲି ଦରରେ ନେଇପାରିବ ନାହିଁ । ସେ ଜମି ନିଲାମ ହୋଇ ଯେତେ ଟଙ୍କା ହେବ, ସେଥିରୁ ଋଣ ବାବଦ ଟଙ୍କା ବାଦ୍ ଯାଇ ଅବଶିଷ୍ଟ ଟଙ୍କା ଋଣୀ ଫେରିପାଇବ । ପୂର୍ବର ବ୍ୟବସ୍ଥା ଫଳରେ ବହୁ ଚାଷୀ କରଜ କରି ଭୂମିହୀନ ହୋଇଯାଉଥିଲେ ।

ଏହି ସମୟରେ ଲୋକେ କେତେ ଭୀତତ୍ରସ୍ତ ହୋଇ ରହିଥିଲେ, ତାହାର କେତେକ ଧାରଣା ନିମ୍ନ ବର୍ଣ୍ଣନାରୁ ଜାଣିହେବ । ୧୯୩୭ ନିର୍ବାଚନ ଲାଗି ଜବାହରଲାଲ ନେହେରୁ

କଂଗ୍ରେସ ଦଳର ପ୍ରଚାର ଲାଗି ଓଡ଼ିଶା ଆସିଥାନ୍ତି । ଖଲିକୋଟଠାରେ ତାଙ୍କର ଏକ ସଭା ହେବାର ଥାଏ । ରାଜାଙ୍କ ତରଫରୁ ଘୋଷଣା କରି ଦିଆଗଲା ଯେ ଉକ୍ତ ସଭାକୁ କେହି ନ ଯାଆନ୍ତୁ । ନେହେରୁ ପହଞ୍ଚିଲା ବେଳକୁ ସଭା ସ୍ଥଳରେ ଜଣେହେଲେ ଶ୍ରୋତା ନଥିଲେ ।

ସେହିପରି ୧୯୩୪ ମସିହାରେ ଗାନ୍ଧିଜୀଙ୍କର, ସମ୍ବଲପୁରଠାରୁ କଟକ ଆସିବା ବାଟରେ, ଅନୁଗୋଳଠାରେ ଏକ ସଭା ଲାଗି କାର୍ଯ୍ୟକ୍ରମ ଥାଏ । କିନ୍ତୁ ଅନୁଗୋଳର ଏସ୍.ଡି.ଓ. ରାୟବାହାଦୁର ଦୁର୍ଗାଚରଣ ଦାସଙ୍କର ହୁକୁମ ହେଲା ଯେ ଗାନ୍ଧି ଅନୁଗୋଳର କୌଣସି ସ୍ଥାନରେ ସଭା କରିପାରିବେ ନାହିଁ । ଏଣୁ କୌଣସି ସର୍ବସାଧାରଣ ସ୍ଥାନରେ ସଭା କରିବା ସମ୍ଭବପର ହେଲା ନାହିଁ । ଏହାସତ୍ତ୍ୱେ ସେଠାକାର ସ୍ୱାଧୀନଚେତା ବ୍ୟକ୍ତି ଓ ପରବର୍ତ୍ତୀ କାଳର ବିଧାୟକ ଗିରିଜାଭୂଷଣ ଦତ୍ତ ତାଙ୍କ ନିଜ ଜାଗାରେ ଗାନ୍ଧିଜୀଙ୍କ ସଭା କରାଇଥିଲେ ।

ଇଏତ ହେଉଛି ଜଣେ ବଡ଼ ଜମିଦାର ଓ ସେତେବେଳର ଏସ୍.ଡି.ଓ. ଙ୍କ ଭଳି ବଡ଼ ଅଫିସର୍‌ର କରାମତି ; କିନ୍ତୁ ସେମାନଙ୍କ ଖଜଣା ଆଦାୟକାରୀ ବ୍ୟକ୍ତିମାନଙ୍କ ପରାକ୍ରମ ବି କମ୍ ନଥିଲା ।

### କୃଷକ ଆନ୍ଦୋଳନ ଓ କୃଷକ :

ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ାଯିବାର ଠିକ୍ ପରେପରେ ୧୯୩୭ ସେପ୍ଟେମ୍ବର ୧ ତାରିଖ ଦିନ କଟକ ମ୍ୟୁନିସିପାଲିଟି ପଡ଼ିଆରେ ଏକ ବିରାଟ କୃଷକ ସମାବେଶ ହୋଇଥିଲା । ସେଠାକୁ ତତ୍କାଳୀନ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ବିଶେଷ ଭାବରେ ନିମନ୍ତ୍ରିତ ହୋଇ ଆସିଥାନ୍ତି । ସେହି ସଭାରେ କଂଗ୍ରେସର ନିର୍ବାଚନକାଳୀନ ଦାବିଗୁଡ଼ିକୁ କୃଷକସଂଘ ତରଫରୁ ପ୍ରଧାନମନ୍ତ୍ରୀଙ୍କ ଆଗରେ ପେଶ୍ କରାଯାଇଥିଲା । ସରକାର ସେଗୁଡ଼ିକୁ କାର୍ଯ୍ୟକାରୀ କରିବେ ବୋଲି ଅଙ୍ଗୀକାର ଦେଲେ । ଏହା ଥିଲା କୃଷକ ଆନ୍ଦୋଳନର ବିରାଟ ବିଜୟ । ଏହା ପରେପରେ ଓଡ଼ିଶା ବିଧାନସଭାରେ ଏ ସମ୍ପର୍କୀୟ ବିଲ୍‌ମାନ ଆସିବା କଥା ପ୍ରଚାରିତ ହୋଇଗଲା । ଏଥିରେ ବିଚଳିତ ହୋଇ ସେପ୍ଟେମ୍ବର ୨୨ ତାରିଖ ଦିନ ୩୦୦ ଜମିଦାର ଏହାକୁ ବିରୋଧ କରିବା ଲାଗି କଟକରେ ଏକ ସମ୍ମିଳନୀ କରିଥିଲେ ।

ଏହାରି ଜବାବରେ ୧୯୩୮ ଜାନୁଆରି ୧୩ ତାରିଖ ଦିନ ଓଡ଼ିଶା କୃଷକସଭା ବୋଲି ଏକ ନୂତନ ସଙ୍ଗଠନ ଗଢ଼ାଗଲା । କୃଷକ ଆନ୍ଦୋଳନକୁ ଆହୁରି ତେଜେଇବା ଲାଗି ସେତେବେଳକୁ ଏକ ସ୍ୱତନ୍ତ୍ର ପତ୍ରିକାର ଆବଶ୍ୟକତା ଦେଖାଦେଇଥିଲା । 'ସାରଥି' ତ ବହୁ ବର୍ଷ ପୂର୍ବରୁ ବନ୍ଦ ହୋଇଯାଇଥିଲା, ଏଣୁ ସେହିଦିନହିଁ ସାପ୍ତାହିକ 'କୃଷକ' ପତ୍ରିକା ଜନ୍ମ ନେଲା । ତାହା ପ୍ରଥମେ ପ୍ରଥମେ ସାରସ୍ୱତ ପ୍ରେସ୍‌ରେ ମୁଦ୍ରିତ ହେଉଥିଲା । ଏଣିକି 'କୃଷକ' ପତ୍ରିକା ଖାଲି ଚାଷୀମୂଲିଆ ଓ ସାଧାରଣ ଲୋକଙ୍କ ସଂଗ୍ରାମର ଆୟୁଧ ହେଲା ନାହିଁ, ଏହା

ହୋଇଉଠିଲା ଗଡ଼ଜାତ ମୁକ୍ତିସଂଗ୍ରାମର ମଶାଲ । ଗଡ଼ଜାତ ଆନ୍ଦୋଳନର ପୁରୋଧା ସାରଙ୍ଗଧର ଦାସ 'ନଣ୍ଡା ଦେହୁରୀ' ଛଦ୍ମ ନାମରେ ଗଡ଼ଜାତ ଅତ୍ୟାଚାରର କାହାଣୀ ସେହି 'କୃଷକ'ରେ ଅତି ଆକର୍ଷଣୀୟ ଭାଷାରେ ଲେଖୁଥିଲେ । ଏହାର ଭାଷା 'ସାରଥି' ଓ 'ଆଧୁନିକ'ର ଭାଷାଠାରୁ ହୋଇଗଲା ସମ୍ପୂର୍ଣ୍ଣ ଭିନ୍ନ–ପୂରାପୂରି ଲୋକଭାଷା । ଏଥିଲାଗି ଅର୍ଥର ଅଭାବ ବି ଥିଲା । ମାଳତୀ ଦେବୀ ୧-୮-୧୯୩୮ ତାରିଖରେ ହରିହର ମହାପାତ୍ରଙ୍କଠାରୁ ଏହି ଉଦ୍ଦେଶ୍ୟରେ ଟ୫୦୧ ଚାନ୍ଦା ପାଇଥିଲେ ବୋଲି ତାଙ୍କ ଆତ୍ମଜୀବନୀ 'ଜୀବନ ଓ ଜୀବିକା'ର ୨୫୧ ପୃଷ୍ଠାରେ ଲେଖାଅଛି । ତେବେ କୃଷକ ସଭାର ଲକ୍ଷାଧିକ ସଦସ୍ୟଙ୍କ ବାର୍ଷିକ ସଭ୍ୟଦେୟରୁ (ଏକଅଣା ମାତ୍ର–ସେକାଳରେ ଟଙ୍କାକର ଷୋହଳ ଭାଗରୁ ଏକଭାଗ) କୃଷକ ପତ୍ରିକା ସୁରୁଖୁରୁରେ ଚାଲିଲା । ତାହାର ସଭାପତି-ମଣ୍ଡଳୀରେ ରହିଲେ ଭଗବତୀ ପାଣିଗ୍ରାହୀ, ସାରଙ୍ଗଧର ଦାସ, ମାଳତୀ ଦେବୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଗୁରୁଚରଣ ପଟ୍ଟନାୟକ । ଭଗବତୀ ପାଣିଗ୍ରାହୀ ହେଲେ ମୁଖ୍ୟ ସମ୍ପାଦକ । ତାଙ୍କ ପରେ ମାଳତୀ ଦେବୀ ହୋଇଥିଲେ ମୁଖ୍ୟ ସମ୍ପାଦକ । (କମ୍ୟୁନିଷ୍ଟ ପାର୍ଟି ଅଲଗା ହୋଇଯିବା ପରେ ଏହା ବନ୍ଦ ହୋଇଯାଇଥିଲା । ଅଗଷ୍ଟ ଆନ୍ଦୋଳନର ବନ୍ଦୀମାନେ ୧୯୪୬ ମସିହାରେ ଜେଲ୍‌ରୁ ଆସିଲା ପରେ ଏହା କଂଗ୍ରେସ ସୋସାଲିଷ୍ଟମାନଙ୍କର ମୁଖପତ୍ର ଭାବରେ ପୁଣି ଜନ୍ମଲାଭ କରିଥିଲା ।)

କୃଷକ ଆନ୍ଦୋଳନ ଜୋର୍‌ସୋର୍ ଚାଲିବାରୁ କୃଷକ ସଭାର ଅଫିସ ଇତିମଧ୍ୟରେ ନବକୃଷ୍ଣ ଚୌଧୁରୀଙ୍କ ବାଖରାବାଦ ଘରକୁ ଉଠିଆସିଥାଏ ଓ ସେହି ଘରହିଁ ହୋଇଉଠିଲା ଓଡ଼ିଶା ଗଡ଼ଜାତ ଆନ୍ଦୋଳନର ପ୍ରାଣକେନ୍ଦ୍ର ।

## କୃଷକ ଆନ୍ଦୋଳନରୁ ଗଡ଼ଜାତ ଆନ୍ଦୋଳନ :

ଏସବୁ ହେଉଛି ୧୯୩୩ରୁ ୧୯୪୬ ମସିହା ବେଳର ଓଡ଼ିଶାରେ ଘଟିଥିବା ଘଟଣା । ବ୍ରିଟିଶ ସରକାରଙ୍କ ପ୍ରତ୍ୟକ୍ଷ ଶାସନରେ ଥିବା ଅଞ୍ଚଳରେ ଏଭଳି ପରିସ୍ଥିତି ଥିବା ସ୍ଥଳେ ଅଖଣ୍ଡ କ୍ଷମତାଧାରୀ ଗଡ଼ଜାତର ରାଜାମାନଙ୍କର କେତେ ପ୍ରତିପତ୍ତି ଥିବ ଏବଂ କେତେ ଶୋଷଣ ଓ ଅତ୍ୟାଚାର ହେଉଥିବ, ତାହା କଳ୍ପନା କରିହେବ ।

ସେତେବେଳେ ଓଡ଼ିଶାର ୬ଟି ଜିଲ୍ଲା ଛଡ଼ା ୨୬ଟି ଗଡ଼ଜାତ ଥିଲା । ସେଗୁଡ଼ିକ ମଧ୍ୟରୁ ଅନେକ କଟକ, ପୁରୀ, ବାଲେଶ୍ୱର ଜିଲ୍ଲାକୁ ଲାଗିଥାଏ । ଏହି ଜିଲ୍ଲାଗୁଡ଼ିକୁ ମୋଗଲବନ୍ଦୀ ଅଞ୍ଚଳ କୁହାଯାଉଥିଲା । ଏହି ମୋଗଲବନ୍ଦୀ ଅଞ୍ଚଳର ଜମିଦାରମାନଙ୍କ ବିରୋଧରେ ଯେଉଁ ଆନ୍ଦୋଳନ ଚାଲିଥିଲା, ସେସବୁର ପ୍ରଭାବ ଆଖପାଖ ଗଡ଼ଜାତମାନଙ୍କରେ ପଡୁଥିଲା । ସେତେବେଳକୁ କଟକ ଖାଲି ବ୍ରିଟିଶ ଶାସନାଧୀନ ଓଡ଼ିଶାର କେନ୍ଦ୍ରସ୍ଥଳୀ ନଥିଲା, ଏହା ଥିଲା ସମଗ୍ର ଓଡ଼ିଶାର ରାଜନୀତି, ଶିକ୍ଷା ଓ ସଂସ୍କୃତିର କେନ୍ଦ୍ରସ୍ଥଳୀ ।

ଅନେକ ଗଡ଼ଜାତରେ ହାଇସ୍କୁଲ ନଥିବାରୁ ଗଡ଼ଜାତ ରାଜା ଓ ରାଜବଂଶୀୟମାନଙ୍କର ପିଲାମାନଙ୍କ ଛଡ଼ା ସ୍ୱଚ୍ଛଳ ବ୍ୟକ୍ତିମାନଙ୍କର ପିଲାମାନେ କଟକରେ ପାଠ ପଢୁଥିଲେ । ସେହି କଟକ ସହର କୃଷକ ଆନ୍ଦୋଳନର କେନ୍ଦ୍ରସ୍ଥଳ ହୋଇଥିବାରୁ ଗଡ଼ଜାତମାନଙ୍କରେ ଯେଉଁସବୁ ଶୋଷଣ ଓ ଅତ୍ୟାଚାର ହେଉଥିଲା, ତାହା ବିରୋଧରେ କଟକରେ ସଭାସମିତିମାନ ହେଉଥିଲା ଏବଂ ଏଠାକାର ସଭାସମିତିର ବିବରଣୀ ଗଡ଼ଜାତର ଲୋକେ ଜାଣିବାକୁ ପାଉଥିଲେ । ଏହାର ବହୁ ପୂର୍ବରୁ ୧୯୨୧ ଅସହଯୋଗ ଆନ୍ଦୋଳନ ଡାକରାରେ ଗଡ଼ଜାତମାନଙ୍କ ମଧ୍ୟରୁ କେନ୍ଦୁଝରରେ ଏକ ଶୋଭାଯାତ୍ରା କରିଥିବା ଯୋଗୁଁ ୧୬-୫-୧୯୨୧ ତାରିଖରେ ମହନ୍ତ ଶ୍ରୀ ହେମ ତ୍ରିପାଠୀ ଆଦି ନଅଜଣ ଏକବର୍ଷରୁ ବାରବର୍ଷ ପର୍ଯ୍ୟନ୍ତ ସଶ୍ରମ କାରାବାସ ଭୋଗିଥିଲେ । ଗାନ୍ଧିଜୀଙ୍କ ଲବଣ ସତ୍ୟାଗ୍ରହର ବାର୍ତ୍ତା ଓ ଏହାର ସାଫଲ୍ୟ ଗଡ଼ଜାତ ଲୋକଙ୍କ କାନରେ ପଡ଼ିଥିଲା । ୧୯୩୭ ମସିହାରେ, ଓଡ଼ିଶାରେ କଂଗ୍ରେସ ସରକାର ଗଢ଼ାଯିବା ପରେ, ଓଡ଼ିଶାରେ ଗଡ଼ଜାତ ଆନ୍ଦୋଳନ ତେଜିଥିଲା । ଏହି ସମୟରେ ଭାରତବର୍ଷର ଅନ୍ୟାନ୍ୟ ଦେଶୀୟ ରାଜ୍ୟରେ ବି ବ୍ୟାପକ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ଓଡ଼ିଶାର ମୋଗଲବନ୍ଦୀ ଚାଷୀଙ୍କର ଦାବି ଓଡ଼ିଶା ସରକାର ଗ୍ରହଣ କରିନେବାରୁ ଓ ଗଡ଼ଜାତମାନଙ୍କୁ ଲାଗି କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲା ଥିବାରୁ, ପାଖ ଗଡ଼ଜାତମାନଙ୍କରେ ନୂତନ ଜାଗରଣ ଦେଖାଦେଲା । ଆନ୍ଦୋଳନକାରୀମାନେ, ଅତ୍ୟାଚାରରେ ଅତିଷ୍ଠ ହେଲାବେଳେ, ଏହି ମୋଗଲବନ୍ଦୀ ଜିଲ୍ଲାମାନଙ୍କରେ ଆଶ୍ରୟ ନେଉଥିଲେ ଏବଂ ଏସବୁ ଜିଲ୍ଲାର ନେତାମାନେ ଯାଇ ସେଠାକାର ଆନ୍ଦୋଳନକୁ ନେତୃତ୍ୱ ଦେଉଥିଲେ ।

କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଠନ ହେବା ପୂର୍ବରୁ ସର୍ବଭାରତୀୟ ସ୍ତରରେ କମ୍ୟୁନିଷ୍ଟ ପାର୍ଟି ଗଠିତ ହୋଇଥାଏ । ଇଂଲଣ୍ଡରେ ଅଧ୍ୟୟନ କରୁଥିବା ଭାରତୀୟ ଛାତ୍ରମାନେହିଁ ଏହାର ବାର୍ତ୍ତା ନେଇ ଆସନ୍ତି । ସେମାନେ ପ୍ରଥମେ ଏହାକୁ ଏକ ଗୁପ୍ତ ସଙ୍ଗଠନ ଜରିଆରେ ଚଳାଇଥିଲେ ଏବଂ ଭାରତୀୟ ପରିପ୍ରେକ୍ଷୀରେ ହଠାତ୍ ସ୍ୱତନ୍ତ୍ର ଏକ କମ୍ୟୁନିଷ୍ଟ ସଙ୍ଗଠନ ନଗଢ଼ି କଂଗ୍ରେସ ସୋସାଲିଷ୍ଟ ପାର୍ଟି ମଧ୍ୟରେ ରହି କାର୍ଯ୍ୟ କରିବାର କୌଶଳ ଗ୍ରହଣ କରିଥିଲେ । ସେହି କୌଶଳ ଅବଲମ୍ବନ କରି ସେମାନେ ପ୍ରଥମେ ଦଳର ପ୍ରାଣନାଥ ପଟ୍ଟନାୟକ ଓ ମୋହନ ଦାସଙ୍କୁ ନିଜ ଦଳଭୁକ୍ତ କରିଥିଲେ ଏବଂ ଓଡ଼ିଶା କୃଷକ ଆନ୍ଦୋଳନ ସହିତ ସାମିଲ ହୋଇ ନିଜର ପ୍ରଭାବ ବଢ଼ାଇଚାଲିଥିଲେ । ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ତୁଙ୍ଗନେତା ପ୍ରାଣନାଥ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ ତଥା ଶରତ ପଟ୍ଟନାୟକ ସୋସାଲିଷ୍ଟ ନରେନ୍ଦ୍ର ଦେବଙ୍କର ଶିଷ୍ୟ । ନରେନ୍ଦ୍ର ଦେବ ଓ ଜୟପ୍ରକାଶ ନାରାୟଣ ଏବଂ ନବକୃଷ୍ଣ ଚୌଧୁରୀ ଆଦି ସୋସାଲିଷ୍ଟ ମାର୍କ୍ସବାଦ ଦ୍ୱାରା ଅତିରିକ୍ତ ଭାବରେ ପ୍ରଭାବିତ

ହୋଇଥିବାରୁ ସେମାନଙ୍କ ଶିଷ୍ୟତ୍ୱ ନେବା ସେତେବେଳେ କମ୍ୟୁନିଷ୍ଟମାନଙ୍କ ପାଇଁ ଅସୁବିଧାଜନକ ନଥିଲା । ଏଣୁ ନବକୃଷ୍ଣ ଚୌଧୁରୀ ଓଡ଼ିଶା କମ୍ୟୁନିଷ୍ଟ ଦଳର ସ୍ରଷ୍ଟା ଭଗବତୀ ପାଣିଗ୍ରାହୀ, ପ୍ରାଣନାଥ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ବନମାଳୀ ଦାସ ତଥା ବୈଷ୍ଣବ ପଟ୍ଟନାୟକଙ୍କର ରାଜନୀତିକ ଅଗ୍ରଜ କହିଲେ ଭୁଲ୍ ହେବନାହିଁ । ବାଖରାବାଦରେ ଗୋକୁଳାନନ୍ଦ ଚୌଧୁରୀଙ୍କ କୋଠାର ବାରଣ୍ଡାରେ ହିଁ ଛାତ୍ରସଂଘର ବୈଠକ ବସେ, ଯାହାକି ପରବର୍ତ୍ତୀ କାଳରେ କମ୍ୟୁନିଷ୍ଟ ଦଳର ଛାତ୍ର ସାମ୍ମୁଖ୍ୟ ହେଲା । କମ୍ୟୁନିଷ୍ଟମାନଙ୍କ ତରଫରୁ ଯେଉଁ 'ନବଯୁଗ ସାହିତ୍ୟ ସଂସଦ' ପ୍ରତିଷ୍ଠିତ ହୋଇଥିଲା, ନବକୃଷ୍ଣ ଚୌଧୁରୀ ବି ଥିଲେ ତାହାର ଅନ୍ୟତମ ପ୍ରୋତ୍ସାହନଦାତା । ୧୯୩୫ ମସିହାରେ କଟକରେ ନବଯୁଗ ସାହିତ୍ୟ ସଂସଦର ଉଦ୍‌ଘାଟନ ଦିନ ମାଳତୀ ଦେବୀ ଅନନ୍ତ ପଟ୍ଟନାୟକଙ୍କ ରଚିତ ଉଦ୍‌ବୋଧନୀ ସଙ୍ଗୀତ

'ନବୀନ ଯୁଗର ତରୁଣ ଜାଗରେ,
ଜାଗ ବନ୍ଧନହରା,
ବକ୍ଷଶୋଣିତ ଲକ୍ଷ ଜୀବନେ
ଖେଳାଅ ଆଲୋକ-ଧାରା ।'

ଗାନ କରିଥିଲେ ଏବଂ 'ଆଧୁନିକ'ରେ ନବକୃଷ୍ଣ ଚୌଧୁରୀଙ୍କର ଦୁଇଟି ଲେଖା ବି ପ୍ରକାଶିତ ହୋଇଥିଲା । ଏହାଛଡ଼ା ଅନନ୍ତ ପଟ୍ଟନାୟକ ଓ ଗୁରୁଚରଣ ପଟ୍ଟନାୟକ, ନବକୃଷ୍ଣ ଚୌଧୁରୀଙ୍କ ସମ୍ପର୍କୀୟ ଭାବରେ, ପିଲାଦିନୁ ନବବାବୁଙ୍କର ଥିଲେ ଅତି ଆପଣାର । ନବବାବୁ ଗୁରୁଚରଣ ପଟ୍ଟନାୟକଙ୍କୁ ତାଙ୍କ ଡାକ ନାଁ 'ବାଉ' ବୋଲି ଡାକୁଥିଲେ । 'ସାରଥି' ପତ୍ରିକାରେ ଅନ୍ୟମାନଙ୍କ ମଧ୍ୟରେ ଏ ଦୁଇଭାଇଙ୍କ ଲେଖା ବାହାରୁଥିଲା । ଓଡ଼ିଶାର ଗଡ଼ଜାତ ଆନ୍ଦୋଳନ ଯେଉଁ ନୀଳଗିରିରୁ ଆରମ୍ଭ ହୋଇଥିଲା, ତାହାର ମୁଖ୍ୟ ବନମାଳୀ ଦାସ, ବୃନ୍ଦାବନ ଷଡ଼ଙ୍ଗୀ, ପ୍ରାଣବନ୍ଧୁ ଅଗସ୍ତି, ଗିରିଧାରୀ ପଣ୍ଡା ଓ ଚକ୍ରଧର ରଥ, ସମସ୍ତେ ବାଖରାବାଦର କୋଠାରୁ ନିର୍ଦ୍ଦେଶ ନେଉଥିଲେ । ଆନ୍ଦୋଳନ ସଂଘର୍ଷ ଆଡ଼କୁ ଯିବାବେଳେ ସେମାନେ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କଠାରୁ ପ୍ରୋତ୍ସାହନ ତଥା ସହାୟତା ପାଇଥିଲେ ।

୧୯୩୨ ମସିହାରୁ ନୀଳଗିରିର ଅଯୋଧ୍ୟା ଗ୍ରାମକୁ କେନ୍ଦ୍ର କରି ସେଠାକାର କେତେକ ଯୁବକ 'ନୀଳଗିରି ଯୁବକ ସଖା ସମିତି' ନାମକ ସଙ୍ଗଠନ ଗଢ଼ି ଗାନ୍ଧିଜୀଙ୍କର କେତେକ ରଚନାତ୍ମକ କାର୍ଯ୍ୟ କରୁଥିଲେ । ୧୯୩୮ ଏପ୍ରିଲ ମାସରେ ନୀଳଗିରି ଆନ୍ଦୋଳନର ବନମାଳୀ ଦାସ ଓ ଅନ୍ୟମାନେ ଏହି 'ନୀଳଗିରି ଯୁବକ ସଖା ସମିତି' ସହ ଯୋଗସୂତ୍ର ସ୍ଥାପନ କରି ସେହିବର୍ଷ ମଇ ପହିଲାଦିନ ନୀଳଗିରି ରାଜାର ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ଫଳରେ ଚୈତନ୍ୟ ମିଶ୍ର ଓ ପ୍ରାଣବନ୍ଧୁ ଅଗସ୍ତି ଗିରଫ ହୋଇଗଲେ । ଏମାନଙ୍କ

ଗିରଫର ପ୍ରତିବାଦରେ ମଇ ୨୧ ଓ ୨୩ ତାରିଖରେ ଉପରୋକ୍ତ 'ଯୁବକ ସଖା ସମିତି' ଆଇନ୍ ଅମାନ୍ୟ ଆନ୍ଦୋଳନ କରିଥିଲେ । ଏହି ଆନ୍ଦୋଳନ ସାରା ଓଡ଼ିଶାର ଦୃଷ୍ଟି ଆକର୍ଷଣ କରିଥିଲା । ସେତେବେଳକୁ ଓଡ଼ିଶା ଗଡ଼ଜାତ ପ୍ରଜାମଣ୍ଡଳ ଗଢ଼ାସରିଥାଏ । ଏହି ଆନ୍ଦୋଳନ ଏପରି ବିସ୍ଫୋରକ ଅବସ୍ଥାକୁ ଯାଇଥିଲା ଯେ ତାହାକୁ ସମ୍ଭାଳି ନଥିଲେ ବହୁ ଧନଜୀବନ ନଷ୍ଟ ହୋଇଥାନ୍ତା । ଠିକ୍ ଏହି ସମୟରେ ହରେକୃଷ୍ଣ ମହତାବ ଓ ସାରଙ୍ଗଧର ଦାସ ଆନ୍ଦୋଳନ ବନ୍ଦ ରଖି ଆଲୋଚନା ଜରିଆରେ ସମାଧାନ ପାଇଁ ଆନ୍ଦୋଳନକାରୀଙ୍କୁ ରାଜି କରାଇଥିଲେ । ନୀଳଗିରିରେ ପ୍ରଜାମଣ୍ଡଳ ଗଢ଼ାଗଲା ଓ କୈଳାସଚନ୍ଦ୍ର ମହାନ୍ତି ଓ ବନମାଳୀ ଦାସ ତା'ର ସଭାପତି ଏବଂ ସମ୍ପାଦକ ରହିଲେ । କଂଗ୍ରେସ ଦଳ ତରଫରୁ ଦେଶୀୟ ରାଜ୍ୟମାନଙ୍କରେ (ଗଡ଼ଜାତ ରାଜ୍ୟରେ) ଆନ୍ଦୋଳନ ନକରିବାକୁ ନିର୍ଦ୍ଦେଶ ଥିଲେ ବି ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ଗୌରାଙ୍ଗ ଦାସ ଓ ସାରଙ୍ଗଧର ଦାସ ଆଦି ତାହା ଅମାନ୍ୟ କରି ଗଡ଼ଜାତ ମୁକ୍ତି ଆନ୍ଦୋଳନକୁ ନେତୃତ୍ୱ ଦେଇଥିଲେ ।

ଗଡ଼ଜାତମାନଙ୍କରେ ନାନା ପ୍ରକାର ବେଠି, ଭେଟି ଓ ମାଗଣ ବିରୁଦ୍ଧରେ ନୀଳଗିରିର ଲୋକେ ପୂର୍ବରୁ ଆନ୍ଦୋଳନ କରୁଥିଲେ । ଏହି ରାଜିନାମା କାଳରେ ନୀଳଗିରି ରାଜାଙ୍କ ସମ୍ମାନ ରକ୍ଷା ଲାଗି ଦଶହରା ଭେଟି, ଶିକାର ସମୟରେ ବେଠି ମାଗଣ (ବାଧ୍ୟତାମୂଳକ ସାହାଯ୍ୟ), ରାଜାଙ୍କ ପୁଅଝିଅଙ୍କ ବିବାହ ପାଇଁ ମାଗଣ ଓ କେତେକ ବିଶେଷଧରଣର ଉନ୍ନୟନମୂଳକ କାମ (ରାସ୍ତା ଆଦି) ଲାଗି ବେଠି ପାଇଁ ରାଜି ହୋଇଯିବା ଲାଗି ହରେକୃଷ୍ଣ ମହତାବ ପ୍ରସ୍ତାବ ଦେଇଥିଲେ । କିନ୍ତୁ ଯୁବଗୋଷ୍ଠୀଙ୍କ ବିରୋଧ ଫଳରେ ତାହା ଗୃହୀତ ହୋଇନଥିଲା । ଏହାଫଳରେ ମହତାବ୍‌ବାବୁ ବିଫଳ ମନରେ ବାଲେଶ୍ୱର ଫେରିଯାଇଥିଲେ । କିନ୍ତୁ ପରେ ସେ ସମୟର ପଲିଟିକାଲ ଏଜେଣ୍ଟ୍ ଏବଂ ବାଲେଶ୍ୱର କଲେକ୍ଟରଙ୍କ ମିଳିତ ଆଲୋଚନା ଫଳରେ ବେଠି, ଭେଟି ଓ ଶିକାର ସମୟର ବେଠି ପ୍ରତ୍ୟାହାର କରିନିଆ-ହୋଇଥିଲା । ଏହି କ୍ଷେତ୍ରକୁ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀ ସିଧା ନଯାଇଥିଲେ ବି ଆନ୍ଦୋଳନକାରୀଙ୍କ ସହିତ ସଂଯୋଗ ରକ୍ଷା କରୁଥିଲେ ଓ ଆବଶ୍ୟକ ନିର୍ଦ୍ଦେଶ ଦେଉଥିଲେ । ଏହି ଆନ୍ଦୋଳନ ପରେ ୧୯୩୮ରୁ ୧୯୪୮ ମସିହା ପର୍ଯ୍ୟନ୍ତ ନୀଳଗିରି ପ୍ରଜାମଣ୍ଡଳ ଆହୁରି ବ୍ୟାପକ ହୋଇ ଲୋକଙ୍କର ବିଭିନ୍ନ ସମସ୍ୟାରେ ସମ୍ପୃକ୍ତ ହୋଇଥିଲା ଏବଂ ରାଜାଙ୍କ ତରଫରୁ ଉତ୍ପାତ କମିଯାଇଥିଲା ।

୧୯୪୭ ମସିହାରେ ଦେଶ ସ୍ୱାଧୀନ ହେଲା ପରେ ନୀଳଗିରି ରାଜା ହାଇଦ୍ରାବାଦ ନିଜାମଙ୍କ ଢଙ୍ଗରେ ସ୍ୱତନ୍ତ୍ରତା ଘୋଷଣା କରି ଆଦିବାସୀ ଓ ଅଣଆଦିବାସୀଙ୍କ ମଧ୍ୟରେ ଦଙ୍ଗାର ସୂତ୍ରପାତ କରିଥିଲେ । ଏହା ବିରୋଧରେ ନୀଳଗିରି ପ୍ରଜାମଣ୍ଡଳ ଓ କମ୍ୟୁନିଷ୍ଟ ପାର୍ଟି ପ୍ରବଳ ପ୍ରତିରୋଧ କରିଥିଲେ । ସେତେବେଳକୁ କମ୍ୟୁନିଷ୍ଟମାନେ ଖୋଲାଖୋଲି ଅଲଗା ଦଳ

ହୋଇସାରିଥାନ୍ତି । ଏଣୁ କମ୍ୟୁନିଷ୍ଟ କର୍ମୀ ଓ ପ୍ରଜାମଣ୍ଡଳ କର୍ମୀମାନଙ୍କ ମଧ୍ୟରେ କିଛି ପରିମାଣରେ ତିକ୍ତତା ଥିଲେ ମଧ୍ୟ, ମହତାବବାବୁ ଓ ନବବାବୁଙ୍କ ପ୍ରଚେଷ୍ଟାରେ, ତାହାକୁ ଏଡ଼ାଇ ଦିଆଯାଇଥାଏ ।

ଏଭଳି ପରିସ୍ଥିତିରେ ବ୍ରହ୍ମପୁର ଗାଁଠାରୁ ଏକକିଲୋମିଟର ଦୂରରେ କମ୍ୟୁନିଷ୍ଟମାନେ ଧନୁଶର, ଖଣ୍ଡା, ଠେଙ୍ଗା ଓ ଅଳ୍ପ କେତୋଟି ବୋମା ନେଇ ଅସ୍ତ୍ରଶସ୍ତ୍ରସୁସଜ୍ଜିତ ରାଜଭକ୍ତମାନଙ୍କ ସାମନାସାମନି ହୋଇଥାନ୍ତି । ସେହି ସମୟକୁ ରାଜସ୍ୱ ମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀ ସେଠାରେ ପହଞ୍ଚିଲେ । ସେମାନଙ୍କ ପରାମର୍ଶରେ ସ୍ଥାନୀୟ କଂଗ୍ରେସ ନେତା କାଶୀନାଥ ବେହେରାଙ୍କ କାର୍ତ୍ତିଜ ବନ୍ଧୁକଟି କମ୍ୟୁନିଷ୍ଟମାନଙ୍କୁ ଦିଆଯାଇଥିଲା । ଗୋଟିଏ ବନ୍ଧୁକ ବଡ଼ କଥା ନଥିଲା । କଂଗ୍ରେସ ଲୋକଙ୍କ ସହଯୋଗ ଫଳରେ ଦୁଇଦିନ ଲଢ଼େଇ ଚାଲିଲା । ଦ୍ୱିତୀୟ ଦିନ ମାଳତୀ ଦେବୀ ରଣଚଣ୍ଡୀ ଭାବରେ ଏକାକୀ, ଧନୁଶରଧାରୀ 'କଳାପିଠିଆ' କୁହାଯାଉଥିବା ଆଦିବାସୀଙ୍କ ସାମନାକୁ ଚାଲିଯାଇ ତାଙ୍କ ନେତା ସାନ୍ଧିଆ ସିଂକୁ ଆହ୍ୱାନ କଲେ । ଜଣେ ନିରସ୍ତ୍ର ସ୍ତ୍ରୀଲୋକର ଉଗ୍ରମୂର୍ତ୍ତି ଦେଖି ଆଦିବାସୀମାନେ, କେଜାଣି କାହିଁକି ପଛଘୁଞ୍ଚା ଦେଲେ । ରାଜପକ୍ଷ ଛିନ୍ନଛତ୍ର ହୋଇଗଲେ । ଭାରତ ସରକାର ଓଡ଼ିଶା ସରକାରଙ୍କ ଜରିଆରେ ୧୯୪୭ ନଭେମ୍ବର ମାସରେ ନୀଳଗିରି ଶାସନ ହାତକୁ ନେଲେ । ଏହା ଥିଲା ଭାରତବର୍ଷର ଗଡ଼ଜାତ ଶାସନ ବିଲୋପର ଅୟମାରମ୍ଭ । ଏ ସମ୍ପର୍କରେ ନୀଳମଣି ରାଉତରାୟ ତାଙ୍କ 'ସ୍ମୃତି ଓ ଅନୁଭୂତି' ବହିର ୧୮୯ ପୃଷ୍ଠାରେ ନୀଳଗିରି ଦଖଲ ସମ୍ପର୍କରେ ମହତାବଙ୍କ ଦୃଢ଼ ଭୂମିକା କଥା ଯାହା ଉଲ୍ଲେଖ କରୁଛନ୍ତି, ତାହା ଅନେକାଂଶରେ ସତ୍ୟ; କିନ୍ତୁ ଏ ସମ୍ପର୍କରେ ବିଶିଷ୍ଟ ସାମ୍ବାଦିକ ଦୁର୍ଗା ଦାସ India From Curzon to Nehru ପୁସ୍ତକରେ ଯାହା ଉଲ୍ଲେଖ କରିଛନ୍ତି ଯେ 'Merger of smaller States began in Orissa by accident', ତାହା ବାସ୍ତବତାଠାରୁ ଭିନ୍ନ । ଗଡ଼ଜାତର ରାଜାମାନଙ୍କୁ ଏଥିପାଇଁ ବାଧ କରିବା ଲାଗି ଶହଶହ ସହିଦ ହୋଇଛନ୍ତି ଓ ହଜାରହଜାର ଲୋକ ନିର୍ଯାତିତ ହୋଇଛନ୍ତି ଏବଂ ସର୍ବସ୍ୱାନ୍ତ ହୋଇଛନ୍ତି ।

ନୀଳଗିରି ଆନ୍ଦୋଳନଠାରୁ ଢେଙ୍କାନାଳ ଆନ୍ଦୋଳନ ଥିଲା ଆହୁରି ବ୍ୟାପକ ଏବଂ ଐତିହାସିକ । ୧୯୨୬ ମସିହାରେ ଶଙ୍କରପ୍ରତାପ ଶାସନଭାର ଗ୍ରହଣ କରିବା ପରେ ପ୍ରଜାମାନଙ୍କ ଉପରେ ଏପରି ଅତ୍ୟାଚାର ହେଲା ଯେ ଓଡ଼ିଶା ସାରା 'ଢେଙ୍କାନାଳୀ ଶାସନ' ଏକ ପ୍ରବାଦ ହୋଇଗଲା । ସେସବୁ ଅତ୍ୟାଚାର ଓ ଶୋଷଣର ବିଶଦ ବିବରଣୀ ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ ଓ ଗଡ଼ଜାତ ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର ବ୍ରଜକିଶୋର ଧଳ ତାଙ୍କ 'ଭୁଲିବୁ ନାହିଁ' ବହିରେ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ୧୯୩୮ ଜୁନ୍ ମାସରେ କଟକ ଟାଉନ୍ ହଲ୍‌ରେ ଓଡ଼ିଶା ଗଡ଼ଜାତମାନଙ୍କର ପ୍ରଥମ ପ୍ରଜା ସମ୍ମିଳନୀ ଅନୁଷ୍ଠିତ

ହୋଇଥିଲା । ପଣ୍ଡିତ ସୀତାରାମାୟା ଉକ୍ତ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ । ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ ଓ ଭଗବତୀ ପାଣିଗ୍ରାହୀଙ୍କ ନେତୃତ୍ୱରେ ସେହି ସମ୍ମିଳନୀର ଆୟୋଜନ ହୋଇଥିଲା । ଏହାର ତିନିମାସ ପରେ ସେପ୍ଟେମ୍ବର ୧ ଓ ୨ ତାରିଖରେ କଟକ ଓ ଢେଙ୍କାନାଳ ଜିଲ୍ଲା ସୀମାରେ ଜେନାପୁରଠାରେ ଏକ ବିରାଟ କୃଷକ ସମାବେଶ ହୋଇଥିଲା । ସେଥିରେ ଢେଙ୍କାନାଳରୁ ପ୍ରାୟ ଦଶହଜାର ଲୋକ ଯୋଗଦେଇଥିଲେ । ପ୍ରଥମ ଦିନ ମୋଗଲବନ୍ଦୀର ଜମିଦାର ଓ ମହାଜନମାନଙ୍କର କୃଷକମାନଙ୍କ ଉପରେ ଚାଲିଥିବା ଅନ୍ୟାୟ ଅତ୍ୟାଚାର, ଜୁଲମ, ବେଆଇନ ପାଉଣା ଆଦାୟ, ବେଠି, ଭେଟି ବିଷୟ ଓ ଦାଖଲଖାରଜ ରୋକ୍ଷମ ଉଠିବା ଏବଂ ଚାଷୀକୁ ନିଜ ଜମିର ଗଛ ଓ ପୋଖରୀର ମାଛ ଉପରେ ଅଧିକାର ସାବ୍ୟସ୍ତ ବିଷୟମାନ ଆଲୋଚିତ ହୋଇଥିଲା । ଦ୍ୱିତୀୟ ଦିନ ଆଲୋଚନା ହେବାର ଥିଲା, ଢେଙ୍କାନାଳ ପ୍ରଜାମାନଙ୍କର ସମସ୍ୟା, ସେମାନଙ୍କର ଦାବି ତଥା ଢେଙ୍କାନାଳ ପ୍ରଜାମଣ୍ଡଳ ଗଠନ କଥା । ସେଦିନ ସେହିଠାରେ ହିଁ ବିଧିବଦ୍ଧ ଭାବରେ 'ଢେଙ୍କାନାଳ ପ୍ରଜାମଣ୍ଡଳ' ଗଢ଼ାଯାଇଥିଲା । ପ୍ରଜାମଣ୍ଡଳ କି କାମ କରିବ ଓ କିପରି କରିବ, ସେସବୁ ଆଲୋଚନା ହେଲା ଏବଂ ସମଗ୍ର ଓଡ଼ିଶାର ପ୍ରଜାଙ୍କ ପତ୍ରିକା 'କୃଷକ'କୁ ବ୍ୟାପକ ସଂଖ୍ୟାରେ ଗାଁ ଗହଳିକୁ ନେବାର ନିଷ୍ପତ୍ତି ହେଲା । ସେପର୍ଯ୍ୟନ୍ତ 'କୃଷକ' ପତ୍ରିକା ଲୁଚାଛପାରେ ଗଡ଼ଜାତମାନଙ୍କୁ ପଠାଯାଉଥିଲା ଓ ଢେଙ୍କାନାଳ ଅତ୍ୟାଚାରର କାଁ ଭାଁ ପ୍ରତିବାଦ ହେଉଥିଲା ।

ଜେନାପୁର କୃଷକ ସମ୍ମିଳନୀ ପର୍ଯ୍ୟନ୍ତ ଲୋକେ ଢେଙ୍କାନାଳ ରାଜାର ଅତ୍ୟାଚାର ଓ ଶୋଷଣ ବରଦାସ୍ତ କରିଚାଲିଥିଲେ । ଉକ୍ତ ସମ୍ମିଳନୀ ଢେଙ୍କାନାଳ ଗାଁ ଗଣ୍ଡାରେ ଏଭଳି ଜାଗରଣ ସୃଷ୍ଟି କରିଦେଇଥିଲା ଯେ ଏହାର ଦଶ ଦିନ ପରେ ସେପ୍ଟେମ୍ବର ୧୨ ତାରିଖ ଦିନ ଢେଙ୍କାନାଳଗଡ଼ରେ ପ୍ରାୟ ୨୦ ହଜାର ଲୋକ ରାଜାଙ୍କ ନଅର ଘେରାଉ କରିଥିଲେ । ସେପ୍ଟେମ୍ବର ୧୧ ତାରିଖ ଦିନ ରାଜା କେତେକ ପ୍ରଜାମଣ୍ଡଳ ନେତାଙ୍କୁ ଗିରଫ କରିନେଇଥିଲେ ଓ ବନ୍ଧୁକର ସଙ୍ଗୀନମୁନରେ କେତେକଙ୍କୁ ଖଣ୍ଡିଆ କରିଦେଇଥିଲେ । ସେଠାରେ ଏହି ଦୃଶ୍ୟ ଦେଖିଥିବା ପ୍ରଜାମଣ୍ଡଳ କର୍ମୀମାନେ ଢେଙ୍କାନାଳର ଶହଶହ ଗାଁ ଖେଦିଯାଇ ରାଜାର ଆକ୍ରମଣକୁ ଜବାବ ଦେବାକୁ ଲୋକଙ୍କୁ ଆହ୍ୱାନ ଦେଇଥିଲେ । କୌଣସି ଜଣାଶୁଣା ନେତାଙ୍କ ଆହ୍ୱାନ ନହୋଇଥିଲେ ବି ବିଜୁଳି ବେଗରେ ଏହି ଖବର ଏଭଳି ଚମକାଇଦେଇଥିଲା ଯେ ପରଦିନ ଉପରବେଳାକୁ ପ୍ରାୟ ୩୦ ହଜାର ଲୋକ ଢେଙ୍କାନାଳ ରାଜାଙ୍କ ନଅରକୁ ଘେରି ନାନା ଧ୍ୱନି ଦେଇଥିଲେ । ସେଦିନ ଲୋକେ ଚାହିଁଥିଲେ ରାଜନଅରକୁ ଭାଙ୍ଗି ଛାରଖାର କରିଦେଇଥାନ୍ତେ । ଲୋକଙ୍କ ସମାଗମ ଓ ମତିଗତି ଦେଖି ରାଜାପକ୍ଷ କୌଣସି ଆକ୍ରମଣାତ୍ମକ ପଦକ୍ଷେପ ନେଇନଥିଲେ । ବ୍ରଜକିଶୋର ଧଳ ସେହି ବିକ୍ଷୁବ୍ଧ ଜନତାଙ୍କୁ ଶାନ୍ତ କରି ଗାଁକୁ ଫେରାଇଦେଇଥିଲେ । ସେମାନଙ୍କୁ କୁହାଯାଇଥିଲା ଯେ

ପ୍ରଜାମଣ୍ଡଳର ତୁଙ୍ଗ ନେତାମାନଙ୍କର ଆଦେଶ ନହେବା ପର୍ଯ୍ୟନ୍ତ କୌଣସି ଆକ୍ରମଣାତ୍ମକ କାର୍ଯ୍ୟ କରାଯିବ ନାହିଁ । ସେପ୍ଟେମ୍ବର ୧୧ ତାରିଖ ଦିନ ମାଳତୀ ଦେବୀ, ଭଗବତୀ ପାଣିଗ୍ରାହୀ ଓ ବୈଷ୍ଣବ ପଟ୍ଟନାୟକ ଢେଙ୍କାନାଳର ଏକ ଆଭ୍ୟନ୍ତରୀଣ ଅଞ୍ଚଳରେ ରହିଯାଇଥିବାରୁ ସେମାନେ ବି ଏ ବିକ୍ଷୋଭର ଖବର ପାଇପାରିନଥିଲେ । ସେମାନେ ସେପ୍ଟେମ୍ବର ୧୨ ତାରିଖ ସନ୍ଧ୍ୟା ବେଳକୁ ମେରାମୁଣ୍ଡଳିଠାରୁ କଟକ ଫେରୁଥିଲା ବେଳେ ଢେଙ୍କାନାଳ ଷ୍ଟେସନରୁ ସବୁକଥା ଶୁଣିବାକୁ ପାଇଥିଲେ । ସେମାନେ ଆହତ ଲୋକଙ୍କୁ ଚିକିତ୍ସା ପାଇଁ କଟକ ଆଣିଲେ ଏବଂ ଅନ୍ୟମାନଙ୍କୁ ଘରକୁ ଫେରାଇଦେଇଥିଲେ । ପରଦିନ ସକାଳୁସକାଳୁ ଅବଶ୍ୟ ଏହି ନେତାମାନେ ପୁଣି ଢେଙ୍କାନାଳ ଫେରି ଆନ୍ଦୋଳନର ପରବର୍ତ୍ତୀ କାର୍ଯ୍ୟକ୍ରମ ସ୍ଥିର କରିଥିଲେ ।

୧୯୩୮ ସେପ୍ଟେମ୍ବର ୧୨ ତାରିଖରୁ ୧୯୪୭ ମସିହା ନଭେମ୍ବର, ଏହି ଦଶ ବର୍ଷ ମଧ୍ୟରେ, ଢେଙ୍କାନାଳରେ ବହୁ ଆନ୍ଦୋଳନ, ବିଦ୍ରୋହ ଓ ବିଦ୍ରୋହ ଦମନ ହୋଇଛି, ବହୁ ଲୋକ ଆତ୍ମବଳି ଦେଇଛନ୍ତି, ହଜାରହଜାର ଲୋକ ଖଣ୍ଡିଆ ହୋଇ ଅକର୍ମଣ୍ୟ ହୋଇଛନ୍ତି ଓ ସହସ୍ରାଧିକ ପରିବାର ନିର୍ଯାତିତ ଓ ସର୍ବସ୍ୱାନ୍ତ ହୋଇଛନ୍ତି । ଦଶବର୍ଷ ମଧ୍ୟରେ ମଝିରେମଝିରେ ଯେତେବେଳେ ଆନ୍ଦୋଳନ ଦବିଯାଇଛି, ନବକୃଷ୍ଣ ଚୌଧୁରୀ ସେହି ସମୟକୁ ଗୌରାଙ୍ଗ ଚରଣ ଦାସ, ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ, ରବି ଘୋଷ, ଫନୀ ପାଲ୍, ସଚ୍ଚି ରାଉତରାୟ, ମନମୋହନ ମିଶ୍ର, ଗୋକୁଳମୋହନ ରାୟ ଚୂଡାମଣି, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ବିଶ୍ୱନାଥ ପଶାୟତ ଓ ସ୍ୱେଚ୍ଛାସେବକ ଭାବରେ ତରୁଣ ଧୂଳେଶ୍ୱର ବସ୍ତିଆ ତଥା ଗୋବିନ୍ଦ ଚନ୍ଦ୍ର ମହାନ୍ତିଙ୍କୁ ଢେଙ୍କାନାଳ ପଠାଇଛନ୍ତି । ଏହି ଆନ୍ଦୋଳନକାରୀଙ୍କ ପାଇଁ କଟକ-ତାଳଚେର ରେଳରାସ୍ତା ଥିଲା ନିରାପଦ ଅଞ୍ଚଳ; କାରଣ ଏହି ସ୍ଥାନ ସେପର୍ଯ୍ୟନ୍ତ ବ୍ରିଟିଶ ସରକାରଙ୍କ ପ୍ରତ୍ୟକ୍ଷ ଶାସନରେ ଥିଲା । ସେଠାରୁ ଢେଙ୍କାନାଳ ରାଜାର ପୋଲିସ ଗିରଫ କରିପାରୁନଥିଲେ । ଆନ୍ଦୋଳନକାରୀମାନେ ସେଇ ରେଳ ଲାଇନ ପାଖରେ ସଭା କରୁଥିଲେ । କିନ୍ତୁ ପରେ ବ୍ରିଟିଶ ସରକାର ଏହି ନିରାପତ୍ତା ଉଠାଇନେଲା ଫଳରେ ରେଳରାସ୍ତାରୁ ଓ ରେଳଡବାରୁ ବି ଆନ୍ଦୋଳନକାରୀମାନେ ବନ୍ଦୀ ହେଲେ । ଆନ୍ଦୋଳନକାରୀମାନଙ୍କର ପ୍ରଥମ ଅଭିଯାନ ପରେ ମନୋବଳ ଭାଙ୍ଗିପଡ଼ିବାରୁ ନବକୃଷ୍ଣ ନିଜେ ଢେଙ୍କାନାଳ ଯାଇ ସେଠାରେ ଗିରଫ ହୋଇଥିଲେ । ୩-୧୨-୧୯୩୮ରେ ସେ ଅନୁଗୋଳ ଆଡୁ, ନୀଳଗିରିର ୬ଜଣ ଓ ଢେଙ୍କାନାଳର ୧୦ଜଣଙ୍କ ସହ ଆସି ମେରାମୁଣ୍ଡଳିରେ ପହଞ୍ଚିବାକ୍ଷଣି ତାଙ୍କୁ ଗିରଫ କରାଗଲା । ଅନ୍ୟମାନଙ୍କୁ ଜେଲକୁ ନିଆଗଲା, କିନ୍ତୁ ନବବାବୁଙ୍କୁ ରାଜାଙ୍କ ନଅରକୁ ନିଆଯାଇଥିଲା । ସେ ସମସ୍ତଙ୍କୁ ପରଦିନ ଛାଡିଦିଆହୋଇଥିଲା । ପରବର୍ତ୍ତୀ ଦଳର ନେତୃତ୍ୱ ନେଇଥିଲେ ଭଗବତୀ ପାଣିଗ୍ରାହୀ ।

ଏହି ଗଡଜାତ ଆନ୍ଦୋଳନରେ ନବକୃଷ୍ଣ ଚୌଧୁରୀଙ୍କର ପ୍ରଧାନ ସହଯୋଗୀ ଥିଲେ ସାରଙ୍ଗଧର ଦାସ । କିନ୍ତୁ ସମସ୍ତଙ୍କ ମଧ୍ୟରେ ପ୍ରେରଣାଦାୟିନୀ ଥାଆନ୍ତି ମାଳତୀ ଦେବୀ ।

ସେ ନେତା ଓ କର୍ମୀମାନଙ୍କ ସହିତ ଢେଙ୍କାନାଳର କୋଣେ କୋଣେ ଚାଲିଚାଲି ଆନ୍ଦୋଳନକୁ ସଙ୍ଗଠିତ କରୁଥିଲେ । ଯେଉଁ ସମୟରେ ରାଜା ପକ୍ଷରୁ ଆକ୍ରମଣ ଅଧିକ ହୋଇଛି, ସେ ସମୟରେ ସେମାନେ ଢେଙ୍କାନାଳ ସୀମାକୁ ଲାଗି ବାଙ୍କୀର ଘୋଳପୁର ନିକଟ କୃଷ୍ଣପୁର ମୁଣ୍ଡିଆରେ ଏକ ବିରାଟ ସଭା କରିଥିଲେ । ତାହା ଥିଲା ସେ ଅଞ୍ଚଳ ପାଇଁ ଅପୂର୍ବ । ବାଙ୍କୀ ଛଡା ଢେଙ୍କାନାଳ, ଆଠଗଡ଼ ଓ ତିଗିରିଆରୁ ପ୍ରାୟ ୧୦ ହଜାର ଲୋକ ସେଠାରୁ ଉତ୍ସାହ ଓ ପ୍ରେରଣା ନେଇ ଯାଇଥିଲେ ।

ଢେଙ୍କାନାଳ ରାଜବାଟୀ ଘେରାଉ ପରେ ରାଜା ଗୋରା ଫୌଜ, ଗୋର୍ଖା ଓ ଡୋଗ୍ରା ପଲଟଣ ଆଣି ଅତ୍ୟାଚାର ଚଳାଇଥିଲା । ସେହି ସମୟରେ ନବବାବୁ ଜବାହରଲାଲ ନେହେରୁଙ୍କ ସହାୟତା ପାଇଁ ଯାଇଥିଲେ । ଜବାହରଲାଲଙ୍କର ଏଭଳି ଅତ୍ୟାଚାର ବିରୋଧରେ ଲଢିବାର ଅଭିଜ୍ଞତା ନଥିଲା । ସେ ବହିରୁ ପଢିଥିବା ଓ ଶୁଣିଥିବା ତତ୍କାଳୀନ ସ୍ପେନ୍ ବିପ୍ଳବ ଏବଂ ଦକ୍ଷିଣ ଆମେରିକାରେ ଚାଲିଥିବା ବିଦ୍ରୋହ କଥା କହି ସେହିପରି ଲଢନ୍ତୁ ବୋଲି ନବବାବୁଙ୍କୁ କହିଥିଲେ । ଏଭଳି ଉପରଠାଉରିଆ ପରାମର୍ଶ ଶୁଣି ନବବାବୁ କ୍ଷୁଣ୍ଣ ହୋଇ ଫେରି କଟକରେ କହିଥିଲେ, ''ଲୋକଟା ବଡ 'ଅବଟ୍ୟୁସ' (ସୂକ୍ଷ୍ମବୁଦ୍ଧିହୀନ) । ଲୋକେ ଅତ୍ୟାଚାରିତ ହୋଇ ତଳିତଳାନ୍ତ ହେଉଥିବା ବେଳେ ନିର୍ଦ୍ଦିଷ୍ଟ ଭାବରେ କଅଣ କରିବାକୁ ହେବ, କିଛି ପରାମର୍ଶ ନାହିଁ, ଖାଲି ଏଠି ଏଇଆ ହେଉଛି, ସେଠି ସେଇଆ ହେଉଛି, ଏହିକଥା ଶୁଣି ଆସିଲି ।'' (ମନମୋହନ ଚୌଧୁରୀଙ୍କ ଆତ୍ମଜୀବନୀ 'କସ୍ତୁରୀ ମୃଗସମ'ରୁ ସଂଗୃହୀତ) ଏହି ଅତ୍ୟାଚାର କାଳରେ ଢେଙ୍କାନାଳ ରାଜାର ପଶୁବଳ ଗାଁ ଗଣ୍ଡାର ବହୁ ଘରଦ୍ୱାର ଭାଙ୍ଗି-ଦେଇଥିଲା, ଧନସମ୍ପତ୍ତି ଲୁଟ କରିଥିଲା, ସ୍ତ୍ରୀଲୋକଙ୍କ ବେକରୁ, ହାତରୁ, କାନରୁ ଏବଂ ନାକରୁ ସୁନା ଓ ରୁପାର ଅଳଙ୍କାର ଛଡାଇନେଇ ସେମାନଙ୍କ ନାକ ଓ କାନକୁ ଛିଣ୍ଡାଇ ରକ୍ତାକ୍ତ କରିଥିଲେ । ଏହାଛଡା ଶହଶହ ସ୍ତ୍ରୀଲୋକଙ୍କ ଉପରେ ଅତ୍ୟାଚାର ହୋଇଥିଲା ଓ ହଜାର ହଜାର ଲୋକଙ୍କୁ ହତ୍ୟା କରାଯାଇଥିଲା । ଏଭଳି ପରିସ୍ଥିତିରେ ଲୋକମାନେ ରାଜ୍ୟ ଛାଡ଼ି କଟକ ଓ ଅନୁଗୋଳ ଜିଲ୍ଲାକୁ ଚାଲିଯିବାକୁ ନବକୃଷ୍ଣ ଚୌଧୁରୀ ପରାମର୍ଶ ଦେଇଥିଲେ । ଏହି ସମୟରେ ବାଙ୍କୀର ଘୋଳପୁର ଓ ସୁକିନ୍ଦାର କଲାଣ୍ଡ ଏବଂ ଅନୁଗୋଳର ବିଭିନ୍ନ ସ୍ଥାନରେ ପ୍ରାୟ ୩୦ ହଜାର ଲୋକ ବହୁ କାଳ ଅସ୍ଥାୟୀ ଘର କରି ରହିଥିଲେ । କେବଳ ଘୋଳପୁର କ୍ୟାମ୍ପରେ ପ୍ରାୟ ୨୦ ହଜାର ଲୋକଙ୍କ ରହିବା ଓ ଖାଇବା ପାଇଁ ବ୍ୟବସ୍ଥା ହୋଇଥିଲା । ଏଥିପାଇଁ ଆଖପାଖ ଲୋକଙ୍କଠାରୁ ଯେଉଁ ସାହାଯ୍ୟ ସହାନୁଭୂତି ମିଳିଥିଲା, ତାହା ଥିଲା ଅତ୍ୟନ୍ତ ପ୍ରଶଂସନୀୟ ।

ଢେଙ୍କାନାଳ ଅତ୍ୟାଚାର ଓ ଗଡଜାତ ଆନ୍ଦୋଳନର ସବୁଠାରୁ ବିଶିଷ୍ଟ ଘଟଣା ହେଲା, ନୀଳକଣ୍ଠପୁର ଘାଟ ପାଖରେ ବାର ବରଷର ପିଲା ବାଜି ରାଉତ ସହିତ ହୁରୁଷି,

ନଟ, ରଘୁ, ଗୁରି, ଲକ୍ଷ୍ମଣଙ୍କ ଆତ୍ମବଳି । ଢେଙ୍କାନାଳର ଭୁବନ ପ୍ରଜାମଣ୍ଡଳ ମେଳିକୁ ଦମନ କରିବାକୁ ଯାଇଥିବା ରାଜାଙ୍କ ପୋଲିସ ସେଠାରେ ଗୁଳିକରି ଜଣକୁ ମାରିବା ଫଳରେ ଲୋକେ ଉତ୍ୟକ୍ତ ହୋଇପଡିଥିଲେ । ଭୟଭୀତ ପୋଲିସବାହିନୀ ଢେଙ୍କାନାଳ ଫେରିବା ବାଟରେ ନୀଳକଣ୍ଠପୁର ଘାଟ ପାରିହେବାକୁ ଘାଟିଆକୁ ଡାକିଥିଲେ । ପ୍ରଜାମଣ୍ଡଳର ବିନାନୁମତିରେ ଘାଟ ଖୋଲିବି ନାହିଁ ବୋଲି ଘାଟିଆ କହିଥିଲା । ସେତେବେଳକୁ ଅନେକ ଲୋକ ଘାଟ ପାଖରେ ପହଞ୍ଚିଯାଇଥାନ୍ତି ଓ ସେମାନେ ଭୁବନ ଗୁଳିକାଣ୍ଡ କଥା ଶୁଣିସାରିଥାନ୍ତି । ଲୋକମାନେ ଘାଟିଆକୁ ସମର୍ଥନ କରି ପାଟି କରିବାରୁ ପୋଲିସ ଲୋକ ଜବରଦସ୍ତ ଘାଟ ଦଉଡ଼ି ଖୋଲି, ନିଜେ ଘାଟଡଙ୍ଗା ଚଳାଇ ଆସିବାକୁ ଉଦ୍ୟମ କରିବାରୁ ଲୋକେ ଡଙ୍ଗା ରୋକିବାକୁ ଉଦ୍ୟମ କରିଥିଲେ । ଏଥିରେ ଉତ୍ୟକ୍ତ ହୋଇ ପୋଲିସ ଗୁଳି ଚଳାଇଥିଲେ । ସେ ଗୁଳି ଚାଳନାରେ ଛଅଜଣ ସହିଦ ହୋଇଯାଇଥିଲେ । ନୀଳକଣ୍ଠପୁର ଘାଟରେ ବାଜି ରାଉତ ଆଦିଙ୍କର ହତ୍ୟା କଟକରେ ଚହଳ ପକାଇଥିଲା । ଜେନାପୁରର କଂଗ୍ରେସ ନେତା ବଳଦେବ ଲାଲା ଓ ଫନି ପାଲ୍ ଏହି ସହିଦମାନଙ୍କର ଶବକୁ ଜେନାପୁର ପର୍ଯ୍ୟନ୍ତ ଡଙ୍ଗାରେ ଆଣିଥିଲେ ଏବଂ ସେଠାରୁ ବୈଷ୍ଣବ ପଟ୍ଟନାୟକ ଓ ରବି ଘୋଷ ଶବଗୁଡ଼ିକୁ ଟ୍ରେନ୍ ୱାଗନରେ କଟକ ଆଣିଥିଲେ । ପୋଷ୍ଟମର୍ଟମ୍ ପରେ ତୃତୀୟ ଦିନ ଛଅଟି ଶଗଡ଼ଗାଡ଼ିରେ ଶବଗୁଡ଼ିକୁ ଖାନ୍‌ନଗର ମଶାଣିକୁ ଏକ ବିରାଟ ଶୋଭାଯାତ୍ରାରେ ନିଆଯାଇଥିଲା । ହଜାରହଜାର ଲୋକଙ୍କର ସେହି ଶୋଭାଯାତ୍ରାକୁ ଦେଖି ଲୋକେ କହୁଥିଲେ ଯେ, ମଧୁସୂଦନ ଦାସଙ୍କ ଶବ ଶୋଭାଯାତ୍ରା ପରେ କଟକରେ ଏଡ଼େ ବଡ଼ ଶୋଭାଯାତ୍ରା ହୋଇନାହିଁ । ସେଦିନ ଶୋଭାଯାତ୍ରାର ଜଣେ ସଞ୍ଚାଳକ ଥିଲେ କଲେଜ ଛାତ୍ର ଗଙ୍ଗାଧର ରଥ । ଗୋଟିଏ ଚିତାରେ ଛଅଟିଯାକ ଶବ ରଖାଯାଇ ମୁଖାଗ୍ନି ଦିଆଯାଇଥିଲା । ସମବେତ ଜନତାର 'ସାମ୍ରାଜ୍ୟବାଦ ଧ୍ୱଂସ ହେଉ–ଢେଙ୍କାନାଳୀ ଅତ୍ୟାଚାର ବନ୍ଦ ହେଉ' ଧ୍ୱନିରେ ଶ୍ମଶାନର ଚତୁର୍ଦ୍ଦିଗ ପ୍ରକମ୍ପିତ ହୋଇଥିଲା । ସେହି ଜୁଇର ଶିଖାକୁ ଦେଖି କବି ସଚ୍ଚି ରାଉତରାୟ ରଚନା କଲେ ତାଙ୍କର ବିଖ୍ୟାତ କବିତା 'ବାଜି ରାଉତ' ।

ପରଦିନ ଟାଉନ ହଲ୍‌ରେ ଏକ ବିରାଟ ସଭା ହେଲା । ମୁଖ୍ୟବକ୍ତା ଥାଆନ୍ତି ନବକୃଷ୍ଣ ଚୌଧୁରୀ । ସଭା ଆରମ୍ଭରେ ଖବର ମିଳିଲା, ରାଜା ଶଙ୍କରପ୍ରତାପ ସାମରିକ ପୋଲିସ ପହରାରେ ତାଳଚେର ଟ୍ରେନ୍‌ରେ ଆସି କଟକରୁ ପୁରୀ-ହାଓଡ଼ା ଏକ୍ସପ୍ରେସ୍ ଟ୍ରେନ୍‌ରେ କଲିକତା ଯାଉଛନ୍ତି ଓ ତାଙ୍କ ପାଇଁ ଫାଷ୍ଟକ୍ଲାସ୍ କମ୍ପାର୍ଟମେଣ୍ଟ୍ ରିଜର୍ଭ କରାଯାଇଛି । ନବବାବୁ ଉତ୍‌କ୍ଷିପ୍ତ ହୋଇ ଭାଷଣ ଆରମ୍ଭ କଲେ, 'ରାଜା ଫାଷ୍ଟ୍‌କ୍ଲାସ୍ କମ୍ପାର୍ଟମେଣ୍ଟ୍‌ର ଦରଜା ଭିତରୁ ନିଜକୁ ବନ୍ଦ କରି ମନେକରୁଛି, ସେ ଏଥର ନିରାପଦ । ଅନ୍ତତଃ ପାଖ ଡବାରେ ବନ୍ଧୁକଧାରୀ ପୋଲିସ ଅଛନ୍ତି । କିନ୍ତୁ ସେ ଜାଣେନା, କମ୍ପାର୍ଟମେଣ୍ଟ୍ ଭିତରେ ଅଛି ଭୂତ...ସହିଦ ବାଜି ରାଉତର ଭୂତ । ଭୂତ ଚିତ୍କାର କରୁଛି, ତୁ ଆମର ଘାତକ, ତୁ ଆମର ହତ୍ୟାକାରୀ–ଏଥର

ତୋ'ର ମୁକ୍ତି ନାହିଁ, ଏଥର ପରିତ୍ରାଣ ନାହିଁ । ଭୟ ଆତଙ୍କରେ ରାଜା ଆଖି ବନ୍ଦ କରିଦେଉଛି । କିନ୍ତୁ ନିଦ୍ରା କାହିଁ ? ଆଖି ଖୋଲିବା ମାତ୍ରେ ଦେଖୁଛି, କେବଳ କଙ୍କାଳ, ତାଣ୍ଡବ ନୃତ୍ୟରତ ଶହଶହ ମଣିଷର କଙ୍କାଳ । ବାଜି, ହୁରୁଷି, ରଘୁ, ଗୁରି, ନଟ ଓ ଲକ୍ଷ୍ମଣର କଙ୍କାଳ–ବିକଳ ଅଟ୍ଟହାସରେ କମ୍ପାର୍ଟ୍‌ମେଣ୍ଟ୍ ଫାଟିପଡୁଛି... ।'

ସେହି ସଭାରେ ଉପସ୍ଥିତ ଗଙ୍ଗାଧର ରଥ କହନ୍ତି, ''ସେକ୍ସପିଅରଙ୍କ 'ଜୁଲିଅସ ସିଜର' ନାଟକରେ ସିଜରଙ୍କ ମୃତ୍ୟୁ ପରେ ହତ୍ୟାକାରୀ ବ୍ରୁଟସ୍‌କୁ ଆକ୍ଷେପ କରି ସିଜରଙ୍କ ବନ୍ଧୁ ଆଣ୍ଟୋନୀ ଯେଉଁ ବକ୍ତୃତା ଦେଇଥିବାର ଉଲ୍ଲେଖ ଅଛି, ଇଂରାଜୀ ସାହିତ୍ୟରେ ତାହା ଏକ ଅବିସ୍ମରଣୀୟ ରଚନା । କିନ୍ତୁ ବାଳକ ବାଜି ରାଉତର ହତ୍ୟା ଉପରେ ନବବାବୁଙ୍କର ଭାଷଣ ଥିଲା ତା'ଠାରୁ ଆହୁରି ତୀକ୍ଷ୍ଣ, ଆହୁରି ଶାଣିତ, ଆହୁରି ଉତ୍ତେଜକ ଓ ଶକ୍ତିମାନ ।'' ଏହା ପୂର୍ବରୁ ଓ ପରେ ସେ ନବବାବୁଙ୍କର ଶହଶହ ବକ୍ତୃତା ଶୁଣିଛନ୍ତି । କିନ୍ତୁ ବାଜି ରାଉତ ଶୋକସଭାରେ ତାଙ୍କର ସେହି ବକ୍ତୃତା ଥିଲା ସବୁଠାରୁ ବେଶି ମର୍ମଭେଦୀ, ସବୁଠାରୁ ବେଶି ପ୍ରାଣସ୍ପର୍ଶୀ ।

ହରେକୃଷ୍ଣ ମହତାବ ନୀଳଗିରି, ଢେଙ୍କାନାଳ, ତାଳଚେର ଓ ରଣପୁର ପ୍ରଜାମଣ୍ଡଳ ଆନ୍ଦୋଳନରେ ଊଣାଅଧିକେ ସମ୍ପୃକ୍ତ ଥିଲେ ବି ସେ ଘଟଣା ପ୍ରବାହରେ ଏହା ଭିତରକୁ ଆସିଥିଲେ । ତାଙ୍କ ଆତ୍ମଜୀବନୀ 'ସାଧନାର ପଥେ'ର ୧୮୪ ପୃଷ୍ଠାରେ ଲେଖା ଅଛି ''ଓଡ଼ିଶାରେ ଗଡ଼ଜାତ ପ୍ରଜା ସମ୍ମିଳନୀ କେତେଥର ହୋଇଛି । ମୁଁ କେବେ ସେଥିରେ ଯୋଗ ଦେଇନାହିଁ । କେବଳ 'ପ୍ରଜାତନ୍ତ୍ର' କାମ ଚାଲିଥିଲା ବେଳେ କେତେକ ଗଡ଼ଜାତର ସମ୍ବାଦ ପାଏ । ଅନ୍ୟଥା ଗଡ଼ଜାତ ସମ୍ବନ୍ଧରେ ମୋର ଜ୍ଞାନ ନଥିଲା ଓ ମୋର ସେଥିରେ ସ୍ପୃହା ମଧ ନଥିଲା... ।'' ସେ ଏହି ଗଡ଼ଜାତ ଆନ୍ଦୋଳନ କାଳରେ ମହାତ୍ମା ଗାନ୍ଧିଙ୍କର ସହାୟତା ଲୋଡ଼ିଛନ୍ତି ଓ ତାଳଚେର ଆନ୍ଦୋଳନ ବେଳେ ତାଙ୍କଠାରୁ ଅନେକ ସାହାଯ୍ୟ ଓ ପରାମର୍ଶ ପାଇଛନ୍ତି ।

କିନ୍ତୁ ନବକୃଷ୍ଣ ଚୌଧୁରୀ ନିଜର ଆଜୀବନ ବନ୍ଧୁ ଅନ୍ନଦାଶଙ୍କର ରାୟଙ୍କ ସହ ଏକାଧିକ ବାର ଢେଙ୍କାନାଳ ଯାଇଥିଲେ ଓ ସେଠାକାର ଆନ୍ଦୋଳନର ବହୁ ପୂର୍ବରୁ ସେଠାରେ ଚାଲିଥିବା ଅତ୍ୟାଚାର ଓ ଶୋଷଣ ସମ୍ପର୍କରେ ଅବହିତ ଥିଲେ । ଏଣୁ ସେ ଆନ୍ଦୋଳନ ପୂର୍ବରୁ ରାଜା ଶଙ୍କରପ୍ରତାପ ବିରୋଧରେ ସଂଗ୍ରାମ କଥା ଭାବୁଥିଲେ । ୧୯୩୮ ଆନ୍ଦୋଳନ ପୂର୍ବରୁ ବି ଢେଙ୍କାନାଳୀ ଅତ୍ୟାଚାର ଓ ଶୋଷଣ କଥା ଫାଟିପଡ଼ିବାରୁ ରାଜା ନିଜ କଳଙ୍କ ଘୋଡ଼ାଇବା ପାଇଁ କଟକ ଟାଉନ୍ ହଲ୍‌ରେ କିଛି କଟିକିଆ ସ୍ତାବକଙ୍କୁ ନେଇ ଏକ ସଭାର ଉଦ୍ୟମ କରିଥିଲେ । ନବକୃଷ୍ଣ ଚୌଧୁରୀ ଅଳ୍ପ କିଛି ଯୁବକଙ୍କୁ ନେଇ ''ଅତ୍ୟାଚାରୀ ଢେଙ୍କାନାଳ ରାଜାକୁ ଟାଉନ୍

ହଲ୍‌ରେ ସଭା କରାଇ ଦେବୁନାହିଁ" ଧ୍ୱନି ଦେଇ ସଭାଟି ଭଣ୍ଡୁର କରିଥିଲେ ବୋଲି ପ୍ରଜାମଣ୍ଡଳ ନେତା ବ୍ରଜକିଶୋର ଧଳ କହନ୍ତି ।

ଓଡ଼ିଶାର ମୋଗଲବନ୍ଦୀ ବୋଲି କୁହାଯାଉଥିବା ଅଞ୍ଚଳର ଅନୁଗୋଳ ସବଡିଭିଜନ ଗଡ଼ଜାତମାନଙ୍କ ମଧ୍ୟରେ ଏକ ଟାପୁ ଭଳି । ଓଡ଼ିଶାର ଅନ୍ୟ ଗଡ଼ଜାତ ରାଜାମାନେ ବ୍ରିଟିଶ ସରକାରର ବଶ୍ୟତା ସ୍ୱୀକାର କରିନେଇଥିଲେ ହେଁ ଅନୁଗୋଳର ରାଜା ବ୍ରିଟିଶ ସରକାର ବିରୋଧରେ ବିଦ୍ରୋହ କରିଥିବାରୁ ସେହି ରାଜ୍ୟଟିକୁ ବ୍ରିଟିଶ ସରକାର ବହୁ ପୂର୍ବରୁ ନିଜ ପ୍ରତ୍ୟକ୍ଷ ଶାସନକୁ ନେଇଯାଇଥିଲେ ଓ ତାକୁ ଟାଣୁଆ ଅଫିସରଙ୍କ ଦାୟିତ୍ୱରେ ରଖୁଥିଲେ । ଏହାର ଚାରିପଟେ ଗଡ଼ଜାତମାନ ଲାଗିରହିଥିବାରୁ, ଏହାକୁ କେନ୍ଦ୍ର କରି ଗଡ଼ଜାତ ଆନ୍ଦୋଳନ କରିବା ସୁବିଧାଜନକ ହେବ ବୋଲି ନବକୃଷ୍ଣ ଚୌଧୁରୀ ୧୯୩୭ ମସିହାରୁ ଚିନ୍ତା କରିଥିଲେ । ସେତେବେଳକୁ ଗିରିଜାଭୂଷଣ ଦତ୍ତ ଅନୁଗୋଳରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥାନ୍ତି । କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ାଯାଇଥିବାରୁ ପ୍ରଶାସନ ତରଫରୁ ପୂର୍ବର ପ୍ରତିବନ୍ଧକ ନଥାଏ । ନବବାବୁ ଗିରିଜାବାବୁଙ୍କ ସହଯୋଗରେ ସେହିଠାରୁ ଢେଙ୍କାନାଳ ଓ ତାଳଚେର ପ୍ରଜାମଣ୍ଡଳ କାର୍ଯ୍ୟକଳାପ ନିୟନ୍ତ୍ରଣ କରୁଥାନ୍ତି ।

ଢେଙ୍କାନାଳ ପ୍ରଜାଆନ୍ଦୋଳନ ଚାଲିଥିଲାବେଳେ ପବିତ୍ରମୋହନ ପ୍ରଧାନଙ୍କ ନେତୃତ୍ୱରେ ତାଳଚେରରେ ଯେଉଁ ଆନ୍ଦୋଳନ ଚାଲିଥିଲା, ସେଥିରେ ବହୁ ଲୋକ ପ୍ରାଣ ହରାଇଥିଲେ । ନିଃସହାୟ ମନେକରି ଲୋକେ ଗାନ୍ଧିଜୀଙ୍କୁ ଟେଲିଗ୍ରାମ କରିଥିଲେ । ଦେଶୀୟ ରାଜ୍ୟମାନଙ୍କରେ କଂଗ୍ରେସ ଆନ୍ଦୋଳନ କରିବ ନାହିଁ ବୋଲି ନିଷ୍ପତ୍ତି ହୋଇଥିଲେ ମଧ୍ୟ ଏଭଳି ପରିସ୍ଥିତିରେ ଲୋକେ ରାଜ୍ୟ ଛାଡ଼ି ଚାଲିଆସନ୍ତୁ ବୋଲି ସେ ପରାମର୍ଶ ଦେଇଥିଲେ । ତଦନୁସାରେ ହଜାରହଜାର ତାଳଚେରବାସୀ ରାଜ୍ୟ ଛାଡ଼ି ଅନୁଗୋଳର କୋଶଳା, ପାଣିଓଳା, ନତଡ଼ା, କମ୍ପିଶଳା, ମଣ୍ଡୁଆ ଓ ବୁଢ଼ାପଙ୍କ କ୍ୟାମ୍ପରେ ମାସମାସ ଧରି ଅସ୍ଥାୟୀ ଘର କରି ରହିଲେ । ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ଅମୃତଲାଲ୍ ଠକ୍କର (ଠକ୍କର୍ ବାପ୍ପା) ହଜାରହଜାର ଲୋକଙ୍କ ଖାଇବା ଲାଗି ଅନ୍ନସଂସ୍ଥାନ କରିଥିଲେ । ମାରୱାଡ଼ି ରିଲିଫ ସୋସାଇଟି ତରଫରୁ ରିଲିଫ୍ ଯୋଗାଇ ଦିଆଯାଇଥିଲା । ରମା ଦେବୀ ଓ ମାଳତୀ ଦେବୀଙ୍କ ନେତୃତ୍ୱରେ ବହୁସଂଖ୍ୟକ ନାରୀକର୍ମୀ ସେହି ଉଦ୍‌ବାସ୍ତୁମାନଙ୍କର ଥଇଥାନ ଏବଂ ସେବାରେ ନିୟୋଜିତ ଥିଲେ । ସେତେବେଳକୁ ମାଳତୀ ଦେବୀଙ୍କ ସାନଝିଅକୁ ଦୁଇ ମାସ । ସେ ସେହି ଦୁଇ ମାସର ଛୁଆକୁ କ୍ୟାମ୍ପ ନିକଟ ଗଛରେ ଲୁଗାଦୋଳିରେ ଝୁଲାଇଦେଇ ଲୋକଙ୍କ କାମରେ ଲାଗନ୍ତି । ଗାନ୍ଧିଜୀଙ୍କ ପରାମର୍ଶ ଓ ହରେକୃଷ୍ଣ ମହତାବଙ୍କ ସଫଳ ମଧ୍ୟସ୍ଥତା ଫଳରେ ତାଳଚେର ଆନ୍ଦୋଳନର ସମାଧାନ ହୋଇଥିଲା । ତାଳଚେର ଓ ଢେଙ୍କାନାଳ ପ୍ରଜାଆନ୍ଦୋଳନର ସାଫଲ୍ୟରେ ଗିରିଜାଭୂଷଣ ଦତ୍ତ ଓ ନବକୃଷ୍ଣ ଚୌଧୁରୀଙ୍କର ଭୂମିକା ଥିଲା ଅତ୍ୟନ୍ତ ଉଲ୍ଲେଖନୀୟ ।

ଏହାଛଡ଼ା ବିଖ୍ୟାତ ରଣପୁର ମେଳିର ପରିଣତିସ୍ୱରୂପ ପଲିଟିକାଲ୍ ଏଜେଣ୍ଟ ବେଜେଲ୍‌ଗେଟ୍ ହତ୍ୟା ମଧ୍ୟ ସ୍ୱତଃସ୍ଫୂର୍ତ୍ତ ବା ଦୈବାତ୍ ଘଟିନଥିଲା । ରଣପୁରକୁ ଲାଗି ଖୋର୍ଦ୍ଧା ସେତେବେଳକୁ କୃଷକ ଆନ୍ଦୋଳନର ଏକ ଯଶସ୍ୱୀ ଦୁର୍ଗ ଭଳି ହୋଇଥାଏ । ପ୍ରାଣନାଥ ପଟ୍ଟନାୟକ, ଗୋକୁଳମୋହନ ରାୟ ଚୂଡ଼ାମଣି, ଗଙ୍ଗାଧର ମିଶ୍ର ତଥା ଗଙ୍ଗାଧର ପାଇକରାୟ ଆଦିଙ୍କ ନେତୃତ୍ୱରେ ରଣପୁର, ନୟାଗଡ଼ ଆଦିରେ ଆନ୍ଦୋଳନର ନିଆଁ ଜଳୁଥିଲା । ଅବଶ୍ୟ ଯେଉଁଦିନ ବେଜେଲଗେଟ୍ ହତ୍ୟା ହେଲା, ସେଦିନ ଏମାନେ କେହି ରଣପୁରରେ ନଥିଲେ । ଏହି ମେଳି ଫଳରେ ଯେଉଁ ଅବସ୍ଥା ସୃଷ୍ଟି ହେଲା, ତାହାକୁ ସୁଧାରିବା ଦିଗରେ ହରେକୃଷ୍ଣ ମହତାବଙ୍କର ଭୂମିକା ଅତ୍ୟନ୍ତ ଉଲ୍ଲେଖନୀୟ । କିନ୍ତୁ ହରେକୃଷ୍ଣ ମହତାବ ଖାଣ୍ଟି କଂଗ୍ରେସିଆ ଭାବରେ କୌଣସି ଗଡ଼ଜାତ ଆନ୍ଦୋଳନକୁ ଉତ୍ସାହିତ କରିନଥିଲେ; ଏପରିକି କେବଳ କନିକା ଜମିଦାରଙ୍କ ଛଡ଼ା ଅନ୍ୟ ଜମିଦାରଙ୍କ ଅତ୍ୟାଚାର ବିରୋଧରେ ହେଉଥିବା ଆନ୍ଦୋଳନକୁ ପ୍ରୋତ୍ସାହନ ଦେଇନାହାନ୍ତି ବା ପରିଚାଳନା କରିନାହାନ୍ତି । ସେ ଏସବୁ ଆନ୍ଦୋଳନରେ ମଧ୍ୟସ୍ଥିର ଭୂମିକା ନେଇଛନ୍ତି । ୧୯୩୮ ମସିହା ବେଳକୁ ଭାରତବର୍ଷର ସବୁ ଦେଶୀୟ ରାଜ୍ୟର ଲୋକଙ୍କ ଅଭିଯୋଗ ତଦନ୍ତ ଲାଗି ପଟ୍ଟାଭି ସୀତାରାମାୟାଙ୍କ ନେତୃତ୍ୱରେ ଗୋଟିଏ ତଦନ୍ତ କମିଟି ବସିଥିଲା । ସେହି କମିଟିରେ ଜଣେ ସଦସ୍ୟ କାର୍ଯ୍ୟ କରିବାକୁ ରାଜି ନହେବାରୁ ହରେକୃଷ୍ଣ ମହତାବଙ୍କୁ ନିଆହୋଇଥିଲା । ସେହି କମିଟିରେ ସମ୍ପାଦକ ଥିଲେ ବଳବନ୍ତରାୟ ମେହଟ୍ଟା ଏବଂ ଅନ୍ୟ ସଦସ୍ୟ ଜଣକ ଲାଲମୋହନ ପଟ୍ଟନାୟକ । ଏହି କମିଟିର ସଦସ୍ୟ ଭାବରେ କାର୍ଯ୍ୟ କରିବା ଭିତରେ ମହତାବବାବୁଙ୍କର ଗଡ଼ଜାତ ଆନ୍ଦୋଳନ ବିଷୟରେ ଅଭିଜ୍ଞତା ହୋଇଥିଲା ।

ଏହି ରଣପୁର ପ୍ରଜାମେଳି ଛଡ଼ା ଗାଙ୍ଗପୁରରେ ବ୍ରିଟିଶ ସୈନ୍ୟଙ୍କ ଗୁଳିରେ ପ୍ରାୟ ତିନିଶହ ଲୋକ ପ୍ରାଣ ହରାଇଥିଲେ । ଏଠାକାର ପ୍ରଜାନେତା ନିର୍ମଳ ମୁଣ୍ଡାଙ୍କ ଗିରଫଦାରିକୁ ନେଇ ଏହି ହୃଦୟବିଦାରକ ହତ୍ୟାକାଣ୍ଡ ହୋଇଥିଲା । ସେହି ଗୁଳିକାଣ୍ଡରେ ସ୍ତ୍ରୀ, ପିଲାଙ୍କ ସମେତ ଶହଶହ ନିର୍ଦ୍ଦୋଷ ଲୋକ ପ୍ରାଣ ହରାଇଥିଲେ । ରଣପୁରର ଜଣେ ଗୋରା ଅଫିସରଙ୍କ ହତ୍ୟାରେ ରଘୁ-ଦିବାକର ଫାଶୀ ପାଇଥିଲେ । କିନ୍ତୁ ଗାଙ୍ଗପୁରରେ ତିନିଶହ ଲୋକ ମରିଥିଲେ ବି ଓ ଜବାହରଲାଲ ନେହେରୁ ଏହାର ତଦନ୍ତ ଦାବି କରିଥିଲେ ମଧ୍ୟ ଏ ଦିଗରେ କିଛି ଉଦ୍ୟମ ହୋଇନଥିଲା । ଏହିପରି ଭାବରେ ଓଡ଼ିଶା ଗଡ଼ଜାତ ଆନ୍ଦୋଳନର ନୀଳଗିରି ଅଧ୍ୟାୟ ହେଉ ବା ଢେଙ୍କାନାଳ, ତାଳଚେର, ରଣପୁର ତଥା ଗାଙ୍ଗପୁରରେ ଯେଉଁସବୁ ପ୍ରଜାଆନ୍ଦୋଳନ ହୋଇଛି, ସେସବୁର ପ୍ରେରଣାଦାତାମାନେ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କଠାରୁ ପରାମର୍ଶ, ସାହାଯ୍ୟ ଓ ସହାନୁଭୂତି ପାଇଆସିଛନ୍ତି ଏବଂ ଏଥିପାଇଁ ଶହଶହ ଲୋକ ପ୍ରାଣବଳି ଦେଇଛନ୍ତି ଓ ଅୟୁତଅୟୁତ ଲୋକ ସର୍ବସ୍ୱାନ୍ତ ହୋଇଛନ୍ତି ।

ଗଡ଼ଜାତ ଆନ୍ଦୋଳନ ଚାଲିଥିଲା ବେଳେ ଜମିଦାରମାନଙ୍କ ବିରୋଧରେ ବି ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଆନ୍ଦୋଳନ ଚାଲିଥାଏ । ୧୯୩୮ ମସିହା ଫେବୃଆରି ମାସରେ ବନମାଳୀ ମହାରଣା ଓ ଦିବାକର ପଟ୍ଟନାୟକ ଆଦି କୋଦଳାଠାରେ ଏକ ସଭାର ଆୟୋଜନ କରିଥିଲେ । ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀ ସେହି ସଭାରେ ଯୋଗଦେବାର ଥାଏ । ସେଠାକାର ଆନ୍ଦୋଳନକୁ ବ୍ୟର୍ଥ କରିବା ଲାଗି ଖଲିକୋଟ ରାଜା ମାଳତୀ ଦେବୀଙ୍କୁ ହତ୍ୟା କରିବାର ବ୍ୟବସ୍ଥା କରିଥିବା ଜାଣିପାରି ଉଦ୍ୟୋକ୍ତାମାନେ ସତର୍କ ହୋଇଯାଇଥିଲେ । ୧୯୩୯ ମସିହାରେ ଦ୍ୱିତୀୟ ମହାସମର ଆରମ୍ଭ ହୋଇଗଲା । ଭାରତବାସୀଙ୍କୁ ନଜଣାଇ ବ୍ରିଟିଶ ସରକାର ଭାରତବର୍ଷକୁ ସେଥିରେ ସଂଶ୍ଳିଷ୍ଟ କରିଥିବାରୁ କଂଗ୍ରେସ ତା'ର ବିରୋଧ କରୁଥିଲା । କଂଗ୍ରେସ ଦାବି କରୁଥିଲା ଯେ ଭାରତବାସୀ ଯଦି ଯୁଦ୍ଧରେ ସଂଶ୍ଳିଷ୍ଟ ହେବେ ତ ଭାରତବାସୀଙ୍କୁ ନିଜର ଆତ୍ମନିୟନ୍ତ୍ରଣ ଅଧିକାର ଦିଆଯାଉ । ବ୍ରିଟିଶ ସରକାର ଏଥିରେ ରାଜି ହେଲେ ନାହିଁ । ଏଣୁ ଏହାର ପ୍ରତିବାଦସ୍ୱରୂପ କଂଗ୍ରେସ ଲୋକେ ସବୁ ପ୍ରଦେଶର ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଲେ । ଏହି ଇସ୍ତଫା ଚାଷୀ ଆନ୍ଦୋଳନ ତଥା ଗଡ଼ଜାତ ପ୍ରଜା ଆନ୍ଦୋଳନ ପାଇଁ ଏକ ବିରାଟ ଧକ୍କା ପରି ହୋଇଥିଲା । ବ୍ରିଟିଶ ସରକାରକୁ ଖୁସି କରିବା ଲାଗି ରାଜା, ଜମିଦାରମାନେ ଅଧିକ ଅତ୍ୟାଚାର ଚଳାଇଥିଲେ । ତଥାପି ଲଢ଼େଇର ଅଭିଜ୍ଞତା ଫଳରେ ଏବଂ ପରିବର୍ତ୍ତିତ ପରିସ୍ଥିତି ଯୋଗୁଁ ପ୍ରଜାମାନେ ପୂର୍ବ ଭଳି ଭୟଭୀତ ହୋଇନଥିଲେ ।

## କଂଗ୍ରେସ ସଭାପତି ସୁଭାଷଚନ୍ଦ୍ର ବୋଷ :

ଏହି ୧୯୩୯ ମସିହାରେ ନିଖିଳ ଭାରତ କଂଗ୍ରେସର ସଭାପତି ନିର୍ବାଚନ ହୋଇଥିଲା । ସେଥର ସୁଭାଷଚନ୍ଦ୍ର ବୋଷ ଗାନ୍ଧିଜୀଙ୍କ ପ୍ରାର୍ଥୀ ପଟ୍ଟାଭି ସୀତାରାମାୟାଙ୍କ ବିରୋଧରେ ଲଢୁଥାନ୍ତି । ନବକୃଷ୍ଣ ଚୌଧୁରୀ ଜବାହରଲାଲଙ୍କଠାରୁ ସୁଭାଷ ବୋଷଙ୍କୁ ଅଧିକ ପସନ୍ଦ କରୁଥିଲେ । ତାଙ୍କ ଦୃଷ୍ଟିରେ ସୁଭାଷ ଥିଲେ ଜଣେ ଉତ୍ସର୍ଗୀକୃତ ବ୍ୟକ୍ତି । ଏଣୁ ନବକୃଷ୍ଣ ଚୌଧୁରୀଙ୍କ ସମେତ ସବୁ କଂଗ୍ରେସ ସୋସାଲିଷ୍ଟ ସୁଭାଷଚନ୍ଦ୍ର ବୋଷଙ୍କୁ ଭୋଟ୍ ଦେଲେ । ମନମୋହନ ଚୌଧୁରୀ ସେତେବେଳକୁ କଂଗ୍ରେସ ସୋସାଲିଷ୍ଟମାନଙ୍କଠାରୁ ବିଚ୍ଛିନ୍ନ ହୋଇଯାଇଥିଲେ ମଧ୍ୟ ସୁଭାଷ ଚନ୍ଦ୍ର ବୋଷଙ୍କୁ ଭୋଟ ଦେଇଥିଲେ । ସେହି ଭୋଟ୍ ଦେବା ନସରୁଣୁ ମାଳତୀ ଦେବୀ ଭୋଟ୍ କେନ୍ଦ୍ର ଜାନକୀନାଥ ଭବନରୁ ଚାଲିଆସିଥିଲେ । ସୁଭାଷ ବାବୁଙ୍କ ବିଜୟ ଖବର ନେଇ ନବବାବୁ ଘରେ ପହଞ୍ଚିଲା ବେଳକୁ ତାଙ୍କର ତୃତୀୟ ସନ୍ତାନ ତିନୁ (କୃଷ୍ଣା)ର ଜନ୍ମ ହେବାକଥା ଜାଣିଲେ ।

## କଂଗ୍ରେସ ସୋସାଲିଷ୍ଟ ପାର୍ଟିର ବିଭାଜନ :

କୃଷକ ଆନ୍ଦୋଳନ ଓ ଗଡ଼ଜାତ ଆନ୍ଦୋଳନ ରାଜ୍ୟସାରା ଆଲୋଡ଼ନ ସୃଷ୍ଟି କରିଥିବା ସମୟରେ, ୧୯୩୯ ମସିହାରେ ନିତ୍ୟାନନ୍ଦ କାନୁନ୍‌ଗୋ ଘରୋଇ ବିଭାଗର ମନ୍ତ୍ରୀ

ଥିଲାବେଳେ, ପୋଲିସ କେତେକ ଗୋପନ ଚିଠିପତ୍ରରୁ ଜାଣିପାରିଥିଲେ ଯେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ମଧ୍ୟରେ କମ୍ୟୁନିଷ୍ଟମାନେ ଏକ ଗୁପ୍ତ ସଙ୍ଗଠନ ଗଢ଼ିଛନ୍ତି । ଏହା ୧୯୩୫ ମସିହାରୁ ଆରମ୍ଭ ହୋଇଥିବା କଥା ଜଣାପଡ଼ିଲା । ଏହା ଖାଲି ଓଡ଼ିଶାରୁ ଯେ ଜଣାପଡ଼ିଥିଲା ତାହା ନୁହେଁ, କମ୍ୟୁନିଷ୍ଟମାନେ ଭାରତସାରା ଏଭଳି ଜାଲ ବିଛାଇଥିବା ଜଣାଯିବା ପରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ବିଭାଜନ ହୋଇଗଲା । ଏହାଫଳରେ କଂଗ୍ରେସ ସୋସାଲିଷ୍ଟ ଦଳ ଦକ୍ଷିଣ ଭାରତରୁ ପ୍ରାୟ ଲୋପ ପାଇଗଲା । ଯାହାଙ୍କୁ ନବବାବୁ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଓଡ଼ିଶା ଶାଖାର ସଭାପତି କରାଇଥିଲେ, ସେହି ଆପାତତଃ ଅମାୟିକ ପ୍ରାଣନାଥ ପଟ୍ଟନାୟକ କେବେଠାରୁ କମ୍ୟୁନିଷ୍ଟ ହୋଇଯାଇଛନ୍ତି, ଅଥଚ ସେ କଂଗ୍ରେସ ଟିକେଟ୍‌ରେ ବିଧାନସଭାକୁ ନିର୍ବାଚିତ ! ଠିକ୍ ସେହିପରି ମୋହନ ଦାସଙ୍କ କଥା । ପୁଣି ଯେଉଁ ବାଉ(ଗୁରୁଚରଣ ପଟ୍ଟନାୟକ)କୁ ସେ କୂଟକପଟବିହୀନ ବୋଲି ଭାବିଆସିଥିଲେ, ସେ ଇତିମଧ୍ୟରେ ପକ୍କା କମ୍ୟୁନିଷ୍ଟ । ସେହିଭଳି ଅତି ଆପଣାର ଭାଗୁ (ଭଗବତୀ ପାଣିଗ୍ରାହୀ) ପୁଣି କମ୍ୟୁନିଷ୍ଟମାନଙ୍କର ମୁଖ୍ୟ କର୍ତ୍ତା !

କମ୍ୟୁନିଷ୍ଟମାନଙ୍କ ପ୍ରବଞ୍ଚନା ତାଙ୍କୁ ଯେ ଗଭୀର ଆଘାତ ଦେଇଥିଲା, ତାହା ତାଙ୍କର ଅନ୍ୟତମ ଅତ୍ୟନ୍ତ ଅନୁରକ୍ତ ବ୍ୟକ୍ତି ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କଠାରୁ ଶୁଣିବାକୁ ମିଳେ । ସେ କହନ୍ତି, ‘‘ନବବାବୁଙ୍କ ପୁଅ କାଲୁର ମୃତ୍ୟୁ ପରେ ବି ସେ ଏତେ ବିମର୍ଷ ଦେଖାଯାଉନଥିଲେ, ଯେତେ ହତାଶ ହୋଇପଡ଼ିଥିଲେ, କଂଗ୍ରେସ ସୋସାଲିଷ୍ଟ ପାର୍ଟି ଭିତରେ କମ୍ୟୁନିଷ୍ଟମାନଙ୍କ ଅନ୍ତର୍ଘାତୀ କାର୍ଯ୍ୟକଳାପ ଜଣାପଡ଼ିବାରେ । ଏହାପରେ ସୋସାଲିଷ୍ଟ ଆନ୍ଦୋଳନ ପ୍ରତି ତାଙ୍କର ଆଗ୍ରହ ରହିଲା ନାହିଁ । ଓଡ଼ିଶାରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ପୁନର୍ଗଠନ ପାଇଁ ଜୟପ୍ରକାଶ ନାରାୟଣ ଯେତେବେଳେ ଆସନ୍ତି, ସେ ସେଥିରୁ ଦୂରେଇରହିଲେ । ତାଙ୍କ ପରାମର୍ଶ ଅନୁସାରେ ଓଡ଼ିଶା କଂଗ୍ରେସ ସୋସାଲିଷ୍ଟ ଦଳର ପୁନର୍ଗଠନ ଦାୟିତ୍ୱ ମୋ' ଉପରେ ରହିଲା ।’’

ନିଜ ମନର ଦାରୁଣ ଦୁଃଖ ଓ ଆଘାତକୁ ନିଜ ଭିତରେ ଅତି ଗହନ କୋଠରିରେ ରଖିବା ନବବାବୁଙ୍କର ଏକ ଚାରିତ୍ରିକ ବୈଶିଷ୍ଟ୍ୟ । ଗରୁଚରଣ ପଟ୍ଟନାୟକ କହନ୍ତି, ‘‘୧୯୩୩-୩୪ରୁ ୧୯୩୯, ସେ ସମୟଟା କଟେ ତାଙ୍କରି (ନବକୃଷ୍ଣ ଚୌଧୁରୀଙ୍କ) ଘରେ । ତାଙ୍କରି ପ୍ରଭାବରେ ତାଙ୍କରି ନେତୃତ୍ୱରେ ଗଢ଼ି ଉଠିଛି ମୋର ଜୀବନ–ସେହି କାଳର ଆନ୍ଦୋଳନ ଭିତରେ । ତାଙ୍କର ପ୍ରେରଣାରେ ମୁଁ କଲମ ଧରିଛି । ମୋର ପ୍ରଥମ ଲେଖା ପ୍ରକାଶ ପାଏ ତାଙ୍କରି ସମ୍ପାଦିତ ‘ସାରଥି’ରେ ୧୯୩୩ରେ । ତା ଆଗରୁ ୧୯୩୦–୩୨ ଆନ୍ଦୋଳନରେ ଯଦିଓ ମୁଁ ଯୋଗ ଦେଇଥିଲି, ମୋର ପ୍ରକୃତ ରାଜନୈତିକ ଶିକ୍ଷା ଆରମ୍ଭ ହୁଏ ସେଇଠି । କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ ଥିଲାବେଳେ ମୋ କମ୍ୟୁନିଷ୍ଟ ମନୋଭାବ

ବିଷୟରେ ନବବାବୁ ପ୍ରଥମରୁ ଅବଗତ ଥିଲେ । ତାଙ୍କୁ ତା'ର ପ୍ରଥମ ସୂଚନା ଦିଅନ୍ତି ମୋର ଗୁରୁ ଆଚାର୍ଯ୍ୟ ନରେନ୍ଦ୍ର ଦେବ । ତା ପରେ ନିତ୍ୟାନନ୍ଦ କାନୁନ୍‌ଗୋ ଘରୋଇ ମନ୍ତ୍ରୀ ଥିଲାବେଳେ ପୁଲିସ ଜବତ କରିଥିବା କମ୍ୟୁନିଷ୍ଟଙ୍କ ଗୋପନ ଚିଠିପତ୍ର ବିଷୟ ତାଙ୍କୁ ଜଣାନ୍ତି । ଅଥଚ ଦିନେହେଲେ ନବବାବୁ ସେ ଘେନି ମୋତେ ପ୍ରଶ୍ନ କରିନାହାନ୍ତି କି ମୋ ପ୍ରତି ତାଙ୍କ ବ୍ୟବହାରରେ କୌଣସି ପରିବର୍ତ୍ତନ ଲକ୍ଷ୍ୟ କରିନାହିଁ । କାହା ପ୍ରତି ବିଦ୍ୱେଷ ଭାବ ପୋଷଣ ତାଙ୍କ ଚରିତ୍ର ବହିର୍ଭୂତ ।'' (ୟୁନିଭର୍ସ ଆନୁକୂଲ୍ୟରେ ପ୍ରକାଶିତ 'ରାଜନୀତିର ଭାରତ'ର ୩୯ ଓ ୪୦ ପୃଷ୍ଠା) ଠିକ୍ ଏହିଭଳି ଥିଲା ଭଗବତୀ ପାଣିଗ୍ରାହୀଙ୍କ ପ୍ରତି ତାଙ୍କର ଆତ୍ମୀୟତା– ସେ କମ୍ୟୁନିଷ୍ଟ ହୋଇଥିବା କଥା ଜଣାଯିବାପରେ ବି ।

## ଦ୍ୱିତୀୟ ମହାସମର ଓ କଂଗ୍ରେସ ମନ୍ତ୍ରିମଣ୍ଡଳର ଅବସାନ :

୧୯୩୯ ମସିହାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଭାଙ୍ଗିବା ପରେ ନବବାବୁ କଂଗ୍ରେସ ଦଳ କାମରେ ଏବଂ କୃଷକମାନଙ୍କ ସମସ୍ୟା ତଥା ଗଡ଼ଜାତ ପ୍ରଜାଙ୍କ ଆନ୍ଦୋଳନ ପ୍ରତି ଧ୍ୟାନ ଦେଲେ । କଂଗ୍ରେସ ମନ୍ତ୍ରିମଣ୍ଡଳ ପରେ ପାରଳାଖେମୁଣ୍ଡି ରାଜାଙ୍କ ମନ୍ତ୍ରିମଣ୍ଡଳ ଗଢ଼ା ହେଲାପରେ ମାଡ୍ରାସ୍ ଇଷ୍ଟେଟ୍ ଲାଣ୍ଡ ଆକ୍ଟ ଓ ଦେବୋତ୍ତର ଆଇନ୍ ଗଭର୍ଣ୍ଣର୍‌ଙ୍କ ସ୍ୱୀକୃତି ନ ପାଇବାରୁ ୧୯୪୦ ମସିହା ଜାନୁଆରି ୨୧ରୁ ୨୮ ତାରିଖ ପର୍ଯ୍ୟନ୍ତ ଗଞ୍ଜାମ ଜିଲ୍ଲାରେ ବିଭିନ୍ନ ସ୍ଥାନରେ ସଭାସମିତି ହୋଇଥିଲା । ସେଥିରେ ବିଶ୍ୱନାଥ ଦାସଙ୍କ ସହିତ ନବକୃଷ୍ଣ ଚୌଧୁରୀ ବିଶେଷ ଭାବରେ ଅଂଶଗ୍ରହଣ କରିଥିଲେ । ଏହି ସମୟରେ ପ୍ରାଦେଶିକ କଂଗ୍ରେସ ସଭାପତି ନୀଳକଣ୍ଠ ଦାସ କଂଗ୍ରେସ ଦଳର ନୀତିବିରୋଧୀ କାର୍ଯ୍ୟ ଚଳାଇଥାନ୍ତି ଓ ରାଜା, ଜମିଦାରମାନଙ୍କ ସହିତ ମିଶି ମାନ୍ଦ୍ରାଜ ଜମିଜମା ଆଇନ କାର୍ଯ୍ୟକାରୀ ନହେବାପାଇଁ ଲାଗିଥାନ୍ତି । ନବବାବୁଙ୍କ ଉଦ୍ୟମରେ ତାଙ୍କୁ ସଭାପତି ପଦରୁ ଅନ୍ତର କରାଯାଇ ତାଙ୍କ ସ୍ଥାନରେ ୧୯୪୦ ମସିହା ଲାଗି ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ସଭାପତି କରାଗଲା ଓ ନବବାବୁ ନିଜେ ସମ୍ପାଦକ ରହିଲେ ।

## ବ୍ୟକ୍ତିଗତ ସତ୍ୟାଗ୍ରହ :

୧୯୪୦ ଡିସେମ୍ବର ୧ ତାରିଖ ଦିନ ଗାନ୍ଧିଜୀଙ୍କ ନିର୍ଦ୍ଦେଶିତ ବ୍ୟକ୍ତିଗତ ସତ୍ୟାଗ୍ରହ କରି ନବବାବୁ ଅନୁଗୋଳର୍ ବାଗେଡ଼ିଆଠାରୁ ବନ୍ଦୀ ହୋଇଥିଲେ । ପ୍ରଥମ ଦଫାରେ ମନୋନୀତ ୧୦ ଜଣଙ୍କ ମଧ୍ୟରେ ତାଙ୍କ ଛଡ଼ା ଥିଲେ ହରେକୃଷ୍ଣ ମହତାବ, ସରଳା ଦେବୀ, ବୋଧରାମ ଦୁବେ, ବିଶ୍ୱନାଥ ଦାସ, ମୋହନ ଦାସ, ରାଧାକୃଷ୍ଣ ବିଶ୍ୱାସରାୟ, ଜଗନ୍ନାଥ ଦାସ, ପ୍ରହ୍ଲାଦରାୟ ଲାଠ ଏବଂ ଲୋକନାଥ ମିଶ୍ର । ଏଥର ସେ ଅନୁଗୋଳରୁ ବ୍ରହ୍ମପୁର ଜେଲକୁ ଆସି 'ଖ' ଶ୍ରେଣୀ ବନ୍ଦୀ ଭାବରେ ୭ ନମ୍ବର ୱାର୍ଡ଼୍‌ରେ ରହିଲେ । ପରବର୍ତ୍ତୀ ଦଫାରେ ଥିଲେ

ଗୋବିନ୍ଦ ମହାନ୍ତି ଆଦି । ମହତାବବାବୁ ଓ ବିଶ୍ୱନାଥ ଦାସ ଏବଂ ବୋଧରାମ ଦୁବେ ଥାନ୍ତି 'କ' ଶ୍ରେଣୀର ବନ୍ଦୀ । ବ୍ୟକ୍ତିଗତ ସତ୍ୟାଗ୍ରହ କରି ସେମାନେ ସେହି ବ୍ରହ୍ମପୁର ଜେଲରେ ବନ୍ଦୀ ଭାବରେ ଥିଲେ । ସେମାନେ ବିଶେଷ କିଛି ଭାଷଣ ନଦେଇ କେବଳ ଏତିକି କହୁଥିଲେ ଯେ 'ଇଂରେଜମାନଙ୍କର ଯୁଦ୍ଧ ଉଦ୍ୟମରେ ଧନ ଓ ଜନ ଦେଇ ସାହାଯ୍ୟ କରିବା ପାପ ଓ ହାରାମ ।'

୭ ନମ୍ବର ଅନ୍ତେବାସୀମାନଙ୍କ ମଧ୍ୟରେ ନବବାବୁଙ୍କ ସଙ୍ଗରେ ଥାଆନ୍ତି ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ, ଗୋକୁଳମୋହନ ରାୟଚୂଡ଼ାମଣି, ଲୋକନାଥ ମିଶ୍ର (ପାଟକୁରା), ଲୋକନାଥ ମିଶ୍ର (ପଙ୍କବାବୁ), ଅଧ୍ୟାପକ ରାମମୂର୍ତ୍ତି, କୃପାସିନ୍ଧୁ ଭୋକ୍ତା (ଅନୁଗୋଳ), ଗୋବିନ୍ଦ ଚନ୍ଦ୍ର ମହାନ୍ତି, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଗୋବିନ୍ଦ ପ୍ରଧାନ, ସଦାଶିବ ତ୍ରିପାଠୀ, ରାଧାକୃଷ୍ଣ ବିଶ୍ୱାସରାୟ, ଭଗବାନ ପଡ଼ିଆରୀ, ରାଧାମୋହନ ସାହୁ, ଗତିକୃଷ୍ଣ ସ୍ୱାଇଁ, ଦ୍ୱାରିକାମୋହନ ଦାସ ଆଦି । ପୁରୁଣା ସେଲ୍‌ରେ ଥାଆନ୍ତି ଉମାଚରଣ ପଟ୍ଟନାୟକ ।

ଯୁଦ୍ଧ ସମ୍ବାଦ ପଢ଼ାହେଲାବେଳକୁ ସମସ୍ତେ ଏକଜୁଟ ହୋଇଯାଆନ୍ତି । ହିଟ୍‌ଲର ଓ ମୁସୋଲିନୀଙ୍କ ଉତ୍ପାତ ଏବଂ ସୋଭିଏତ୍ ଇଉନିୟନ ଉପରେ ହିଟଲର୍‌ର ଆକ୍ରମଣ ଆଲୋଚନାବେଳେ ନବବାବୁ ଇଙ୍ଗିତ ଦିଅନ୍ତି–ଆମେ ବର୍ତ୍ତମାନ ବାହାରେ ରହିବା ଉଚିତ । ଏକ ସୀମିତ କ୍ଷମତାକୁ ଉପଯୋଗ କରି ସ୍ୱାଧୀନତା ସଂଗ୍ରାମକୁ ଚାଲୁରଖିବା ସଙ୍ଗେସଙ୍ଗେ ଫାସିବାଦ-ବିରୋଧୀ କୌଶଳ ଗ୍ରହଣ କରିବା ବି ଉଚିତ । ଅବଶ୍ୟ କଂଗ୍ରେସ ଦଳର ଅଧିକାଂଶ ଏଥିରେ ଏକମତ ନଥିଲେ ।

ସେ ହାଲୁକା ଢଙ୍ଗରେ କହୁଥିଲେ ଯେ ଏହି ଲକ୍ଷ୍ୟରେ ଏକ ବିକଳ୍ପ ସରକାର ଗଢ଼ାଗଲେ ଉମାଚରଣ ପଟ୍ଟନାୟକ ହେବେ ସ୍ୱରାଷ୍ଟ୍ରମନ୍ତ୍ରୀ, ମୋହନ ଦାସ ହେବେ ଜଣେ ମନ୍ତ୍ରୀ ଓ ଲୋକନାଥ ମିଶ୍ର ହେବେ ବାଚସ୍ପତି ଏବଂ ସେ ନିଜେ ହେବେ ପ୍ରଧାନମନ୍ତ୍ରୀ ।

ଦେଶର ସ୍ୱାର୍ଥରକ୍ଷା ସଙ୍ଗେସଙ୍ଗେ, ଫାସିବାଦ ବିରୋଧରେ ଲଢ଼େଇକୁ, ସମଗ୍ର ପୃଥିବୀର ସ୍ୱାର୍ଥ ଦୃଷ୍ଟିରୁ, ସେ ଗୁରୁତ୍ୱପୂର୍ଣ୍ଣ ମନେକରୁଥିଲେ ।

### ଭାରତ ରକ୍ଷା ଆଇନରେ ବନ୍ଦୀ :

ଜାପାନ ଦ୍ୱିତୀୟ ମହାସମରରେ ଯୋଗ ଦେବା ପରେ ମିତ୍ରପକ୍ଷ (ବ୍ରିଟେନ୍, ଫ୍ରାନ୍ସ ଓ ଯୁକ୍ତରାଷ୍ଟ୍ର ଆମେରିକା) ଚାରିଆଡ଼େ ହାରୁଥାନ୍ତି । ସେହି ସମୟରେ କଂଗ୍ରେସ ଲୋକେ ଚାରିଆଡ଼େ ସଭାସମିତି କରି ଇଂରେଜ ସରକାରର ଜିଦ୍‌କୁ ନିନ୍ଦା କରିବା ସଙ୍ଗେସଙ୍ଗେ ଜାପାନୀ ଆକ୍ରମଣର ବିପଦ ସମ୍ପର୍କରେ ଲୋକମାନଙ୍କୁ ସତର୍କ କରାଉଥାନ୍ତି । ନବକୃଷ୍ଣ ଚୌଧୁରୀ ୧୯୪୨ ଜାନୁଆରି ୬ ତାରିଖରେ ସାଲେପୁରଠାରେ ଏକ ସଭାରେ ବ୍ରିଟିଶ

ସରକାରକୁ ଅତି ତାଛଲ୍ୟ ଭାବରେ ସମାଲୋଚନା କରିଥିଲେ । ତାଙ୍କ ଭାଷଣର ମର୍ମ ଥିଲା ଯେ, ଯିଏ ନିଜକୁ ରକ୍ଷା କରିବାକୁ ଅସମର୍ଥ, ସେ ଭାରତବର୍ଷକୁ କିଭଳି ରକ୍ଷା କରିବ ? ବରଂ ଭାରତବର୍ଷକୁ ତା' କଥା ବୁଝିବାକୁ ଓ ନିଜର ଆତ୍ମରକ୍ଷା କରିବାକୁ ଛାଡ଼ିଦିଆଯାଉ । ଏହି ଭାଷଣ ଲାଗି ତାଙ୍କୁ ଭାରତରକ୍ଷା ଆଇନରେ ୬ ମାସ ସଶ୍ରମ କାରାଦଣ୍ଡ ହୋଇଥିଲା ଓ ଜଜ୍ କୋର୍ଟ ଅପିଲ୍‌ରେ ତାହା ୬ ସପ୍ତାହକୁ କମିଥିଲା । ହରେକୃଷ୍ଣ ମହତାବ, ମୋହନ ଦାସ, ଗୌରାଙ୍ଗ ଚରଣ ଦାସ ଓ ପ୍ରାଣକୃଷ୍ଣ ପଢ଼ିହାରୀ ଆଦି ବିଭିନ୍ନ ସ୍ଥାନରେ ଏହିଭଳି ଭାଷଣ ଦେଇ ଗିରଫ ହୋଇଥିଲେ । ଏହି ସମୟରେ ପାରଳା ମନ୍ତ୍ରିମଣ୍ଡଳ ଗଢ଼ାଯାଇଥାଏ । କେତେକ କଂଗ୍ରେସ ଲୋକ ସେମାନଙ୍କ ସହିତ ସହଯୋଗ କରିଥିଲେ ବି ଉକ୍ତ ମନ୍ତ୍ରିମଣ୍ଡଳର ବିଧାନସଭାରେ ସଂଖ୍ୟାଧିକ୍ୟ ନଥିଲା । ଏଣୁ କାଳେ ସେହି ମନ୍ତ୍ରିମଣ୍ଡଳ ବିରୋଧରେ ଅନାସ୍ଥା ପ୍ରସ୍ତାବ ଆସିବ, ସେହି ଡରରେ କଂଗ୍ରେସ ନେତାଙ୍କ ସମେତ କଂଗ୍ରେସ ବିଧାୟକମାନଙ୍କୁ ବନ୍ଦୀ କରିବା ଥିଲା ଏସବୁ ଗିରଫ ପଛରେ ମତଲବ ।

ଏହି ମକଦ୍ଦମା ସେକାଳର ସ୍ୱାଧୀନଚେତା ଆଇନ୍‌ଜୀବୀ ହରିହର ମହାପାତ୍ର ଲଢ଼ିଥିଲେ । ସେ ତାଙ୍କ ଆତ୍ମଜୀବନୀ 'ଜୀବନ ଓ ଜୀବିକା'ର ୩୧୦ ପୃଷ୍ଠାରେ ଉକ୍ତ ମକଦ୍ଦମା ସମ୍ପର୍କରେ ବର୍ଣ୍ଣନା କରି ଉଲ୍ଲେଖ କରିଛନ୍ତି ଯେ, ''ନବବାବୁଙ୍କ ସାଲେପୁର ସଭାର ବିବୃତି ବ୍ରିଟିଶ ସରକାର ପ୍ରତି ଏଭଳି ବ୍ୟଙ୍ଗ ଓ ବିଦ୍ରୂପାତ୍ମକ ହୋଇଥିଲା ଯେ, ସରକାରୀ ଓକିଲ କୋର୍ଟରେ ସେ ବିବୃତି ନ ପଢ଼ିବାକୁ ଦାବି କରିଥିଲେ ।'' କିନ୍ତୁ ହରିହର ମହାପାତ୍ର, ନାନା ଆପତ୍ତି ସତ୍ତ୍ୱେ, ସେ ବିବୃତିଟି ପୂରା ପାଠ କରିଥିଲେ । ତାଙ୍କ ମତଲବ ଥିଲା, କୋର୍ଟରେ ଉପସ୍ଥିତ ଥିବା ବ୍ୟକ୍ତିମାନେ ସେ ବିବୃତି ଶୁଣନ୍ତୁ ଓ ତାହା ଖବରକାଗଜରେ ବାହାରୁ ।

''ସେତେବେଳକୁ ପାଟନା ହାଇକୋର୍ଟର ଏକ ବେଞ୍ଚ କଟକରେ ସାମୟିକ ଭାବେ ବସୁଥିଲା । ଏହି ମକଦ୍ଦମାର ବିଚାରକ ଥାନ୍ତି ଜଷ୍ଟିସ ମେରେଡ଼ିଥ୍ । ସେ ଥିଲେ ଆୟର୍ଲାଣ୍ଡ ଲୋକ । ସରକାରୀ ଓକିଲ ଭାବରେ ଲଢୁଥାନ୍ତି ବୀରକିଶୋର ରାୟ ।

''ନବବାବୁ ପର୍ଲ ହାରବର୍‌ରେ ମିତ୍ରପକ୍ଷର ପରାଜୟ, ଯୁଦ୍ଧ ଆୟୋଜନର ବିଫଳତା ଇତ୍ୟାଦିକୁ ରୂଢ଼ ଭାଷାରେ ବ୍ୟକ୍ତ କରିଥିଲେ ବୋଲି ମାଜିଷ୍ଟ୍ରେଟ୍ କୋର୍ଟରେ ଜେଲ ଦଣ୍ଡ ହେଲା । ଅପିଲ୍‌ରେ ତାହା କାଏମ୍ ରହିବାରୁ ହାଇକୋର୍ଟରେ ରିଭିଜନ ଦାଖଲ କଲି । ମହତାବଙ୍କ କେସ୍ ଓ ଏହି କେସ୍ ପଡ଼ିଲା ପାଟନା ହାଇକୋର୍ଟର ଜଜ୍ ମେରେଡ଼ିଥ୍ ଆଇ.ସି. ଏସ୍.ଙ୍କ ପାଖରେ କଟକ ସର୍କିଟ୍‌ରେ । କୋର୍ଟ୍ ରୁମ୍‌ରେ କଂଗ୍ରେସ ସମର୍ଥକଙ୍କ ଭିତରେ ବହୁ ଓକିଲ ଖୁନ୍ଦିଖାନ୍ଦି ହୋଇ ବସିଥାନ୍ତି । କହିବା ବାହୁଲ୍ୟ, ଏସବୁ ମକଦ୍ଦମା ଆମେ ହାତରୁ ଖର୍ଚ୍ଚ କରି, ଅତି ତତ୍ପରତାର ସହିତ କରୁଥିଲୁ, କର୍ତ୍ତବ୍ୟ ଦୃଷ୍ଟିରୁ । ସେଥିପାଇଁ ସମୟ ଅଭାବରୁ ଫିସଦିଆ ଅନ୍ୟ ମକଦ୍ଦମା ଛାଡ଼ିବାରେ ଆଦୌ କୁଣ୍ଠାବୋଧ ନଥିଲା । ମୋ ବିପକ୍ଷରେ ଥିଲେ

ବୀରକିଶୋର ରାୟ ଆଡ୍‌ଭୋକେଟ୍‌-ଜେନେରାଲ୍ । ନବ ଚୌଧୁରୀଙ୍କ ବକ୍ତୃତାଟି ପୂରା ପଢ଼ି ଶୁଣାଇଥିଲି । ମେରେଡ଼ିଥ୍‌ଙ୍କ ମୁହଁ, କାନ ରାଗ ଓ ବିରକ୍ତିରେ ଲାଲ୍ ଦିଶୁଥାଏ । ମୋ ପଢ଼ାରେ ବାଧା ଦେଇ ପଚାରିଲେ ଯେ, ମୁଁ କାହିଁକି ସମସ୍ତଟା ପଢୁଛି । ତା ସାଙ୍ଗକୁ ବୀରବାବୁ ଆକ୍ଷେପ ଯୋଡ଼ିଲେ ଯେ ସେପରି ପଢ଼ିବା ଦ୍ୱାରା କୋର୍ଟ୍ ରୁମ୍‌ରେ ଜମା ହୋଇଥିବା ଲୋକେ ଯୁଦ୍ଧ ବିରୁଦ୍ଧରେ ଉତ୍ତ୍ୟକ୍ତ ବୋଧ କରୁଛନ୍ତି । ମୁଁ ଧୀର, ନମ୍ର ଭାବରେ ନିବେଦନ କଲି, ବକ୍ତୃତାଟିକୁ ପୂରା ଭାବରେ ବିଚାର ନ କରି, କେତେକ ଅଂଶରେ ବ୍ୟବହୃତ କେତୋଟି ବାକ୍ୟ ଓ ଶବ୍ଦ ଉପରେ ତଳ କୋର୍ଟରେ ପଠିତ ହୋଇଥିବା ମତକୁ ମୁଁ ଦର୍ଶାଇବାକୁ ଚେଷ୍ଟା କରୁଛି । ଜଜ୍ ନୀରବ ରହିଲେ । ମୋ ପଢ଼ା ଚାଲିଛି । ମୁଁ ପ୍ରକୃତରେ ଇଚ୍ଛା କରୁଥିଲି, ରାୟ ଯାହା ହବ ହେଉ, ସମସ୍ତେ ଜାଣନ୍ତୁ ବକ୍ତୃତାର ବିଷୟ । ମୋର ବକ୍ତବ୍ୟ ଥିଲା, ଭାଷାର ଉଗ୍ରତା ଅପରାଧ ନୁହେଁ; ଅପ୍ରୀତିକର, ଅସୌଜନ୍ୟ ବା ଖୁବ୍ ହେଲେ ନିନ୍ଦନୀୟ ହୋଇପାରେ । ବକ୍ତୃତାରେ ଅସତ୍ୟ ଘଟନାର ଉଲ୍ଲେଖ ନଥିଲା । ଲୋକଙ୍କୁ ନିଜେ ନିଜେ ସଙ୍ଗଠିତ ହେବାକୁ ଯେଉଁ ଆହ୍ୱାନ ଦିଆ ହୋଇଥିଲା, ତାହା ଶତ୍ରୁ ଆକ୍ରମଣରେ ସରକାରଙ୍କ ସପକ୍ଷରେ କାର୍ଯ୍ୟକାରୀ ହେବାର ସମ୍ଭାବନା ଅଧିକ ଥିଲା ।

''ନବବାବୁଙ୍କ ବିରୋଧରେ ଅଭିଯୋଗ ଥିଲା ଯେ, ସେ ତାଙ୍କ ଭାଷଣରେ ବ୍ରିଟିଶମାନଙ୍କୁ ଦୁର୍ବଳ, ନୀତିହୀନ ଓ ନିର୍ବୋଧ ବୋଲି କହିଛନ୍ତି । ବର୍ତ୍ତମାନ ସେମାନେ ଖଣାରେ ପଡ଼ିଛନ୍ତି । ଆମେ ବର୍ତ୍ତମାନ ବସି ମଜା ଦେଖିବା ବୋଲି ଆପଣମାନେ ଭାବୁଥିବେ । କିନ୍ତୁ ଏହା ଆମ ପକ୍ଷରେ ସଙ୍ଗତ ନୁହେଁ । କାରଣ ଜାପାନ ଓ ହିଟଲର ମଧ ବ୍ରିଟିଶମାନଙ୍କ ଭଳି ଖରାପ । ଏଣୁ ମହରଗରୁ ଯାଇ କାନ୍ତାରରେ ପଡ଼ିବା ଉଚିତ ନୁହେଁ । ଏଣୁ ବର୍ତ୍ତମାନ ଏକଜୁଟ୍ ହୋଇ ରହନ୍ତୁ ଓ ଅହିଂସା ପଥ ଅନୁସରଣ କରନ୍ତୁ । ଗାଁମାନଙ୍କୁ ଆତ୍ମନିର୍ଭରଶୀଳ କରି ଗଢ଼ନ୍ତୁ । ଗାନ୍ଧିଙ୍କ କଥା ଅନୁସରଣ କରି ଶାନ୍ତିଶୃଙ୍ଖଳାରେ ବାସ କରନ୍ତୁ ।''

''ରାୟରେ ଜଷ୍ଟିସ୍ କହିଛନ୍ତି ଯେ, ଅବଶ୍ୟ ଅଭିଯୁକ୍ତ ବ୍ୟକ୍ତି ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧରେ ଅନେକ ଯାହା ଇଚ୍ଛା ତା ହୀନ କଥା କହିଛନ୍ତି । କିନ୍ତୁ ତଦ୍ୱାରା ସେ ଯୁଦ୍ଧ ଉଦ୍ୟମକୁ ବାଧାଦେବା ପାଇଁ ବା ଶତ୍ରୁକୁ ସାହାଯ୍ୟ କରିବା ଲାଗି ବା ଲୋକଙ୍କୁ ଉସ୍‌କେଇଲା ଭଳି କିଛି କହିନାହାନ୍ତି । ଯଦିଓ ସେ ସରକାରକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କରିବାକୁ କହିନାହାନ୍ତି; ସରକାରର ଯୁଦ୍ଧ ଉଦ୍ୟମକୁ ବାଧା ଦେବାଭଳି କିଛି କଥା ତାଙ୍କ ଭାଷଣରେ ନାହିଁ । ସେ ଲୋକଙ୍କୁ ନିଜେ ସଙ୍ଗଠିତ ହୋଇ ରହିବାକୁ କହିଛନ୍ତି ମାତ୍ର । ଏହି ଦୃଷ୍ଟିରୁ ବିଚାର କଲେ, ସେ ଭାଷଣରେ ଲୋକଙ୍କୁ ଉସ୍‌କେଇଲା ଭଳି ବା ଅଶାନ୍ତି ସୃଷ୍ଟି କରିଲା ଭଳି କିଛି ନାହିଁ । ...ଏଣୁ ଦେଶଦ୍ରୋହ ଦୋଷରେ ତାଙ୍କୁ ଦଣ୍ଡ ଦିଆଯାଇପାରିବ ନାହିଁ । ...ତାଙ୍କୁ ତେଣୁ ଖଲାସ କରିଦେବାକୁ ମୁଁ ନିର୍ଦ୍ଦେଶ ଦେଉଛି ।''

## ଅଗଷ୍ଟ ବିପ୍ଳବ :

୧୯୪୨ ମସିହା ବେଳକୁ ଗାନ୍ଧିଜୀ ଶେଷ ଲଢ଼େଇ ପାଇଁ ପ୍ରସ୍ତୁତ ହେଉଥାନ୍ତି । ସେଥିପାଇଁ କଂଗ୍ରେସ ଲୋକେ ବିଭିନ୍ନ ସ୍ଥାନରେ ସଭା ଓ ଆଲୋଚନା ସଭା କରୁଥାନ୍ତି । ମଇ ମାସର ଶେଷ ଆଡ଼କୁ କଟକ ଜିଲ୍ଲାର ହରିଶପୁରଠାରୁ ହୋକିଟୋଲା ପର୍ଯ୍ୟନ୍ତ ସମୁଦ୍ରଗାମୀ ଯୁଦ୍ଧସାମଗ୍ରୀପୂର୍ଣ୍ଣ ବ୍ରିଟିଶ ରଣତରୀ ଉପରେ ଜାପାନର ବୋମାମାଡ଼ ହୋଇଥିଲା । ଏଥିରେ ଭୀତତ୍ରସ୍ତ ହୋଇ ସରକାର କଟକରୁ ସମ୍ବଲପୁରକୁ ରାଜଧାନୀ ଉଠାଇନେଲେ । କଟକ ସହରରେ ଆତଙ୍କ ଖେଳିଯାଇଥାଏ । ଜାପାନୀମାନେ ଯେକୌଣସି ସମୟରେ ଓଡ଼ିଶା ଦଖଲ କରିନେବା କଥା ଶୁଣାଯାଉଥାଏ । ଏପ୍ରିଲ ମାସ ଦ୍ୱିତୀୟ ସପ୍ତାହ ଆଡ଼କୁ ନବବାବୁ ଓ ମାଳତୀ ଦେବୀ, ମନମୋହନ ଚୌଧୁରୀ, ନୃସିଂହ ମହାନ୍ତି ଆଦି କିଛି କର୍ମୀଙ୍କ ସହ କଂଗ୍ରେସ ଅଫିସ୍‌କୁ କଟକରୁ ସାଲେପୁର ଉଠାଇନେଇଥିଲେ ଓ ସେହିଠାରୁ କଟକ ଜିଲ୍ଲାର ଗ୍ରାମାଞ୍ଚଳରେ କଂଗ୍ରେସର ରଣ ଆଭିମୁଖ୍ୟ ସମ୍ପର୍କରେ ସଭା କରୁଥିଲେ । ଏହା ସଙ୍ଗେସଙ୍ଗେ ସୂତାକଟା, କୁଟୀର ଶିଳ୍ପ, ଅସ୍ପୃଶ୍ୟତା ନିବାରଣ ଓ ଗ୍ରାମ ସଫେଇ ସମ୍ପର୍କରେ ଲୋକଙ୍କୁ ବୁଝାଉଥିଲେ ।

୧୯୪୨ ଅଗଷ୍ଟ ଆନ୍ଦୋଳନ ପୂର୍ବରୁ ଯାଜପୁରର ଛତ୍ରପଡ଼ା ନିକଟରେ ଯୁଦ୍ଧ ପ୍ରତି କଂଗ୍ରେସର ଦୃଷ୍ଟିଭଙ୍ଗୀ ସମ୍ପର୍କରେ ଏକ ସଭା ହୋଇଥିଲା । ଏଣେ ବ୍ରିଟିଶ ସରକାରର ନୀତିକୁ ସମାଲୋଚନା କରି ଓ ତେଣେ ଜାପାନର ଭାରତ ଅଭିଯାନ ବିରୁଦ୍ଧରେ ଏକ ନୀତି ନିର୍ଦ୍ଧାରଣ କରିବା ସେତେବେଳେ କଂଗ୍ରେସ ଲୋକଙ୍କ ପକ୍ଷରେ କଷ୍ଟକର ବ୍ୟାପାର ହୋଇଥାଏ । ଅନେକ ଲୋକ ଭାବୁଥାନ୍ତି ଯେ ଜାପାନ ପଛେ ଆସୁ, ଇଂରେଜ ଯାଉ । ମନମୋହନ ଚୌଧୁରୀ ସେହି ସଭାରେ ଉପସ୍ଥିତ ଥିଲେ । ନବବାବୁ ସେହି ସଭାରେ ଏକ ଦୀର୍ଘ ଭାଷଣ ଦେଲେ । ରାତି ବେଶ୍ ହୋଇଗଲାଣି । ସଭାର ପ୍ରାୟ ସବୁ ଲୋକ ସେତେବେଳକୁ ଉଠିଗଲେଣି । ଶେଷକୁ ଶ୍ରୋତା ଭାବରେ ଥିଲେ ଏକମାତ୍ର ବ୍ୟକ୍ତି ; ସେଠାକାର ଶିକ୍ଷକ । ନବବାବୁ ଭାଷଣ ଦେଲାବେଳେ ବିଷୟଟିକୁ ଏକ ନିବନ୍ଧ ଭଳି ଉପସ୍ଥାପନ କରନ୍ତି, ଏଣୁ ଭାଷଣ ସାଧାରଣତଃ ଦୀର୍ଘ ହୋଇଥାଏ । ଏହାର କିଛିଦିନ ପରେ ଅଗଷ୍ଟ ଆନ୍ଦୋଳନରେ ଗିରଫ ହୋଇ ନବବାବୁ ଓ ମନମୋହନ ଚୌଧୁରୀ କଟକ ଜେଲରେ ଥିଲାବେଳେ ସେହି ଆଗ୍ରହୀ ଶିକ୍ଷକ ଶ୍ରୋତାଟି ଯେଉଁଦିନ ଜେଲରେ ଆସି ପହଞ୍ଚିଲେ, ନବବାବୁ ମନମୋହନ ଚୌଧୁରୀଙ୍କୁ କହିଲେ "ଯାହା ହେଉ, ସେଦିନର ପରିଶ୍ରମ ସାର୍ଥକ ହେଲା ।" ମନମୋହନବାବୁ ଆଦି ମଜାରେ କହିଉଠିଥିଲେ, "ଶତକଡ଼ା ଶହେ ସାର୍ଥକ ।" ଦାଦା ପୁତୁରାଙ୍କ ମଧ୍ୟରେ ବେଳେବେଳେ ଏମିତି ଅତି ହାଲୁକା କଥାବାର୍ତ୍ତା ହୋଇଥାଏ ।

ବିଖ୍ୟାତ ଅଗଷ୍ଟ ବିପ୍ଳବ ପୂର୍ବରୁ ଅଗଷ୍ଟ ୮ ତାରିଖ ଦିନ ବମ୍ବେଠାରେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକରେ କିଛି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନିଆହେବାକୁ ଥାଏ । ହରେକୃଷ୍ଣ ମହତାବ

କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ଭାବରେ ଆଗରୁ ସେଠାରେ ଥିଲେ । ନବବାବୁ ସେଠାକୁ ନଯାଇ ମାଳତୀ ଦେବୀ ଓ ସୁରେନ୍ଦ୍ର ଦ୍ୱିବେଦୀଙ୍କୁ ବମ୍ବେ ପଠାଇଥିଲେ । ଉକ୍ତ ବୈଠକରେ ଭାରତବର୍ଷର ରକ୍ଷା ଓ ଶାସନ ଦାୟିତ୍ୱ ଭାରତବାସୀଙ୍କୁ ଛାଡ଼ିଦେଇ ଇଂରେଜମାନଙ୍କୁ ଭାରତ ଛାଡ଼ିଯିବାକୁ କୁହାଯାଇଥିଲା । ଅଗଷ୍ଟ ୯ ତାରିଖ ସକାଳୁ ନବବାବୁ, ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ଘରକୁ ଯାଇଥିଲେ, ପୂର୍ବ ରାତିର ବିଶେଷ ଖବର କିଛି ଜାଣିବାକୁ । ସେଠାରୁ କିଛି ଖବର ନ ପାଇ କଟକ ମ୍ୟୁନିସିପାଲିଟି ଅଫିସ୍‌କୁ ଯାଇ ଇଉନାଇଟେଡ୍ ପ୍ରେସ୍‌କୁ ଟେଲିଫୋନ୍ କରି ଜାଣିଲେ ଯେ ପୂର୍ବ ରାତିରେ ଗାନ୍ଧିଜୀଙ୍କ ସମେତ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟମାନେ ଗିରଫ ହୋଇଯାଇଛନ୍ତି । ସେ ସେଠାରୁ ଆସି ନିତ୍ୟାନନ୍ଦ କାନୁନ୍‌ଗୋଙ୍କୁ ଏ ଖବର ଦେଇ ଘରକୁ ଫେରିଆସିଲେ । ସେତେବେଳକୁ ସାଲେପୁର ଅଫିସରୁ ଏକ ଜରୁରୀ କାମରେ ନୃସିଂହଚରଣ ମହାନ୍ତି ତାଙ୍କ ଘରେ ପହଞ୍ଚିଥାନ୍ତି । ଅନ୍ୟମାନେ ଗିରଫ ହେଉଥିବାରୁ ନବବାବୁ ଆତ୍ମଗୋପନ କରନ୍ତୁ ବୋଲି ନୃସିଂହବାବୁ ତାଙ୍କୁ ଅନୁରୋଧ କଲେ । କିନ୍ତୁ ଅନ୍ୟମାନେ ଗିରଫ ହେଉଥିଲା ବେଳେ ସେ ରହିଯିବା ଠିକ୍ ହେବ ନାହିଁ ବୋଲି କହି ସାଲେପୁର ଅଫିସର ହାଲଚାଲ୍ ବୁଝିଲେ । ନୁମା ଓ ସୁରିଆ (ସୁରେନ୍ଦ୍ର ଦ୍ୱିବେଦୀ) ବୋଧହୁଏ ବମ୍ବେରେ ଗିରଫ ହୋଇଯାଇଥିବେ ବୋଲି ସେ ଆଶଙ୍କା ପ୍ରକାଶ କରିଥିଲେ । ସବୁ ନେତା ଗିରଫ ହୋଇଯାଉଥିବା ବେଳେ କର୍ମୀମାନେ କଅଣ କରିବେ ବୋଲି ନୃସିଂହବାବୁ ନବବାବୁଙ୍କୁ ପଚାରିଲେ । ''ତୁ ଆସିବୁ ବୋଲି ମୁଁ ଆଶା କରୁଥିଲି'' କହି ନବବାବୁ ଏକ ଛୋଟ ଚିଠି ତାଙ୍କୁ ବଢ଼ାଇଦେଲେ । କହିଲେ, ''ବର୍ତ୍ତମାନ ଆଉ ନେତା କେହି ନାହାନ୍ତି, ସମସ୍ତେ ନିଜେ ନିଜର ନେତା ।'' ସେ ଚିଠିଟିରେ ଥିଲା :

ସ୍ନେହର...

ସବୁ ଖବର ଶୁଣିବୁଣି । ସମସ୍ତେ ଗିରଫ ହୋଇଗଲେଣି । କେହି ନିର୍ଦ୍ଦେଶ ଦେବାକୁ ନାହିଁ । ତୁମେ ତୁମର ନେତା । 'ଇଂରେଜ ଭାରତ ଛାଡ଼' ପ୍ରସ୍ତାବ ଏ.ଆଇ.ସି.ସି.ରେ ଗୃହୀତ ହୋଇଯାଇଛି । ଗାନ୍ଧିଜୀଙ୍କ ନିର୍ଦ୍ଦେଶ ''କର ବା ମର'' । ଆମର ପୂର୍ବ ଯୋଜନାକୁ କାର୍ଯ୍ୟକାରୀ କରିବାକୁ ଚେଷ୍ଟା କରିବ ।

ତୋ'ର...

ଚିଠି କିଏ ଲେଖିଛି ବା କାହାକୁ ଲେଖା ହୋଇଛି, କିଛି ନଥିଲା । ତାହା ପେନ୍‌ସିଲ୍‌ରେ ଲେଖା ହୋଇଥିଲା । ସେ କହିଲେ ''ତୁ ଶୀଘ୍ର ଚାଲି ଯା, ପୋଲିସ ଆସିଯିବ । ସାଲେପୁର ଯିବୁ ନାହିଁ । ସେଠାକୁ ତୋ' ନାମରେ ୱାରେଣ୍ଟ ହୁଏତ ଯାଇଥିବ । ସାଲେପୁରକୁ, ପାରିବୁ ଯଦି, କାହା ହାତରେ ଖବର ଦେଇଦେବୁ ।'' ଶେଷରେ କହିଥିଲେ, ''ଯାହା କରିବ ତ କରିବ, କୌଣସି ସରକାରୀ କର୍ମଚାରୀଙ୍କୁ ମାରିଦେବ ନାହିଁ ।''

ଏହି ସମୟରେ ଗୋପବାବୁ ଓ ରମାଦେବୀ ରିକ୍ସାରେ ଆସି ପହଞ୍ଚିବା ପରେପରେ ପୋଲିସ ପହଞ୍ଚିଗଲେ । ଗୋପବାବୁ ଘର ଭିତରକୁ ଆସି ଏତିକି ମାତ୍ର କହିଲେ "ଯାଅ ବୀର...ଆଗେଇ ଯାଅ ।" ପୋଲିସ ସମସ୍ତଙ୍କୁ ଗିରଫ କରି ଜିପ୍‌ରେ ବସାଇ ନେଇଗଲା । ନୃସିଂହବାବୁ କଟକ ଛାଡ଼ି ଆସିବା ବାଟରେ ଜଣେ କଲେଜ ଛାତ୍ରଙ୍କ ହାତରେ ରେଭେନ୍ସା କଲେଜ ଛାତ୍ର ରଘୁନାଥ ନାୟକଙ୍କ ନିକଟକୁ ଖଣ୍ଡିଏ କାଗଜରେ ଏତିକି ଲେଖି ପଠାଇଦେଲେ "କର ଅବା ମର"–ଗାନ୍ଧିଜୀଙ୍କ ବାଣୀ ।

ସାଲେପୁର ଅଫିସ୍‌ରେ ବୈଷ୍ଣବ ପଟ୍ଟନାୟକ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ବନମାଳୀ ପଟ୍ଟନାୟକ, ମନମୋହନ ଚୌଧୁରୀ ଆଦିଙ୍କ ଉପସ୍ଥିତିରେ ଇତିପୂର୍ବରୁ ନବବାବୁ ଶେଷ ସଂଗ୍ରାମ ପାଇଁ ଏକ ଚିଠା କରିଥିଲେ । ସେଗୁଡ଼ିକ ହେଲା–

୧ । ଇଂରେଜ ସରକାର ସହ ସମ୍ପୂର୍ଣ୍ଣ ଅସହଯୋଗ (ବୟକଟ୍) । ସରକାରୀ ଅଫିସ୍, କଚେରି ଓ କର୍ମଚାରୀଙ୍କୁ ବର୍ଜନ ।

୨ । ଗ୍ରାମେ ଗ୍ରାମେ ସ୍ୱାଧୀନ ପଞ୍ଚାୟତ ଗଠନ, ଗ୍ରାମ ଶାସନ ପ୍ରଚଳନ, ସ୍ୱେଚ୍ଛାସେବକ ସଂଗ୍ରହ କରି ସେମାନଙ୍କୁ ନେଇ ସ୍ୱରାଜ ସୈନିକ ଗଠନ ।

୩ । କର, ଟିକସ ବନ୍ଦ ହେବ । ସରକାରୀ ବ୍ୟବସ୍ଥା ସମ୍ପୂର୍ଣ୍ଣ ଅଚଳ କରି ସରକାରୀ ସଂସ୍ଥା ସବୁକୁ ଦଖଲ କରିନିଆଯିବ । ଭାରତୀୟ ସରକାରୀ କର୍ମଚାରୀଙ୍କୁ, ଇସ୍ତଫା ଦେଇ, ଆନ୍ଦୋଳନ୍‌ରେ ଭାଗ ନେବାକୁ ଅନୁରୋଧ କରାଯିବ । ସେମାନେ ଇସ୍ତଫା ନଦେଲେ ସେମାନଙ୍କୁ ସାମାଜିକ ବାସନ୍ଦ କରାଯିବ ।

୪ । ଥାନା, ଡାକଘର, ଜଳକର ଅଫିସ୍ ଦଖଲ କରି ସ୍ୱରାଜ ସୈନିକଙ୍କ ଦ୍ୱାରା ପରିଚାଳନା କରିବାକୁ ହେବ, ପୋଲିସ ଓ ସୈନ୍ୟମାନଙ୍କୁ ଗ୍ରାମ ଭିତରକୁ ବା ଅଞ୍ଚଳ ଭିତରକୁ ପ୍ରବେଶରେ ବାଧା ଦିଆଯିବ । ସ୍ଥାନବିଶେଷରେ ସେମାନଙ୍କ ଅଗ୍ରଗତି ରୋକିବା ଲାଗି ରାସ୍ତାରେ ଗଛ କାଟି ପକାଇବାକୁ ଓ ନାଳବନ୍ଧ କାଟି ଦେବାକୁ, ନଦୀର ଡଙ୍ଗାଘାଟ ସେମାନଙ୍କୁ ବ୍ୟବହାର କରିବାକୁ ନଦେବା ଲାଗି ବ୍ୟବସ୍ଥା କରିବାକୁ ହେବ ।

୫ । ଟେଲିଗ୍ରାମ, ଟେଲିଫୋନ ଓ ରେଳ ଲାଇନକୁ ଅଚଳ କରିଦିଆଯିବ । ଆମର ଜାତୀୟ ସମ୍ପତ୍ତିକୁ ଯେତେଦୂର ସମ୍ଭବ ନଷ୍ଟ କରାଯିବ ନାହିଁ । ଇଂରେଜ ସରକାରର ପ୍ରତୀକ ହେଉଛି ଥାନା । ସେହି ଥାନାଗୁଡ଼ିକୁ ଦଖଲ କରିନେଲେ ଲୋକଙ୍କ ମନରୁ ଭୟ ଦୂର ହେବ ।

୬ । ସମାନ୍ତରାଳ ସରକାର ପ୍ରତିଷ୍ଠା କରାଯିବ । ଖାଦ୍ୟ ପଡ଼ି ବ୍ୟବସ୍ଥା କରାଯିବ । ବିଭିନ୍ନ ଅଞ୍ଚଳକୁ ଖବର ଦେଣନେଣ ପାଇଁ ଗୁପ୍ତଚର ବାହିନୀ ଗଠନ କରାଯିବ । ୪, ୫ଟି ଗ୍ରାମକୁ ନେଇ ଗୋଟିଏ ଅଞ୍ଚଳ ଗଠନ କରାଯିବ ।

ନୃସିଂହ ମହାନ୍ତି ନବବାବୁଙ୍କର ସେଇ ଛୋଟ ଚିଠି ଖଣ୍ଡକ ଧରି କଟକଠାରୁ ୪୦ କିଲୋମିଟର ଦୂର ସାତପୁରା ନିକଟରେ ଗୋବିନ୍ଦଚନ୍ଦ୍ର ମହାନ୍ତିଙ୍କୁ ଦେଇଥିଲେ । ସୁରେନ୍ଦ୍ର ଦ୍ୱିବେଦୀ ଆସି ଓଡ଼ିଶାରେ ବିଧିବଦ୍ଧ କାର୍ଯ୍ୟ କରିବା ପୂର୍ବରୁ ଗୋବିନ୍ଦ ମହାନ୍ତି, ବିନୋଦ କାନୁନ୍‌ଗୋ ଓ ନିଶାମଣି ଖୁଣ୍ଟିଆ, ନବବାବୁଙ୍କ ସେହି ପୁରୁଣା ଚିଠା ଅନୁସାରେ, କଅଣ କରିବାକୁ ହେବ ଓ କଅଣ ନକରିବାକୁ ହେବର ବାର୍ତ୍ତା ଆଜ୍ଞାପତ୍ର ଭଳି ଚାରିଆଡ଼କୁ ପଠାଇବା ଆରମ୍ଭ କରିଦେଇଥିଲେ ।

ନବବାବୁ ଗିରଫ ହେବା ପରେପରେ ମନମୋହନ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ମଦନମୋହନ ପଟ୍ଟନାୟକ ଓ ସୁଧୀର ଘୋଷ ଆଦି ଗିରଫ ହୋଇ କଟକ ଜେଲ୍‌କୁ ଗଲେ । କ୍ରମେ କଟକ ଜେଲ୍‌ରେ ଭାରତରକ୍ଷା ଆଇନରେ ଗିରଫ ହୋଇଆସିଥିବା ବନ୍ଦୀଙ୍କ ସଂଖ୍ୟା ବଢ଼ିଲା । ଏଣୁ ପୂର୍ବୋକ୍ତ ଟାଣୁଆ ନେତାମାନଙ୍କୁ କଟକରୁ ଏକ ଛୋଟ ବସ୍‌ରେ ଅନୁଗୋଳ ନିଆଯାଇଥିଲା । ଅନୁଗୋଳ ଚାରିପଟରେ ଗଡ଼ଜାତ । ଏଣୁ ସେହିଠାରେହିଁ ଏଇ ଦୁର୍ଦ୍ଦାନ୍ତ ବନ୍ଦୀମାନଙ୍କୁ ରଖିବା ନିରାପଦ ବୋଲି ସରକାର ବିଚାର କରୁଥିଲେ । ଯିବା ବାଟରେ ସୁଧୀର ଘୋଷ ଗାଡ଼ି ଖରାପ ହେବା ଲାଗି ଏକ କୌଶଳ କରିବା ଫଳରେ ବନ୍ଦୀମାନେ ରାତି ୯ଟାରେ ଅନୁଗୋଳରେ ପହଞ୍ଚିଲେ । ଅନୁଗୋଳରେ ଏମାନେ ରହିବାର କିଛିଦିନ ପରେ ସରକାର ବିଚାର କଲେ ଯେ ଏଭଳି ଦୁର୍ଦ୍ଦାନ୍ତ ବନ୍ଦୀଙ୍କୁ ଗୋଟିଏ ସ୍ଥାନରେ ନ ରଖି ବିଭିନ୍ନ ଜେଲ୍‌ରେ ରଖିବା ଉଚିତ । ସେହି ବିଚାର ଅନୁସାରେ ନବକୃଷ୍ଣ ଚୌଧୁରୀଙ୍କୁ ଅନୁଗୋଳରୁ ପୁରୀ ଜେଲକୁ ପଠାଗଲା । ପୁରୀ ଜେଲ୍‌ରେ, ତାଙ୍କ ପହଞ୍ଚିବା ପୂର୍ବରୁ, ଥିଲେ ଆଚାର୍ଯ୍ୟ ହରିହର, ସତ୍ୟବାଦୀ ନନ୍ଦ, ଲୋକନାଥ ମିଶ୍ର (ପଙ୍କବାବୁ), କୃପାସିନ୍ଧୁ ହୋତା, ପ୍ରାଣନାଥ ପଟ୍ଟନାୟକ, ଜଗନ୍ନାଥ ମିଶ୍ର, ଚନ୍ଦ୍ରଶେଖର ନାୟକ, ଚନ୍ଦ୍ରଶେଖର ମହାପାତ୍ର ଆଦି । ନବବାବୁ ପୁରୀ ଜେଲ୍‌କୁ ଯିବା ପରେ ବି ପ୍ରତିଦିନ ନୂଆ ହୋଇ ଅଗଷ୍ଟ ଆନ୍ଦୋଳନର ବନ୍ଦୀ ଆସୁଥାନ୍ତି ।

୧୯୪୨ ମସିହା ସେପ୍ଟେମ୍ବର ୧୬ ତାରିଖ ଦିନ ନିମାପଡ଼ା ଥାନା ଦଖଲ ଅଭିଯାନରେ ଉତ୍ସବ ମଳିକ ସହିଦ ହୋଇଥିଲେ । ସେହି ଅଭିଯାନରେ ପଦ୍ମଚରଣ ସାମନ୍ତ-ସିଂହାରଙ୍କ ସହିତ ଭବାନୀ ପଟ୍ଟନାୟକଙ୍କ ଓ କିଶୋର, ଲୋକନାଥ ସେନାପତି ସମ୍ପୃକ୍ତ ଥିବା ଯୋଗୁଁ ଗିରଫ ହୋଇ ପୁରୀ ଜେଲ୍‌କୁ ଆସିଥିଲେ । ରାତିରେ ଏମାନଙ୍କୁ ଚୋରମାନଙ୍କ ସହ

ରଖାଗଲା । ତେଣୁ ରାତିସାରା ନିଦ ହେଲାନାହିଁ । ସକାଳୁ ଜଣେ ଡେଙ୍ଗା ଲୋକ (ନବବାବୁ) ଦୂରରୁ କହିଲେ, ''ଚୋରଙ୍କ ସହିତ ଚୋର ହୋଇ ନରହି ଏଠି ମଧ୍ୟ ଆନ୍ଦୋଳନ କଲେ ରାଜବନ୍ଦୀ ହେବ ।'' ତାଙ୍କର ଇଙ୍ଗିତରେ ଥାଳିପିଟା, ଜୟଧ୍ୱନି ଓ ଜେଲ୍ କର୍ତ୍ତୃପକ୍ଷଙ୍କ ସହ ଅସହଯୋଗ ଚାଲିଲା । ଏହାଫଳରେ ତରୁଣ ବନ୍ଦୀମାନଙ୍କୁ ରାଜବନ୍ଦୀ ସୁବିଧା ମିଳିଲା ଓ ଜେଲ୍ କର୍ତ୍ତୃପକ୍ଷଙ୍କ ଉତ୍ପାତ କମିଲା ।

ଯେଉଁମାନେ ଲବଣ ସତ୍ୟାଗ୍ରହ ବେଳକୁ ବାନରସେନା ଭାବରେ ଜେଲ୍‌ଖାନାର ଅନୁଭୂତି ଲାଭ କରିଥିଲେ, ସେମାନଙ୍କୁ ଏଥର ବିଶେଷ କଷ୍ଟକର ଲାଗିଲା ନାହିଁ, କିନ୍ତୁ ବୃନ୍ଦାବନ ଜେନା ଓ ଯଦୁମଣି ଜେନାଙ୍କ ଭଳି ଯେଉଁ ଟୋକାମାନେ ସ୍କୁଲ ଛାଡ଼ି ଆସିଥିଲେ, ସେମାନଙ୍କ ମଧ୍ୟରୁ କେତେକ ଜେଲଖାନା ଫାଟକ ଟପିଲା ପରେ ମନର ବଳ ହରାଇଥିଲେ ଓ କେତେକେ ବେଳେବେଳେ କାନ୍ଦୁଥିଲେ । ଘର ଓ ଗାଁକୁ ସେମାନେ ଯେଭଳି ନଝୁରିବେ ସେଥିପାଇଁ ନବବାବୁ ସେମାନଙ୍କୁ ଆଦରରେ ନିଜର କରିନେଇଥାନ୍ତି । ଯଦୁମଣି ଜେନା ତାଙ୍କର ହସହସ ମୁହଁର ସାନ୍ନିଧ୍ୟ ପାଇ ରୁଦ୍ଧ ଜେଲ୍‌ଖାନା ଭିତରେ ବି ନିଜର ଜଣେ ଅତି ଆପଣାର ଲୋକ ପାଇଗଲେ ବୋଲି ଭାବିଲେ ।

ଏମାନଙ୍କଠାରୁ ଟିକିଏ ବୟସ୍କ ଜଗନ୍ନାଥ ମିଶ୍ର, ପୁରୀ ଜିଲ୍ଲାର ବୋଲଗଡ଼ ନିକଟସ୍ଥ ଦି'ଘରୀ ସୂତାକଟା କାମ ତଦାରଖ କରୁଥିବା ବେଳେ ଗିରଫ ହୋଇଥିଲେ । ସେ ଖୋର୍ଦ୍ଧା ଜେଲ୍‌ରେ ୧୦, ୧୨ ଦିନ ରହିବା ପରେ, ସେପ୍ଟେମ୍ବର ମାସ ଶେଷ ଆଡ଼କୁ, ତାଙ୍କୁ ପୁରୀ ଜେଲ୍‌କୁ ସିକ୍ୟୁରିଟି ବନ୍ଦୀ ଭାବରେ ନିଆଯାଇଥିଲା । ନବବାବୁ ଆଦି 'ବି' ଶ୍ରେଣୀର ବନ୍ଦୀ ଥିଲେ । ସମସ୍ତେ ତଳେ ବିଛଣା ପକାଇ ଶୁଅନ୍ତି । ଦିନ ହେଲେ ବିଛଣା ଗୁଡ଼ାଇ ତାକୁ ଆଉଜି ବସନ୍ତି । ହଲ୍ ଭିତରେ ଜାଗା ଅଭାବରୁ ନବବାବୁଙ୍କୁ ସେହି ଘର ବାରଣ୍ଡାରେ ଏକ ସାଦା ପଟା ଖଟ ଦିଆଯାଇଥିଲା । ବାରଣ୍ଡାଟି ସଂକୀର୍ଣ୍ଣ ଏବଂ ତା'ର ଚାରିପଟ ଲୁହା ଜାଲିରେ ବେଢ଼ାଯାଇଥିଲା । ବାରଣ୍ଡାକୁ ଯିବାପାଇଁ ଯେଉଁ ଦରଜାଟା ଥିଲା, ନବବାବୁ ଶୋଇଲା ପରେ ସେଥିରେ ତାଲା ପଡୁଥିଲା । କିନ୍ତୁ ଅନ୍ୟ ବନ୍ଦୀମାନେ ଯେଉଁ ହଲ୍‌ରେ ଥିଲେ, ତା'ର ତାଲା ସନ୍ଧ୍ୟା ପୂର୍ବରୁ ପଡ଼ିଯାଉଥିଲା । 'ସି' ଶ୍ରେଣୀ ବନ୍ଦୀଙ୍କ ପାଇଁ ଥିବା ଅନ୍ୟ ଏକ ହଲ୍‌ରେ ପାଞ୍ଚ ଫୁଟ ଲମ୍ବ ଓ ଦେଢ଼ଫୁଟ ଓସାରର ମାଟିର ପିଣ୍ଡିଥାଏ ଏବଂ ମଝିମଝିରେ ଯିବାଆସିବା ପାଇଁ ବାଟ ଥାଏ । ତିରିଶଜଣ ରହିବା ସ୍ଥାନରେ ସେହି ହଲ୍‌ରେ ପ୍ରାୟ ୭୦-୮୦ ଜଣ ରାଜନୈତିକ୍ ବନ୍ଦୀ ଥାଆନ୍ତି । ସନ୍ଧ୍ୟା ୬ଟାରୁ ସକାଳ ୬ଟା ପର୍ଯ୍ୟନ୍ତ ହଲ୍‌ରେ ତାଲା ପଡ଼େ । ସେମାନେ ସିକ୍ୟୁରିଟି ପ୍ରିଜନର୍‌ଙ୍କ ସହ କଥାବାର୍ତ୍ତା ଓ ମିଳାମିଶା କରିବା ମନା ଥାଏ । ଜଗନ୍ନାଥ ମିଶ୍ରଙ୍କ ସହ ପତିତପାବନ ହୋତା ନାମକ ଜଣେ 'ସିକ୍ୟୁରିଟି ପ୍ରିଜ୍‌ନର୍'ଙ୍କୁ, ପ୍ରଥମ ଦିନ ପୂର୍ବୋକ୍ତ

ହଲ୍‌ରେ ସ୍ଥାନ ନଥିବାରୁ, ୨୦ଜଣ ଦାଗୀ ରହୁଥିବା, ଏକ ଛୋଟ ହଲ୍ ରାତାରାତି ଖାଲି କରି ରଖାଗଲା । ଏହି ଘରଟି ନବବାବୁ ଆଦି ରହୁଥିବା 'ବି' ଶ୍ରେଣୀ ଓ 'ସି' ଶ୍ରେଣୀ ହଲ୍ ମଝିରେ । ନବବାବୁଙ୍କ ସହିତ ଜଗନ୍ନାଥବାବୁଙ୍କର ପୂର୍ବରୁ ଦେଖାସାକ୍ଷାତ ବା ଆଳାପ ନ ହୋଇଥିଲେ ବି, ସକାଳୁ ତାଙ୍କ ସହିତ ଭେଟ ହେଲାବେଳେ, 'ସି' ଶ୍ରେଣୀ ବନ୍ଦୀଙ୍କୁ କିଭଳି ଛୋଟ ହଲ୍‌ରେ ସାନ୍ଦି ହଇରାଣ କରାଯାଉଛି, ଜଗନ୍ନାଥବାବୁ ସେକଥା ଉଠାଇଥିଲେ ।

ନବବାବୁ କହିଲେ, ''ଏହି ପ୍ରଥା ଆମେ କଟକ ଓ ଅନୁଗୋଳ ଜେଲ୍‌ରେ ଭାଙ୍ଗି-ଦେଇଥିଲୁ; କିନ୍ତୁ ଏଠାରେ ଯେଉଁମାନେ ଅଛନ୍ତି, ବିଶେଷକରି ବୟସ୍କ ସିକ୍ୟୁରିଟି ବନ୍ଦୀମାନେ, ସେମାନେ କହୁନଥିବାରୁ ଏଭଳି ପ୍ରଥା ଚାଲିଛି ।''

ଜଗନ୍ନାଥବାବୁ ପଚାରିଲେ, ''ସେ 'ସି' କ୍ଲାସ ବନ୍ଦୀଙ୍କୁ କହିବି କି, ସେମାନେ ସନ୍ଧ୍ୟା ୬ଟା ବେଳେ ନିଜ ୱାର୍ଡ଼କୁ ଯିବେ ନାହିଁ ? ଏଭଳି ଆନ୍ଦୋଳନ ହେଲେ ଆପଣ ସେମାନଙ୍କୁ ସମର୍ଥନ କରିବେ କି ?''

ନବବାବୁ ସାଙ୍ଗେସାଙ୍ଗେ କହିଲେ, ''ଯଦି ହୋଇପାରିବ କରାଯାଉ । ମୁଁ ସମ୍ପୂର୍ଣ୍ଣ ରୂପେ ସମର୍ଥନ କରୁଛି । ତେବେ ପଙ୍କବାବୁଙ୍କୁ (ଲୋକନାଥ ମିଶ୍ର) ଟିକିଏ ପଚାରନ୍ତୁ ।''

ପଙ୍କବାବୁଙ୍କୁ ପଚାରିବାରେ ସେ କହିଲେ, ''ଯଦି ନବବାବୁ ସମର୍ଥନ କରୁଛନ୍ତି ମୋ'ର ମଧ୍ୟ ପୂର୍ଣ୍ଣ ସମର୍ଥନ ଅଛି ।''

ସେଦିନ 'ସି' କ୍ଳାସ ରାଜନୈତିକ ବନ୍ଦୀମାନେ ସନ୍ଧ୍ୟା ପରେ ୱାର୍ଡ଼କୁ ନଯାଇ ବାହାରେ ବସାଉଠା ଓ ବୁଲାବୁଲି କଲେ । ଏହି ଅପ୍ରତ୍ୟାଶିତ ଘଟଣାରେ ଜେଲର୍ ମହାଶୟଙ୍କ ମୁଣ୍ଡ କାମ କଲାନାହିଁ । ଆସିଲେ ଜେଲ୍ ସୁପରିନ୍‌ଟେନ୍‌ଡେଣ୍ଟ୍ ଡକ୍ଟର କାଶୀନାଥ ମିଶ୍ର । ସେ ଅତି ଧୀରସ୍ଥିର ବ୍ୟକ୍ତି । ସେ ବନ୍ଦୀମାନଙ୍କ ମଝିରେ ଠିଆହୋଇ କହିଲେ, ''କାହିଁକି ଆପଣମାନେ ଭିତରକୁ ଯାଉନାହାନ୍ତି ?''

ତାଙ୍କୁ କୁହାଗଲା, ''ଆପଣ ତ ଜଣେ ଉଚ୍ଚକୋଟୀର ଡାକ୍ତର, ଏହି ୱାର୍ଡ଼ରେ ତ ଲେଖାଯାଇଛି ଯେ ଏହା ୩୦ ଜଣଙ୍କ ପାଇଁ ଉଦ୍ଦିଷ୍ଟ; କିନ୍ତୁ ଏଥିରେ ଆମେ ୭୦-୮୦ ଜଣ ଆବଦ୍ଧ ହୋଇ ରହିଛୁ । ଏହା ଆଇନ ଦୃଷ୍ଟିରୁ ଓ ସ୍ୱାସ୍ଥ୍ୟ ଦୃଷ୍ଟିରୁ କଅଣ ଠିକ୍ ବୋଲି ଆପଣ ଭାବୁଛନ୍ତି ?''

ସେ ବେଶି ଯୁକ୍ତି ନକରି କହିଲେ, ''ହଉ ତେବେ, ଆପଣମାନେ ମୋତେ ପ୍ରତିଶ୍ରୁତି ଦିଅନ୍ତୁ ଯେ ଆପଣମାନଙ୍କ ମଧ୍ୟରୁ କେହି ଜେଲ୍ ବାହାରକୁ ଚାଲିଯିବେ ନାହିଁ ।''

ତା'ର ଉତ୍ତର କିଏ ଦେବ ? ସବୁ ବନ୍ଦୀ ତ ନିଜନିଜର ନେତା । ଏହା ଥିଲା ଗାନ୍ଧିଜୀଙ୍କ ଅଗଷ୍ଟ ୯ ତାରିଖର ନିର୍ଦ୍ଦେଶ । କିଛି ସମୟ ପରେ ସୁପରିନ୍‌ଟେଣ୍ଡେଣ୍ଟ୍ ମହାଶୟ କହିଲେ, ''ମୁଁ ଭାବୁଛି, ଆପଣମାନେ ମୋ'ର ସମ୍ମାନ ରକ୍ଷା କରିବେ ।''

ଏତିକି କହି ସେ ଚାଲିଗଲେ । ସେହିଦିନଠାରୁ ରାଜନୈତିକ ବନ୍ଦୀମାନଙ୍କ ୱାର୍ଡ଼ରେ ରାତିରେ ତାଲା ପଡ଼ିବା ପ୍ରଥା ବନ୍ଦ ହେଲା । 'ସି' କ୍ଲାସ୍ ଓ 'ବି' କ୍ଲାସ୍ ବନ୍ଦୀଙ୍କ ମଧ୍ୟରେ ଅବାଧ ମିଳନର ବାଟ ଖୋଲିଗଲା । ପ୍ରତିଦିନ ଗାନ୍ଧିବାଦ, ମାର୍କ୍ସବାଦ ମଧ୍ୟରେ ତୁଳନାତ୍ମକ ଆଲୋଚନା ଓ ଦେଶବିଦେଶର ପରିସ୍ଥିତି ସମ୍ପର୍କରେ ଆଲୋଚନା ଚାଲେ । ଏହା ଥିଲା ନବାଗତମାନଙ୍କ ପାଇଁ ରାଜନୈତିକ ଟ୍ରେନିଂ । ନବବାବୁଙ୍କ ନେତୃତ୍ୱରେ ନିୟମିତ ପ୍ରାତଃସ୍ମରଣ ଓ ସନ୍ଧ୍ୟା ଉପାସନା ହୁଏ । ଶଯ୍ୟାତ୍ୟାଗ ପୂର୍ବରୁ ତେଲାଙ୍ଗର ରାଜବନ୍ଦୀ

''ରାତି ପାହିଲା ଉଠ ସଇନିକ ଭାଇ,
ସ୍ୱାଧୀନତା-ରବି ନଭେ ଆସଇ ଉଇଁ''

ଗୀତ ଗାଇଗାଇ ୱାର୍ଡ଼୍ ପରିକ୍ରମା କରନ୍ତି । ନବବାବୁ ଗାମ୍ଭୀର୍ଯ୍ୟପୂର୍ଣ୍ଣ କଣ୍ଠରେ ଗୀତାର ସ୍ଥିତପ୍ରଜ୍ଞ ଲକ୍ଷଣ ଆବୃତ୍ତି କରନ୍ତି । ସନ୍ଧ୍ୟା ପ୍ରାର୍ଥନା ବେଳକୁ ସମସ୍ତେ ସମବେତ ହୁଅନ୍ତି ଓ ଜଗନ୍ନାଥ ମିଶ୍ରଙ୍କ ନେତୃତ୍ୱରେ ପ୍ରତିଦିନ 'ବନ୍ଦେ ମାତରମ୍' ଗାନ କରନ୍ତି ତଥା ବିଭିନ୍ନ ଜାତୀୟବାଦୀ ଧ୍ୱନି ଦେଇ ଶୋଇବାକୁ ଯାଆନ୍ତି । ସବୁ କାର୍ଯ୍ୟକ୍ରମରେ ନବବାବୁ ଭାଗ ନିଅନ୍ତି ଓ ବନ୍ଦୀମାନଙ୍କ ସଙ୍ଗରେ ମିଶି ପ୍ରାଣ ଭରି ଚେସ୍ ଖେଳନ୍ତି । ସେ 'ନେତା' ବୋଲି ଅନ୍ୟମାନେ ଭୁଲିଯାଆନ୍ତି ।

୧୯୪୨ ମସିହା ଅକ୍ଟୋବର ମାସର ମେଦିନୀପୁର ବାତ୍ୟାର ପ୍ରଭାବ ପୁରୀ ପର୍ଯ୍ୟନ୍ତ ପଡ଼ିଥାଏ । ସେହି ରାତିରେ ମନେହେଉଥିଲା, ସତେ ଯେପରି ଖଣ୍ଡପ୍ରଳୟ ଆସିଗଲା । ଜେଲ୍‌ର କର୍ମକର୍ତ୍ତା ଓ ପ୍ରହରୀମାନେ ନିଜନିଜ ପିଲାଛୁଆଙ୍କୁ ସମ୍ଭାଳିବାରେ ବ୍ୟସ୍ତ । ଝଡ଼ ବର୍ଷାର ଅନ୍ତ ନଥାଏ । ଜେଲ୍‌ର ପୁରୁଣା କୋଠା ଛାତ ଫାଟରୁ ପାଣି ଗଳୁଥାଏ । ପ୍ରବଳ ବର୍ଷା ପାଣି ଅଠରନଳା ବାଟେ ଖଲାସ ହୋଇ ନପାରି ଜେଲ୍‌ଖାନାର ବଗିଚାବାଟେ ଜେଲ ଭିତରକୁ ପଶିଲା । ଜେଲ ମଧ୍ୟରେ ୬ ନମ୍ବର ୱାର୍ଡ଼୍‌ଟି ଉଚ୍ଚ । ଏହାଛଡ଼ା ଅନ୍ୟ ୱାର୍ଡ଼୍ ମଧ୍ୟକୁ ବର୍ଷାପାଣି ପଶିଲା । ଅନ୍ୟସବୁ ଶ୍ରେଣୀର କଏଦୀ, ରାଜନୈତିକ ବନ୍ଦୀମାନଙ୍କ ପାଇଁ ଉଦ୍ଦିଷ୍ଟ ୬ ନମ୍ବର ୱାର୍ଡ଼୍‌ରେ ଆଶ୍ରୟ ନେଲେ । ସାରା ରାତି ଉପବାସ । ଜେଲ୍ କର୍ତ୍ତୃପକ୍ଷଙ୍କ ମଧ୍ୟରୁ କେହି ନଥାନ୍ତି । ଏମିତି ପରିସ୍ଥିତିରେ ସମସ୍ତେ ଅସହାୟ ମନେକରୁଥିବା ଜାଣି ନବବାବୁ ଜାତୀୟ ସଙ୍ଗୀତ ଜାଣିଥିବା ବନ୍ଦୀମାନଙ୍କ ଦ୍ୱାରା ରାତିସାରା ସଙ୍ଗୀତ ବୋଲାଇଲେ । ବନ୍ଦୀମାନେ ଓଦା ହୋଇ ଶୀତରେ ଥରିବାରୁ ମଶାରି ଖୁଣ୍ଟ ଓ ଜେଲ୍ ଝରକାକୁ ଭାଙ୍ଗି ରାତିରେ ନିଆଁ ଜଳାଇ ଆଶ୍ୱସ୍ତ ହେଲେ । ତା' ପରଦିନ ସକାଳୁ ବି ଜେଲ୍ କର୍ତ୍ତୃପକ୍ଷଙ୍କ ଦେଖା ନାହିଁ ।

ବନ୍ଦୀମାନଙ୍କ ମଧ୍ୟରେ ପ୍ରବଳ ଉତ୍ତେଜନା । କେତେକେ କହିଲେ, ''ଚାଲ, ଫାଟକ ଭାଙ୍ଗି ପଳାଇବା ।'' ଚନ୍ଦ୍ରଶେଖର ନାୟକ ଆଦି ନବବାବୁଙ୍କ ପରାମର୍ଶ ଲୋଡ଼ିଲେ । ସେ ଥାଆନ୍ତି ସମସ୍ତଙ୍କର ମୁରବି । ନବବାବୁ କହିଲେ, ''ନା, ଆମେ ପଳାୟନପନ୍ଥୀ ନୋହୁଁ । ତେଣୁ ଚାଲ ବନ୍ଦିଶାଳାର କୌଣସି ସୁରକ୍ଷିତ ସ୍ଥାନରେ ଆତ୍ମରକ୍ଷା କରିବା ।''

ବନ୍ଦିଶାଳାର ପାଚେରିକୁ ଲାଗି ସିଭିଲ୍ ଜେଲ୍ । ମହାଜନୀ ଦେଣା ବା ଅନ୍ୟ ଦେୟ ଦେଇ ନପାରୁଥିବା ଲୋକ ଯଦି ଜେଲ୍ ଭୋଗନ୍ତି, ସେମାନଙ୍କୁ ସେହି ବଖରାରେ ରଖାଯାଏ । ସେମାନେ ନିଜ ପରିବାରର ଲୋକଙ୍କଠାରୁ ଖାଇବା ଜିନିଷ ପାଇବା ଲାଗି ସୁବିଧା ଥାଏ । ଏଣୁ ଜେଲ୍ ପାଚେରି ଡାଡ଼ି ସେହି ସିଭିଲ୍ ଜେଲ୍ ବଖରାକୁ ଯିବା କଥା ହେଲା । ଏ ପରାମର୍ଶଟି ସମସ୍ତଙ୍କ ମନକୁ ପାଇଲା । ତେବେ, ପାଚେରି ଭଙ୍ଗାଯାଇପାରିବ କିପରି ? ବନ୍ଦୀମାନଙ୍କ ମଧ୍ୟରୁ ଜଣେ ଦୌଡ଼ିଯାଇ ଜେଲ୍ ଘଣା ପାଖରେ ଥିବା ଶାବଳ ଆଣିଲେ । ଆଉ ଯେ ଯାହା ଲୌହ ସରଞ୍ଜାମ ପାଇଲେ, ଆଣି ଲାଗିଲେ ପାଚେରିଭଙ୍ଗା କାମରେ । କମ୍ୟୁନିଷ୍ଟ ବନ୍ଦୀମାନେ ନୀରବ ରହିଲେ; କିନ୍ତୁ ସାଧାରଣ ବନ୍ଦୀମାନେ ଜେଲ୍ ପାଚେରି ତଡ଼ାରେ ଲାଗିପଡ଼ିଲେ । ସେହି ଶବ୍ଦ ଶୁଣିବାରୁ ଜେଲ୍ କର୍ତ୍ତୃପକ୍ଷଙ୍କ ନିଦ ଭାଙ୍ଗିଲା । ଜରୁରୀକାଳୀନ ବିଗୁଲ ବାଜି ଉଠିଲା । ସେହି ଝଡ଼ବତାସ ମଧ୍ୟରେ ଭିଜିଭିଜି କେତେଜଣ ସଶସ୍ତ୍ର ପୋଲିସ ବନ୍ଧୁକ ଧରି ଦେୱାନୀ ବନ୍ଦୀ ବଖରାର ଛାତ ଉପରେ ଉଠି ପ୍ରଥମେ ଶୂନ୍ୟକୁ ବନ୍ଧୁକରେ ଗୁଳି ଫୁଟାଇଲେ । ସେମାନେ ବନ୍ଦୀମାନଙ୍କ ଆଡ଼କୁ ବନ୍ଧୁକ ଦେଖାଇବା ମାତ୍ରେ ଗୁଳି କରିବା ପୂର୍ବରୁ, ନବବାବୁ ଛାତି ଦେଖାଇ ଗୁଳି କରିବାକୁ ଆହ୍ୱାନ ଦେଲେ । ତାଙ୍କରି ଆହ୍ୱାନ ପରେପରେ ଭଗବାନ ପ୍ରତିହାରୀ, ପଦ୍ମଚରଣ ସାମନ୍ତସିଂହାର ଆଦି ଛାତି ଦେଖାଇ ଗୁଳି ମାରିବାକୁ ଆହ୍ୱାନ କରୁଥାନ୍ତି । ଏହି ଆହ୍ୱାନରେ ସିପାହୀମାନେ ଗୁଳି କରିବାକୁ ପଛେଇ ଗଲେ । ଚନ୍ଦ୍ରଶେଖର ନାୟକଙ୍କ ଭଳି ନୂଆ ଓ ନିରୀହ ବନ୍ଦୀ ପାଚେରିଭଙ୍ଗାରେ ନଥାନ୍ତି । ଖବର ପହଞ୍ଚିଲା ଜେଲ୍ ସୁପରିନ୍‌ଟେଣ୍ଡେଣ୍ଟ୍ ଡାକ୍ତର କାଶୀନାଥ ମିଶ୍ରଙ୍କ ପାଖରେ । ସେ ତିନ୍ତିବୁଡ଼ି ଆସି ପହଞ୍ଚିଲେ । ଜେଲଖାନାର ଡାକ୍ତରଖାନାର ରୋଗୀମାନଙ୍କୁ ଅନ୍ୟତ୍ର ନିଆଯାଇ ସେହି ଘରେ ବନ୍ଦୀମାନଙ୍କୁ ଚାରିଦିନ ରଖାଗଲା ଓ ଖାଇବାପିଇବାର ବନ୍ଦୋବସ୍ତ କରାଗଲା । ଅବଶ୍ୟ ଜେଲ୍ ଡାକ୍ତରଖାନାର ଚାରିପଟେ ଆରକ୍ଷୀ ରହିଲେ ।

ଏହାପରେ ବନ୍ଦୀମାନଙ୍କ ବିରୋଧରେ ମକଦ୍ଦମା ଆରମ୍ଭ ହେଲା । ଜେଲଖାନାରୁ ପଳାୟନ ମକଦ୍ଦମା । ସାଙ୍ଘାତିକ ଅପରାଧ । ମକଦ୍ଦମା ଲଢ଼ିବା ପାଇଁ ନବବାବୁ ଖବର ପଠାଇଲେ ସ୍ୱାଧୀନଚେତା ଆଡ୍‌ଭୋକେଟ୍ ହରିହର ମହାପାତ୍ରଙ୍କ ପାଖକୁ । ସେ ବି ପୂର୍ବରୁ ତାଙ୍କ କେସ୍ ଲଢ଼ିଥିଲେ । କେଉଁ ଯୁକ୍ତି ଦେଖାଇବେ, ତାହା ବି ବତାଇଦେଲେ । କେଶ୍ ପଡ଼ିବା ଦିନ କଚେରିରେ ଭିଡ଼ । ନବକୃଷ୍ଣ ଚୌଧୁରୀ, ପଦ୍ମଚରଣ ସାମନ୍ତସିଂହାର ଓ ଭଗବାନ

ପ୍ରତିହାରୀ ପ୍ରମୁଖଙ୍କୁ କଡ଼ା ନିରାପତ୍ତା ଭିତରେ କୋର୍ଟକୁ ନିଆଯାଉଥାଏ । କେଶ୍ ରାୟ ଅନୁସାରେ ନବବାବୁ ଆଦି ତିନିଜଣ 'ବି' କ୍ଲାସ ବନ୍ଦୀଙ୍କୁ ତିନିମାସ ଲାଗି 'ସି' କ୍ଲାସ ବନ୍ଦୀ କରାଗଲା ।

ବନ୍ଦୀମାନେ ଜେଲ୍‌ଖାନାରେ ଥିବା ସମୟରେ ଉତ୍ତରଓଡ଼ିଶା ଓ ମେଦିନୀପୁର ବାତ୍ୟାର କ୍ଷୟକ୍ଷତି ଖବର ପହଞ୍ଚୁଥାଏ । ସରକାର ତ ଜାପାନୀ ଆକ୍ରମଣରେ ଛାନିଆ, ଆଉ ରିଲିଫ୍ କଥା କିଏ ପଚାରୁଛି ? ଜେଲଖାନାରେ ଖାଲି ବ୍ୟସ୍ତ ହେବା ଛଡ଼ା ଆଉ କିଛି ଉପାୟ ନଥାଏ । ଅଲେଖ ପାତ୍ର ଓ ଲୋକନାଥ ସେନାପତି ପାଞ୍ଚକଲେ ଜେଲରୁ ଖସି ପଳାଇଲେ ବାତ୍ୟାବିପନ୍ନ ଲୋକଙ୍କୁ କିଛି ସାହାଯ୍ୟ କରିହୁଅନ୍ତା ଓ ଦବିଯାଇଥିବା ଆନ୍ଦୋଳନକୁ ତେଜେଇ ହୁଅନ୍ତା । ସେମାନେ ଜଗନ୍ନାଥ ମିଶ୍ରଙ୍କ ପରାମର୍ଶ ଲୋଡ଼ିଲେ । ଜଗନ୍ନାଥବାବୁ ଏଡ଼େବଡ଼ କଥାର ଉତ୍ତର ଦେଇପାରିଲେ ନାହିଁ । ତା'ପରେ ଏ ଦୁହେଁ ଗଲେ ନବବାବୁଙ୍କ ପାଖକୁ । ନବବାବୁ କହିଲେ, ''ମୁଁ ସିନା ଯାଇପାରୁନାହିଁ; ଅନ୍ୟ କେହି ଯଦି ଯିବାକୁ ବାହାର, ମୁଁ ବାରଣ କରିବି କାହିଁକି ?''

ଏହାପରେ ଜଗନ୍ନାଥ ମିଶ୍ର ବନ୍ଦୀ ଦୁହିଁଙ୍କୁ ଜେଲ୍ ଡେଇଁ ପଳେଇଯିବାକୁ ବ୍ୟବସ୍ଥା କରିଦେଲେ । ଖଟଟିଏ ଜେଲଖାନାର ଗୋଟିଏ ପାଚେରିକୁ ଆଉଜେଇଦେଇ ତାହା ଉପରେ ଜଗନ୍ନାଥ ମିଶ୍ର ଠିଆହେଲେ । ଲୋକନାଥ ସେନାପତି ଓ ଅଲେଖ ପାତ୍ର ଜଗନ୍ନାଥ ମିଶ୍ରଙ୍କ କାନ୍ଧରେ ଚଢ଼ି ଜେଲ୍ ପାଚେରି ଉପରକୁ ଉଠିଲେ । ରିଙ୍ଗ୍ ବଲ୍ ଖେଳିବା ପାଇଁ ମିଳିଥିବା ନେଟ୍‌ର ଗୋଟିଏ ପଟକୁ ଜଗନ୍ନାଥ ମିଶ୍ର ଖଟରେ ବାନ୍ଧି ଅନ୍ୟ ପଟଟିକୁ ସେମାନଙ୍କ ମଧ୍ୟରୁ ଜଣକୁ ଦେଲେ । ସେମାନେ ଜଣଜଣ ହୋଇ ସେହି ନେଟ୍‌କୁ ଧରି ପାଚେରି ବାହାରକୁ ଖସିପଡ଼ିଲେ । ୫ ମିନିଟ୍‌ରେ ସବୁ କାମ ଶେଷ । ସେମାନେ ଛଦ୍ମବେଶରେ ୮ ମାସ ୧୫ ଦିନ ବିଭିନ୍ନ ସ୍ଥାନ ବୁଲି ଆନ୍ଦୋଳନ ବାର୍ତ୍ତା ଶୁଣାଇ, ବାତ୍ୟା ବିପନ୍ନଙ୍କ ପାଇଁ କାମ କରୁଥିଲା ବେଳେ ଧରାପଡ଼ି ପୁଣି ଜେଲ୍‌କୁ ଯାଇଥିଲେ । ଅଲେଖ ପାତ୍ର ଖଲାସ ହେଲାପରେ ଗାନ୍ଧିଜୀଙ୍କ ଗଠନମୂଳକ କାର୍ଯ୍ୟରେ ନିଜକୁ ପୂରାପୂରି ଲଗାଇଲେ । ଲୋକନାଥ ସେନାପତିଙ୍କ ଖବର ନବବାବୁ ଆଉ ରଖିପାରି ନଥିଲେ । ପାରିବାରିକ ଅବସ୍ଥାକୁ ବିଚାରକୁ ନେଇ ଦେଶ ସ୍ୱାଧୀନ ହେଲାପରେ ସେ ଗ୍ରାମଗୋଷ୍ଠୀ ଯୋଜନାରେ ଗ୍ରାମସେବକ କାମ କଲେ । ନବବାବୁ ମୁଖ୍ୟମନ୍ତ୍ରୀ ଥିଲାବେଳେ ଭଞ୍ଜନଗର କମ୍ୟୁନିଟି ପ୍ରୋଜେକ୍ଟ କାର୍ଯ୍ୟ ଦେଖିବାକୁ ଯାଇଥିଲେ । ସେଠାରେ ଗ୍ରାମ ସେବକମାନଙ୍କ ସହିତ କାମଦାମ ବିଷୟ ବୁଝିଲା ବେଳେ ଲୋକନାଥଙ୍କୁ ଚିହ୍ନିପାରି କୁଣ୍ଢେଇପକାଇଥିଲେ । ଏମାନେ ପୁରୀ ଜେଲ୍‌ରେ ଥିବାବେଳେ ଜୟପ୍ରକାଶ ଆଦି ଜେଲ୍‌ରୁ ଖସି ପଳାଇବା ଖବର ଜଣାପଡ଼ିବାରୁ ନବବାବୁ ଭାରି ଉତ୍ସାହିତ ହୋଇ ସହବନ୍ଦୀମାନଙ୍କୁ କହିଥିଲେ, ''ଆନ୍ଦୋଳନ ବର୍ତ୍ତମାନ ଲୋକଙ୍କ ସ୍ତରକୁ ଚାଲିଗଲାଣି ; ନ ହେଲେ ଏତେ ସଂଖ୍ୟକ ଏହି ଶ୍ରେଣୀର ବନ୍ଦୀ ଖସିଯିବା ସମ୍ଭବପର ହୋଇନଥାନ୍ତା ।''

ଏହି ପୁରୀ ଜେଲ୍‌ରୁ ସେ ତାଙ୍କର ଅତି ଆଦରର ଝିଆରୀ ଅନ୍ନପୂର୍ଣ୍ଣାଙ୍କୁ (ଡାକନାମ ଚୁନି), ଚୁନିଆ ନାଁରେ ଏକ ଚିଠି ଲେଖିଛନ୍ତି । ସେଥିରେ ସେ ଜୟପ୍ରକାଶଙ୍କ ଖବର ଉଲ୍ଲେଖ କରିଛନ୍ତି ।

ପୁରୀ ଜେଲ୍

ତା ୧୨-୧୧-୪୨ ସଂଧ୍ୟା

ଚୁନିଆ,

ଖୁଡ଼ୀର ୨ ତାରିଖର ଚିଠି ମୁଁ ଏଠି ୮ ତାରିଖରେ ପାଇଛି । ଆଜିକାଲି ତମ ସେଠିକା ଚିଠି ବେଶ୍ ଚଞ୍ଚଳ ହସ୍ତଗତ ହେଉଛି । ଏଠିକା ଚିଠି ମଧ୍ଯ ସେହିପରି ପାଉଥିବ । କେବଳ ବ୍ରହ୍ମପୁରରୁ ଚିଠି ଆସିବାରେ ଗୋଳମାଳ ହେଉଛି । ସେଠି ବହୁତ ଲୋକ ହୋଇଗଲେଣି, ବେବର୍ତ୍ତା କମ୍, ସେଥିପାଇଁ ଚିଠିପତ୍ର ଠିକ୍ ଆସିପାରୁନାହିଁ । ଶରତଠାରୁ ଚିଠି ଆସିଥିଲା ବୋଲି ଖୁଡ଼ୀ ଲେଖିଥିଲା–ମାତ୍ର କେତେଦିନ ଲାଗିଲା ଆସିବାକୁ ସେ କଥା ଲେଖିନାହିଁ । ଲେଖିବୁ ।

ପାଟଣାରୁ ଦିଦିମାଙ୍କ ପାଖରୁ ଖଣ୍ଡେ କାର୍ଡ଼ ପାଇଛି । ତିନୁଟା ଭାରି ଚାବୁରୀ ହେଇଛି । ଫୂର୍ତ୍ତିରେ ଅଛି । କାଲୁ କୁଆଡ଼େ ଆଗପରି ମନଦେଇ ପଢୁନାହିଁ । ମୁଁ ଲେଖିଦେଇଛି–କାଲୁର ଦୋଷ ନାହିଁ–ତା' ଇଚ୍ଛା ବିରୁଦ୍ଧରେ ଆମେ ତାକୁ ଅନୁଗୋଳ ସ୍କୁଲରୁ ନେଇଆସିଲୁ, ସେଥିପାଇଁ ତା' ପଢ଼ା ଅଭ୍ୟାସ ଛାଡ଼ିଯାଇଛି ।

ମୁଁ ତ ବେଶ୍ ଭଲରେ ଅଛି । ତମମାନଙ୍କ କଥା ଭାବିଲେ ମନ ଖରାପ ହୁଏ । ଏତେ ଟିକିଏ ଜାଗା ଭିତରେ ଅଣନିଃଶ୍ୱାସୀ ହୋଇପଡୁଥିବ ନିଶ୍ଚୟ, ତେବେ ସାଙ୍ଗସୁଖରେ ଦିନ କଟୁଥିବ । ଆଶା କରେ ସେହି ଛୋଟ ଜାଗା ଭିତରେ ମଧ୍ୟ ଖେଳ କସରତର କିଛି ବ୍ୟବସ୍ଥା କରିପାରିଛ । କରି ନଥିଲେ ନିଶ୍ଚୟ କରିବ । ମୁଁ ଗଲା କେତେଦିନ ହେଲା ଟିକିଏ ପଢ଼ାପଢ଼ିରେ ମନ ଦେଇଛି । ସକାଳ ଓଳିଟା ପଢ଼େ । ଖରାବେଳେ ବ୍ରିଜ୍ ଖେଳ, ଉପରବେଳା ଭଲିବଲ୍ ଖେଳୁଁ । ରାତିରେ ପଢ଼େ । ସୂତାକଟାରେ ମନ ଲାଗୁନାହିଁ । କେହି ସାଙ୍ଗ ନାହାନ୍ତି ସୂତାକଟାରେ । ଖେଳଛଡ଼ା ମୁଁ ପ୍ରତିଦିନ ନିୟମିତ କେତେଟା ଆସନ କରୁଛି–ସର୍ବାଙ୍ଗ, ଭୁଜଙ୍ଗ, ପଶ୍ଚିମୋତ୍ତାନ, ମତ୍ସ୍ୟାସନ ଓ ଶୀର୍ଷାସନ । ସନ୍ଧ୍ୟାବେଳେ ଗୀତାର "ସ୍ଥିତପ୍ରଜ୍ଞ" ଶ୍ଳୋକ ଆବୃତ୍ତି ହୁଏ–ତା ଛଡ଼ା ୧୦ ମିନିଟ୍ ମୌନ ହୋଇ ବସି ଧ୍ୟାନ କରାଯାଏ । ମୁଁ ଯେତେବେଳେ ବଜ୍ରାସନ କରେ, ତିନୁ, କାଲୁ ଓ ସେମାନଙ୍କ ସମସ୍ତଙ୍କ କଥା ଖୁବ୍ ଭାବେ !

ଖୁଡ଼ୀକୁ କହିବୁ, ବ୍ରଜବାବୁଙ୍କ କୁଆଇଁର ଖବର ଆଜି ଖବରକାଗଜରେ ପଢ଼ି ଭାରି ଖୁସି ହେଇଛୁ । ପ୍ରଭାଁ ଘରେ ଅଛି କି ମାମୁଘରକୁ ଯାଇଛି କିଏ ଜାଣେ ?

ତମେ ସବୁ ବହି ଦୋକାନରୁ ଡାକରେ V.P.ରେ ବହି ମଗାଇବ । ବହି ମଗାଇବ, ଯଦି ଯଥେଷ୍ଟ ବହି ନଥାଏ । ମୁଁ ପ୍ରତି ମାସରେ ମା' ପାଖକୁ ଟଙ୍କା ପଠାଇବି । ତମେ ତା' ପାଖକୁ ଲେଖିଲେ ସେ ଟଙ୍କା ପଠାଇବ । ସେ ଖୁଡ଼ୀ, ବୁବୁ, ତୋ ପାଖକୁ ବା ବୋଉ ପାଖକୁ ଟଙ୍କା ପଠାଇପାରେ । ଏଥିପାଇଁ ଦରକାର ହେଲେ ଆଗରୁ କର୍ତ୍ତୃପକ୍ଷଙ୍କ ଅନୁମତି ନେଇନେବ ।

*ବିମଳାକୁ କହିବୁ ପୂର୍ଣ୍ଣାନନ୍ଦବାବୁଙ୍କ ପୁଅ ଚିଠି ଦେଇଥିଲା । ବିମଳାର ମା'ର ଘରକୁ ପୁଲିସ ଜୋରିମାନା ପାଇଁ ଯାଇଥିଲା । ବିମଳାର ଘର ନୁହେଁ ବୋଲି ଫେରିଆସିଛି । ନଟ କୋଉଠୁ ମାଗିକରି ମାତ୍ର ୫ ଟଙ୍କା ଦେଇଛି ।

ଖୁଡ଼ୀକୁ କହିବୁ, ବଳିଆ ପାଖକୁ ୨୦ ଟଙ୍କା ପଠାଇବା ପାଇଁ ମା'କୁ କହିଥିଲି । ସେ ନିଶ୍ଚୟ ପଠାଇଥିବ । ମା ସାଙ୍ଗରେ ଏ ମାସରେ ତ ଫେର୍ ମୋର ଦେଖା ହେବ । ସେତେବେଳେ ଗୋପାଳ*ର ଚିକିତ୍ସା ପାଇଁ ଟଙ୍କା ଦେବାକୁ କହିଦେବି । ସେ ତ ହୋମିଓପ୍ୟାଥିକ ଚିକିତ୍ସାରେ ଅଛି ବୋଲି ଶୁଣିଲି–ତା' ନ ହୋଇଥିଲେ ଡାକ୍ତର ସାହେବଙ୍କୁ ତ' କଥା କହିଥାନ୍ତି ।

ତୁ ଚିଠି ଦବୁ । ବୁବୁକୁ ଚିଠି ଦବାକୁ କହିବୁ । ତମେ ସମସ୍ତେ ମୋର ଆଦର ନବ । ବୋଉ, ଖୁଡ଼ୀ, ମାସୀ ପ୍ରଭୃତି ସମସ୍ତଙ୍କୁ ଯଥାବିଧି ଜଣାଇଦବୁ । ଭାଇ* ଖବର ଅନୁଗୋଳରୁ ପାଇଥିଲେ, ଲେଖିବୁ ।

ତୋର ଦାଦା

*ବ୍ରଜକିଶୋରବାବୁଙ୍କ କ୍ୱାଇଁ ଜୟପ୍ରକାଶ ନାରାୟଣ ଜେଲ୍‌ରୁ ପଳାଇଯାଇଥିବା ଖବର ।

*ପ୍ରଭା–ଜୟପ୍ରକାଶ ନାରାୟଣଙ୍କ ପତ୍ନୀ ; ମାମୁଘର–ଜେଲ୍ ।

*ବିମଳା–କାକଟପୁର କର୍ମୀ, ସହବନ୍ଦିନୀ ।

*ଗୋପାଳ–ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ଜାମାତା ।

*ଭାଇ–ମନମୋହନ ଚୌଧୁରୀ, ଅନୁଗୋଳ ଜେଲବାସୀ ।

ଏହାର କିଛିଦିନ ପରେ ନବକୃଷ୍ଣ ଚୌଧୁରୀ ଓ ଜଗନ୍ନାଥ ମିଶ୍ରଙ୍କୁ ବ୍ରହ୍ମପୁର ଜେଲକୁ ବଦଳିକରିଦିଆ ହୋଇଥିଲା । ବ୍ରହ୍ମପୁର ଜେଲ୍‌ରେ କମ୍ୟୁନିଷ୍ଟ ଓ ସେହି ମନୋଭାବାପନ୍ନ ରାଜବନ୍ଦୀଙ୍କଠାରୁ ଆରମ୍ଭ କରି ଗୋପବନ୍ଧୁ ଚୌଧୁରୀ ଆଦିଙ୍କ ଭଳି ବହୁ କିସମର ବନ୍ଦୀ ଥାଆନ୍ତି । ଏଣୁ ବୟସ ଓ ରୁଚି ଅନୁସାରେ ସେମାନଙ୍କର ନାନା ଗୋଷ୍ଠୀ ଥାଏ । ନବବାବୁ ସିକ୍ୟୁରିଟି ପ୍ରିଜ୍‌ନର୍ ହେଲାପରେ ଖାଇବା ପାଇଁ ସେ ଗୋ.ଆ.ଟା. ଗୋଷ୍ଠୀଭୁକ୍ତ ହେଲେ ।

ଗୋପବନ୍ଧୁ ଚୌଧୁରୀ ଗମ୍ଭୀର ଓ କ୍ରୋଧୀ ହେଲେ ବି ବେଶ୍ ମଉଜିଆ । ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର, ଚାଟୁବାବୁ (ବ୍ରଜମୋହନ ସିଂ)ଙ୍କ ନାମର ପ୍ରଥମ ଅକ୍ଷର ଅନୁସାରେ ଏହି ମେସ୍‌ର ନାମକରଣ ହୋଇଥାଏ । ସେହି ମେସ୍‌ରେ ସମସ୍ତେ ପାଳି କରି ହାତରେ ଗହମ ପେଷନ୍ତି ଓ ରୋଷେଇ କରନ୍ତି । ନବବାବୁଙ୍କ ସହିତ ପାଳି ପଡ଼େ କଣ୍ଟୁରୀ ଚରଣ ମଳିକଙ୍କର । ସେତେବେଳର ନିୟମ ଅନୁସାରେ ଅଟକବନ୍ଦୀମାନଙ୍କ କାର୍ଯ୍ୟରେ ସହାୟତା କରିବା ଲାଗି ପ୍ରତି ମେସ୍ ଲାଗି ଦୁଇଜଣ ଲେଖା କଏଦୀ ନିଯୁକ୍ତ ହୋଇଥାଏ । କିନ୍ତୁ ଗୋ.ଆ.ଚା. ମେସ୍‌ର ସଦସ୍ୟମାନେ ସବୁ କାମ ନିଜେନିଜେ କରନ୍ତି । ନବବାବୁ ଗୋ.ଆ.ଚା. ମେସ୍‌ରେ ଖାଇଲେ ବି ତାଙ୍କର ବ୍ରହ୍ମପୁର ଜେଲ୍‌ର ବିରାଟ ବନ୍ଦୀ ଶିବିରର ବୁଢ଼ାଙ୍କଠାରୁ ଆରମ୍ଭ କରି ଟୋକାଙ୍କ ପର୍ଯ୍ୟନ୍ତ, କମ୍ୟୁନିଷ୍ଟଙ୍କଠାରୁ ଆରମ୍ଭ କରି ଉଦାରପନ୍ଥୀଙ୍କ ପର୍ଯ୍ୟନ୍ତ, ସମସ୍ତଙ୍କ ସାଙ୍ଗରେ ମିଳାମିଶା ଓ ଭାବର ଆଦାନପ୍ରଦାନ ହେଉଥିଲା । ସେହିଠାରେହିଁ ବାନରସେନା ବେଳର ଗନ୍ଧର୍ବ ଗୋଛାୟତଙ୍କ ସହିତ ତାଙ୍କର ପରିଚୟ ହୁଏ ।

ନବବାବୁ ସେହି ଜେଲ୍‌ରେ ପ୍ରାୟ ଦୁଇବର୍ଷ କଟାଇଲେ । ସେହି ସମୟରେ ସେ ନିଜେ ପଢ଼ାପଢ଼ି କରନ୍ତି ଓ ଅନ୍ୟମାନଙ୍କୁ ରାଜନୀତିକ ଶିକ୍ଷା ଦିଅନ୍ତି । ତାଙ୍କର ସବୁ ବକ୍ତୃତା ଗୋଟିଏ ଗୋଟିଏ ଛୋଟ ଥେସିସ୍ ପରି । ସତ୍ୟାଗ୍ରହ ତତ୍ତ୍ୱ ବୁଝାଇବାରେ ସେ ଅନେକ ସମୟ ନିଅନ୍ତି– କାରଣ ତତ୍ତ୍ୱଟି ଗାନ୍ଧିଜୀଙ୍କ ମୌଳିକ ଅବଦାନ ଓ ତା'ର ମହତ୍ତ୍ୱ ଅତି ଗଭୀର । କୌଣସି ଯୁକ୍ତି ଅବତାରଣା କଲାବେଳେ ସେ ତା'ର ବିପରୀତ ଯୁକ୍ତି ନିଜେ ବାଢ଼ି ତାକୁ କାଟିବାକୁ ଅନ୍ୟମାନଙ୍କୁ ଆହ୍ୱାନ କରନ୍ତି । ଏହି ତାତ୍ତ୍ୱିକ କଥା ଛଡ଼ା ସେ ଅର୍ଥନୀତି ଓ କୃଷି ସମସ୍ୟା ଏବଂ ବିଶେଷକରି ଭୂ–ସମସ୍ୟା ଉପରେ ଟିକିନିଖି ଆଲୋଚନା କରନ୍ତି । ନିଜେ ପ୍ରତିଦିନ ସୂତା କାଟନ୍ତି, ବଗିଚା କାମ କରନ୍ତି ଓ ନିଜର ବାସନକୁସନ ତଥା ଲୁଗାପଟା ସଫା କରନ୍ତି । ଏଠାକୁ ସେତେବେଳକୁ ଆସିଯାଇଥାନ୍ତି ରବୀନ୍ଦ୍ର ମୋହନ ଦାସ, ସୁଧୀର ଘୋଷ । ସେମାନଙ୍କ ସହିତ ଉମାଚରଣ ପଟ୍ଟନାୟକ ଓ ଜଗନ୍ନାଥ ମିଶ୍ର ଯୁବକମାନଙ୍କୁ ଡ୍ରିଲ୍ ଓ ମାର୍ଚ୍ଚିଙ୍ଗ୍ ତାଲିମ ଦିଅନ୍ତି । ଏଠାରେ ବି ନବବାବୁ ଆସି ହାଜର ହୋଇଯାଆନ୍ତି ।

ନବବାବୁଙ୍କ କ୍ଲାସ୍ ସାଙ୍ଗକୁ ବ୍ରହ୍ମପୁର ଜେଲ୍‌ରେ କମ୍ୟୁନିଷ୍ଟମାନଙ୍କ ନୂଆ ସଭ୍ୟ ସଂଗ୍ରହ ଓ କ୍ଲାସ୍ ବି ଚାଲିଥାଏ । ସମସ୍ତେ ଯେଝାଯେଝା ବାଟରେ ଥାଆନ୍ତି । କିନ୍ତୁ କମ୍ୟୁନିଷ୍ଟମାନଙ୍କର 'ପିପୁଲ୍ସ ୱାର୍' ଘୋଷଣା ପରେ ଅନ୍ୟମାନେ କମ୍ୟୁନିଷ୍ଟମାନଙ୍କ ସହ ଛାଡ଼ଛାଡ଼ ହେଲେ ବି ନବବାବୁଙ୍କର ବ୍ୟକ୍ତିଗତ ସମ୍ପର୍କ ଅକ୍ଷୁଣ୍ଣ ଥାଏ । ସେ କେବଳ କମ୍ୟୁନିଷ୍ଟମାନଙ୍କୁ ତାତ୍ତ୍ୱିକ ଦିଗରୁ ସମାଲୋଚନା କରନ୍ତି । ଯେତେବେଳେ କମ୍ୟୁନିଷ୍ଟମାନଙ୍କ ଆନ୍ତର୍ଜାତିକ ସଂସ୍ଥା (କୋମିନ୍‌ଟର୍ଣ୍ଣ)କୁ ୧୯୪୩ ଜୁନ୍‌ରେ ଷ୍ଟାଲିନ ଭାଙ୍ଗିଦେଲେ, ନବବାବୁ ସେହି ସମୟରେ

କହିଥିଲେ ଯେ ଭାରତୀୟ କମ୍ୟୁନିଷ୍ଟମାନଙ୍କର ଯଷ୍ଟି ଭାଙ୍ଗିଗଲା ; ଅର୍ଥାତ୍ ସେମାନେ ମସ୍କୋ ବା ଲଣ୍ଡନର ନିର୍ଦ୍ଦେଶକୁ ଯେ ଅନାଇ ରହିଥିଲେ, ଏଣିକି ତା'ର ଅବସାନ ଘଟିବ । ପରବର୍ତ୍ତୀ କାଳରେ ତାହାର ସତ୍ୟତା ପ୍ରତିପାଦିତ ହୋଇଛି ।

୧୯୪୩ ମାର୍ଚ୍ଚ ମାସ ୨୮-୨୯ ତାରିଖ ଥିଲା ବ୍ରହ୍ମପୁର ଜେଲ୍‌ର ଏକ ସ୍ମରଣୀୟ ଦିବସ । ସେଦିନ ସମସ୍ତ ରାଜବନ୍ଦୀ ଉପବାସ ରହି ଅତ୍ୟନ୍ତ ବ୍ୟଥାର ସହ ଦିନଟି ପାଳନ କରିଥିଲେ । ୨୮ ତାରିଖ ସକାଳୁ ଲକ୍ଷ୍ମଣ ନାୟକଙ୍କୁ ଜେଲର୍ ନାୟାର ଜଣାଇଦେଲେ ଯେ ତାଙ୍କୁ ସେଦିନ ରାତିରେ ଫାଶୀ ଦିଆଯିବ । ସେ ନିଜର କାହା ସହିତ ଶେଷଥର ପାଇଁ କଥାବାର୍ତ୍ତା କରିବେ ଓ କଅଣ ସୁଆଦିଆ ଜିନିଷ ଖାଇବେ, ତାହା ତାଙ୍କୁ ପଚରାଗଲା । ତାଙ୍କ ଗାଁ, ପୂର୍ବତନ କୋରାପୁଟ ଜିଲ୍ଲା ତେନ୍ତୁଳିଗୁମାରୁ ତ କାହାକୁ ଏତେ ଅଳ୍ପ ସମୟରେ ଅଣାଯାଇପାରିବ ନାହିଁ, ଏଣୁ ସେ କହିଥିଲେ ଯେ ଜେଲ୍ ଭିତରେ ଥିବା ଭାଇମାନଙ୍କ ସହିତ ସେ କଥାବାର୍ତ୍ତା କରିବେ ଏବଂ ସେମାନେ ଯାହା ଖାଉଛନ୍ତି, ସେହି ସାଧାରଣ ଖାଦ୍ୟହିଁ ଖାଇବେ ।

ଏହା ଶୁଣିବା ପରେ ନାୟାର ଆସି ସିକ୍ୟୁରିଟି ବନ୍ଦୀ ଭାବରେ ଥିବା ପ୍ରବୀଣ ନେତାମାନଙ୍କୁ ଏହା ଜଣାଇଥିଲେ । ନେତାମାନଙ୍କ ମଧ୍ୟରେ ଆଲୋଚନା ହୋଇ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ବିଶ୍ୱନାଥ ଦାସ, ଉମାଚରଣ ପଟ୍ଟନାୟକ, ସଦାଶିବ ତ୍ରିପାଠୀ, ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ, ପ୍ରାଣକୃଷ୍ଣ ପଢ଼ିଆରୀ, ବୀରକିଶୋର ଦାସ, ନିତ୍ୟାନନ୍ଦ କାନୁନ୍‌ଗୋ, ଜଗନ୍ନାଥ ଦାସ ଓ ମଦନମୋହନ ପଟ୍ଟନାୟକ ଲକ୍ଷ୍ମଣ ନାୟକ ରହୁଥିବା ସେଲ୍‌କୁ (ରୁଦ୍ଧ କୋଠରି) ଗଲେ । ଏମାନଙ୍କୁ ଦେଖି ସଦାଶିବ ତ୍ରିପାଠୀଙ୍କୁ ଲକ୍ଷ୍ୟ କରି ଲକ୍ଷ୍ମଣ ନାୟକ ପଚାରିଥିଲେ, ''ସଦାଶିବ ବାବୁ ! ଦେଶ କ'ଣ ସତରେ ସ୍ୱାଧୀନ ହେବ ?'' ସଦାଶିବବାବୁ ତାଙ୍କୁ ଦୃଢ଼ ଭରସା ଦେଇ କହିଥିଲେ, ''ଦେଶ ନିଶ୍ଚୟ ଶୀଘ୍ର ସ୍ୱାଧୀନ ହେବାକୁ ଯାଉଛି ।'' ଏହାପରେ ସମସ୍ତେ କିଛି ସମୟ ନିରବ ରହିଗଲେ । ସମସ୍ତ ନିରବତାକୁ ଭଙ୍ଗ କରି ଲକ୍ଷ୍ମଣ ନାୟକ କହିଥିଲେ, ''ଦିନେ ତ ହେଲେ ମରିଥାନ୍ତି ; ତେବେ, ମନରେ ଦୁଃଖ ରହିଗଲା ଯେ ଦେଶର ସ୍ୱାଧୀନତା ଦେଖିପାରିଲି ନାହିଁ । ଆଉ ମୋ' ପିଲାମାନଙ୍କୁ କହିବେ, ମୁଁ ପୁଣି ସ୍ୱାଧୀନ ଭାରତରେ ଜନମ ହେବି ।'' ଲକ୍ଷ୍ମଣ ନାୟକଙ୍କ ଏଇ କେଇପଦ ଶେଷକଥା ଶୁଣି ଫେରିଲା ବାଟରେ ଜାତୀୟ କବି ବୀରକିଶୋରଙ୍କ ମନରେ ଯେଉଁ ଭାବ ସୃଷ୍ଟି ହୋଇଥିଲା, ତାହାକୁ ନେଇ ସେ ଏକ ଗୀତ ରଚନା କରିଥିଲେ । ଫେରିଲା ବେଳେ ପ୍ରସ୍ତାବ ହୋଇଥିଲା ଯେ ସନ୍ଧ୍ୟା ପୂର୍ବରୁ ସମସ୍ତ ବନ୍ଦୀ ଛଅ ନମ୍ବର ୱାର୍ଡ଼ ସମ୍ମୁଖସ୍ଥ ଖୋଲା ସ୍ଥାନରେ ସମବେତ ହେବେ । ତଦନୁସାରେ ଜେଲ୍‌ରେ ଥିବା ସବୁ ରାଜବନ୍ଦୀ ସମବେତ ହେଲେ । କିନ୍ତୁ କିଏ କଅଣ କହିବେ, ସେ ସମ୍ପର୍କରେ କିଛି ସ୍ଥିର ହୋଇପାରିଲା

ନାହିଁ । ଲକ୍ଷ୍ମଣ ନାୟକଙ୍କ ବିରୋଧରେ ହୋଇଥିବା ମକଦ୍ଦମାକୁ ଭଲଭାବରେ ଲଢ଼ାଯାଇପାରିଲା ନାହିଁ ବୋଲି ସମସ୍ତଙ୍କ ମନରେ ବଡ଼ ଅବସୋସ ରହିଥାଏ । ଏଣୁ ଏଭଳି ପରିସ୍ଥିତିରେ କିଏ କଅଣ ବା ଭାଷଣ ଦେବ !

ଲକ୍ଷ୍ମଣ ନାୟକଙ୍କ ଅନ୍ତିମ ବକ୍ତବ୍ୟକୁ ଲକ୍ଷ୍ୟ କରି ବୀରବାବୁ ଗୀତଟି ଲେଖିଥିବା ଶୁଣି ସେଇଟି ବୋଲାଯିବା କଥା ସ୍ଥିର ହେଲା । ତାହା ଗାଇଥିଲେ ବ୍ରହ୍ମପୁର ଜେଲର କନିଷ୍ଠ ବନ୍ଦୀ ଦୋଳଗୋବିନ୍ଦ ପ୍ରଧାନ, ଅଗଷ୍ଟ ଆନ୍ଦୋଳନ କାଳରେ ଜେଲ୍ ଯିବା ବେଳକୁ ତାଙ୍କୁ ମାତ୍ର ଚଉଦ ବର୍ଷ ବୟସ । ସେ ହିଁ ଜାତୀୟ କବି ବୀରକିଶୋରଙ୍କ ସବୁ ଗୀତକୁ ସ୍ୱର ଦିଅନ୍ତି ।

ମୋର ଯିବାର ବେଳ ତ ଆସି ହେଲାଣି,
ଭାଇ ! ହସି ହସି ଦିଅ ମେଲାଣି ।
ମନରେ ରହିଲା ମନର ମୋ କଥା
କି କହିବି ଭାଇ ମରମ ବ୍ୟଥା
ସ୍ୱାଧୀନ ଭାରତ ଦେଖି ନପାରିଲି
(ଯା' ଲାଗି) ଆଶା ନିଶୁଣି ମୁଁ ବାନ୍ଧିଥିଲି,
ମରିଥାନ୍ତି ଦିନେ ସେଇଥିପାଇଁ କି ଶୋଚନା ନାହିଁ,
ମୋ ପିଲାପିଲିଙ୍କୁ କହିବ ଏତିକି
ସ୍ୱାଧୀନ ଭାରତେ ନିଶ୍ଚେ ଜନମିବି
ଭାଇ ! ମୋର ଯିବାର ବେଳ ତ ଆସିଗଲାଣି ।

ଏହି ଗୀତବୋଲା ଶେଷ ହେଲାବେଳକୁ କ୍ରନ୍ଦନର କୋହରେ ସଭା ଭାରାକ୍ରାନ୍ତ ହୋଇଯାଇଥିଲା । ନବକୃଷ୍ଣ ଚୌଧୁରୀ ଆଦି ପିଲାଙ୍କ ଭଳି ବହୁ ସମୟ କାନ୍ଦିଲେ । ଫାଶୀ ଦିନ ସନ୍ଧ୍ୟା ପୂର୍ବରୁ ସିକ୍ୟୁରିଟି ବନ୍ଦୀମାନଙ୍କ ବଖରାକୁ ବନ୍ଦ କରିଦିଆଗଲା, ଯାହାକି ଅନ୍ୟଦିନ ହୁଏନା ଏବଂ ପ୍ରତ୍ୟେକ ୱାର୍ଡ୍ ସମ୍ମୁଖରେ ବହୁସଂଖ୍ୟକ ବନ୍ଧୁକଧାରୀ ଏପିଆର୍ ଫୋର୍ସ୍ ଜଗି ରହିଲେ । ଅତି ପ୍ରତିବାଦ କରିବାରୁ ଫାଶୀ ଦିଆଯାଉଥିବା କୋଠରି ସମ୍ମୁଖସ୍ଥ ଏକ ଝରକା ମାତ୍ର ଖୋଲା ରହିଥିଲା । ମନରେ ଏକ ଉଛନ୍ନ ଏବଂ ଅସ୍ଥିର ଭାବ । ସେହି ରାତିରେ ରାଜବନ୍ଦୀମାନେ ଶୋଇପାରିଲେ ନାହିଁ । କେତେକ ୱାର୍ଡ୍‌ରେ ଭଗବତ୍ ଗୀତା ଆବୃତ୍ତି ସହିତ ଆଶ୍ରମ ଭଜନାବଳୀର ଭଜନମାନ ବୋଲାହେଲା । ଦୋଳଗୋବିନ୍ଦବାବୁ ରହୁଥିବା ୱାର୍ଡ୍‌ର ସମ୍ମୁଖରେ ହିଁ ଫାଶୀ ଦିଆଯାଉଥିବା କୋଠରି । ଫାଶୀ ଦିଆଯିବାର ପାହାନ୍ତାରେ ସାଧାରଣତଃ କ୍ରନ୍ଦନ ଧ୍ୱନି ଶୁଭିଥାଏ । କିନ୍ତୁ ୨୯ ମାର୍ଚ୍ଚ ରାତି ୪ଟା ବେଳକୁ ଶୁଣାଗଲା 'ରଘୁପତି ରାଘବ ରାଜାରାମ୍, ଈଶ୍ୱର ଆଲ୍ଲା ତେରେ ନାମ୍ । ପତିତପାବନ ସୀତାରାମ୍, ସବ୍‌କୋ ସନମତି ଦେ ଭଗବାନ୍ ।'' ଏହି ସମୟରେ ନବବାବୁ ପିଲାଙ୍କ ଭଳି ଭୋ ଭୋ କାନ୍ଦୁଥିଲେ ।

ମାର୍ଚ୍ଚ ୨୯ ତାରିଖ ସକାଳୁ ୱାର୍ଡ୍ ଦ୍ୱାର ଖୋଲାଯିବା ପରେ ବନ୍ଦୀମାନଙ୍କ ମନରେ ଉଦାସ ଉଦାସ ଭାବ । ଏଡ଼େବଡ଼ ଘଟଣାରେ ନିଜର ପ୍ରତିବାଦ ଜଣାଇନପାରିବାରୁ ନବବାବୁଙ୍କ ମନରେ ଅତ୍ୟନ୍ତ ଅବସୋସ ରହିଗଲା । ଅନ୍ତତଃ ସେଦିନ ସନ୍ଧ୍ୟାରେ କେହି ରାଜବନ୍ଦୀ କୋଠରି ଭିତରକୁ ନଯାଇ, ଏଭଳି ନିଷ୍ପତ୍ତିର ପ୍ରତିବାଦରେ ଆଇନ ଅମାନ୍ୟ କରି, ଅନ୍ତତଃ ଲାଠିମାଡ଼ ଖାଇପାରିଥାନ୍ତେ ବୋଲି ସେ ତାଙ୍କର ମନୋଭାବ ପ୍ରକାଶ କରିଥିଲେ ।

ନବବାବୁ ଏହି ବ୍ରହ୍ମପୁର ଜେଲ୍‌ରେ ଥିବାବେଳେ ୧୯୪୩ ମସିହା ଅକ୍ଟୋବର ୨୩ ତାରିଖ ଦିନ କମ୍ୟୁନିଷ୍ଟ ପାର୍ଟିର ନେତା ଭଗବତୀ ପାଣିଗ୍ରାହୀଙ୍କର ଅକାଳ ମୃତ୍ୟୁ ଖବର ପହଞ୍ଚିଲା । ତାଙ୍କ ଶୋକସଭାରେ ଦଳମତନିର୍ବିଶେଷରେ ସମସ୍ତେ ଯୋଗ ଦେଇଥିଲେ । ନବବାବୁ ସେ ସଭାରେ କାନ୍ଦିକାନ୍ଦି ଖାଲି କହିଲେ, ''ଭଗବତୀ ନ ମରି ମୁଁ ମଲି ନାହିଁ !'' ସେ ଆଉ ବିଶେଷ କହିପାରିଲେ ନାହିଁ । ''ଭଗବତୀଙ୍କର ଦୁଇ ସନ୍ତାନ କ'ଣ କରିବେ ?'' ଏତିକି କହି ସେ ସେହି ବିରାଟ ଜନସମାବେଶରେ କଇଁକଇଁ ହୋଇ କାନ୍ଦିଲେ । ଭଗବତୀ ପାଣିଗ୍ରାହୀଙ୍କ ସହିତ ତାଙ୍କର ରାଜନୈତିକ ମତାନ୍ତର ଥିଲା । ସେହିଁ ଓଡ଼ିଶାରେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଭୁଶୁଡ଼ିବା ପାଇଁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ; ତାହା ସତ୍ତ୍ୱେ ଭଗବତୀ ଥିଲେ ତାଙ୍କର ଏବଂ ମାଳତୀ ଦେବୀଙ୍କର ଅତି ଆପଣାର—ସତେ ଯେଭଳି ସହୋଦର । ଜେଲ୍‌ରୁ ଖଲାସ ହେଲାପରେ ସେ ଭଗବତୀବାବୁଙ୍କ ପିଲାମାନଙ୍କର ଖୋଜଖବର ନିଅନ୍ତି । ସେମାନେ ପୁରୀରେ ରହୁଥିବା ବେଳେ ରାଜସ୍ୱ ମନ୍ତ୍ରୀ ଭାବରେ ପୁରୀ ଗସ୍ତ ବେଳେ ମଟର ଗାଡ଼ିକୁ ବହୁ ଦୂରରେ ରଖି ଚାଲିଚାଲି ଯାଇ ତାଙ୍କ ପିଲାଙ୍କ ସହିତ ବେଶ୍ କିଛିକାଳ କଟାନ୍ତି । ସେ ତାଙ୍କ ସାହାଯ୍ୟପାଣ୍ଠିରୁ ଭଗବତୀ ପାଣିଗ୍ରାହୀଙ୍କ ପିଲାଙ୍କ ବହିପତ୍ର କିଣା ପାଇଁ ସାମୟିକ ସାହାଯ୍ୟ କରୁଥିଲେ । ନବବାବୁଙ୍କୁ ଅନ୍ୟମାନେ 'ବାପି' ବୋଲି ଡାକନ୍ତି ; କିନ୍ତୁ ମାଳତୀ ଦେବୀ ସେମାନଙ୍କୁ କହିଥାନ୍ତି, ''ତୁମେ ବାପି ଡାକିବ ନାହିଁ, ବଡ଼ବାପା ବୋଲି ଡାକିବ ।''

ବ୍ରହ୍ମପୁର ଜେଲ୍‌ରେ ଥିଲାବେଳେ ବିଧାନସଭା ସଦସ୍ୟ ଭାବରେ ତାଙ୍କୁ ମାସିକ ୭୫ ଟଙ୍କା ଭତ୍ତା ମିଳୁଥାଏ । ସେହି ଟଙ୍କାକୁ ସେ ବନ୍ଦୀମାନଙ୍କର ପରିବାରଙ୍କ ନିକଟକୁ ବା ରୁଗ୍ଣ ରାଜନୈତିକ କର୍ମୀଙ୍କ ପାଖକୁ ପଠାଇଦିଅନ୍ତି । ଏହି ବ୍ରହ୍ମପୁର ଜେଲ୍‌ରେ ଥିବାବେଳେ ଦିନେ ରାତି ୩ଟା ବେଳେ, ବ୍ରିଟିଶ ସୈନ୍ୟବାହିନୀ ନେଇ ଯାଉଥିବା ଟ୍ରେନ୍ ଉପରେ ଜାପାନୀ ବୋମା ମାଡ଼ ହେଲା । ଜେଲ୍‌ଖାନା ରେଳରାସ୍ତା ନିକଟରେ । ଗୋଟାଏ ବୋମା ଜେଲ୍‌ଖାନା ପାଚେରିର ଠିକ୍ ବାହାରେ ଫୁଟିଲା । ସେହି ଶବ୍ଦରେ ବନ୍ଦୀମାନେ ଆତଙ୍କିତ ଓ ତ୍ରସ୍ତ ହୋଇଗଲେ । ନବବାବୁ ସକାଳ ପର୍ଯ୍ୟନ୍ତ ଜେଲ୍‌ସାରା ବୁଲିବୁଲି ସମସ୍ତଙ୍କୁ ଧୈର୍ଯ୍ୟ ଦେଉଥାନ୍ତି ।

## ୨୬ ଜାନୁଆରି ମାଡ଼ :

୧୯୪୪ ମସିହାର ଜୁନଆରି ୨୬ ତାରିଖ ଦିନ କିଛି ଯୁବକ-ବନ୍ଦୀ ଜେଲ୍ ମଧ୍ୟରେ ସ୍ୱାଧୀନତା ଦିବସ ପାଳନ ପାଇଁ ଇଛା କଲେ । ସେହି ଉପଲକ୍ଷ୍ୟରେ ଜାତୀୟ ପତାକା ଉଡ଼ାଯିବାର କଥା । ଗୋପବନ୍ଧୁ ଚୌଧୁରୀ ଆଦି ବୟୋଜ୍ୟେଷ୍ଠ ନେତା ଏହାକୁ ବିରୋଧ କଲେ–କାରଣ ଜେଲ୍ ଭିତରକୁ ବାହାରୁ ପତାକା ଚୋରାଇଆଣି ସ୍ୱାଧୀନତା ଦିବସ ପାଳନ କରିବା ଅନୈତିକ । କିନ୍ତୁ କଣ୍ଟୁରୀଚରଣ ମଳିକ, ମଥୁରି ସାହୁ, ଉପେନ୍ଦ୍ର ମହାନ୍ତି ଓ ରାଧେଶ୍ୟାମ ଦାସ ଆଦି ଯୁବକମାନଙ୍କ ଜିଦ୍, ନିଶ୍ଚୟ ପତାକା ଉଡ଼ାଯିବ । ଜେଲ୍ ଭିତରେ ପତାକା ତିଆରି କରାଗଲା ଓ କର୍ତ୍ତୃପକ୍ଷଙ୍କ ବିରୋଧ ସତ୍ତ୍ୱେ ସକାଳ ୮ଟାରେ ପ୍ରାଣକୃଷ୍ଣ ପଡ଼ିହାରୀଙ୍କ ନେତୃତ୍ୱରେ ପତାକା ଉତ୍ତୋଳନ କରାଗଲା । ପତାକା-ବାଉଁଶଟା ଖୁବ୍ ଉଚ୍ଚ । କଲେକ୍ଟରଙ୍କ ଅଫିସ ସମେତ ଏହା ବହୁ ଦୂରକୁ ଦେଖାଯାଉଥାଏ । ଏଣୁ ହଇଚଇ ପଡ଼ିଗଲା । ପତାକା ଉତ୍ତୋଳନ ପରେ ତାହାକୁ ଓହ୍ଲାଇ ଆଣିବାକୁ ଜେଲ୍ ସୁପରିନ୍‌ଟେଣ୍ଡେଣ୍ଟ ନାୟାର କହିଲେ । କିନ୍ତୁ ବିଧି ଅନୁସାରେ ସନ୍ଧ୍ୟା ପୂର୍ବରୁ ପତାକା ଅବତରଣ କରାଯିବାର ନୁହେଁ । କଲେକ୍ଟର ହାସାନ୍‌ଙ୍କ ପାଖକୁ ଏ ଖବର ଗଲା । ସେ ୩ଟା ବେଳକୁ ସଶସ୍ତ୍ର ପୋଲିସ ଆଣି ପତାକା-ବାଉଁଶ ଆଡ଼କୁ ଆସିଲା ବେଳକୁ ବହୁ ବନ୍ଦୀ ପତାକା-ବାଉଁଶ ଚାରିପଟେ ଘେରି ରହି ତାହା କରାଇଦେଲେ ନାହିଁ । ଏଥିଲାଗି ଆଖିବୁଜା ମାଡ଼ ହେଲା । ଗୌରାଙ୍ଗ ଚରଣ ଦାସ ମୁଣ୍ଡରେ ଚଦର ଭିଡ଼ିଥିଲେ ବି ତାଙ୍କ କାନମୁଣ୍ଡା ଉପରେ ଏଭଳି ସାଙ୍ଘାତିକ ମାଡ଼ ହେଲା ଯେ ମୁଣ୍ଡ ଫାଟି ଦେହସାରା ରକ୍ତଜୁଡ଼ୁବୁଡ଼ୁ । ସେହିଭଳି ମାଡ଼ ହୋଇଥିଲା ବୀରେନ୍ ମିତ୍ରଙ୍କ ମୁଣ୍ଡରେ । ବନ୍ଦେ ମାତରମ୍, ଇନ୍‌କ୍ଲାବ୍ ଜିନ୍ଦାବାଦ୍ ଧ୍ୱନି ଦେଇ ବନ୍ଦୀମାନେ ସେ ପତାକା ଚାରିପଟେ ଘେରି ମାଡ଼ ଖାଉଥାନ୍ତି ପଛେ ଛାଡୁନଥାନ୍ତି । ନିଜେ କଲେକ୍ଟର ନିଜ ହାତର ଛୋଟ ବାଡ଼ିରେ ଏମାନଙ୍କୁ ପିଟୁଥାନ୍ତି । ମାଡ଼ରେ ଗୌରାଙ୍ଗ ଚରଣ ଦାସ, ବୀରେନ ମିତ୍ର ଆଦି ମୁମୂର୍ଷୁ ଅବସ୍ଥା ପର୍ଯ୍ୟନ୍ତ ଯାଇଥିଲେ । କଲେକ୍ଟର ପୁଣି ଗର୍ଜିଉଠିଲେ, "କିଛି ଲୋକଙ୍କୁ ମୁଁ ଶସ୍ତା (You want cheap matyrdom, you will be given that just now) ସହିଦ ବନେଇବାକୁ ଚାହେଁ"–ମାଡ଼ ହେଲା ରବୀନ୍ଦ୍ର ମୋହନ ଦାସଙ୍କ ବାମ ହାତରେ ଏକ ପିତ୍ତଳ ଗୋବଦିଆ ରୋଳ ବାଡ଼ିରେ । କଲେକ୍ଟରଙ୍କ ଦୁଇ ପାଖରେ ଥିବା ଦୁଇଜଣ ସର୍ଜେଣ୍ଟ କଣ୍ଟୁରୀ ଚରଣ ମଳିକ ଓ ଗୌରାଙ୍ଗ ଚରଣ ଦାସଙ୍କୁ ବୁଟ୍ ଜୋତାରେ ଗୋଇଠା ମାରି ଚକଟି ଚାଲିଗଲେ । ମୁଣ୍ଡ, ପିଠି ଫାଟି ରକ୍ତ ବହୁଥାଏ । ଶହଶହ ସଂଗ୍ରାମୀ ଲାଠିମାଡ଼ର ଶିକାର ହେଲେ । ତିନିଥର ଲାଠିଚାର୍ଯ୍ୟ ହେଲା । ପତାକା-ପୀଠ ରକ୍ତାକ୍ତ ହୋଇଗଲା । ମଥୁରାନନ୍ଦ ସାହୁ ପତାକାକୁ ଜାବୁଡ଼ି ଧରି ରହିଥାନ୍ତି । ଫଉଜ ଏଣେତେଣେ, ଯେଉଁଠି ଯାହାକୁ ପାଇଲେ, ଗୋଗଛ ବାଡ଼ିଆ କଲେ । ବିଶ୍ୱନାଥ ଦାସ ଓ ନବକୃଷ୍ଣ ଚୌଧୁରୀ ଏବଂ ବିଶ୍ୱନାଥ

ପଣ୍ଡିତଙ୍କ ଉପରେ ବି ମାଡ଼ ବସିଲା । ଡାକ୍ତର ସୁରେନ୍ଦ୍ର ସାହୁ ମାଡ଼ ଖାଇ ବେହୋସ ହୋଇ ପଡ଼ିରହିଲେ । ଏହି ସମୟରେ ନବକୃଷ୍ଣ ଚୌଧୁରୀ ଦୌଡ଼ି ଆସି, ପାଗଳଙ୍କ ପରି, କଲେକ୍ଟରଙ୍କ ଆଗରେ ନିଜର ପିନ୍ଧିଥିବା ଜାମାକୁ ଫୋପାଡ଼ି ଦେଇ, ନିଜ ଛାତିରେ ଗୁଳି ନ ବାଜିଲା ପର୍ଯ୍ୟନ୍ତ ପିଲାମାନଙ୍କୁ ମାଡ଼ ଦେଇପାରିବ ନାହିଁ ବୋଲି ଚିହାର କରି କହିବାରୁ କଲେକ୍ଟର ଲଜ୍ଜିତ ହୋଇ ଫେରିଗଲେ ।

ଭାରତ ସ୍ୱାଧୀନତା ସଂଗ୍ରାମର ଇତିହାସରେ ଜାତୀୟ ପତାକା ଉତ୍ତୋଳନ କରିବାକୁ ଯାଇ ଏଭଳି ମାଡ଼ ଖାଇବାର ପଟାନ୍ତର ନାହିଁ । ସେହି ସମୟରେ ବିଖ୍ୟାତ ଦୈନିକ ପତ୍ରିକା 'ହିନ୍ଦୁ' ସଂଗ୍ରାମୀମାନଙ୍କର ଅହିଂସାତ୍ମକ ସଂଗ୍ରାମର ଉଚ୍ଚ ପ୍ରଶଂସା କରି ଏକ ଲେଖା ବାହାର-କରିଥିଲେ ।

ଏସବୁ କ୍ଷେତ୍ରରେ ନବବାବୁ ଓ ଅନ୍ୟ ନେତାମାନଙ୍କ ମଧ୍ୟରେ ଆକାଶପାତାଳ ଫରକ । ହରେକୃଷ୍ଣ ମହତାବ ଓ ଯଦୁମଣି ମଙ୍ଗରାଜଙ୍କ ଭଳି ନେତାଙ୍କୁ କର୍ମୀମାନେ ଭୟ କରନ୍ତି; ସେମାନଙ୍କଠାରୁ ଆଡ଼ଛାଡ଼ ହୋଇ ରହନ୍ତି । କିନ୍ତୁ ସେମାନେ ନବବାବୁଙ୍କ ଆଡ଼କୁ ଟାଣି-ହୋଇଯାଆନ୍ତି । ହରେକୃଷ୍ଣ ମହତାବ ଓ ସୁରେନ୍ଦ୍ର ପଟ୍ଟନାୟକଙ୍କ ଭଳି ଟାଣୁଆ ନେତା କର୍ମୀମାନଙ୍କୁ ଲଢ଼େଇକୁ ପଠାଇବାର ବରାଦ କରନ୍ତି ଓ ମାଡ଼ ଖାଇଲେ ପରେ ଆହା କରନ୍ତି ବା ଆଉଁଶିଦିଅନ୍ତି, କିନ୍ତୁ ନବକୃଷ୍ଣ ଚୌଧୁରୀ ନେତା ହେଲେ ବି ସତେ ଯେଭଳି ସେମାନଙ୍କ ମଧ୍ୟରୁ ଜଣେ ! କର୍ମୀମାନଙ୍କୁ ତାଲିମ ଦିଅନ୍ତି ଓ ସେମାନଙ୍କ ସହିତ ଚେସ୍‌ଠାରୁ ଆରମ୍ଭ କରି ଅନ୍ୟାନ୍ୟ ଖେଳ ଖେଳନ୍ତି; ପୁଣି କର୍ମୀଙ୍କ ଉପରେ ଲାଠି ଗୁଳିର ବିପଦ ଦେଖାଦେଲେ ଆଗେଇଯାଇ ସେ ବନ୍ଧୁକ ଆଗରେ ଛାତି ଦେଖାନ୍ତି ବା ବେଶ୍ ଦି'ଟା ପିଠିରେହାତରେ ବା ମୁଣ୍ଡରେ ଖାଆନ୍ତି । ଏଭଳି ମନ୍ତବ୍ୟ ଦେଲାବେଳେ ମନେପଡ଼େ ସ୍ୱରାଜ୍ୟାଶ୍ରମ ଦଖଲ ବେଳର କଥା । ହରେକୃଷ୍ଣ ମହତାବ ନିଜ ଆତ୍ମଜୀବନୀ 'ସାଧନାର ପଥେ'ର ୧୫୧ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି, ''ମୁଁ ବନ୍ଦୋବସ୍ତ କଲି ଯେ, ଦଳ ଦଳ ହୋଇ ସ୍ୱେଚ୍ଛାସେବକ ଲାଠି ବନ୍ଧୁକର ସମ୍ମୁଖୀନ ହୋଇ ସେ ଆଶ୍ରମ ଦଖଲ କରି ସେଠାରେ ରହିବେ । ଏଥିପାଇଁ ସ୍ୱେଚ୍ଛାସେବକମାନଙ୍କୁ ପ୍ରସ୍ତୁତ କରିବା, ବିଶେଷତଃ ମୁଁ ନିଜେ ଦୂରରେ ରହି ଅନ୍ୟମାନଙ୍କୁ ଏଥିରେ ପ୍ରବର୍ତ୍ତାଇବା କି କଠିନ କାମ ସହଜେ ଅନୁମେୟ । ...ସ୍ୱେଚ୍ଛାସେବକଙ୍କ ଉପରେ ଭୀଷଣ ମାଡ଼ ହେଲା । ଏପରିକି ସମସ୍ତେ ବେହୋସ ହୋଇପଡ଼ିଲେ । ...ପୁଣି ପରଦିନ ୧୩ଜଣ ସତ୍ୟାଗ୍ରହୀ ସେହିପରି ଉଦ୍ୟମ କରି ପ୍ରବଳ ମାଡ଼ ଖାଇ ପଡ଼ିଗଲେ... ।'' ପୃଷ୍ଠା ୧୫୨ରେ ଲେଖାଅଛି, ''ଏ ପ୍ରଶ୍ନ ସେତେବେଳେ ନବକୃଷ୍ଣ ଚୌଧୁରୀ ଖଲାସ ହୋଇ ଆସିବା ପରେ ଆମ ଭିତରେ ବହୁ ସମୟ ଆଲୋଚିତ ହୋଇଛି ।''...ଏଥିରୁ ଜଣାଯାଏ ଯେ ସ୍ୱରାଜ୍ୟାଶ୍ରମ ଦଖଲ ବେଳେ ନବବାବୁ ଜେଲ୍‌ରେ ଥିଲେ । ସୁରେନ୍ଦ୍ର ନାଥ ପଟ୍ଟନାୟକ ତାଙ୍କ

ଲିଖିତ 'ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନ'ର ସ୍ୱରାଜ୍ୟ ଆଶ୍ରମ ଦଖଲ ଅଧ୍ୟାୟର ୧ ୦ ୯ ଓ ୧ ୧ ୦ ପୃଷ୍ଠାରେ ଲେଖିଛନ୍ତି–ଶ୍ରୀ ବିନୋଦ କାନୁନ୍‌ଗୋ ଓ ଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ ବାହାରେ ରହି ଏହି ଆନ୍ଦୋଳନକୁ ପରିଚାଳନା କରୁଥାନ୍ତି ।

କର୍ମୀମାନଙ୍କୁ ଲଢ଼େଇକୁ ପଠାଇଦେଇ ମାଡ଼ଠାରୁ ଦୂରରେ ରହିବା ନବକୃଷ୍ଣ ଚୌଧୁରୀଙ୍କ ଚରିତ୍ରରେ ନଥିଲା । ଏଣୁ ଢେଙ୍କାନାଳ ଆନ୍ଦୋଳନ ବେଳେ ଯେତେବେଳେ ପ୍ରଥମ ଦଫା ଆନ୍ଦୋଳନକାରୀ ମାଡ଼ ଖାଇ ଫେରିଆସିଲେ, ତା' ପରେ ଯାଇଥିଲେ ନିଜେ ନବକୃଷ୍ଣ ଚୌଧୁରୀ ନେତୃତ୍ୱ ଦେବାକୁ ।

ବ୍ରହ୍ମପୁର ଜେଲ୍‌ର ଏ ଘଟଣା ପରେ ତତ୍କାଳୀନ ମନ୍ତ୍ରୀ ଗୋଦାବରୀଶ ମିଶ୍ର ମନ୍ତବ୍ୟ ପ୍ରକାଶ କରିଥିଲେ ଯେ, ''ନବକୃଷ୍ଣ ଚୌଧୁରୀ ଯେଉଁ ଜେଲ୍‌କୁ ଯାଉଛନ୍ତି, ସେଠାରେ ଗଣ୍ଡଗୋଳର ସୂତ୍ରପାତ କରୁଛନ୍ତି ଓ ଅନ୍ୟ ବନ୍ଦୀମାନଙ୍କୁ ପ୍ରବର୍ତ୍ତାଉଛନ୍ତି । ଏଣୁ ତାଙ୍କୁ ଗୋଟିଏ ଜେଲ୍‌ରେ ରଖା ନ ଯାଇ ଏତେ ଜେଲ୍‌କୁ କାହିଁକି ପଠାଯାଉଛି ?''

୧ ୯ ୪ ୫ ମସିହା ଏପ୍ରିଲ ପହିଲା ଦିନ କସ୍ତୁରୀ ଚରଣ ମଳିକ ବ୍ରହ୍ମପୁର ଜେଲରୁ ଖଲାସ ହେଲେ ଓ ସେହିଦିନ ବି ମାଳତୀ ଦେବୀ କଟକ ଜେଲ୍‌ରୁ ଖଲାସ ହେଲେ । ନବବାବୁ କସ୍ତୁରୀବାବୁଙ୍କ ହାତରେ ମାଳତୀ ଦେବୀଙ୍କୁ ଲେଖିଲେ, ''କସ୍ତୁରୀ ତୁମ ପାଖରେ ରହିବ । ତୁମେ ସ୍ଥାୟୀ ଭାବରେ କେଉଁଠି କର୍ମସ୍ଥଳୀ ସ୍ଥିର କରିବ–ତରିକୁନ୍ଦ ନା ଅନୁଗୋଳ ? ଏହି ଦୁଇ ସ୍ଥାନରୁ ଯାହାକୁ ହେଲେ ବାଛି ସ୍ଥିର କରିବ ।''

କସ୍ତୁରୀବାବୁ ସେ ଚିଠି ମାଳତୀ ଦେବୀଙ୍କୁ ଦେଲେ ଓ ତାଙ୍କ କଟକ ଘରେ ଦୁଇତିନିଦିନ ରହି ଗାଁକୁ ଗଲେ ଓ ଗାଁରୁ ଫେରି ମାଳତୀ ଦେବୀଙ୍କ ସହିତ ଅନୁଗୋଳ ଗଲେ । ଅନୁଗୋଳ ଆଶ୍ରମକୁ କେବଳ ସେହି ସମୟତକ ବାବାଜୀ ଭାଇ (ବଳଭଦ୍ର ମିଶ୍ର) ଜଗିଥାନ୍ତି । ଝାଟିମାଟିର ତିନିବଖରା ଚାଳଘର । ସେଇଟିକୁ ସଫାସଫି କଲେ । ତରିକୁନ୍ଦ ଘରଟି ବିକି ଏହି ଘର ସହିତ ଏ ୨ –୮ ୬ ଡେସିମିଲ୍ ଜମି ଗିରିଜାଭୂଷଣ ଦତ୍ତଙ୍କଠାରୁ ମାଳତୀ ଦେବୀଙ୍କ ନାମରେ କିଣାଯାଇଥିଲା । ଏଇଟି ତାଙ୍କର ଦ୍ୱିତୀୟ ଘରକରଣା ବୋଲି ସେହି ଘରଟିର ନାଁ ରହିଲା 'ପୁନଶ୍ଚ' । ତାଳଚେର ଆନ୍ଦୋଳନ ବେଳେ ଅନୁଗୋଳର ହୃଷୀକେଶ ତ୍ରିପାଠୀ (ପରବର୍ତ୍ତୀ କାଳରେ ଅନୁଗୋଳର ବିଧାୟକ) ଆନ୍ଦୋଳନ ପରିଚାଳନା ପାଇଁ ଅନୁଗୋଳରେ ଏହି ଜାଗାଟି କିଣିବା ପାଇଁ ନବବାବୁଙ୍କୁ ପ୍ରସ୍ତାବ ଦେଇଥିଲେ । ତା'ରି ଉପରେ ଗଢ଼ିଉଠିଛି ବାଜି ରାଉତ ଛାତ୍ରାବାସ ।

ସ୍ୱାଧୀନତା ସଂଗ୍ରାମ ଓ ଗଡ଼ଜାତ ମୁକ୍ତି ଆନ୍ଦୋଳନରେ ଯୋଗ ଦେଇ ବହୁ ଲୋକଙ୍କୁ ପାଞ୍ଚବର୍ଷରୁ ଷାଠିଏ ସତୁରି ବର୍ଷ ପର୍ଯ୍ୟନ୍ତ ଜେଲ ହୋଇଥାଏ । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ

ପିଲାପିଲି ଭିକଦୁଃଖ କରି ଚଳୁଥାନ୍ତି । ମାଳତୀ ଦେବୀଙ୍କର ମହିଳାମାନଙ୍କ ପାଇଁ ଉଦ୍ଦିଷ୍ଟ ଏକ ସାଇକେଲ ଥାଏ । ତାକୁ ସଜଡ଼ାଗଲା । ସେହି ସାଇକେଲ୍‌ରେ କସ୍ତୁରୀ ମଳିକଙ୍କୁ ଢେଙ୍କାନାଳର ବିଭିନ୍ନ ଅଞ୍ଚଳକୁ ପଠାଗଲା । ଥରେ ସେ ଓ ମାଳତୀ ଦେବୀ ଚାଲିଚାଲି ଅନୁଗୋଳରୁ ପରଜଙ୍ଗ ଯାଇଥିଲେ । ସେଠାରେ ମହେଶ୍ୱର ସୁବାହୁସିଂହଙ୍କ ଘରେ ରହି ସଂଗ୍ରାମୀମାନଙ୍କର ଓ ତାଙ୍କ ପରିବାରର କରୁଣ କାହାଣୀ ଶୁଣିବାକୁ ପାଇଥିଲେ । ସେସବୁ ଶୁଣି ମାଳତୀ ଦେବୀ ଅତ୍ୟନ୍ତ ବିଚଳିତ ହୋଇପଡ଼ିଥିଲେ ।

ଅଧିକାଂଶ ବନ୍ଦୀ ଖଲାସ ହୋଇଥିଲେ ମଧ୍ୟ ନବବାବୁ ପ୍ରଭୃତି ଖଲାସ ହୋଇ-ନଥାନ୍ତି । ଶେଷ ବେଳକୁ ତାଙ୍କ ଦେହ ଖରାପ ହେବାରୁ ତାଙ୍କୁ କଟକ ଜେଲ୍‌କୁ ସ୍ଥାନାନ୍ତର କରାଗଲା । ସେ କଟକ ଜେଲ୍‌ରେ ଥିଲାବେଳେ ସେଠାରେ ବାଙ୍କବିହାରୀ ଦାସ ଓ ଚିତ୍ତରଞ୍ଜନ ଦାସ ନାମକ ଦୁଇଜଣ ଉଦୀୟମାନ ଓ ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ ଯୁବକଙ୍କ ସହ ତାଙ୍କର ପରିଚୟ ହୁଏ । ସେମାନଙ୍କ ସହ ରାଜନୀତି ଓ ଅନ୍ୟାନ୍ୟ ବୌଦ୍ଧିକ ଆଲୋଚନା ହେବା ସଙ୍ଗେସଙ୍ଗେ ଚେସ୍ ଆଦି ଖେଳ ହୁଏ । ବାଙ୍କବାବୁଙ୍କ ସହ ଚେସ୍ ଖେଳରେ ନବବାବୁ ସେ ଆନନ୍ଦ ପାଆନ୍ତି ବୋଲି ପରବର୍ତ୍ତୀ କାଳରେ ଭୁବନେଶ୍ୱର ଷ୍ଟେସନରୁ ଓହ୍ଲାଇ ସିଧା ସୁଧାଅପାଙ୍କ (ବାଙ୍କବାବୁଙ୍କ ସ୍ତ୍ରୀ) କ୍ୱାଟରକୁ ଚାଲିଆସନ୍ତି । ସୁଧାଅପା ଆଇ.ଏସ୍‌ସି. ପଢ଼ିଲା ବେଳେ ନବବାବୁଙ୍କ ପୁଅ କାଲୁ ସହିତ ତାଙ୍କର ପରିଚୟ । ସୁଧାଅପାଙ୍କର ବିଜ୍ଞାନ ବହି ନଥିବାରୁ ସେ ତାଙ୍କୁ ପଢ଼ିବାକୁ ବିଜ୍ଞାନ ବହି ଦେଇଥିଲା । ନବବାବୁ ଯେତେବେଳେ ଏ କଥା ଜାଣିଲେ, ସେତେବେଳେ ମୁଖ୍ୟମନ୍ତ୍ରୀଙ୍କ ସାହାଯ୍ୟପାଣ୍ଠିରୁ ସୁଧାଅପାଙ୍କୁ ବହି କିଣିବା ଲାଗି କିଛି ଟଙ୍କା ସାହାଯ୍ୟ ଦେଇଥିଲେ । ସେହି ସାହାଯ୍ୟ ଟିକକ ଥିଲା ତାଙ୍କ ପାଇଁ ସେତେବେଳେ ବହୁତ । ଏମିତି ଉଦୀୟମାନ ଓ ଅଭାବଗ୍ରସ୍ତ ପୁଅଝିଅଙ୍କ ପଢ଼ିବା ଲାଗି ସେ ସାହାଯ୍ୟ ଦେବା କଥା ଅନେକ ଲୋକ ଏବେ ମନେପକାନ୍ତି । ଏଣୁ ସୁଧାଅପାଙ୍କ ଘରେ ଚେସ୍ ଖେଳ ସହିତ ନାନା ରକମ ରାଜନୀତିକ ଆଲୋଚନା ହେବାରେ ନବବାବୁଙ୍କର ଅସୁବିଧା ନଥାଏ ।

ହରେକୃଷ୍ଣ ମହତାବ ୧୯୪୫ ମସିହା ମେ ମାସରେ ସମ୍ବଲପୁର ଜେଲ୍‌ରୁ ଖଲାସ ହୋଇ କଟକରେ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ଘରେ କିଛିଦିନ ରହିଲେ । ସେହି ସମୟରେ ବିଜୟାନନ୍ଦ ପଟ୍ଟନାୟକ କଟକରେ ଅନ୍ତରୀଣ ବନ୍ଦୀ ହୋଇ ରହିଥାନ୍ତି ଏବଂ ବୀରେନ ମିତ୍ର ବି ଖଲାସ ହୋଇଥାନ୍ତି । ମହତାବବାବୁଙ୍କ ସହିତ ସାକ୍ଷାତ ଓ ଆଲୋଚନା ପାଇଁ ବୀରେନ୍ ମିତ୍ରଙ୍କର ତାଙ୍କ ଘରକୁ ଯା'ଆସ କରିବାଟା ନିତ୍ୟାନନ୍ଦବାବୁଙ୍କୁ ଭଲ ଲାଗୁନଥାଏ । ଏଣୁ ମହତାବବାବୁଙ୍କ ରହିବା ପାଇଁ ବାଲୁବଜାର କଟକ ଟ୍ରେଡ଼ିଙ୍ଗ କମ୍ପାନୀ ସାମ୍ନା ଏକ ଦୋ'ମହଲା ଘରର ଉପର ଦୁଇ ବଖରା ଘର ଭଡ଼ା ନିଆହେଲା । କଟକରେ ରହିବା ଭିତରେ ମହତାବବାବୁ ପ୍ରଥମେ ନବବାବୁଙ୍କ ସହିତ କଟକ ଜେଲ୍‌ରେ ଦେଖା କରି, ଆଳାପ

ଆଲୋଚନା ଭିତରେ, ତାଙ୍କ ସହିତ ରହିବା ପାଇଁ ଜଣଙ୍କୁ ଚାହିଁଲେ । ନବବାବୁ ସେହି ସମୟରେ ବାଙ୍କବିହାରୀ ଦାସଙ୍କ ନାମ ସୁପାରିଶ କରିଥିଲେ । ମହତାବବାବୁଙ୍କ ଚିଠି ପାଇ ଗାଁରୁ ଆସି ବାଙ୍କବାବୁ ମହତାବବାବୁଙ୍କ ସହିତ ବାଲୁବଜାରର ସେହି ଘରେ ରହିଲେ । ରୋଷେଇ କରି ଉଭୟେ ଖାଆନ୍ତି । କର୍ମୀମାନଙ୍କ ମଧ୍ୟରୁ ଯେଉଁମାନେ ଖଲାସ ହୋଇଥିଲେ, ସେମାନେ କାରାବାସ ଜୀବନ ପରେ ନିଜନିଜ ଗାଁରେ ଥାଆନ୍ତି । କଟକରେ କଂଗ୍ରେସ ଅଫିସ୍ ନଥାଏ ।

**କାରାମୁକ୍ତି :**

ନବବାବୁ ଖଲାସ ହେଲାଦିନ ବାଙ୍କବାବୁ ତାଙ୍କୁ ଆଣିବା ଲାଗି କଟକ ଜେଲକୁ ଯାଇଥିଲେ । ଉଭୟ ସିଧା ମହତାବବାବୁଙ୍କ ବାଲୁବଜାର ବସାକୁ ଆସିଲେ । ମହତାବଙ୍କୁ ଭେଟୁଭେଟୁ ନବବାବୁ କହିପକାଇଲେ, "Mahatab Babu, I accept you as my leader" । ଏହା ଥିଲା ସମାଜବାଦୀ ବାଙ୍କବାବୁଙ୍କ ପାଇଁ ଏକ ଅପ୍ରତ୍ୟାଶିତ, ଅଚିନ୍ତନୀୟ ଆଘାତ । ଏହା ପୂର୍ବରୁ ଅବଶ୍ୟ ନବକୃଷ୍ଣ ଚୌଧୁରୀ କଂଗ୍ରେସ ସୋସାଲିଷ୍ଟ ଗୋଷ୍ଠୀଠାରୁ ନିଜକୁ ଅଲଗା କରିଦେଇଥିଲେ । ନବବାବୁ ସାଙ୍ଗଠନିକ ଭାବରେ ଓଡ଼ିଶାର କଂଗ୍ରେସ ସୋସାଲିଷ୍ଟମାନଙ୍କଠାରୁ ଅଲଗା ହୋଇଯାଇଥିଲେ ବି ବିଭିନ୍ନ କୃଷକ ଆନ୍ଦୋଳନରେ ସେମାନଙ୍କ ସହିତ ସଂଶ୍ଳିଷ୍ଟ ହୋଇ ରହିଥିଲେ । ବିଶେଷକରି କମ୍ୟୁନିଷ୍ଟମାନଙ୍କ ସ୍ୱତନ୍ତ୍ରତା ଜଣାପଡ଼ିବା ପରେ ସମାଜବାଦୀମାନେ ତାଙ୍କର ନିକଟତର ଥିଲେ । କିନ୍ତୁ ସେ କଅଣ ଅନୁଭବ କଲେ କେଜାଣି, ଦିନେ ସେ ଓଡ଼ିଶାର କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ସ୍ୱରାଜ୍ୟାଶ୍ରମର ବାମପଟକୁ ଥିବା ଆଜ୍‌ବେସ୍‌ଟସ୍ ଘରକୁ ଡାକି କହିଲେ, ''ତୁମେମାନେ ଭାବୁଛ ଓ ଆଶା କରୁଛ, ମୁଁ ତୁମମାନଙ୍କ ସଙ୍ଗରେ ରହେ । ମୁଁ ତୁମମାନଙ୍କ ସାଙ୍ଗରେ ରହିପାରିବିନାହିଁ ।'' ଏତିକି କହି ସେ କାନ୍ଦିପକାଇଲେ ଓ ସମାଜବାଦୀ ସହକର୍ମୀମାନେ ସମସ୍ତେ ବି କାନ୍ଦିଲେ ।

'ସେ କଂଗ୍ରେସ ସୋସାଲିଷ୍ଟ ଦଳର ନେତା ନହୁଅନ୍ତୁ ପଛକେ, କଂଗ୍ରେସ ଦଳର ନେତା ହୁଅନ୍ତୁ, କିନ୍ତୁ ହରେକୃଷ୍ଣ ମହତାବ କାହିଁକି ତାଙ୍କର ନେତା ହେବେ ? ଏଇ କଥା ବାଙ୍କବାବୁଙ୍କୁ ଖୁବ୍ ବାଧିଥିଲା । ୧୯୩୩ରୁ ୧୯୪୬ ପର୍ଯ୍ୟନ୍ତ ସେ ହିଁ ଥିଲେ କଂଗ୍ରେସ ଦଳର ସାରଥି । ଏହି ସମୟ ମଧ୍ୟରେ କୃଷକ ଆନ୍ଦୋଳନ ଓ ଗଡ଼ଜାତ ଆନ୍ଦୋଳନ ହେଉ ବା ଅଗଷ୍ଟ ଆନ୍ଦୋଳନ ହେଉ, ସେହିଁ ଥିଲେ ସେସବୁର କର୍ଣ୍ଣଧାର ବା ସାରଥି ଏବଂ ଏହିସବୁ ଆନ୍ଦୋଳନ ଜରିଆରେ କଂଗ୍ରେସ ପ୍ରସାର ଲାଭ କରିଥିଲା ଓ ପ୍ରଭାବଶାଳୀ ହୋଇଥିଲା । ହରେକୃଷ୍ଣ ମହତାବଙ୍କ ଆତ୍ମଜୀବନୀ 'ସାଧନାର ପଥେ'ର ୧୬୦ ପୃଷ୍ଠାରେ ଲେଖା ଅଛି, ''୧୯୩୩ ମସିହା ସତ୍ୟାଗ୍ରହ ବନ୍ଦଠାରୁ ୧୯୩୭ ମସିହା ପର୍ଯ୍ୟନ୍ତ ମୁଁ ଆମ ଗାଁରେ ହିଁ ମୁଖ୍ୟତଃ ଅବସ୍ଥାନ

କରି ରହିଲି । ଏହି ସମୟରେ ମୋର ସମସ୍ତ ଧ୍ୟାନ, କର୍ମ ମନ୍ଦିରରେ ଥିଲା ଓ ନିଜ ଗାଁରେ ଯାହାକିଛି କରିବାର କଥା ସେଥିରେ ମୁଁ ନିର୍ଦ୍ଦିଷ୍ଟ ରହିଲି...''

ପୁଣି ସେହି ବହିର ୧୬୬ ପୃଷ୍ଠାର ୧୭ ଧାଡ଼ିରେ ଅଛି ''ମୋତେ ସେ ସଂଘର (କୃଷକସଂଘ) ସଭାପତି କରିଦିଆହେଲା । ବଡ଼ ବଡ଼ କୃଷକ ସମ୍ମିଳନୀମାନ ଅନୁଷ୍ଠିତ ହେବାରେ ଲାଗିଲା ଓ ଅନେକ ସ୍ଥଳରେ ମୋତେ ସଭାପତି ହୋଇ ଯିବାକୁ ହେଲା...''

ସେହି ପୃଷ୍ଠାର ୨୬ ଧାଡ଼ିରେ ପୁଣି ଅଛି, ''ଏ କେତେ ବର୍ଷ କଂଗ୍ରେସ ଅନୁଷ୍ଠାନ ସହିତ ମୁଁ କେବଳ ନାମମାତ୍ର ସମ୍ପର୍କ ରଖିଥାଏ ଓ ମୋର ମୁଖ୍ୟ କାମ କର୍ମ ମନ୍ଦିର ହୋଇଥାଏ ।''

୧୯୩୭ ନିର୍ବାଚନରେ ମହତାବବାବୁ ବାଲେଶ୍ୱର ଜିଲ୍ଲାରେ ହିଁ ସୀମାବଦ୍ଧ ଥିଲେ, ଅଥଚ୍ ଏହି ନିର୍ବାଚନରେ, ସଭାପତି ନୀଳକଣ୍ଠ ଦାସଙ୍କ ସାଙ୍ଗକୁ ନବକୃଷ୍ଣ ଚୌଧୁରୀ, ସାଧାରଣ ସମ୍ପାଦକ ତଥା କୃଷକ ନେତା ଭାବରେ, ନିର୍ବାଚନ ପରିଚାଳନାରେ ଗୁରୁତ୍ୱପୂର୍ଣ୍ଣ ଅଂଶଗ୍ରହଣ କରିଥିଲେ । ପୁଣି ୧୯୩୭ରୁ ୧୯୪୦ ମସିହା ମଧ୍ୟରେ ହରେକୃଷ୍ଣ ମହତାବ ରାଜନୀତିକ ପଟ୍ଟଭୂମିର ରଥୀ ହେଲେ ହେଁ ନବକୃଷ୍ଣ ଚୌଧୁରୀ ଥିଲେ ସାରଥି । ତେଣେ କୃଷକ ଆନ୍ଦୋଳନ ଓ ଗଡ଼ଜାତ ଆନ୍ଦୋଳନ ପରିଚାଳନା କରି ସେ ହେଇଥାନ୍ତି କଂଗ୍ରେସର ଆଗୁଆବାହିନୀର ଦିଗ୍‌ଦ୍ରଷ୍ଟା । ପୁଣି ୧୯୪୦ରୁ ୧୯୪୫ ପର୍ଯ୍ୟନ୍ତ ବାହାରେ ତଥା ଜେଲ୍‌ଖାନାରେ ସେ ଥିଲେ ସବୁଠାରୁ ଆକର୍ଷଣୀୟ ବ୍ୟକ୍ତିତ୍ୱ; ଯଦିଓ ଘଟଣାପ୍ରବାହରେ ହରେକୃଷ୍ଣ ମହତାବ ପ୍ରଥମଥର ପାଇଁ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ ହୋଇ ସର୍ବଭାରତୀୟ ନେତାମାନଙ୍କ ଅଧିକ ସାନ୍ନିଧ୍ୟ ଲାଭ କରିଥାନ୍ତି । ଏସବୁ ବିଚାରରୁ ନବକୃଷ୍ଣ ଚୌଧୁରୀ ହିଁ ୧୯୪୬ ମସିହା ବେଳକୁ ହୋଇଯାଇଥିଲେ ଓଡ଼ିଶା କଂଗ୍ରେସର ପ୍ରଭାବଶାଳୀ ନେତା । ସେକଥା ବି ପରୋକ୍ଷରେ ପ୍ରମାଣିତ ହୋଇଯାଇଥିଲା ୧୯୪୬ ମସିହାର ପ୍ରାଦେଶିକ କଂଗ୍ରେସ ସଭାପତି ନିର୍ବାଚନରେ । ୧୯୩୭ ମସିହାର ଯଶସ୍ୱୀ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ସେଥର ପ୍ରାଦେଶିକ କମିଟି ସଭାପତି ନିର୍ବାଚନରେ ମାଳତୀ ଦେବୀଙ୍କଠାରୁ ହାରିଯାଇଥିଲେ । ମଜାର କଥା ଯେ, ଏହି ନିର୍ବାଚନରେ ହରେକୃଷ୍ଣ ମହତାବ ଥିଲେ ବିଶ୍ୱନାଥ ଦାସଙ୍କର ପ୍ରସ୍ତାବକ ଓ ନବକୃଷ୍ଣ ଚୌଧୁରୀ ତାଙ୍କର ସମର୍ଥକ । ନବକୃଷ୍ଣ ଚୌଧୁରୀ ଅବଶ୍ୟ ମାଳତୀ ଦେବୀଙ୍କୁ ପ୍ରତିଦ୍ୱନ୍ଦ୍ୱିତା ନକରିବା ପାଇଁ ପ୍ରବର୍ତ୍ତାଇ ନଥିଲେ । କାରଣ ମାଳତୀ ଦେବୀ ନଥିଲେ ମାଳତୀ ଚୌଧୁରୀ–ସେ ଥିଲେ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ–ନିଜ ସାଧନା ଓ ତ୍ୟାଗ ବଳରେ । ତେବେ, ମାଳତୀ ଦେବୀଙ୍କ ସମର୍ଥକମାନେ ସମସ୍ତେ ବି ନବକୃଷ୍ଣ ଚୌଧୁରୀଙ୍କ ସମର୍ଥକ । ଜେଲ୍‌ରେ ଥିବାବେଳେ ଯେଉଁ ବନ୍ଦୀମାନଙ୍କ ସହିତ ରହି ସେମାନଙ୍କୁ ନିଜର କରିଥିଲେ, ସେମାନଙ୍କ

ମଧ୍ୟରୁ ଅଧିକାଂଶ ବି ବିଧାନସଭାକୁ ଆସିବା ଭଳି ଅବସ୍ଥାରେ ଥିଲେ । ଏଣୁ ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହୋଇଥିଲେ ନିଶ୍ଚିତ ଭାବରେ ନବକୃଷ୍ଣ ଚୌଧୁରୀ ଜୟଯୁକ୍ତ ହୋଇଥାନ୍ତେ । ହରେକୃଷ୍ଣ ମହତାବ କଂଗ୍ରେସ ଦଳରେ ପ୍ରାଧାନ୍ୟ ପାଇବା ପଛରେ କଟକ ଗୋଷ୍ଠୀର ହିଁ ହାତ ଥିଲା । ସେହିମାନଙ୍କ ସାହାଯ୍ୟରେ ସେ ନୀଳକଣ୍ଠଙ୍କୁ ପ୍ରଧାନମନ୍ତ୍ରିତ୍ୱରୁ ବଞ୍ଚିତ କରିଥିଲେ ଓ କଂଗ୍ରେସରୁ ବି ହଟେଇପାରିଥିଲେ । ତେବେ, ମହତାବଙ୍କ ଭଳି ଜଣେଜଣେ ଛୋଟ ଜମିଦାରଙ୍କୁ ତାଙ୍କ ଭଳି, ସୋସାଲିଷ୍ଟ, ନେତା ବୋଲି କାହିଁକି ମାନିନେଲେ, ଏହି କଥା ବାଙ୍କବାବୁଙ୍କ ଭଳି ଲୋକମାନେ ବୁଝିପାରୁନଥିଲେ ।

ମନେହୁଏ, ୧୯୪୬ ମସିହାର ଭାରତୀୟ ଓ ଉତ୍କଳୀୟ ପରିସ୍ଥିତିକୁ ବିଚାରକୁ ନେଇ ସେ ଏ ନିଷ୍ପତ୍ତି ନେଇଥିଲେ । ସେତେବେଳକୁ ଓଡ଼ିଶାର ପ୍ରବୀଣ ନେତା ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ଓ ଯଦୁମଣି ମଙ୍ଗରାଜ ଆଦି କଂଗ୍ରେସରୁ ବାହାରିଯାଇଥାନ୍ତି ଏବଂ କମ୍ୟୁନିଷ୍ଟମାନେ ପୁରୀ ଓ ଗଞ୍ଜାମ ଜିଲ୍ଲାରେ ନିଜର ସ୍ଥିତି ମଜଭୁତ କରିସାରିଥାନ୍ତି । କଂଗ୍ରେସବାଲା ଜେଲ୍‌ରେ ଥିବା ଭିତରେ ମୁସଲିମ୍ ଲିଗ୍ 'ଲଡ଼୍‌କେ ଲେଙ୍ଗେ ପାକିସ୍ତାନ୍' ବୋଲି ଧ୍ୱନି ଦେଉଥାନ୍ତି ଏବଂ ସାମ୍ପ୍ରଦାୟିକ ଦଙ୍ଗା ବ୍ୟାପିଯିବ ବୋଲି ଜଳଜଳ ଦେଖାଯାଉଥାଏ । ତେଣେ ଇଂରେଜମାନେ ଚାଲିଯିବେ ଶୁଣି ୫୮୨ଟି ଦେଶୀୟ ରାଜ୍ୟର ରାଜା-ମହାରାଜାମାନେ ସ୍ୱାଧୀନ ହୋଇଯିବେ ବୋଲି ଘୋଷଣା କରୁଥାନ୍ତି । ଏଭଳି ପରିସ୍ଥିତିରେ କଂଗ୍ରେସ ମଧ୍ୟରେ ଆଉ ଗୋଟିଏ ବିଭାଜନର ଦ୍ୱନ୍ଦ୍ୱ ନକରି ହରେକୃଷ୍ଣ ମହତାବଙ୍କ ଭଳି ଟାଣୁଆ ନେତାଙ୍କୁ ଆଗୁଆ କରି (ରଥୀ କରି), ନିଜେ ସାରଥି ହୋଇ, ବହୁଆକାଂକ୍ଷିତ ସ୍ୱାଧୀନତାର ସଦୁପଯୋଗ କରିବା ବିଜ୍ଞତା ବୋଲି ନବବାବୁଙ୍କର ବିଚାର ଥିଲା ।



## ପଞ୍ଚମ ଅଧ୍ୟାୟ

# ମନ୍ତ୍ରୀ ନବକୃଷ୍ଣ

ଦୁଇନେତାଙ୍କର ମିଳିତ ରଣକୌଶଳ ଫଳରେ ୧୯୪୬ ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ବହୁ ସ୍ଥାନରୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲେ ଏବଂ ପରବର୍ତ୍ତୀ କାଳରେ ଓଡ଼ିଶାର ଗଡ଼ଜାତ ରାଜାମାନେ ହିଁ, ଭାରତବର୍ଷରେ, ପ୍ରଥମେ ଭାରତ ସରକାରଙ୍କଠାରେ କ୍ଷମତା ଅର୍ପଣ କରିଦେଇଥିଲେ । ୧୯୪୬ ନିର୍ବାଚନରେ ସମୁଦାୟ ୬୦ଟି ସ୍ଥାନରୁ କଂଗ୍ରେସ ୪୦ଟି ସ୍ଥାନ ପାଇଥିଲା ଓ ନବକୃଷ୍ଣ ଚୌଧୁରୀ ଉତ୍ତର କେନ୍ଦ୍ରାପଡ଼ାରୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲେ । ୧୯୪୬ ମସିହା ଜାନୁଆରି ୨୩ ତାରିଖ ଦିନ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଠନ କରାଗଲା । ଏହାର ଠିକ୍ ପୂର୍ବରୁ ନବବାବୁଙ୍କର ଜଣେ ଗୁଣଗ୍ରାହୀ ୨୦-୧-୧୯୪୬ ତାରିଖରେ ଯେଉଁ ଚିଠିଟିଏ ଦେଇଛନ୍ତି, ତାହା ଏଠାରେ ଉଲ୍ଲେଖନୀୟ ।

ତା ୨୦-୧-୪୬

ଜୟହିନ୍ଦ୍,

ମୋର ଭକ୍ତି ଓ ଶ୍ରଦ୍ଧାପୂର୍ଣ୍ଣ ''ଜୟହିନ୍ଦ୍'' ଅଭିନନ୍ଦନ ଗ୍ରହଣ କରିବେ । ପତ୍ର-ବାହକଙ୍କଠାରୁ ମୋର ବର୍ତ୍ତମାନ ଅବସ୍ଥା ମୌଖିକ ଶୁଣିବେ । ମୁଁ ଜାଣେ, ଆପଣ ପାର୍ଲିଆମେଣ୍ଟାରୀ କାର୍ଯ୍ୟରୁ ଅଲଗା ରହି ଦେଶ ପାଇଁ ନିର୍ମଳ ଓ କପଟରହିତ ସେବା କରିବାପାଇଁ ସର୍ବଦା ଉତ୍ସୁକ ଓ ପ୍ରସ୍ତୁତ । ବାସ୍ତବିକ ପ୍ରକୃତ ଦେଶସେବୀ ଆସେମ୍ଲି ବାହାରେ ରହି ଜନତାରୂପୀ ଜନାର୍ଦ୍ଦନଙ୍କ ପାଇଁ ଯେପରି ଶୁଦ୍ଧପୂତ ଏବଂ ନିର୍ମଳ ସେବା କରିପାରିବ, ଆସେମ୍ଲି ଭିତରେ ତାହା କରିପାରିବ ନାହିଁ । କିନ୍ତୁ ଆଜିର ଭାରତ ତଥା ଓଡ଼ିଶାର ଅବସ୍ଥା ଯାହା, ସେଥିରେ ଆପଣଙ୍କ ସଦୃଶ ନିର୍ମଳ ଓ ନିରଳସ ଦେଶସେବୀ ଆସେମ୍ଲିରେ ରହି ଏକ ମନ୍ତ୍ରିତ୍ୱ ଗ୍ରହଣ କରି ଗରିବ ଓ ପ୍ରପୀଡ଼ିତ ନିରୀହ ପ୍ରଜାଙ୍କ ପାଇଁ ପ୍ରତ୍ୟକ୍ଷ ଓ ତଟକା ସେବା କରିବା ଉଚିତ । ସେହି ହେତୁରୁ ଓଡ଼ିଶା ପି.ସି.ସି.ର ଅନୁରୋଧକ୍ରମେ ଆପଣ ଆସେମ୍ଲିରେ ପ୍ରବେଶ କରିବେ, ଏହା ମୋର ଆଶା ଓ ବିଶେଷ ଅନୁରୋଧ ।

ଆପଣ ଆସେମ୍ଲିରେ ଭର୍ତ୍ତି ହେଲେ ସୁଦ୍ଧା ଏବଂ ଏପରିକି ଗୁରୁଦାୟିତ୍ୱପୂର୍ଣ୍ଣ ଏକ ମନ୍ତ୍ରିତ୍ୱ-ଗ୍ରହଣ କଲେ ସୁଦ୍ଧା (ମୋର ଅନୁରୋଧ ଏବଂ ଆଶା ଆପଣଙ୍କ ଯୋଗ୍ୟତା ଓ ପ୍ରମାଣିତ

ଦେଶସେବା ଦୃଷ୍ଟିରୁ ଦେଶ ନିଶ୍ଚେ ଏକ ମନ୍ତ୍ରିତ୍ୱ ଅର୍ପଣ କରିବ) ଗଡ଼ଜାତ କଥା କେବେ ଭୁଲିଯିବେ ନାହିଁ । ଆପଣ ତ ଭୁଲିବେ ନାହିଁ; କିନ୍ତୁ ଭୁଲିବେ ନାହିଁ ବୋଲି ଜଣାଇ ଦେବାଟା ମୋ ପକ୍ଷରେ ଯଦି ଧୃଷ୍ଟତାର ପରିଚାୟକ, ତଥାପି ଅତ୍ୟନ୍ତ ଦେଶପ୍ରୀତିବଶତଃ ଓ ଆପଣଙ୍କର ଘରେ ମୋର ଜୋରଦାର ଆପତ୍ତି କରିବାରେ ପୂରା ହକ୍ ଓ ଅଧିକାର ଅଛି ଜାଣି, ପୁଣି ଚେତାଇଦେଉଛି । ଆପଣ ମଧ୍ୟ ଶ୍ରୀମତୀ ମାଳତୀ ଚୌଧୁରୀ ଓ ବିଶେଷତଃ ଶ୍ରୀଯୁକ୍ତ ସାରଙ୍ଗବାବୁଙ୍କୁ ଗଡ଼ଜାତ ବିଷୟରେ ଇଞ୍ଜେକ୍ସନ୍ ସମୟସମୟରେ ଦେଉଥିବେ ।

ଭଗବାନଙ୍କ କୃପାରୁ ଏବଂ ଆପଣମାନଙ୍କ ଆଶୀର୍ବାଦରୁ ନିରାପଦ ଥିଲେ କଂଗ୍ରେସ ମନ୍ତ୍ରିତ୍ୱରେ ମୁଁ ଆପଣଙ୍କ ବନ୍ଦୀ ହେବି, ଏହା ମୋର ମାନସ ।

ଆପଣଙ୍କ ନିର୍ମଳ ଓ ନିଷ୍କପଟ ଦେଶସେବା ଓ ଆଦର୍ଶ ସ୍ମରଣ କରି ମୁଁ ଆଜି ବିଦାୟ ନେଲି । ଇତି ।

ଜୟହିନ୍ଦ୍

ନବକୃଷ୍ଣ ଚୌଧୁରୀ ତାଙ୍କର ପ୍ରିୟ ରାଜସ୍ୱ ବିଭାଗ ଛଡ଼ା ଯୋଗାଣ ପରିବହନ ବିଭାଗ ନେଇଥିଲେ ଏବଂ କିଛିଦିନ ପରେ ତାଙ୍କୁ ଜଙ୍ଗଲ ବିଭାଗ ଦିଆଯାଇଥିଲା । ଯୁଦ୍ଧ ସମୟରେ ଲୁଗା, ଚିନି, କିରାସିନି, କାଗଜ ଆଦି ବିଭିନ୍ନ ଜିନିଷର ନିଅଣ୍ଟିଆ ଅବସ୍ଥା ଯୋଗୁଁ ପ୍ରଥମଥର ହୋଇ ଆମ ଦେଶରେ କଣ୍ଟ୍ରୋଲ ବ୍ୟବସ୍ଥା ଚାଲୁ କରାଯାଇଥିଲା । ସେହି ସମୟରୁ କିଳାପୋତା (ଏକ ନୂଆପ୍ରକାରର ଲାଞ୍ଚ) କାରବାର ଆରମ୍ଭ ହୋଇଯାଇଥିଲା । ପୂର୍ବରୁ ଲାଞ୍ଚଟା ପ୍ରଚଳନସିଦ୍ଧ ଥିଲା । ଜମିଦାର ଓ ରାଜାମାନେ ଏବଂ ବ୍ରିଟିଶ ସରକାରଙ୍କ କର୍ମଚାରୀମାନେ ଲାଞ୍ଚ ନେଉଥିଲେ ଖଜଣାଆଦାୟ ବେଳେ, ଖାତାଫାଡ଼୍ ସମୟରେ । କେହି କିଛି ଅପରାଧ କଲେ ପୋଲିସ ଆଦିଙ୍କୁ ଲାଞ୍ଚ ଦେବା କଥା ଥିଲା । ଏହାଛଡ଼ା ରାଜା ଜମିଦାରମାନେ ବେଠି, ଭେଟି ଆଦି ଜରିଆରେ ଲୋକଙ୍କୁ ଲୁଣ୍ଠନ କରୁଥିଲେ । କିନ୍ତୁ ଲୁଗା, ଚିନି, କିରାସିନି, କାଗଜ ଆଦି ଖାଉଟିଜିନିଷ ପାଇଁ ଲୋକଙ୍କୁ ବାସ୍ତବ ମୂଲ୍ୟଠାରୁ ଅତିରିକ୍ତ ଅର୍ଥ ଦେବାକୁ ପଡୁନଥିଲା । ଯୁଦ୍ଧ ପର ବେଳକୁ ଏହିସବୁ ଜିନିଷ ତଥା ଧାନଚାଉଳର ଯୋଗାଣରେ ନାନା ସମସ୍ୟା ଦେଖାଦେଇଥିଲା । ଏଣୁ ନବବାବୁଙ୍କ ଭଳି ଜଣେ ଦକ୍ଷ ମନ୍ତ୍ରୀ ଯୋଗାଣ ଦାୟିତ୍ୱ ନେଇଥିଲେ । ନବବାବୁଙ୍କର ସେହି ସମୟର ଫାଇଲ୍‌ରୁ ରାଜେନ୍ଦ୍ର ପ୍ରସାଦ ଓ ବିହାରର ପ୍ରଧାନମନ୍ତ୍ରୀ ଶ୍ରୀକୃଷ୍ଣ ସିହ୍ନାଙ୍କଠାରୁ ଏକାଦିନେ ଦୁଇଟି ଟେଲିଗ୍ରାମ ଆସିଥିବାର ଜଣାପଡ଼େ । ସେମାନେ ଅତି ଦୟନୀୟ ଭାବରେ, ଖାଦ୍ୟସଙ୍କଟରେ ପଡ଼ିଥିବା ବିହାର ଲାଗି, ଅନ୍ତତଃ ୧୦୦୦ ଟନ୍ ଚାଉଳ ପଠାଇବା ଲାଗି ଅନୁରୋଧ କରିଛନ୍ତି । ଓଡ଼ିଶାର ଅଭାବ ସତ୍ତ୍ୱେ ପ୍ରାୟ ସେତକ ଚାଉଳ ପଠାଯାଇଛି । ସେ ସମୟ ଲାଗି ଯୋଗାଣ ବିଭାଗଟି କିଭଳି

ଗୁରୁତ୍ୱପୂର୍ଣ୍ଣ ଥିଲା, ତାହା ସମ୍ବଲପୁରର ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ରଙ୍କ ୨୯-୮-୧୯୪୬ ତାରିଖ ଚିଠିରୁ ଓ ପାରଳାଖେମୁଣ୍ଡିର ଜଗନ୍ନାଥ ମିଶ୍ରଙ୍କ ୨୨-୧୦-୧୯୪୬ ତାରିଖ ଚିଠି ଏବଂ ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟିର ୧୨-୧୦-୧୯୪୬ ତାରିଖ ଚିଠିରୁ ଜଣାଯାଏ ।

ଦଶବର୍ଷ ଧରି କଂଗ୍ରେସ ଦଳ ଜମିଦାରି ଉଠାଇବା ଓ ଭୂସଂସ୍କାର କରି ଚାଷୀଙ୍କ ସମସ୍ୟାର ସମାଧାନ କରିବା କଥା କହିଥିଲା । କଂଗ୍ରେସ ସରକାର ପ୍ରତିଷ୍ଠିତ ହେବାର ୭ ମାସ ପୂରିଗଲାଣି ; କାହିଁ କିଛି ତ ହେଉନାହିଁ, ଏଣୁ କର୍ମୀ ତଥା ନେତୃସ୍ଥାନୀୟ କର୍ମୀମାନଙ୍କ ମଧ୍ୟରେ ଅସ୍ଥିରତା । ଜମିବାଡ଼ିରେ ବାରବର୍ଷରୁ ଅଧିକ ସମୟ ରହିଆସିଥିବା ପ୍ରଜାମାନଙ୍କୁ ଉଚ୍ଛେଦ କରାଯାଉଛି ବୋଲି ଆଜିର ସହଦେବ ଦାସଙ୍କଠାରୁ ଚିଠି (୧୫-୮-୧୯୪୬ ତାରିଖ) ଆସିଛି । ସେହିଭଳି ଗଞ୍ଜାମର ଚାଷୀ ପୂର୍ବ ଅପେକ୍ଷା କମ୍ ଭାଗ ଦେବା କଥା ଆଇନ ହୋଇଛି ବୋଲି ଶୁଣୁଥାନ୍ତି; କିନ୍ତୁ ସେହି ଆଇନ ଚାଷୀଙ୍କ ପାଖ ପର୍ଯ୍ୟନ୍ତ ଯାଇନଥାଏ । ଏଣୁ ଗଞ୍ଜାମ କଂଗ୍ରେସ କମିଟି ତରଫରୁ ତାଗଦା ଆସିଛି (୨୧-୧୦-୧୯୪୬ ତାରିଖ ଚିଠି) ସ୍ପଷ୍ଟୀକରଣ ଦେବା ଲାଗି । ଏହି ବିଷୟ ନେଇ ନବବାବୁ ଯେତିକି ଉତ୍ସାହୀ, ପୂର୍ବତନ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ତତୋଽଧିକ ତତ୍ପର । ବର୍ଷାକାଳୀନ ଅଧିବେଶନରେ ସେ ଆଇନ୍‌ଟି କିଭଳି ସୁରୁଖୁରୁରେ ପାସ୍ ହୋଇଯିବ, ସେଥିଲାଗି ଯାହାକିଛି ତୁରନ୍ତ କରିବା କଥା, ସେକଥା ବିଶ୍ୱନାଥବାବୁ ଏକ ଚିଠିରେ (୮-୪-୧୯୪୬ ତାରିଖ) ହେଜେଇଦେଇଛନ୍ତି । ଏସବୁର କୈଫିୟତ ଦେବା ଲୋକଟି ଥିଲେ ନବକୃଷ୍ଣ ଚୌଧୁରୀ ।

ନବବାବୁଙ୍କର ଏହି ସମୟର ଏକ ପୂର୍ବାପର ଅସଂଲଗ୍ନ ଚିଠା ଲେଖକର ଦୃଷ୍ଟିରେ ପଡ଼ିଛି । ତାହାର ଶିରୋନାମା ଥିଲା–

'ଆଗ କାମ ଆଗେ' :

ପରାଧୀନତାର ଅପମାନ ଯେଉଁମାନଙ୍କ ପକ୍ଷରେ ଅସହ୍ୟ ହୋଇପଡ଼ିଥିଲା, ସ୍ୱାଧୀନତା ପାଇଁ ଲଢ଼ିବା ସେମାନଙ୍କର ସବୁଠାରୁ ଜରୁରୀ କାମ ଥିଲା । ଯେଉଁମାନେ ଭାବୁଥାନ୍ତି ଯେ ମନୁଷ୍ୟ ସମାଜକୁ ଦୁଃଖଦାରିଦ୍ର୍ୟ ଓ ଯୁଦ୍ଧ ବିପର୍ଯ୍ୟୟରୁ ରକ୍ଷା କରିବା ପାଇଁ ଓ ମାନବ ସଭ୍ୟତାର ଉତ୍ତରୋତ୍ତର ବିକାଶ ସମ୍ଭବପର କରିବାପାଇଁ ଦୁନିଆର ମାର୍କ୍ସକଳ୍ପିତ ବା ଗାନ୍ଧିକଳ୍ପିତ ସାମ୍ୟବାଦ ପ୍ରତିଷ୍ଠା କରିବାକୁ ହେବ, ସେମାନେ ପରାଧୀନତାକୁ ତାଙ୍କ ରାସ୍ତାରେ ସବୁଠାରୁ ବଡ଼ ବାଧା ବୋଲି ଭାବୁଥିଲେ ଓ ତାଙ୍କର ମଧ୍ୟ ସ୍ୱାଧୀନତା ପାଇଁ ଲଢ଼ିବା ସବୁଠାରୁ ଜରୁରୀ କାମ ଥିଲା । ବର୍ତ୍ତମାନ ଯେତେବେଳେ ସେ କାମଟି ପୂରା ହେଲା ବା ହେବା ଉପରେ ସେତେବେଳେ ସମସ୍ତଙ୍କ ଆଗରେ ପ୍ରଶ୍ନ ଉଠୁଛି–ଏହା ପରେ କେଉଁ କାମ ଆଗ ?

ଆମେ ଯଦି ଆମ ସ୍ୱାଧୀନତା ଜାତୀୟ ଏକତା ବଳରେ ଓ ଗାନ୍ଧିଜୀଙ୍କ ପ୍ରଦର୍ଶିତ ସବଳର ଅହିଂସା ବଳରେ ହାସଲ କରିଥାନ୍ତୁ, ତାହାହେଲେ ଏ ପ୍ରଶ୍ନର ଉତ୍ତର ସହଜ ହୋଇଥାନ୍ତା–ରାଜନୀତିକ ସ୍ୱାଧୀନତା ହାସଲ କରିବାରେ ଜନସାଧାରଣଙ୍କ–ଦେଶର ଶ୍ରମିକ ଓ କୃଷକଙ୍କ ଅର୍ଥନୀତି ଓ ସାମାଜିକ ସ୍ୱାଧୀନତା ହାସଲ କରିବା କାମ ଆଗ କାମ ହୋଇଥାନ୍ତା । କାହିଁକି ନା ଆମେ ଯେଉଁ ସ୍ୱରାଜ୍ୟ ଚାହୁଁ, ସେ ସ୍ୱରାଜ୍ୟରେ ଧନୀ ଶ୍ରେଣୀର ସମାଜକୁ ଶୋଷଣ କରିବାର ଅବକାଶ ରହିବ ନାହିଁ । ଇଂରେଜ ଶାସନ ଲୋପ ପାଇବା ପରେ ସେହିପରି ସ୍ୱରାଜ୍ୟ ଗଢ଼ିବାରେ ଆମର ସମସ୍ତଙ୍କର ଲାଗିବାର କଥା । ଦେଶର ଯେଉଁ ନେତାମାନେ ଶାସନଭାର ନେଇଛନ୍ତି, ସେମାନେ ଆଇନ ଓ ସରକାରୀ ବ୍ୟବସ୍ଥା ଦ୍ୱାରା ସବୁପ୍ରକାର ଶୋଷଣ ଦୂର କରନ୍ତେ ଓ ଦେଶର ଜନସାଧାରଣ ଏହି ପୁନର୍ଗଠନ କାର୍ଯ୍ୟରେ ତାଙ୍କୁ ପୂର୍ଣ୍ଣ ସହଯୋଗ କରନ୍ତେ । ଯେଉଁମାନେ ଶାସନଭାର ନେଇଛନ୍ତି, ସେମାନେ ସେ କାର୍ଯ୍ୟରେ ହେଳା କଲେ, ଜନସାଧାରଣଙ୍କର କାମ ହୁଅନ୍ତା ପ୍ରଜାତନ୍ତ୍ର ବିଧାନ ଅନୁସାରେ ସେମାନଙ୍କୁ କାଢ଼ି ନୂଆ ସରକାର ଗଢ଼ିବା ।

ବାସ୍ତବରେ କିନ୍ତୁ ହେବ କି ?

ନବକୃଷ୍ଣ

ଏସବୁ ଜଞ୍ଜାଳ ମଧ୍ୟରେ ସେ ଭୁଲିଯାଇଛନ୍ତି ଯେ ପ୍ରାଦେଶିକ କଂଗ୍ରେସ କମିଟିକୁ ତାଙ୍କର ମାସିକ ଦେୟ ଟ୫୦ ଦେବାକୁ ହେବ । ଏଣୁ ଦଳର ସଭାନେତ୍ରୀ ମାଳତୀ ଚୌଧୁରୀଙ୍କଠାରୁ ତାଗଦା ଆସିଛି ।

ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି

ସ୍ୱରାଜ୍ୟାଶ୍ରମ, ପୋ :ଅ : ଚାନ୍ଦିନୀଚୌକ, କଟକ

ନଂ.............. ତା ୨୨–୬–୪୬

ମହାଶୟ,

ଉତ୍କଳ ପ୍ରାଦେଶିକ କଂଗ୍ରେସ କାର୍ଯ୍ୟକାରୀ କମିଟିର ପ୍ରସ୍ତାବ ଅନୁଯାୟୀ ଆପଣ ଆପଣଙ୍କର ଦରମାରୁ ଟ୫୦ଙ୍କା ପ୍ରାଦେଶିକ କମିଟିକୁ ଦେବାର କଥା, ଅନୁଗ୍ରହ କରି ଚଳିତ ମାସର ଉକ୍ତ ଟଙ୍କା ଏହି ଲୋକ ମାରଫତରେ ପଠେଇ ବାଧିତ କରିବା ହେବେ ।

। ଇତି ।

ନିବେଦିକା

ମାଳତୀ ଚୌଧୁରୀ

୧୯୪୬ ମସିହା ଜୁଲାଇ ୧୭ ତାରିଖ ଦିନ ବିଧାନ ସଭାର ପ୍ରଥମ ଅଧିବେଶନ । କେଉଁ ଭାଷାରେ ବିଧାନସଭାର କାର୍ଯ୍ୟ ଚାଲିବ, ତା'ରି ଉପରେ ପ୍ରଶ୍ନ ଉଠିଛି । ବାଚସ୍ପତି ଲାଲମୋହନ ପଟ୍ଟନାୟକ ବିଧାନସଭାର ପ୍ରଚଳିତ ବିଧାନ କଥା ଉଲ୍ଲେଖ କଲେ । କିନ୍ତୁ ନବକୃଷ୍ଣ ଚୌଧୁରୀ ସେଦିନ ଦର୍ଶାଇଥିଲେ 'ବାଚସ୍ପତି ପ୍ରାୟ ୧୯୩୫ର ଭାରତ ଶାସନ ବିଧାନକୁ ଆଖିରେ ରଖି କହୁଛନ୍ତି । କିନ୍ତୁ ୧୯୪୬ ମସିହାର ନିର୍ବାଚନରେ ଭାରତବର୍ଷର ସ୍ୱାଧୀନତା ଜଳଜଳ ଦେଖାଯାଉଥିବା ବେଳେ ସେହି ପୁରୁଣା ବିଧାନ କେତେଦୂର ଅନୁସରଣୀୟ ? ଭାରତ ଏକ ସାର୍ବଭୌମ ରାଷ୍ଟ୍ର ହେବାକୁ ଯାଉଛି । ସେ ତା'ର ସମ୍ବିଧାନ କରିବ । ଏଣୁ ପୁରୁଣା ବିଧାନକୁ ପରିତ୍ୟାଗ କରି ଲୋକପ୍ରତିନିଧିମାନଙ୍କର ମତ ଅନୁସାରେ ବିଧାନସଭାର କାର୍ଯ୍ୟ ଚାଲୁ ।' ବିଧାନସଭାର କାର୍ଯ୍ୟ ପରିଚାଳନା ସମ୍ପର୍କୀୟ ବିଧାନ ପରେ ହେଲା ସତ ; କିନ୍ତୁ ସଦସ୍ୟମାନେ ଓଡ଼ିଆରେ କହୁଥିଲେ । ଏଥର ମନ୍ତ୍ରୀ ଭାବରେ ତାଙ୍କର ବକ୍ତବ୍ୟ ଓଡ଼ିଆରେ ଚାଲିଲା । ଅବଶ୍ୟ ହରେକୃଷ୍ଣ ମହତାବ ଆଦି ମନ୍ତ୍ରୀ ଇଂରାଜୀ ଛାଡ଼ି ନ ଥିଲେ ଓ କେତେକ ରାଜାଜମିଦାର ଏବଂ ସେମାନଙ୍କ ସହଯୋଗୀ ଇଂରାଜୀରେ କହୁଥିଲେ ।

ଏହି ଅଧିବେଶନରେ କୋର୍ଟ ଅଫ୍ ୱାର୍ଡ୍ସ ସଂଶୋଧନ ଆଇନ (ମାନ୍ଦ୍ରାଜ), ମାନ୍ଦ୍ରାଜ ଇଷ୍ଟେଟ୍ ଭୂମି ସଂଶୋଧନ ଆଇନ, ମାନ୍ଦ୍ରାଜ ଜଳକର ସଂଶୋଧନ ଆଇନ, ଓଡ଼ିଶା ପ୍ରଜାସ୍ୱତ୍ୱ ସଂଶୋଧନ ଆଇନ ବିଧାନସଭାରେ ପେଶ୍ ହୋଇଛି ଏବଂ ଏସବୁ ଆଇନ ଚାଷୀଙ୍କ ସ୍ୱାର୍ଥ ରକ୍ଷା ଲାଗି ଉଦ୍ଦିଷ୍ଟ । ପରବର୍ତ୍ତୀ ବର୍ଷମାନଙ୍କରେ ସେସବୁ ଆଇନ ପାସ ହୋଇଛି । ହେଲେ, ଜମିଦାରି ଉଠିବା କଥା କାହିଁକି ଶୁଣାଯାଉନାହିଁ ? ବ୍ୟସ୍ତ ହୋଇପଡ଼ିଥିବା କଟକ ଜିଲ୍ଲା କଂଗ୍ରେସ କମିଟିର ସଭାପତି ପ୍ରାଣକୃଷ୍ଣ ପଢ଼ିହାରୀଙ୍କଠାରୁ ତାଗଦା ଆସିଛି । ସେତେବେଳ ପର୍ଯ୍ୟନ୍ତ ସ୍ୱାଧୀନତା ଘୋଷଣା ହୋଇନଥାଏ । ସମ୍ବିଧାନ ପ୍ରଣୟନ ଖାଲି ମାନସିକ ସ୍ତରରେ ଥାଏ । ଏଣୁ ଜମିଦାରି ଉଠିଲେ କ୍ଷତିପୂରଣ ଦେବାକୁ ହେବ କି ନାହିଁ, ଯଦି ଦେବାକୁ ହୁଏ ତ କେତେ ଏବଂ ଜମିଦାରମାନଙ୍କ ହାତରେ ନିଜର ଜମି ତଥା କୋଠାବାଡ଼ି କେତେ ରହିବ ଇତ୍ୟାଦି ଅନେକ କଥା ସ୍ଥିର ହେବାକୁ ଥାଏ । ଏଣୁ ଯୁକ୍ତ ପ୍ରଦେଶରେ ଓ ଅନ୍ୟାନ୍ୟ ପ୍ରଦେଶରେ ଯଦିଓ ତରବର ହୋଇ ଏ ଦିଗରେ ପଦକ୍ଷେପ ନିଆଯାଇଥିଲା, ସେସବୁ ବିଚାରାଳୟରେ କାଟ୍ ଖାଇଯାଇଥିଲା । ଭୂସଂସ୍କାର ଓ କୃଷିସଂସ୍କାର ଲାଗି ଅବସ୍ଥା ସେତେବେଳକୁ ପରିପକ୍ୱ ହୋଇନଥାଏ । କିନ୍ତୁ ସାଧାରଣ କର୍ମୀ, ଏପରିକି ନେତୃସ୍ଥାନୀୟ କର୍ମୀମାନେ, ସେ ଜଟିଳତାର ବାଧା ବୁଝିପାରୁନଥାନ୍ତି । ତଥାପି ଜମିଜମା ସମ୍ପର୍କରେ ଏକ ବିଶଦ ରିପୋର୍ଟ ଦେବା ଲାଗି ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ୧୯୪୬ ନଭେମ୍ବର ୧୫ ତାରିଖ ଦିନ ଏକ ସରକାରୀ କମିଟି ଗଢ଼ାଗଲା ।

କଂଗ୍ରେସ ଦଳର ହରେକୃଷ୍ଣ ମହତାବ, ନିତ୍ୟାନନ୍ଦ କାନୁନ୍‌ଗୋ ଓ ଜଗନ୍ନାଥ ଦାସ (କଣ୍ଠାପାରି) ଆଦି ଟିକି ଜମିଦାରମାନେ ମୁହଁରେ ଜମିଦାରି ଉଚ୍ଛେଦ କଥା କହୁଥିଲେହେଁ ଚାହୁଁଥାନ୍ତି, ସେ ବ୍ୟବସ୍ଥା ଯେତେ କାଳ ଅଧିକ ଚାଲିପାରିବ, ଚାଲୁ । ଏକଥା ଏମାନଙ୍କୁ ଘନିଷ୍ଠ ଭାବରେ ଜାଣିଥିବା ଚିନ୍ତାମଣି ମିଶ୍ର ତାଙ୍କ ଆତ୍ମଜୀବନୀ (ଅର୍ଦ୍ଧଶତାବ୍ଦୀର ଅନୁଭୂତି)ର ପୃଷ୍ଠା ୪୫ ଧାଡ଼ି ୨୮ରେ ଉଲ୍ଲେଖ କରିଛନ୍ତି । ଏହି ପ୍ରସଙ୍ଗରେ ପ୍ରାଣକୃଷ୍ଣ ପଢ଼ିହାରୀଙ୍କ ପତ୍ର ଉଲ୍ଲେଖନୀୟ ।

କଟକ ଜିଲ୍ଲା କଂଗ୍ରେସ କମିଟି
ସ୍ୱରାଜ୍ୟାଶ୍ରମ, ପୋ :ଅ : ଚାନ୍ଦିନୀଚୌକ, କଟକ

ନମ୍ବର ୫୧ ତା ୧୧-୮-୧୯୪୬

ଶ୍ରୀଯୁକ୍ତ ଓଡ଼ିଶା ସରକାରଙ୍କ ରାଜସ୍ୱ ବିଭାଗ ମନ୍ତ୍ରୀ
ମହୋଦୟ......................ସମୀପେଷୁ

ମହାଶୟ,

ଆପଣ ଗତକାଲିର ସମ୍ବାଦପତ୍ରମାନଙ୍କରେ ଦେଖିଥିବେ, ଯୁକ୍ତ ପ୍ରଦେଶର ବ୍ୟବସ୍ଥାପକ ସଭାରେ ଜମିଦାରି ପ୍ରଥା ଉଠାଇଦେବାର ବ୍ୟବସ୍ଥା ଗୃହୀତ ହୋଇଅଛି । ବଙ୍ଗ ଏବଂ ବିହାରରେ ମଧ୍ୟ ସେ ବିଷୟରେ ଆଲୋଚନା ଚାଲିଛି । କଂଗ୍ରେସ ନିର୍ବାଚନ ପ୍ରଚାର ପତ୍ରରେ କଂଗ୍ରେସ ମନ୍ତ୍ରିତ୍ୱ ଗ୍ରହଣ କଲେ, ପ୍ରଥମେ ଜମିଦାରି ପ୍ରଥା ଉଠାଇ ଦେବ ବୋଲି ଲୋକଙ୍କୁ ଜଣାଇଦିଆଯାଇଥିଲା । ଚାରିଆଡୁ ପଚରାଯାଉଛି, ଓଡ଼ିଶା ବ୍ୟବସ୍ଥାପକ ସଭା ସେ ଦିଗରେ କ'ଣ କରୁଛି ? ଆପଣ ଅନୁଗ୍ରହ କରି ଜଣାଇଦେଲେ ବିଶେଷ ବାଧିତ ହେବି– ଓଡ଼ିଶା ବ୍ୟବସ୍ଥାପକ ସଭା ଏପର୍ଯ୍ୟନ୍ତ ସେ ବିଷୟରେ କ'ଣ କରିଅଛି । ଆସନ୍ତା ବଜେଟ ଅଧିବେଶନରେ ଜମିଦାରି ପ୍ରଥା ଉଠାଇଦେବାର ପ୍ରସ୍ତାବ ଆଗତ କରାଯିବ କି ନାହିଁ ? ଏ ବିଷୟରେ ଆପଣ ଟିକିଏ ତତ୍ପର ହୁଅନ୍ତୁ । ଏହାହିଁ ବିଶେଷ ଅନୁରୋଧ ।

ଆପଣଙ୍କର
ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପଢ଼ିହାରୀ

୧୯୪୬ ମସିହା ସେପ୍ଟେମ୍ବର ୨୧ ତାରିଖ ଦିନ ବଜେଟ୍ ଆଲୋଚନାରେ ଅଂଶ ଗ୍ରହଣ କରି ରାଜସ୍ୱ ବିଭାଗର ଖର୍ଚ୍ଚ ଦାବି ଉପରେ ସେ ଯେଉଁ ଭାଷଣ ଦେଇଥିଲେ, ତାହା ଥିଲା ଏକ ଛୋଟକାଟର ଥେସିସ୍ । 'ସମାଜ' ତାହାକୁ ବିଶଦ ଭାବରେ ପ୍ରକାଶ କରିଥିଲା । ତହିଁରେ ମୁଗ୍ଧ ହୋଇ ସାଲେପୁରଠାରୁ ବିଶିଷ୍ଟ କଂଗ୍ରେସ ନେତା ଚନ୍ଦ୍ରଶେଖର ମିଶ୍ର ଯେଉଁ ପତ୍ର ଲେଖିଥିଲେ, ସେଇଟି ବିଶେଷ ଉଲ୍ଲେଖନୀୟ ।

Ramakrishna Sevashram. Salipur
25-9-1946

ମାନ୍ୟବର ଚୌଧୁରୀ ମହୋଦୟ,

ଆଜି ଆପଣଙ୍କର ପାଣ୍ଡିତ୍ୟପୂର୍ଣ୍ଣ ଗବେଷଣାମୂଳକ ଦୀର୍ଘ ଅଭିଭାଷଣ 'ସମାଜ'ରୁ ପାଠ କରି ଏକାନ୍ତ ଆନନ୍ଦିତ ହୃଦୟରେ ଅଭିନନ୍ଦନ ଜଣାଉଅଛି । ଆଜି ଆମ ଦେଶର ଭୂ-ରାଜସ୍ୱ ନୀତି କଥା ଭଲ ରୂପେ ବୁଝିପାରିଲି । ଆପଣ ଗଭୀର ମନୋନିବେଶ ସହକାରେ ଏପରି ବିଶ୍ଳେଷଣ କରି ଅଧ୍ୟୟନ କରିଛନ୍ତି ଯେ, ତାହା ପଢ଼ିବା ମାତ୍ରେ ମନରେ ଏକ ଗଭୀର ରେଖାପାତ କରୁଅଛି । ଆପଣଙ୍କର ଅଧ୍ୟବସାୟ ବାସ୍ତବରେ ଆମ୍ଭମାନଙ୍କର ଅନୁକରଣୀୟ । ଓଡ଼ିଶାର ବ୍ୟବସ୍ଥାପକ ସଭାର ଇତିହାସରେ ଏ ଗୋଟିଏ ଅମୂଲ୍ୟ ଅଭିଭାଷଣ । ଏହାର ଉପାଦେୟତା ନେଇ ମୋ' ପରି ଅକିଞ୍ଚନ ଲୋକର ଆଉ କିଛି କହିବା ଧୃଷ୍ଟତା ମାତ୍ର । ହୃଦୟର ଆବେଗରେ ଆନନ୍ଦବିହ୍ୱଳ ହୋଇ ଏ ଅଭିନନ୍ଦନ ପତ୍ରଟି ପଠାଇଲି । ସାଦରେ ଗ୍ରହଣ କରି ମୋତେ ଧନ୍ୟ କରିବେ ।

ଆପଣଙ୍କୁ ପ୍ରଶଂସା କଲେ ଆପଣ ପ୍ରଶଂସିତ ହେବେ ନାହିଁ, ହେବ ଏ ଦୀନ । ଆପଣଙ୍କୁ ଧନ୍ୟବାଦ ଦେବା ଦ୍ୱାରା ଆପଣ ଧନ୍ୟ ହେବେ ନାହିଁ, ହେବ ଏ ଅକିଞ୍ଚନ । ଏଣୁ ଏ ଦୀନ ଅକିଞ୍ଚନର ଧନ୍ୟବାଦଟି ଗ୍ରହଣ କରି ତା'କୁ ଧନ୍ୟ କରନ୍ତୁ ।

ଭଗବାନ ଆପଣଙ୍କୁ ଦୀର୍ଘାୟୁ କରନ୍ତୁ, ଆବାଲ୍ୟ ତ୍ୟାଗପୂତପ୍ରାଣ ଦେଶମାତାର ପଦରେ ଉତ୍ସର୍ଗିତ ହେଉ । ଦେଶ ଧନ୍ୟ ହେଉ । ଜାତିର ପ୍ରାଣ ପୂର୍ଣ୍ଣ ହେଉ । ହୃଦୟ ଶାନ୍ତ ହେଉ ।

ଯେଉଁ ଦେଶରେ ଆପଣଙ୍କ ପରି ନିଷ୍ଠାପର ଦେଶପ୍ରେମୀ ଜନ୍ମ ହୋଇଅଛନ୍ତି, ସେ ଦେଶର ଭବିଷ୍ୟତ ଅଛି–ଏହି ଆଶାରେ ଏ ଦୀନ ନୟନରୁ ଆନନ୍ଦାଶ୍ରୁ ଅର୍ପଣ କରି ବିଦାୟ ନେଉଛି ।

–ନମସ୍ତେ–
ଗୁଣମୁଗ୍ଧ ବନ୍ଧୁ
ଶ୍ରୀ ଚନ୍ଦ୍ରଶେଖର ମିଶ୍ର

ନବକୃଷ୍ଣ ଚୌଧୁରୀ ଖାଲି ଚାଷୀର ନେତା ନୁହନ୍ତି, ସେ ଛାତ୍ର, ଯୁବକ ଆଦି ସମସ୍ତଙ୍କର ନେତା । କମ୍ୟୁନିଷ୍ଟ ଦଳର ତ ବହୁ ଆଗରୁ ଛାତ୍ରସଂଘ ଥିଲା ; କିନ୍ତୁ କଂଗ୍ରେସ ଦଳର ବିଧିବଦ୍ଧ ଛାତ୍ରସଙ୍ଗଠନ ନଥିଲା । ଯେଉଁ ଯୁବକମାନେ ଅଗଷ୍ଟ ଆନ୍ଦୋଳନରେ ଯୋଗ ଦେଇଥିଲେ, ସେହିମାନଙ୍କୁ ନେଇ ନୂତନ ଉତ୍ସାହରେ ଛାତ୍ର କଂଗ୍ରେସ ଗଢ଼ାଗଲା । ତା'ର ପ୍ରଥମ ଅଧିବେଶନ ୧୯୪୭ ମସିହା ମାର୍ଚ୍ଚ ୨ ତାରିଖରେ ଅନୁଷ୍ଠିତ ହୋଇଛି ଓ ସେଥିରେ ନବକୃଷ୍ଣ ଚୌଧୁରୀ

ପୌରୋହିତ୍ୟ କରିଛନ୍ତି । ସେତେବେଳକୁ ଇଂରେଜ ସରକାର ଘୋଷଣା କରିସାରିଥା'ନ୍ତି ଯେ ୧୯୪୮ ମସିହା ଜୁନ୍ ମଧ୍ୟରେ ଭାରତବର୍ଷକୁ ସ୍ୱାଧୀନତା ଦିଆଯିବ । ସେଇଆକୁ ଆଖିରେ ରଖି ଦେଶୀୟ ରାଜ୍ୟର ରାଜା ଓ ନବାବମାନେ ନିଜକୁ ସାର୍ବଭୌମ ଶକ୍ତି ବୋଲି ଘୋଷଣା କରିବା କଥା ଶୁଣାଯାଉଥାଏ । ଇଂରେଜମାନେ କାଳେ ସେମାନଙ୍କୁ ସାର୍ବଭୌମ କ୍ଷମତା ଦେଇଦେବେ, କେତେକ ପ୍ରତିନିଧି, ସମ୍ମିଳନୀରେ ସେହି ଆଶଙ୍କା ପ୍ରକାଶ କରିଥିଲେ । ନବବାବୁ ବିଶେଷ କିଛି କହିବେ ନାହିଁ ବୋଲି କହି ତାଙ୍କ ଦୀର୍ଘ ଭାଷଣରେ ଆନ୍ତର୍ଜାତୀୟ ପରିସ୍ଥିତି ଓ ବ୍ରିଟିଶ ସରକାରଙ୍କ ମନୋଭାବ ତଥା ଭାରତୀୟ କମ୍ୟୁନିଷ୍ଟମାନଙ୍କ ପ୍ରଚାରର ମତଲବ ବୁଝାଇ କହିଲେ । ସେ ଜୋର୍ ଦେଇ କହିଲେ ଯେ, ''ଆମେ ୧୯୪୨ ଆନ୍ଦୋଳନ କାଳରେ ଯାହା ଘୋଷଣା କରିଥିଲୁ ଓ ସୁଭାଷଚନ୍ଦ୍ର ବୋଷ ଯାହା ଉଦ୍ୟମ କରିଥିଲେ, ସେଥିରେ କାହାକୁ କାହାକୁ କିଭଳି କ୍ଷମତା ଦିଆଯିବ, ସେକଥା ନଥିଲା । ଡାକରା ଥିଲା, ଇଂରେଜମାନେ ଭାରତ ଛାଡ଼ି ଯାଆନ୍ତୁ । ଆମେ ଯୋଗ୍ୟ ହେବା ତ ଦେଶୀୟ ରାଜ୍ୟମାନେ ସ୍ୱତନ୍ତ୍ର ରହିପାରିବେ ନାହିଁ ।'' ତାଙ୍କର ପୂରା ଭାଷଣଟି ପଢ଼ିଲେ ତତ୍କାଳୀନ ଅବସ୍ଥାରେ ତାଙ୍କର କିଭଳି ଆତ୍ମବିଶ୍ୱାସ ଥିଲା, ତାହା ଜାଣିହୁଏ ।

ସୁଭାଷଚନ୍ଦ୍ର ବୋଷଙ୍କ ଆହ୍ୱାନରେ ଯେଉଁ ଆଇ.ଏନ୍.ଏ. (ଭାରତୀୟ ଜାତୀୟ ସେନାବାହିନୀ) ଗଢ଼ାଯାଇଥିଲା, ସେଥିରେ ଓଡ଼ିଶାର ଅନେକ ଲୋକ ଯୋଗ ଦେଇଥିଲେ । ସେମାନଙ୍କ ବିଷୟ ଅନୁସନ୍ଧାନ କରିବା ଓ ସେମାନଙ୍କୁ ଥଇଥାନ କରିବା ଲାଗି ଓଡ଼ିଶାରେ ଯେଉଁ ପ୍ରାଦେଶିକ କମିଟି ଗଢ଼ାଯାଇଥିଲା, ହରେକୃଷ୍ଣ ମହତାବ ଥିଲେ ତା'ର ସଭାପତି ଏବଂ ନବକୃଷ୍ଣ ଚୌଧୁରୀ ଥିଲେ ଉପସଭାପତି । ଇଂରେଜ ସରକାରଙ୍କ ଯୁଦ୍ଧ ବିଭାଗରେ ଯୁଦ୍ଧକାଳରେ ଯୋଗ ଦେଇଥିବା ଲୋକଙ୍କୁ ଯେଭଳି ସରକାରଙ୍କ ବିଭିନ୍ନ ବିଭାଗରେ ନିଯୁକ୍ତି ଦିଆଯାଇଥିଲା, ଏହି ନେତାଦ୍ୱୟଙ୍କ ଉଦ୍ୟମରେ ସେହିଭଳି ଆଇ.ଏନ୍.ଏ.ର କିଛି ଲୋକଙ୍କୁ ସରକାର ନିଯୁକ୍ତି ଦେଇଥିଲେ ।

ନବକୃଷ୍ଣ ଚୌଧୁରୀ ସେ ସମୟରେ ସମସ୍ତଙ୍କ କଥା ଶୁଣିବା ଭଳି ମନ୍ତ୍ରୀ ଥିଲେ ବୋଲି ତାଙ୍କ ପାଖରେ ଅନେକେ ଅଭାବ ଅଭିଯୋଗ ନେଇ ପହଞ୍ଚୁଥିଲେ । ୧୯୪୭ ମସିହାରେ କୋରାପୁଟରେ ବନ୍ଦୋବସ୍ତ ବିଭାଗ ଅମଲାମାନେ ଲୋକଙ୍କଠାରୁ ପ୍ରଚୁର ଲାଞ୍ଚ ନେଉଥିଲେ । ନବରଙ୍ଗପୁରର ଲକ୍ଷ୍ମୀଚନ୍ଦ୍ର ଦାସ, ସୀମାଞ୍ଚଳ ବେହେରା, ସଦାନନ୍ଦ ମହାନ୍ତି ଓ ମହମ୍ମଦ ବାଜି ଆଦି କଟକ ଆସି ହରେକୃଷ୍ଣ ମହତାବଙ୍କୁ ଏ ସମ୍ପର୍କରେ ଅଭିଯୋଗ କରିବାରୁ ମହତାବବାବୁ କହିଲେ, ''କିହୋ, ମୁଁ ତ ମୋ' ଜମି ବନ୍ଦୋବସ୍ତ ଲାଗି ବନ୍ଦୋବସ୍ତ କର୍ମଚାରୀଙ୍କୁ ସତୁରି ଟଙ୍କା ଦେଇଛି । ଏମିତି ଦେବାକୁ ହୁଏ । ଏଥିରେ ଆଶ୍ଚର୍ଯ୍ୟ ହେବାର କଅଣ ଅଛି ?'' ସେଠାରୁ ହତାଶ ହୋଇ ସେମାନେ ନବବାବୁ ଓ ସଦାଶିବ ତ୍ରିପାଠୀଙ୍କୁ ଦେଖା କଲେ । ନବବାବୁଙ୍କୁ

ସେମାନେ ବିବ୍ରତ ହୋଇ ଏ କଥା କହିବାରୁ ସେ କହିଲେ, ''ଏଠି କହି କିଛି ଲାଭ ନାହିଁ । ତୁମେ ଯାଇ ଯାହା କରିବାର, କର ।'' ଏହା ପରେ ସେମାନେ ଫେରି ଗାଁ ଗାଁ ଲୋକଙ୍କୁ ସଙ୍ଗଠିତ କରି ବନ୍ଦୋବସ୍ତ କର୍ମଚାରୀମାନଙ୍କଠାରୁ ଟଙ୍କା ଫେରସ୍ତ ଅଣାଇଲେ । ଲୋକଙ୍କର ଏ ପ୍ରକାର ଆନ୍ଦୋଳନ ଡରରେ କର୍ମଚାରୀମାନେ ଗାଁରେ ଟଙ୍କା ନ ରଖି ସହରକୁ ପଠାଇଦେଲେ । ଯାହାହେଉ ଲୋକେ ବନ୍ଦୋବସ୍ତ କର୍ମଚାରୀମାନଙ୍କଠାରୁ ଟଙ୍କା ଆଦାୟ କରିବାରେ ବହୁ ପରିମାଣରେ ସମର୍ଥ ହୋଇଥିଲେ ଏବଂ ଓଲଟା କର୍ମଚାରୀମାନଙ୍କ ନାମରେ ଅଭିଯୋଗ କରିବାରୁ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ଚାକିରିରୁ ହଟାଇ ଦିଆଯାଇଥିଲା ବୋଲି ମହମ୍ମଦ ବାଜି କହନ୍ତି । ନବବାବୁ ଲୋକମାନଙ୍କୁ ଆନ୍ଦୋଳନ ପାଇଁ ନିରୁତ୍ସାହିତ କରୁ ନଥିଲେ । ଯିଏ ପାରିଲା କରୁ ; କିନ୍ତୁ ଆନ୍ଦୋଳନ ବା ବିପ୍ଳବ ପାଇଁ ପ୍ରସ୍ତୁତ ହୋଇନଥିବା ଲୋକଙ୍କୁ ସେ ତଳିତଳାନ୍ତ ହେବାକୁ ଦେଉନଥିଲେ । ଏଇଆ ଥିଲା ତାଙ୍କର କାର୍ଯ୍ୟର ଧାରା ।

**ଉତ୍ତରାଙ୍କ ବିବାହ :**

ଉତ୍ତରାଙ୍କ ଡାକ ନାଁ ବୁବୁ । କାରଣ ବୁଲୁବାବୁ (ମନମୋହନ ଚୌଧୁରୀ)ଙ୍କ ନାଁକୁ ମିଶିଲା ଭଳି ଭଉଣୀର ନାମ ହେବା ଦରକାର ତ । ତାଙ୍କର ଦୁଇ ବର୍ଷ ବୟସ ବେଳେ ସେ ମା'ଙ୍କ ସାଙ୍ଗରେ ଭାଗଲପୁର ଜେଲ୍‌ରେ ଥିଲେ । ସେ କଟକ କଲିଜିଏଟ୍ ସ୍କୁଲରେ ପଢ଼ା ଆରମ୍ଭ କରିଥିଲେ । ତାହାପରେ ପାଟନାର ବାଙ୍କୀପୁର ଗାର୍ଲ୍‌ସ୍ ହାଇସ୍କୁଲରେ ପଢୁଥିଲେ ।

୧୯୩୯ ମସିହାରେ ସ୍କୁଲମାନଙ୍କରେ ଯୁଦ୍ଧଚାନ୍ଦା ଆଦାୟ ହେଲା । ସେ ଯୁଦ୍ଧଚାନ୍ଦା ଦେବାକୁ ଅସମ୍ମତ ହେବାରୁ ଓ ତାଙ୍କୁ ବାଧ କରାଯିବାରୁ ସେ ସେଠାରୁ ସ୍କୁଲ ଛାଡ଼ି ଚାଲିଆସିଥିଲେ । ୧୯୪୨ ମସିହା ଅଗଷ୍ଟ ବିପ୍ଳବ ସମୟରେ ସେ ମା'ଙ୍କ ସହିତ ସେଥିରେ ଯୋଗ ଦେଇ କଟକ ଜେଲ୍‌ରେ ରହିଲେ । ସେହି ଜେଲ୍‌ରେ ଥିବା ସମୟରେ ସେ ମାଳତୀ ଦେବୀଙ୍କ ପାଖରେ ଇଂରାଜୀ ସାହିତ୍ୟ ଓ ରାଜନୀତି ଆଦି ପଢ଼ାପଢ଼ି କରିଥିଲେ । ୧୯୪୫ରେ ଜେଲ୍‌କୁ ଖଲାସ ହୋଇ ସେ ୱାର୍ଦ୍ଧା ସେବାଗ୍ରାମରେ ଆଶାଦେବୀ ନାୟକମ୍‌ଙ୍କ ପାଖରେ ମୌଳିକ ଶିକ୍ଷା ସମ୍ପର୍କରେ ତାଲିମ ନେଲେ ଓ ଜି. ରାମଚନ୍ଦ୍ରନ୍‌ଙ୍କ ନିକଟରେ ବି ଶିକ୍ଷାଲାଭ କରିଥିଲେ । ବାଜିରାଉତ ଛାତ୍ରାବାସ ଆରମ୍ଭ କରିବାରେ ସେ ଥିଲେ ଜଣେ ପ୍ରଧାନ ଉଦ୍ୟୋକ୍ତା । ସେହି ସେବାଗ୍ରାମରେ ଗାନ୍ଧିଜୀଙ୍କ ସେକ୍ରେଟେରୀ ମହାଦେବ ଦେଶାଇଙ୍କ ପୁଅ ନାରାୟଣ ଦେଶାଇ ବି ଅଧ୍ୟୟନ କରୁଥିଲେ । ଏକାଠି କାମ କରିବା ଓ ପଢ଼ାପଢ଼ି କରିବା ମଧ୍ୟରେ ରବୀନ୍ଦ୍ର ସଙ୍ଗୀତ ବି ଗାନ ହୁଏ । ଏହି ରବୀନ୍ଦ୍ର ସଙ୍ଗୀତ ଗାନ ଥିଲା ଦୁଇଜଣଙ୍କ ମଧ୍ୟରେ ଐକାନ୍ତିକତାର ଅବକାଶ । ଏହାକୁ ଉଭୟ ବିବାହରେ ରୂପାୟିତ କରିବାକୁ ସ୍ଥିର କଲେ । ଏଥିପାଇଁ ନାରାୟଣଙ୍କ ମା' ଦୁର୍ଗାଦେବୀଙ୍କଠାରୁ ସ୍ୱୀକୃତି ମିଳିଲା । ପୂର୍ବରୁ ୧୯୪୨

ମସିହାରେ ଜେଲଖାନାରେ ମହାଦେବ ଦେଶାଇଙ୍କର ମୃତ୍ୟୁ ହୋଇଯାଇଥାଏ । ଏହାପରେ ଗାନ୍ଧିଜୀଙ୍କଠାରୁ ଆଶୀର୍ବାଦ ମିଳିବା ପାଇଁ ଗାନ୍ଧିଜୀଙ୍କ ଅତି ଅନ୍ତରଙ୍ଗ ନରହରି ପରୀଖଙ୍କ ସହାୟତା ନିଆହେଲା । ବିବାହ ହେଉଥିବା ଦମ୍ପତିଙ୍କ ମଧ୍ୟରୁ ଜଣେ ହରିଜନ ଥିଲେ, ଗାନ୍ଧିଜୀ ସେଭଳି ଦମ୍ପତିଙ୍କୁ ଆଶୀର୍ବାଦ ଦିଅନ୍ତି । ତେବେ ମହାଦେବ ଦେଶାଇ ଖାଲି ଗାନ୍ଧିଜୀଙ୍କ ସେକ୍ରେଟେରୀ ନଥିଲେ, ସେ ଥିଲେ ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱର ଏକ ଅଂଶ । ଏପରିକି ଗାନ୍ଧିଜୀଙ୍କ ଅନଶନ ସମୟରେ ଉପବାସ ଯୋଗୁଁ ଗାନ୍ଧିଜୀଙ୍କ ଓଜନ ଯେତିକି କମୁଥିଲା, ଦେଖାଯାଇଥିଲା ଯେ ଆହାର କରି ବି ମହାଦେବ ଦେଶାଇ ଓ କସ୍ତୁରବାଙ୍କ ଓଜନ ସେତିକି କମୁଥିଲା । ଗାନ୍ଧିଜୀ ଏ କ୍ଷେତ୍ରରେ କରିବେ କଅଣ ? ଟିକିଏ ଭାବି କହିଲେ, ''ନାରାୟଣ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲା–କାରଣ ସେ ଅନ୍ୟ ଜାତି (ଦେଶାଇ ହେଲେ ବ୍ରାହ୍ମଣ) ଓ ଅନ୍ୟ ଭାଷାର ଝିଅକୁ ବିବାହ କରୁଛି । ସେ ହରିଜନ ଝିଅଟିଏ ବିବାହ କରିଥିଲେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥାନ୍ତା ।''

ନବକୃଷ୍ଣ ଚୌଧୁରୀ ଭାବୀ–ଜାମାତାଙ୍କ ଯୋଗ୍ୟତା ଅଟକଳ କରିବାକୁ ଓ୍ୱାର୍ଦ୍ଧା ଗଲେ । ଭାବୀ ସମୁଦୁଣୀଙ୍କ ସହିତ କଥାବାର୍ତ୍ତା ସାରି ତାଙ୍କ ଘର ପୁସ୍ତକାଗାର ଦେଖିବାକୁ ନାରାୟଣଙ୍କୁ ସାଙ୍ଗରେ ନେଲେ । ବିଭିନ୍ନ ବହି ଦେଖିଲା ବେଳେ ପଚାରୁଥାନ୍ତି, ନାରାୟଣ ସେ ବହି ପଢ଼ିଛନ୍ତି କି ନାହିଁ । ନାରାୟଣ ପରୀକ୍ଷିତ ହେଉଛନ୍ତି ବୋଲି ଅନୁଭବ କଲା ପରେ ପଢ଼ିଥିବା ବହିକୁ ବି ପଢ଼ିନାହାନ୍ତି ବୋଲି କହିଲେ । ନବବାବୁ ବି ତାଙ୍କ ମନକଥା ଜାଣିପାରି ଆଉ ଅଧିକ ପଚାରିଲେ ନାହିଁ ।

ବିବାହ ପାଇଁ ମା' ଦୁର୍ଗାଦେବୀ ଓ ନରହରି ପରୀଖଙ୍କ ସମେତ ମାତ୍ର ପାଞ୍ଚଜଣ ବରଯାତ୍ରୀ କଟକ ଆସିଥିଲେ । ଚୌଧୁରୀ ପରିବାରର ଇତିପୂର୍ବର ଦୁଇ ବିବାହରେ ଜାକଜମକ ମୋଟେ ନ ଥିଲା । ଏହି ବିବାହରେ ବନ୍ଧୁବାନ୍ଧବ ଓ ଅତି ଆପଣାର ନେତା ଏବଂ କର୍ମୀମାନେ ଆସନ୍ତୁ ବୋଲି ଗୋପବନ୍ଧୁ ଚୌଧୁରୀଙ୍କ ଇଚ୍ଛା ଥାଏ । କିନ୍ତୁ ଯୁବନେତା ବୀରେନ ମିତ୍ର (ପରବର୍ତ୍ତୀ କାଳରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ) ସମସ୍ତ କଟକବାସୀଙ୍କୁ ନବବାବୁଙ୍କ ଝିଅ ବିବାହକୁ ମୌଖିକ ନିମନ୍ତ୍ରଣ କରିଦେଲେ । ସେତେବେଳକୁ ଯୁଦ୍ଧପରର ଖାଦ୍ୟାଭାବ । ୧୦୦ଜଣରୁ ଅଧିକଙ୍କୁ ଭୋଜିଭାତ ଦିଆ ନ ଯିବା ଲାଗି ସରକାରୀ ଘୋଷଣା ଥାଏ । ନାରାୟଣ ବି ଏକଥା ଶୁଣି ବିଚଳିତ ହୋଇପଡ଼ିଲେ । ବହୁ ଲୋକ ବସି ଗୋଟିଏ ମଝିମଝିକିଆ ନିଷ୍ପତ୍ତି ନେଲେ ଯେ କଟକ ବାହାରୁ ଆସିଥିବା ବନ୍ଧୁବାନ୍ଧବଙ୍କୁ ଭୋଜିଭାତ ଦିଆଯିବ ଓ କଟକର ଅତିଥିମାନଙ୍କୁ କେବଳ ଏକ ଗ୍ଲାସ୍ ସରବତ୍ ଏବଂ ଗୋଟିଏ ଗୋଟିଏ ମିଠା ଦିଆଯିବ । ଭୋଜି ଅବଶ୍ୟ ବ୍ୟୟସାପେକ୍ଷ ନଥିଲା ; ତଥାପି ସେ ବେଳର ଗଜା ସୋସାଲିଷ୍ଟ ରବି ରାୟ ଓ କୁଳମଣି ମହାପାତ୍ର ଏ ସବୁକୁ ଅପସନ୍ଦ କରିଥିଲେ । ୧୯୪୭ ସେପ୍ଟେମ୍ବର ୧୨ ତାରିଖ

ଦିନ ବିବାହର ଠିକ୍ ପୂର୍ବରୁ ଗାନ୍ଧିଜୀଙ୍କ ଆଶୀର୍ବାଦ ଚିଠି ନବକୃଷ୍ଣ ଚୌଧୁରୀଙ୍କ ମାର୍ଫତରେ ସମୁଦୁଣୀ ଦୁର୍ଗା ଦେଶାଇଙ୍କ ପାଖରେ ପହଞ୍ଚିଲା । ବିବାହ ମନ୍ତ୍ର ଯାହା ପଢ଼ାଯାଏ, ତାହା ପଢ଼ି କନ୍ୟାଦାନ ଅଂଶତକ ବାଦ୍ ଦିଆଯିବା ପାଇଁ ନାରାୟଣ ମତ ପ୍ରକାଶ କଲେ । କାରଣ ତାଙ୍କର ବା ତାଙ୍କ ମା'ଙ୍କର କନ୍ୟାଦାନ ନେବାର ନ ଥିଲା । ନବବାବୁ ବି ଏଥିରେ ସମ୍ମତ ହେଲେ । ଖାଲି ସପ୍ତପଦୀ ଚାଲିବା ଓ ଅଗ୍ନିକୁ ସାକ୍ଷୀ କରି ଉଭୟ ଉଭୟଙ୍କୁ ସ୍ୱୀକାର କରିବାରେ ବିବାହ ଶେଷ ହେଲା । ଉଭୟେ ବିବାହ ପରେ, ଗାନ୍ଧିଜୀଙ୍କ ଆଶୀର୍ବାଦ ପାଇଁ ଯାଇଥିବା ବେଳେ ଗାନ୍ଧିଜୀ ଉତ୍ତରାଙ୍କୁ ପଚାରିଥିଲେ ଯେ ସେ ନାରାୟଣଙ୍କୁ ଅଭିମନ୍ୟୁ ଡାକିବେ ନା ଉତ୍ତରାଙ୍କୁ ଲକ୍ଷ୍ମୀ ଡାକିବେ ? କିଛି ଭାବି କହିଥିଲେ ଯେ ନାରାୟଣ ନିଶ୍ଚୟ ଅଭିମନ୍ୟୁଙ୍କଠାରୁ ବଡ଼, ଏଣୁ ଉତ୍ତରାଙ୍କ ନାଁ ଦେଲେ ଅନ୍ନପୂର୍ଣ୍ଣା । ଉତ୍ତରା ସ୍ୱାମୀଙ୍କ ସହିତ ଗୁଜରାତରେ ସର୍ବୋଦୟ କାର୍ଯ୍ୟ ଏବଂ ସମ୍ପୂର୍ଣ୍ଣ କ୍ରାନ୍ତି କାର୍ଯ୍ୟ କରି ୧୯୮୮ ମସିହା ଅକ୍ଟୋବର ୧୦ ତାରିଖରେ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ଦେହତ୍ୟାଗ କରିଛନ୍ତି । ସେ ଗୁଜରାଟି ଭାଷାରେ 'ମାଟିର ମଣିଷ' ଉପନ୍ୟାସ ଅନୁବାଦ କରିଛନ୍ତି । ତାଙ୍କର ସ୍ୱାମୀ ଓ ପିଲାମାନେ ମଧ୍ୟ ସମ୍ପୂର୍ଣ୍ଣ କ୍ରାନ୍ତି କାର୍ଯ୍ୟରେ ନିଜକୁ ନିୟୋଜନ କରିଛନ୍ତି ।

**ଗଡ଼ଜାତ ମିଶ୍ରଣ :**

ଶାସନ ଦାୟିତ୍ୱ ନେବାର ବର୍ଷକ ପରେ ଓଡ଼ିଶା ଗଡ଼ଜାତ ସମସ୍ୟା ରାଜ୍ୟ ସରକାରଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କରିଥିଲା । ଓଡ଼ିଶାର ଗଡ଼ଜାତ ମିଶ୍ରଣ ଏବଂ ସମଗ୍ର ଭାରତବର୍ଷର ୫୮୨ଟି ଦେଶୀୟ ରାଜ୍ୟର ମିଶ୍ରଣ ଲାଗି ହରେକୃଷ୍ଣ ମହତାବ ଓ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କୁ ବିଶେଷ ସ୍ୱୀକୃତି ଦିଆଗଲେ ବି ଏ ଦିଗରେ ଅନ୍ୟମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଆଜିକାଲିକାର ଅଧିକାଂଶ ଲୋକ ଜାଣନ୍ତି ନାହିଁ । ଏ ସମ୍ପର୍କରେ ନୀଳମଣି ରାଉତରାୟଙ୍କ 'ସ୍ମୃତି ଓ ଅନୁଭୂତି' ବହିର ୧୮୭ ପୃଷ୍ଠାରେ ଅଛି, ''ରାଜାମାନଙ୍କ ମାନମର୍ଯ୍ୟାଦା ଏବଂ ଏକାଧିପତ୍ୟକୁ ରାଜନୈତିକ ଦୃଷ୍ଟିକୋଣରୁ ପର୍ଯ୍ୟାୟକ୍ରମେ ବିଲୋପ କରିବାର ଉଦ୍ଦେଶ୍ୟ ଥିଲା, ଓଡ଼ିଶା ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବଙ୍କର...''

୧୯୪୭ ଅଗଷ୍ଟ ୧୪ ତାରିଖରେ ପାକିସ୍ତାନ ସ୍ୱାଧୀନ ହେବା ପରଦିନ ଭାରତ ଏକ ସ୍ୱାଧୀନ ଦେଶରେ ପରିଣତ ହେଲା । କିନ୍ତୁ ଭାରତବର୍ଷର ବିସ୍ତୃତ ଅଞ୍ଚଳରେ ରହିଗଲେ ୫୮୨ ଜଣ ରାଜା, ମହାରାଜା, ନବାବ ଓ ନିଜାମ୍ । ସେମାନେ ଦାବି କଲେ ଯେ ବ୍ରିଟିଶ ସରକାର ସେମାନଙ୍କଠାରୁ ରାଜ୍ୟ ନେଇଥିଲେ ଏବଂ ଇଂରେଜ ଚାଲିଯାଉଥିବା ବେଳେ ସେମାନଙ୍କୁ ତାଙ୍କ ରାଜ୍ୟ ଫେରାଇଦେଇଯାଆନ୍ତୁ । କାର୍ଯ୍ୟତଃ ହାଇଦ୍ରାବାଦର ନିଜାମ ସ୍ୱାଧୀନତା ଘୋଷଣା କରିଥିଲେ ଓ ସେହିଭଳି କାଶ୍ମୀର ମହାରାଜା ସ୍ୱାଧୀନ ବୋଲି ଘୋଷଣା କରିଦେଇଥିଲେ ।

ବହୁ ପୂର୍ବରୁ ନିଖିଳ ଭାରତ କଂଗ୍ରେସ ଦଳ ଏହି ଦେଶୀୟ ରାଜ୍ୟମାନଙ୍କରେ କଂଗ୍ରେସ ଦଳ ତରଫରୁ ସଙ୍ଗଠନ ବା ଆନ୍ଦୋଳନ ନକରିବା ପାଇଁ ସ୍ଥିର କରିଥିଲା । ମହାତ୍ମା ଗାନ୍ଧି ବି ଶକ୍ତିଶାଳୀ ଇଂରେଜମାନଙ୍କ ବିରୋଧରେ ଲଢ଼ିବା ବେଳେ ଆଉ ଅଧିକ ଶତ୍ରୁ ବଢ଼ାଇବାକୁ ଚାହୁଁନଥିଲେ ।

ଏହି ସମୟରେ ନୀଳଗିରିରେ ହିଁ ପ୍ରଥମ ଆନ୍ଦୋଳନ ଆରମ୍ଭ ହୁଏ । ପ୍ରଜାମଣ୍ଡଳର ନେତା କୈଳାସ ଚନ୍ଦ୍ର ମହାନ୍ତି ଓ କମ୍ୟୁନିଷ୍ଟମାନଙ୍କ ନେତା ବନମାଳୀ ଦାସଙ୍କ ମିଳିତ ନେତୃତ୍ୱରେ ଆନ୍ଦୋଳନ ଆରମ୍ଭ ହୋଇଥାଏ । ବାଲେଶ୍ୱର ଜିଲ୍ଲାକୁ ଲାଗିରହିଥିବା ଏହି ଛୋଟ ରାଜ୍ୟରେ ୧୯୩୮ ମସିହାରେ ଆନ୍ଦୋଳନ କରି ପ୍ରଜାମାନେ ରାଜଶକ୍ତିକୁ ବହୁ ପରିମାଣରେ କ୍ଷୁଣ୍ଣ କରିଦେଇଥାନ୍ତି । ଦେଶ ସ୍ୱାଧୀନ ହେବା ସମ୍ବାଦରେ ନୀଳଗିରି ପ୍ରଜାମାନଙ୍କର ସାହସ ବଢ଼ିଯାଇଥିଲା । ତାହାସତ୍ତ୍ୱେ ନୀଳଗିରିର ରାଜା ହାଇଦ୍ରାବାଦର ନିଜାମଙ୍କ ଢଙ୍ଗରେ ସ୍ୱାଧୀନତା ଘୋଷଣା କଲେ । ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀ ଚାହୁଁଥାନ୍ତି, ପ୍ରଜାମାନଙ୍କ ତରଫରୁ ଆନ୍ଦୋଳନ ତୀବ୍ରତର ହେଲେ ଭାରତ ସରକାରଙ୍କୁ ହସ୍ତକ୍ଷେପ କରିବାକୁ ସୁଯୋଗ ମିଳିବ । ଏହି ସମୟରେ ମାଳତୀ ଦେବୀ ନବବାବୁଙ୍କ ସହ ୧୯୪୭ ସେପ୍ଟେମ୍ବର ମାସରେ ବ୍ରହ୍ମପୁର ଗ୍ରାମରେ ପହଞ୍ଚି ପ୍ରଜାମଣ୍ଡଳ କର୍ମୀ ଓ କମ୍ୟୁନିଷ୍ଟ କର୍ମୀମାନଙ୍କ ମଧ୍ୟରେ ବୁଝାମଣା କରାଇଥିଲେ । ଫଳରେ ଉଭୟ କର୍ମୀଙ୍କ ମିଳିତ ପ୍ରଚେଷ୍ଟାରେ ଦୁଇଦିନ ମଧ୍ୟରେ ଲଢ଼େଇ ଶେଷ ହୋଇଗଲା । ନୀଳଗିରି ରାଜାଙ୍କ ସୈନ୍ୟ ଓ ତାଙ୍କ ପ୍ରୋତ୍ସାହନରେ ଆସିଥିବା ଧନୁଶରଧାରୀ ଆଦିବାସୀମାନେ ପଛଘୁଞ୍ଚା ଦେଇଥିଲେ ଏବଂ ରାଜା ରାଜ୍ୟରୁ ପଳାଇଯାଇଥିଲେ । ଅନ୍ୟାନ୍ୟ ଗଡ଼ଜାତ ମିଶ୍ରଣ ପୂର୍ବରୁ ଭାରତ ସରକାର ଓଡ଼ିଶା ସରକାରଙ୍କ ଜରିଆରେ ନୀଳଗିରି ଶାସନ ହାତକୁ ନେଇଥିଲେ । ଗଡ଼ଜାତ ମିଶ୍ରଣର ଏହି ଅୟମାରମ୍ଭ ଅନ୍ୟାନ୍ୟ ଗଡ଼ଜାତ ମିଶ୍ରଣ ଲାଗି ପଥ ପରିଷ୍କାର କରିଦେଇଥିଲା ।

ଦେଶ ବିଭାଜନ ପରେ ପାକିସ୍ତାନ ସହିତ ନାନା ବିବାଦ ଲାଗିରହିଥିବାରୁ ଓ କାଶ୍ମୀର ସମସ୍ୟା ଦେଖାଦେଇଥିବାରୁ କଂଗ୍ରେସ ହଠାତ୍ ଦେଶୀୟ ରାଜ୍ୟ କଥାକୁ ବିଚାରକୁ ନେଇ ନ ଥିଲା । ନିଜାମଙ୍କ ସ୍ୱାଧୀନତା ଘୋଷଣା ହିଁ ଭାରତ ସରକାରଙ୍କୁ ଏ ଦିଗରେ ଏକ ନୀତି ଗ୍ରହଣ କରିବାକୁ ବାଧ କରିଥିଲା । ୧୯୪୭ ଅଗଷ୍ଟ ୧୫ ପରେ ଢେଙ୍କାନାଳ ରାଜା ରାଜ୍ୟ ଛାଡ଼ି ପଳାଇଯାଇ ଗାନ୍ଧିଜୀଙ୍କ ଶରଣ ନେଇଥିଲେ । ତାଙ୍କଠାରୁ ଆଶ୍ୱସ୍ତି ନ ପାଇଥିଲେ ସେ ହୁଏତ ରାଜ୍ୟକୁ ଫେରିନଥାନ୍ତେ ଓ ଫେରିଥିଲେ ପ୍ରଜାମାନେ ପୂର୍ବର ସମସ୍ତ ଅତ୍ୟାଚାରର ପ୍ରତିଶୋଧ ନେଇଥାନ୍ତେ । ଗୋଟିଏ କଥା ସ୍ମରଣ ରଖିବାର ଯେ ଓଡ଼ିଶା ଗଡ଼ଜାତ ମିଶ୍ରଣ ଆଲୋଚନାର ପ୍ରଥମ ଦିନ ରାଜନ୍ୟମଣ୍ଡଳୀ ମିଶ୍ରଣ ପାଇଁ ରାଜି ହୋଇନଥିଲେ । ସେହି

ରାତିରେ ଢେଙ୍କାନାଳ ରାଜା ପ୍ରଥମେ ଆସି ମିଶ୍ରଣ ଲାଗି ସ୍ୱାକ୍ଷର କରିଗଲା ପରେ ଅନ୍ୟାନ୍ୟ ରାଜାମହାରାଜାମାନେ ସେହି ବାଟରେ ଗଲେ । ଏସବୁ ବିଚାରରୁ ଓଡ଼ିଶା ଗଡ଼ଜାତ ମିଶ୍ରଣ ଲାଗି ପ୍ରଜାମଣ୍ଡଳର ଭୂମିକା ଓ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ଭଗବତୀ ପାଣିଗ୍ରାହୀ, ଗୌରାଙ୍ଗଚରଣ ଦାସ, ଅନନ୍ତ ପଟ୍ଟନାୟକ, ବୈଷ୍ଣବ ପଟ୍ଟନାୟକ, ବନମାଳୀ ଦାସ ଆଦି ଲଢୁଆ ନେତାଙ୍କ ତ୍ୟାଗ ଓ ଗଡ଼ଜାତର ଶହଶହ ସହିଦ ଏବଂ ଲକ୍ଷ ଲକ୍ଷ ଲଢୁଆ ଲୋକଙ୍କ ନିର୍ଯ୍ୟାତନା ତଥା ସର୍ବସ୍ୱାନ୍ତ ହେବାକଥା ଭୁଲିଗଲେ ଓଡ଼ିଶା ଇତିହାସର ଏକ ଗୌରବମୟ ଅଧ୍ୟାୟ ପ୍ରତି ଆଖି ବୁଜିଦେବା ଭଳି ହେବ ।

## ପ୍ରଶାସନର ବିଭିନ୍ନ ଦିଗ :

ଗଡ଼ଜାତ ଆନ୍ଦୋଳନ ଓ ଗଡ଼ଜାତ ମିଶ୍ରଣ ଛଡ଼ା ସେତେବେଳର ସବୁ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀ ମିଶି ନେଉଥିଲେ । ପାଖାପାଖି ଦୁଇବର୍ଷ ମନ୍ତ୍ରୀ ରହିବା ଭିତରେ ନବବାବୁ ରାଜସ୍ୱ ଓ ଯୋଗାଣ ଏବଂ ପରିବହନ ବିଭାଗରେ ନୂଆ ନୂଆ କାର୍ଯ୍ୟକ୍ରମ ଗ୍ରହଣ କରିଛନ୍ତି । ସେତେବେଳେ ଗ୍ରାମପଞ୍ଚାୟତ ନଥିଲା । ଏଣୁ ସେ ଯୋଗାଣ କାର୍ଯ୍ୟ ସମ୍ପର୍କରେ ପରାମର୍ଶ ଦେବାକୁ ଓ ତଦାରଖ କରିବାକୁ ପ୍ରତି ଇଉନିୟନରେ (ବର୍ତ୍ତମାନ ଗ୍ରାମ ପଞ୍ଚାୟତର ତିନିଚାରି ଗୁଣ ଆକାରର) ଏବଂ ସହରର ବିଭିନ୍ନ ୱାର୍ଡ୍‌ରେ ପରାମର୍ଶଦାତା କମିଟି ଗଠନ କରାଇଥିଲେ । ଶାସନର ଏହି ବିକେନ୍ଦ୍ରୀକରଣ ଛଡ଼ା ବିଭିନ୍ନ ଇଉନିୟନରେ ଗ୍ରେନ୍ ଗୋଲା ନିର୍ମାଣ ପ୍ରସ୍ତାବ ତାଙ୍କରି ଅମଳରୁ ଆରମ୍ଭ ହୋଇଥିଲା ।

ଦ୍ୱିତୀୟ ମହାସମର ପରବର୍ତ୍ତୀ କାଳରେ ଓଡ଼ିଶାର ପରିବହନ ବ୍ୟବସ୍ଥା ଶୋଚନୀୟ ହୋଇପଡ଼ିଥିଲା । ଯୁଦ୍ଧ ବେଳେ ବସ୍‌ଗୁଡ଼ିକ କୋଇଲାରେ ଚାଲୁଥିଲା ଓ ବହୁ ସ୍ପେୟାର ପାର୍ଟ ମିଳୁ ନଥିଲା । ଏଣୁ ସେ ପରିବହନ ଜାତୀୟକରଣ କରି ପ୍ରଥମେ ଦକ୍ଷିଣ ଓଡ଼ିଶାରେ ଓଡ଼ିଶା ପରିବହନ କମ୍ପାନୀ ଗଠନ କରାଇଥିଲେ । କର୍ମଚାରୀମାନଙ୍କଠାରୁ ବି ସହଯୋଗ ମିଳିଲା ଏବଂ ସେମାନଙ୍କଠାରୁ ବ୍ୟୟସଙ୍କୋଚ ଲାଗି ବିଭିନ୍ନ ପ୍ରସ୍ତାବ ଆସିଲା ।

ସେ ପର୍ଯ୍ୟନ୍ତ ଜଙ୍ଗଲ ସମ୍ପର୍କରେ ସରକାରଙ୍କର କୌଣସି ଦୀର୍ଘମିଆଦୀ ସୁଚିନ୍ତିତ ଯୋଜନା ନ ଥିଲା । ଗଡ଼ଜାତ ରାଜ୍ୟଗୁଡ଼ିକ ମିଶିଲା ପରେ ରାଜ୍ୟର ଜଙ୍ଗଲ ପରିମାଣ ବହୁଗୁଣରେ ବୃଦ୍ଧି ପାଇଥିଲା । କିନ୍ତୁ ଗଡ଼ଜାତ ମିଶ୍ରଣ ବେଳକୁ କେତେକ ରାଜାମହାରାଜା ଜଙ୍ଗଲକୁ ଲୁଣ୍ଠନ ପାଇଁ ଲୋକଙ୍କୁ ଉତ୍ସାହିତ କରି ଜଙ୍ଗଲଉଜୁଡ଼ା ଆରମ୍ଭ କରିଦେଇଥିଲେ । ମନ୍ତ୍ରୀ ହେବାର କିଛି କାଳ ପରେ ଏହି ବିଭାଗର ଦାୟିତ୍ୱ ନବବାବୁଙ୍କ ଉପରେ ପଡ଼ିଲା । ସେ ପର୍ଯ୍ୟନ୍ତ ଜଙ୍ଗଲର ତଳିଆ କର୍ମଚାରୀ ସର୍ବଶକ୍ତିମାନ ଥିଲେ । ସବୁ କାମରେ ନବବାବୁ ତ ଲୋକଙ୍କ ସ୍ୱାର୍ଥକୁ ବିଚାରକୁ ନେଉଥିଲେ ଓ ଲୋକଙ୍କୁ ସଂଶ୍ଳିଷ୍ଟ କରାଉଥିଲେ, ଜଙ୍ଗଲ ବିଭାଗରେ

ବି ସେ ସେହି ଧାରା ଅବଲମ୍ବନ କଲେ । ନବବାବୁଙ୍କୁ ଜଙ୍ଗଲ ବିଭାଗର ସମସ୍ୟା ବୁଝିବାକୁ ଅବଶ୍ୟ କିଛି ସମୟ ଲାଗିଥିଲା ।

**ଶାନ୍ତି ଓ ଅଶାନ୍ତି :**

୧୯୪୭ ମସିହା ବେଳକୁ, ବିଶ୍ୱରେ ଚିର ଶାନ୍ତି ପ୍ରତିଷ୍ଠା ହେଉ, ଆଉ ଯୁଦ୍ଧ ନହେଉ ବୋଲି ଏକ ମନୋଭାବ ଦେଖାଦେଇଥାଏ । ତାକୁ ସାକାର କରିବା ଲାଗି ବିଶ୍ୱର ବିଭିନ୍ନ ଦେଶରେ ଶାନ୍ତି ସମ୍ମିଳନୀ ହେଉଥାଏ । ତାହାର ପୁରୋଧା ଥିଲେ ହୋରେସ୍ ଆଲେକ୍‌ଜାଣ୍ଡର୍ । ୧୯୪୮ ମସିହା ଜାନୁଆରି ମାସରେ ରାସୁଲିଆଠାରେ ନିଖିଳ ଭାରତ ଶାନ୍ତି ସମ୍ମିଳନୀ ବସିଥିଲା । ନବକୃଷ୍ଣ ଚୌଧୁରୀଙ୍କ ଦୃଷ୍ଟିକୋଣ ଥିଲା ସବୁବେଳେ ବିଶ୍ୱାଭିମୁଖୀ । ସେ ଉକ୍ତ ସମ୍ମିଳନୀକୁ ନିମନ୍ତ୍ରିତ ହୋଇ ଯାଇଥିଲେ ବୋଲି ସେ ସମୟର ଚିଠିପତ୍ରରୁ ଜଣାପଡ଼େ । ବିଶ୍ୱରେ ଶାନ୍ତି ପ୍ରତିଷ୍ଠିତ ହୋଇଆସିଲା ବେଳକୁ ଭାରତ ବିଭାଜନ ପରେ ଗୁରୁତର ସାମ୍ପ୍ରଦାୟିକ ବିଦ୍ୱେଷ ଦେଖାଦେଇଥାଏ । ସେଥିରେ ଅତିଷ୍ଠ ହୋଇ ୧୯୪୭ ନଭେମ୍ବର ପହିଲାରେ ଆଲିଗଡ଼ ବିଶ୍ୱବିଦ୍ୟାଳୟରୁ ଜଣେ ମୁସଲମାନ ବନ୍ଧୁ ତାଙ୍କର ଦୟନୀୟ ଅବସ୍ଥା ଓ ଦିଲ୍ଲୀ ତଥା ପଶ୍ଚିମ ଉତ୍ତର-ପ୍ରଦେଶର ପରିସ୍ଥିତି ବର୍ଣ୍ଣନା କରି ଓଡ଼ିଶାରେ ବସବାସ କରିବା ଦିଗରେ ସହାୟତା ପାଇଁ ନବବାବୁଙ୍କୁ ଅନୁରୋଧ କରି ଏକ ଚିଠି ଲେଖିଛନ୍ତି । କିନ୍ତୁ ଏହି ସାମ୍ପ୍ରଦାୟିକ ବିଦ୍ୱେଷ କ୍ରମେ ବୃଦ୍ଧି ପାଇଛି ଓ ୧୯୪୮ ଜାନୁଆରି ୩୦ ତାରିଖ ଦିନ ଗାନ୍ଧିଜୀ ଜଣେ ଆତତାୟୀ ଗୁଳିରେ ପ୍ରାଣ ହରାଇଛନ୍ତି । ଏହି ଦାରୁଣ ଦୁଃଖଦ ଯନ୍ତ୍ରଣା ଉପଶମ ନହେଉଣୁ ନବବାବୁଙ୍କ ଉପରେ ଜୀବନର ସବୁଠାରୁ ବଡ଼ ଧକ୍କା ଆସି ଲାଗିଛି । ମାର୍ଚ୍ଚ ୧୨ ତାରିଖରେ ତାଙ୍କର ଏକମାତ୍ର ପୁଅ କାଲୁ (ବିନାୟକ) ଆତ୍ମହତ୍ୟା କରିଛି ।



□ ଷଷ୍ଠ ଅଧ୍ୟାୟ □

# ପୁତ୍ରଶୋକ

**କାଲୁ :**

ଗୋପବନ୍ଧୁ ଚୌଧୁରୀଙ୍କ ପୁଅଝିଅ ପିଲାଦିନରୁ ବାପମା'ଙ୍କ ପାଖରେ ବଢ଼ିଥିଲେ ଓ ସେମାନେ ପ୍ରଚଳିତ ବିଦ୍ୟାଳୟକୁ ନ ଯାଇଥିଲେ ବି ଘରେ ବାପା, ମା'ଙ୍କ ପାଖରେ ଶିକ୍ଷା ଲାଭ କରିଥିଲେ ଏବଂ ଘରୋଇ ଶିକ୍ଷକମାନେ ସେମାନଙ୍କୁ ପଢ଼ାଉଥିଲେ । କିନ୍ତୁ ନବକୃଷ୍ଣ ଚୌଧୁରୀଙ୍କ ପିଲାମାନେ ବର୍ଷେ, ଦୁଇବର୍ଷ ବୟସରୁ ଜେଲ୍ ଯାଇଛନ୍ତି । ବାପା ଓ ମା' ବିଭିନ୍ନ ଆନ୍ଦୋଳନ ସମ୍ପର୍କୀୟ ଆଲୋଚନାରେ ବ୍ୟସ୍ତ ଥିବାବେଳେ ସେମାନେ ଆବ୍‌ଦାର କଲେ, ତାଙ୍କୁ କୁହାଯାଏ ଯେ ବେଶି ଗୋଳମାଳ କଲେ ପାଇଖାନା ଘରେ ବନ୍ଦ କରି ରଖିଦିଆଯିବ (ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କ ଅତ୍ୟନ୍ତ ଘନିଷ୍ଠ ବ୍ୟକ୍ତି ଜୟକୃଷ୍ଣ ମହାନ୍ତିଙ୍କ କହିବା ଅନୁସାରେ) । ବାପା ମା' ବାରମ୍ବାର ଜେଲ୍ ଯାଉଥିବାରୁ ସେମାନେ ଜେଜେମା' ବା ମାମୁଘରେ ଅଥବା କଂଗ୍ରେସ କର୍ମୀମାନଙ୍କ ପାଖରେ ଅନେକ ସମୟ ରହୁଥିଲେ । ଏହି କାରଣରୁ ସେମାନେ ଛୋଟବେଳର ସ୍ନେହ, ଆଦର ଓ ଯତ୍ନରୁ ବି କିଛି ପରିମାଣରେ ବଞ୍ଚିତ ହୋଇଥିଲେ । ସେତେବେଳେ ରମାଦେବୀ ଓ ଅନ୍ନପୂର୍ଣ୍ଣାଦେବୀ ଆଦି ବରୀରେ ରହୁଥାନ୍ତି । ପିଲାଙ୍କ ମନଲାଖି ଖାଇବା ପ୍ରସ୍ତୁତ କରିବା ଲାଗି ମାଳତୀ ଦେବୀଙ୍କର ବେଳ ନ ଥାଏ ଓ ସେମାନଙ୍କ ସାଙ୍ଗରେ ହସଖୁସିରେ ସମୟ କଟାଇବାକୁ ତର ବି ମିଳେନା । ବିଭିନ୍ନ ଆନ୍ଦୋଳନ ବା ସଭା, ସମ୍ମିଳନୀରୁ ଫେରିଲା ପରେ ହୁଏତ କେଉଁଠୁ କେହି ନେତା ବା କର୍ମୀ ଆସିଥିବେ, ଯାହାଙ୍କ ସହିତ କିଛି ଜରୁରୀ ଆଲୋଚନା କରିବାକୁ ଥିବ । ଏହି ସମୟରେ ପିଲାଙ୍କ ଅଳିଅର୍ଦ୍ଦଳି ଶୁଣିବାକୁ ବେଳ କାହିଁ ? ଏପରିକି ଦେହପା' ଖରାପ ଥିଲେ ବି ତାଙ୍କ ପାଖରେ ରହି ହୁଏନା । ଥରେ କାଲୁର ଅନୁଗୋଳଠାରେ ଖୁବ୍‌ପତଳା ଝାଡ଼ା ହେଉଥାଏ । ଗଡ଼ଜାତ ଆନ୍ଦୋଳନ ସଂକ୍ରାନ୍ତରେ କଟକରେ କିଛି ଜରୁରୀ କାମ ଯୋଗୁଁ ସେହି ଅବସ୍ଥାରେ ବି ନବବାବୁ ଓ ମାଳତୀ ଦେବୀ ବାବାଜୀଭାଇ (ବଳଭଦ୍ର ମିଶ୍ର) ଓ ଗୋବିନ୍ଦ ଚନ୍ଦ୍ର ମହାନ୍ତିଙ୍କ (ସ୍ୱାଧୀନତା ସଂଗ୍ରାମୀ) ଦାୟିତ୍ୱରେ କାଲୁକୁ ଛାଡ଼ି କଟକ ଚାଲି ଆସିଥିଲେ ବୋଲି ଗୋବିନ୍ଦ ବାବୁ କହନ୍ତି ।

କାଲୁର ପଢ଼ାପଢ଼ି ପ୍ରତି ବାପା ମା'ଙ୍କର ବିଶେଷ ନଜର ନଥାଏ । ଘରୋଇ ଭାବରେ କିଛି ପଢ଼ି ସେ ଅନୁଗୋଳ ଜିଲ୍ଲା ସ୍କୁଲର ୮ମ ଶ୍ରେଣୀରେ ନାମ ଲେଖାଇଲା । ଅନୁଗୋଳ ହାଇସ୍କୁଲରେ ଭଲ ପଢ଼ାପଢ଼ି କରୁନଥିବାରୁ ତା'କୁ ଆଣି କଟକର କଲିଜିଏଟ୍ ସ୍କୁଲରେ ପଢ଼ାଇବାର ବ୍ୟବସ୍ଥା କରାଗଲା । କାଲୁ କିନ୍ତୁ ଅନୁଗୋଳ ଛାଡ଼ିବାକୁ ଇଚ୍ଛା କରୁ ନଥିଲା । ମାଳତୀ ଦେବୀ ଏ ବ୍ୟବସ୍ଥା କରିଥିଲେ ବୋଲି ନବବାବୁଙ୍କ ଏକ ଚିଠିରୁ ଜଣାପଡ଼େ । କଲିଜିଏଟ୍ ସ୍କୁଲରେ ବି କାଲୁ ଭଲ ପାରିଉଠି ପାରୁନଥାଏ । ବାପା ଓ ମା' ଅଗଷ୍ଟ ଆନ୍ଦୋଳନରେ ଦୀର୍ଘକାଳ ଜେଲ୍‌ରେ ରହିଯିବାରୁ ସେ ଅନେକ ସମୟ ମାମୁଙ୍କ ଘରେ ରହିଯାଏ । ସହପାଠୀ କରୁଣାକର ପରିଡ଼ାଙ୍କ ନୋଟ୍ ଆଣି ପଢ଼ି ପାସ୍ କରେ । ସେ ବେଶ୍ ବୁଦ୍ଧିମାନ୍ । କିନ୍ତୁ ଅଳ୍ପ ବୟସରୁ ମନ ତା'ର ରାଜନୀତି ଆଡ଼କୁ । ସ୍କୁଲରେ ପଢୁଥିଲା ବେଳେ ବି ସେ ମେହେନ୍ତର ସଂଘର ନେତା । ଏଣୁ ମାଟ୍ରିକ୍ ପରୀକ୍ଷାରେ ସେ ଭଲ କରିପାରିଲା ନାହିଁ । ଆଇ.ଏସ୍‌ସି. ପଢ଼ିଲା ବେଳକୁ ସେ ଏକ ଛାତ୍ରନେତା । କ୍ଲାସ ପଢ଼ାପଢ଼ି ନାମକୁ ମାତ୍ର । ଦେଶ ସ୍ୱାଧୀନ ହେଲାପରେ ପଢ଼ାପଢ଼ିକୁ ଏଭଳି ହେଳା କରି ନେତା ବନିବାଟାକୁ ନବବାବୁ ଓ ମାଳତୀ ଦେବୀ ପସନ୍ଦ କରୁନଥିଲେ । ମେହେନ୍ତର ସଂଘ କାମ ସାରି ସେ ରାତି ହେଲେ 'କୃଷକ' ପତ୍ରିକା ଧରି କଟକ ସହରରେ ବୁଲି ବିକେ । ଏହାଛଡ଼ା ସୋସାଲିଷ୍ଟ ପାର୍ଟିର କିଛି କାର୍ଯ୍ୟକ୍ରମ ଥିଲେ, ସେ ସମ୍ପର୍କରେ ଆଲୋଚନା କରି ଫେରିଲା ବେଳକୁ ରାତି ବେଶ୍ ଡେରି ହୋଇଯାଇଥାଏ । ବିରକ୍ତ ହୋଇ ମାଳତୀ ଦେବୀ ପୂଝାରୀକୁ କହିଥିବେ, ''ତା' ଲାଗି ଖାଇବା ଘୋଡ଼ାଇ ରଖିଦେବୁ !''

କାଲୁର ପିଲାଦିନୁ ଟିକିଏ ଟାଉକା ଖୋଇ ଥାଏ । କ୍ଷୀର ଥିଲେ ତହିଁରୁ ସେ ସର ଖାଇଯାଏ । ଘରେ ଛେନା ବା ମାଂସ ତରକାରି ହୋଇଥିଲେ କାଲୁ ନିଜ ହାତରେ ତହିଁରୁ ଖାଇଯାଏ ବୋଲି ମାଳତୀ ଦେବୀ ତାକୁ ତିରସ୍କାର କରନ୍ତି ବୋଲି ଶୁଣାଯାଏ । କି ବିରାଟ ଅପରାଧ ସେ କଲା ? ନିଜେ ଶ୍ରୀକୃଷ୍ଣ ତ ଏଭଳି କରୁଥିଲେ ! ସେଥିପାଇଁ ଏଭଳି ଭର୍ତ୍ସନା ! କାଲୁକୁ ଏସବୁ ଖୁବ୍ ବାଧେ ।

କାଲୁ ବିଭିନ୍ନ ସଭାସମିତିରେ ସରକାରଙ୍କ କାର୍ଯ୍ୟକଳାପକୁ ସମାଲୋଚନା କଲା । (ମା'ଙ୍କ ଯୋଗୁଁ) ବଙ୍ଗାଳୀଙ୍କ ପ୍ରଭାବ ଓ ପ୍ରତିପତ୍ତି ଶାସନରେ ବଢ଼ିଛି ବୋଲି ଅନ୍ୟମାନଙ୍କ ଭଳି କହେ । ଏସବୁ କଥା ନବବାବୁ ଓ ମାଳତୀ ଦେବୀଙ୍କ କାନରେ ପଡ଼େ । ପ୍ରତିକ୍ରିୟାଟା ମାଳତୀଦେବୀଙ୍କର ହୁଏ ବେଶି । କ୍ରମେ ମା', ପୁଅଙ୍କର ତିକ୍ତତା ବଢ଼େ ଓ ମା' ପୁଅକୁ ଗଞ୍ଜଣା ଦେବା ଭଳି କେତେକ କାମ କରନ୍ତି । ନବବାବୁଙ୍କ ମହତାବବାବୁ, ନିଜର ନେତା କହିବାଟା ଖାଲି ବାଙ୍କବିହାରୀ ଦାସଙ୍କୁ ଆଘାତ ଦେଇ ନ ଥିଲା, କାଲୁ ଭଳି ସବୁ ସୋସାଲିଷ୍ଟଙ୍କୁ ବାଧିଥିଲା । ଏହି କାରଣରୁ ସେ କ୍ରମେ ବାପାଙ୍କଠାରୁ ଦୂରେଇଯାଏ ।

ନବବାବୁ ମନ୍ତ୍ରୀ ଥିଲାବେଳେ ଗଦାଧର ଦତ୍ତ ଥାଆନ୍ତି ବିଧାନସଭା କଂଗ୍ରେସ ଦଳର ସମ୍ପାଦକ ତଥା ପ୍ରାଦେଶିକ କଂଗ୍ରେସ କମିଟିର ସମ୍ପାଦକ । ସେ ଅନେକ ସମୟରେ ନବବାବୁଙ୍କ ପାଖକୁ ନାନା ପରାମର୍ଶ ପାଇଁ ଆସନ୍ତି । ତାଙ୍କ ଝିଅ ଭାରତୀ କାଲୁର ସମବୟସୀ । ଏକ ବିବାହ ସମାବେଶରେ କାଲୁର ଭାରତୀ ସହିତ ଆଳାପ ହୁଏ । ଏହାପରେ ଗଦାଧର ଦତ୍ତ ଘରେ ନ ଥିବା ବେଳେ କାଲୁ ତାଙ୍କ ଘରକୁ ଆସି ଭାରତୀ ସହ ଆଳାପ କରେ । ଏ ଉଭୟଙ୍କର ଘନିଷ୍ଠତା ଜଣାଯିବା ପରେ ନବବାବୁ ଭାରତୀର ଶୀଘ୍ର ବିବାହ ପାଇଁ ଗଦାଧର ଦତ୍ତଙ୍କୁ ପରାମର୍ଶ ଦେଲେ ।

କାଲୁ ଘର ଅପେକ୍ଷା ବାହାରେ ବେଶି ସମୟ କଟାଏ । ପୂର୍ବ ଛାତ୍ରାବାସର କରୁଣାକର ପରିଡ଼ାଙ୍କଠାରୁ ଦିନେଦିନେ ଯାହା ଥାଏ, ମାଗି ଖାଏ । ମୃତ୍ୟୁର ପୂର୍ବଦିନ ପ୍ରାୟ ୫ଟା ବେଳକୁ ସେ ରସାୟନ ବିଭାଗର ବି.ଏସ୍‌ସି. ପରୀକ୍ଷାଗାରକୁ ଆସି କିଛି ରାସାୟନିକ ପଦାର୍ଥ ଖୋଜୁଥିଲା ; ପ୍ରାୟ ପାଇଲା ନାହିଁ । ଏ ବହିର ଲେଖକ ସେତେବେଳକୁ ନିଜର କାର୍ଯ୍ୟସାରି ବିକର୍ ବେସିନ୍ ଧୋଇ ରଖୁଥାଏ । ପିଲାମାନଙ୍କର କାହାର କିଛି ରାସାୟନିକ ଦ୍ରବ୍ୟ ଦରକାର ହେଲେ ଏଭଳି ଖୋଜନ୍ତି ଓ ନିଅନ୍ତି । କିନ୍ତୁ କଅଣ ନେଲା କି ନନେଲା, ତାହା ଲକ୍ଷ୍ୟ କରିବାକୁ ଲେଖକର ଧ୍ୟାନ ନଥିଲା ।

ପରଦିନ ସକାଳ ପ୍ରାୟ ୯ଟା ବେଳକୁ କାଲୁ କରୁଣାକର ପରିଡ଼ାଙ୍କ ପାଖରେ ପହଞ୍ଚେ । ଛଅବର୍ଷର ବନ୍ଧୁତା । କରୁଣାକରଙ୍କୁ ଅତି ଆପଣା ଭାବରେ ଡାକେ 'ମଫସଲୀ' । ତାଙ୍କୁ କହିଲା ''ଆଇ.ଏସ୍‌ସି. ପରୀକ୍ଷା ଦେବି ନାହିଁ । କେମିଷ୍ଟ୍ରି ଲାବୋରେଟୋରୀରେ ଟିକିଏ କାମ ଥିଲା । ଅଳ୍ପ ସମୟ ତୋ' ପାଖରେ ରହିବି । ସବୁଦିନ ପାଇଁ ଚାଲିଯିବି ।'' ତିନି ଚାରିଦିନ ହେଲା ଭଲକରି ଖାଇନାହିଁ ବୋଲି କହିଲା । କରୁଣାକର ପରିଡ଼ାଙ୍କ ପାଖରେ ଥିବା ଭଜା-ଚୁଡ଼ା ଗୁଣ୍ଡ, ଘିଅ, ଚିନି ଖାଇ ଉଠିଲା । କହିଲା, ''କରୁଣା, ଯାଉଛି, ଏ ବୋଧହୁଏ ତୋ ସହିତ ଶେଷ ଦେଖା ।'' କରୁଣାକରବାବୁ ସେଭଳି ପାଗଳାମି ନ କରିବାକୁ କହିବାରୁ କହିଲା, ''ମୁଁ ଯାଉଛି । ତୁ ପଢ଼ାପଢ଼ି କର୍ । ତୁ ପରୀକ୍ଷାରେ ଭଲ କର୍, ଏହା ବାପିର ଇଚ୍ଛା (ନବବାବୁଙ୍କୁ ନିଜ ପୁଅଝିଅଙ୍କ ସମେତ ସାନମାନେ 'ବାପି' ବୋଲି ଡାକନ୍ତି) । ବେଳେବେଳେ ସମୟ କରି ବାପି ପାଖକୁ ଯାଇ କଥାବାର୍ତ୍ତା ହୋଇ ଆସୁଥିବୁ ।'' ଏମିତି କହୁ କହୁ ହଠାତ୍ କହିଲା, ''ମୋର ଟିକିଏ ବି.ଏସ୍‌ସି. ଲାବୋରୋଟୋରୀରେ କାମ ଅଛି, ଯାଉଛି । ପ୍ରକୃତରେ ଆଉ ତୋ' ସହିତ ଦେଖା ହେବ ନାହିଁ । ଏତିକି କହି ସେ କରୁଣାକର ପରିଡ଼ାଙ୍କୁ କୁଣ୍ଢେଇ ଧରିଲା । ସେ ତା' ପରେ ଚାଲିଗଲା ।'' କରୁଣାକରବାବୁ ପରୀକ୍ଷା ପାଇଁ ବେଶ୍ ବ୍ୟସ୍ତ ଥିଲେ । ସେ ଟିକିଏ ଚିନ୍ତିତ ହୋଇ ପଢ଼ିବସିଲେ । ସେ ଦିନ ୨ଟା ବେଳେ କାଞ୍ଚନମେଣ୍ଟ

ରୋଡ୍‌ର ୭ ନମ୍ବର କୋଠିକୁ କାଲୁର ମୃତଶରୀର ଡାକ୍ତରଖାନାରୁ ଆସିଲା । କାଲୁ ପୋଟାସିୟମ୍ ସାଏନାଇଡ୍ ପୂର୍ବଦିନ ଖୋଜି ପାଇ ନଥିଲା ; ସେଦିନ ଆଣିଥିଲା ପୋଟାସିୟମ୍ ଫେରୋ ସାଏନାଇଡ୍, ଏଣୁ ତାକୁ ଖାଇବା ପରେ ହଠାତ୍ ମୃତ୍ୟୁ ନ ହୋଇ ପ୍ରାୟ ୪୫ ମିନିଟ୍ ପରେ ହେଲା ।

କାଲୁର ମୃତ୍ୟୁ ଦିନ ମନମୋହନ ଚୌଧୁରୀ ନବବାବୁଙ୍କ ୭ନଂ କୋଠିରୁ ବରୀ ଅଭିମୁଖରେ ବାହାରିଲାବେଳକୁ କାଲୁକୁ ସାଇକେଲ୍‌ରେ ଫେରିବା ଦେଖିଲେ । ସେ ଆସନ୍‌ସୋଲ୍ ଟ୍ରେନ୍‌ରେ ଯାଜପୁର, ବିଞ୍ଝାରପୁର ଦେଇ ବସାରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ପୂର୍ବରୁ ଯାଜପୁର ଲୋକାଲବୋର୍ଡ୍ ଚେୟାରମ୍ୟାନ ବିପିନବିହାରୀ ଦାସ ଏହି ଖବର ପାଇ, ଜଣେ ବାର୍ତ୍ତାବହଙ୍କୁ ସାଇକେଲରେ ପଠାଇ, ବରୀରେ ଏହା ପହଞ୍ଚାଇଦେଇଥିଲେ । ମୋର ବାଲ୍ୟ ସହପାଠୀ ବିଚିତ୍ରାନନ୍ଦ ମହାନ୍ତି ସେହି ରାତିରେ କେନ୍ଦ୍ରାପଡ଼ା ଆସି ଏକ ବଳଦଗାଡ଼ି ନେଇ ଇନ୍ଦୁପୁରରେ ପହଞ୍ଚିଥିଲେ । ରମାଦେବୀ ପରଦିନ ସକାଳୁ କେନ୍ଦ୍ରାପଡ଼ା ଦେଇ କଟକ ଆସିଥିଲେ । ବରୀରେ କାଲୁର ଆତ୍ମହତ୍ୟା ଖବର ପହଞ୍ଚିଥାଏ । ସେତେବେଳକୁ ଶରତଚନ୍ଦ୍ର ମହାରଣା ଅସୁସ୍ଥ ଥାଆନ୍ତି । ଏଣୁ ଚୁନୀଅପା ବରୀରେ ରହିଲେ । କାଲୁର ହାଫ୍ ପ୍ୟାଣ୍ଟ ଓ ଗଞ୍ଜି ଏବଂ ସେ ଯେଉଁ ଘଣ୍ଟା ପିନ୍ଧିଥିଲା, ନବବାବୁ ତାକୁ ପିନ୍ଧି ବୁଲିଲେ । ସେହି ଘଣ୍ଟାର ଫିତା ତଳେ ଯେଉଁ ଚିଠିଟି କାଲୁ ଲେଖି ଗୁଞ୍ଜିଦେଇଥିଲା, ତାହା ଥିଲା ତା'ର ଶେଷ ଚିଠି । ଦି' ତିନିଦିନ ପରେ ସମସ୍ତେ ବରୀ ଚାଲିଗଲେ ଓ ନବବାବୁ ବି ସେହି ବେଶରେ ଗଲେ । ସେଠାରେ ସେ ଚୁନୀଅପାଙ୍କୁ, କାଲୁ କିଛି କେବେ କହିଥିଲା କି ବୋଲି ପଚାରିଥିଲେ । କିନ୍ତୁ ଚୁନୀଅପା ଏ ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ । ତାଙ୍କର ମନେପଡ଼ିଗଲା କୁନ୍ତଳାକୁମାରୀ ସାବତଙ୍କ ଭବିଷ୍ୟତ ବାଣୀ । ୧୯୩୧ ମସିହାରେ ବାଲେଶ୍ୱରରେ ଏକ ବିରାଟ ନାରୀ ସମ୍ମିଳନୀ ହୋଇଥିଲା । ସେଥିରେ ଅଧ୍ୟକ୍ଷତା କରିଥିଲେ ନାରୀନେତ୍ରୀ ଓ ସାହିତ୍ୟିକା କୁନ୍ତଳାକୁମାରୀ । ସମ୍ମିଳନୀ ପରେ ବୁବୁ (ଉତ୍ତରା)ର ହାତ ଦେଖି କୁନ୍ତଳାକୁମାରୀ କହିଥିଲେ "ଏ ଝିଅ ବହୁ ଦୂରରେ ବିବାହ କରିବ । ଇଏ ବଙ୍ଗୋପସାଗର କୂଳରୁ ଆରବ ସାଗର କୂଳକୁ ଚାଲିଯିବ ।" ମାଳତୀଦେବୀଙ୍କ ହାତ ଦେଖି କହିଥିଲେ ଯେ ତାଙ୍କର ଏକମାତ୍ର ପୁତ୍ର ଖୁବ୍ ବୁଦ୍ଧିମାନ ହେବ, କିନ୍ତୁ ସେ ବେଶିଦିନ ବଞ୍ଚିବ ନାହିଁ । ତାଙ୍କ ସ୍ୱାମୀଙ୍କୁ ଜଣେ ନିଜ ଲୋକ ଛୁରୀ ଭୁସିବ । ନିଜ ହାତର ରେଖାରୁ ସେ ଭବିଷ୍ୟତବାଣୀ କରିଥିଲେ ଯେ ତାଙ୍କର ଏକ ପୁଅ ହେବା ପରେପରେ ସେ ବି ମରିଯିବେ । ଚୁନୀଅପାଙ୍କର ହାତରେଖା ଓ ଜାତକରେ ଆଗ୍ରହ ନଥିଲେ ବି ଏହି ଚାରିଟି ଘଟଣାର ସତ୍ୟତା କଥା ସେ ଏବେ କହନ୍ତି । କାଲୁ ବୟସ୍କ ବ୍ୟକ୍ତି ନହୋଇଥିଲେ ବି ତା' ଲାଗି ବୁଲୁବାବୁ ଓ ନବବାବୁ ଆଦି ଲଣ୍ଡା ହୋଇଥିଲେ । କିନ୍ତୁ ଏକାଦଶାହ ପାଳନ ହୋଇନଥିଲା । ବ୍ରାହ୍ମଣ ଡକାଯାଇନଥିଲା ।

ମାଳତୀଦେବୀ ଛଅମାସ କାଳ କାନ୍ଦି ହେଲେ । କହିଲେ, ''କାଲୁ ମୋ' ପାଇଁ ମଲା ।'' ନବବାବୁ ଆଦି ଅନୁଗୋଳ ଯିବାପରେ ମାଳତୀଦେବୀଙ୍କର ଏହି ଶୋକରେ ବେଳେବେଳେ ଚେତା ଚାଲିଯାଉଥିଲା । ତେଣୁ ତାଙ୍କୁ କିଛି ଦିନ ଅନୁଗୋଳ ଡାକ୍ତରଖାନାରେ ରଖାହେଲା । ପାଖରେ ନବବାବୁଙ୍କ ସଙ୍ଗରେ ଦିବାକର ପ୍ରଧାନ ଆଦି ପାଳିକରି ରହନ୍ତି । ମାଳତୀଦେବୀ ଆଶ୍ରମକୁ ଫେରିଲା ପରେ ତାଙ୍କ ମନକୁ ହାଲୁକା କରିବାପାଇଁ ନବବାବୁ ଅନେକ ସମୟରେ ହସୁଥିଲେ ଓ ମାଳତୀଦେବୀଙ୍କୁ ଖୁସି କରିବାକୁ ଚେଷ୍ଟା କରୁଥିଲେ । କିନ୍ତୁ ତହିଁରେ ଥିଲା ଅନେକଟା ଅସ୍ୱାଭାବିକତା । କିଛି ଲୋକ ଭାବିଲେ ନବବାବୁଙ୍କର ମୁଣ୍ଡ ଖରାପ ହୋଇଗଲାଣି । ଦିନେ ରାତିରେ ତାଙ୍କ ସାନଝିଅ ତିନୁ ଏକ କାନ୍ଦ ଶୁଣି ଉଠି ଦେଖେ ତ ନବବାବୁ ଏକ ଗଛମୂଳରେ ଭୋ ଭୋ ହୋଇ କାନ୍ଦୁଛନ୍ତି । କେହି ହଠାତ୍ ତାଙ୍କ ପାଖକୁ ଗଲେ ନାହିଁ । କହିଲେ, ସେ ହୃଦୟ ଖୋଲି କାନ୍ଦନ୍ତୁ । ଆଉ ତାଙ୍କୁ କାନ୍ଦିବାର ଦେଖାଯାଇ ନଥିଲା । କିନ୍ତୁ ମୃତ୍ୟୁ ପର୍ଯ୍ୟନ୍ତ କାଲୁର ଶୋକ ତାଙ୍କ ହୃଦୟରେ ଚାପିହୋଇ ରହିଥିଲା । ଯେତେବେଳେ ସାନଝିଅ ତିନୁର ବଡ଼ପୁଅ ଏକ ଦୁର୍ଘଟଣାରେ ମରିଗଲା, ସେହି ଖବର ପାଇଲା ପରେ ସେ କାଲୁ କଥା ମନେପକାଇ କାନ୍ଦି କହିଥିଲେ, ''ମୋ'ର ବି ଗୋଟିଏ ପୁଅ ଥିଲା !''

କାଲୁର ମୃତ୍ୟୁ ସମ୍ପର୍କରେ ସେ ସମୟରେ କେତେକଥା ଶୁଣାଗଲା । କିନ୍ତୁ କେହି ସମ୍ପୂର୍ଣ୍ଣ ଓ ବାସ୍ତବ କାରଣ ରୋକ୍‌ଠୋକ୍ ଭାବରେ କହୁନଥିଲେ ବା ଏପର୍ଯ୍ୟନ୍ତ ବି କହନ୍ତି ନାହିଁ । କଥାଟି ଏଡ଼େ ଦୁଃଖଦାୟକ ଯେ ଏ ସମ୍ପର୍କରେ କେହି ମାଳତୀଦେବୀ ବା ନବବାବୁଙ୍କୁ ପଚାରନ୍ତି ନାହିଁ ବା ତାଙ୍କ ସମ୍ପର୍କୀୟମାନେ ଏ ବିଷୟରେ ଆଉ ଆଲୋଚନା କରିବାକୁ ସାହସ କରନ୍ତି ନାହିଁ । କାଲୁ ବଞ୍ଚିଥିଲା ପର୍ଯ୍ୟନ୍ତ ବାଙ୍କବିହାରୀ ଦାସ କିଛି ବର୍ଷ ୭ ନମ୍ବର କ୍ୟାଣ୍ଟନ୍‌ମେଣ୍ଟ ରୋଡ଼୍‌ରେ ନବବାବୁଙ୍କ ବସା ବାରଣ୍ଡାରେ ଶୁଅନ୍ତି । କାଲୁ ପାଖ ଖଟରେ ଶୁଏ । ସେ ବି କଅଣ କିଛି ସୂଚନା ପାଇଲେ ନାହିଁ ? ବାଙ୍କବାବୁ କଅଣ କିଛି ଜାଣିକରି ବି ଲୁଚାଇଲେ ? କାଳେ ନବବାବୁଙ୍କ ମନରେ ଏହି ଧାରଣା ଥିବ, ସେହି ଆଶଙ୍କାରେ କାଲୁର ମୃତ୍ୟୁ ପରେପରେ ବାଙ୍କବାବୁ ନବବାବୁଙ୍କୁ କହିଦେଇ ତାଙ୍କ ଘରୁ ବିଦାୟ ନେଲେ । ଗୋପବନ୍ଧୁ ଚୌଧୁରୀଙ୍କ ପରିବାର ଯାଜପୁରର ବରୀ ଅଞ୍ଚଳରେ ବହୁ ବର୍ଷ ଧରି ରଚନାତ୍ମକ କାମ କରୁଥିଲେ । ଏଣୁ ବୁବୁ ଓ କାଲୁ ସହିତ ସେମାନଙ୍କର ସମ୍ପର୍କ ଥିଲା ଅତି ସାମୟିକ । କେବେ କଟକ ଆସିଲେ ଦେଖାଦେଖି । କିନ୍ତୁ କାଲୁ ମନରେ ଭୟଙ୍କର ଦ୍ୱନ୍ଦ୍ୱ ଓ ଅଶାନ୍ତି ଯେ ସୃଷ୍ଟି ହୋଇଥିଲା, ଗୋପବନ୍ଧୁ ଚୌଧୁରୀ ତା'ର ସୂଚନା ପାଇଥିଲେ ବୋଲି ମନମୋହନ ଚୌଧୁରୀ କହନ୍ତି । ସେ ଯଦି ସେଭଳି ସୂଚନା ପାଇଥିଲେ, ତାହାହେଲେ ସେ କଥା ନବବାବୁଙ୍କୁ କାହିଁକି କହିଲେ ନାହିଁ ବା କାଲୁକୁ କାହିଁକି ବୁଝେଇଲେ ନାହିଁ ? ସାଧାରଣ ଲୋକଙ୍କ ସମସ୍ୟାରେ

ବାପା, ମା', ବଡ଼ବାପା ସମସ୍ତେ ବ୍ୟସ୍ତ । ଏଣୁ କାଲୁ ମନର ନିଆଁ କେହି ଜାଣିପାରିଲେ ନାହିଁ । ନବକୃଷ୍ଣ ଚୌଧୁରୀଙ୍କ ଭଳି ଅନ୍ୟର ମନକୁ ଜାଣିବା ଲୋକଙ୍କ ପକ୍ଷରେ ଏହା ଥିଲା ଅପୂରଣୀୟ ଅବହେଳା ।

ଭାରତୀର ବିବାହ ପରଦିନ କାଲୁର ଆତ୍ମହତ୍ୟା । ଏଣୁ ଅଧିକାଂଶଙ୍କ ଧାରଣା ଯେ ଅନ୍ୟ କାରଣ ଛଡ଼ା ଭାରତୀ ସହିତ ସମ୍ପର୍କ ତା' ମୃତ୍ୟୁର କାରଣ । ବିବାହର କିଛି ବର୍ଷ ପରେ ଭାରତୀ ବି ଆତ୍ମହତ୍ୟା କରିଥିଲା ଓ ମରିବା ପୂର୍ବରୁ ନିଜର ବ୍ୟର୍ଥ ଓ ଅସହନୀୟ ଜୀବନ ତା' ପକ୍ଷରେ ଦୁର୍ବିସହ ବୋଲି ସେ ଏକ ଗଭୀର ଦୁଃଖପୂର୍ଣ୍ଣ କବିତା ଲେଖିଥିଲା ।

ବହୁ ସ୍ୱପ୍ନ, ନାନା ପରିକଳ୍ପନା ନେଇ ଆଗେଇଚାଲିଥିବା ଟାଣୁଆ ନବକୃଷ୍ଣ ଚୌଧୁରୀ ଏଇଠି ଭାଙ୍ଗିପଡ଼ିଛନ୍ତି । କାଲୁର ସାଙ୍ଗ କରୁଣାକର ଆଦି ପ୍ରବୋଧନା ଦେବାକୁ ଗଲେ କାନ୍ଦି କାନ୍ଦି କହନ୍ତି, ''କାହା ପାଇଁ ଆଉ ଆସିବ ?'' କାଲୁ ଅନ୍ୟ କାରଣରୁ ମରିଥିଲେ ନବବାବୁ ହୁଏତ ଏତେ ଭାଙ୍ଗିପଡ଼ିନଥାନ୍ତେ । କିନ୍ତୁ କାଲୁକୁ ସେ ବୁଝିପାରିଲେ ନାହିଁ କି ବୁଝେଇ ପାରିଲେ ନାହିଁ । ସାରା ଜୀବନ ତାଙ୍କର ସେହିଭଳି ଏକ ଅବସୋସ ରହିଗଲା । ସେଇଥିପାଇଁ ପ୍ରାୟ ସେ ବାଜିରାଉତ ଛାତ୍ରାବାସର ଛାତ୍ରଛାତ୍ରୀଙ୍କ ମନକଥା ବୁଝିବା ସଙ୍ଗେସଙ୍ଗେ ଅନ୍ୟତ୍ର ଛୋଟ ପିଲାଙ୍କ ମନକଥା ବୁଝିବା ଲାଗି ସର୍ବଦା ଚେଷ୍ଟା କରୁଥିଲେ ।

ଛୋଟ ପିଲାଙ୍କ ସହିତ ସେ କିଭଳି ମିଶନ୍ତି ଓ ତାଙ୍କ ମନକଥା ଜାଣିବାକୁ ଚେଷ୍ଟା କରନ୍ତି, ତାହାର ଏକ ଦୃଷ୍ଟାନ୍ତ ତାଙ୍କ ମୁଖ୍ୟମନ୍ତ୍ରିତ୍ୱ ବେଳର ଏକ ଘଟଣାରୁ ତାଙ୍କର ପଡ଼ୋଶୀ ତଥା ମୁଖ୍ୟମନ୍ତ୍ରୀଙ୍କ ଆସିଷ୍ଟାଣ୍ଟ ସେକ୍ରେଟେରୀ ସଚ୍ଚିଦାନନ୍ଦ ମିଶ୍ରଙ୍କ ସ୍ତ୍ରୀ ଶାନ୍ତିଧାରା ମିଶ୍ର କହନ୍ତି । ନବବାବୁ ଯେଉଁ ଘରେ ରହୁଥିଲେ, ତା'ରି ପାଖକୁ ଲାଗି ସଚ୍ଚିବାବୁଙ୍କ ବସା । ନବବାବୁ ସେହି ବାଟେ ଗଲାବେଳେ ଯଦି ତାଙ୍କ ୫ ବର୍ଷର ଝିଅ ଆଭା ସହିତ ନବବାବୁଙ୍କର ଭେଟ ହୁଏ, ସଚ୍ଚିବାବୁଙ୍କ ହତାଭିତରର ଘାସ ବଗିଚାରେ ନବବାବୁ ଆଭା ସହିତ ଗପ କରନ୍ତି । ସେ କଥାବାର୍ତ୍ତା ଅନେକ ସମୟ ପର୍ଯ୍ୟନ୍ତ ଚାଲେ । ସେହି ବାଟରେ କେହି ଆସିଗଲେ ସେମାନଙ୍କ କଥାବାର୍ତ୍ତା ବନ୍ଦ ହୋଇଯାଏ ଓ ପଥିକ ଚାଲିଗଲା ପରେ ପୁଣି ସେ କଥାବାର୍ତ୍ତା ଚାଲେ । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କର ଏଭଳି ଛୋଟ ଝିଅଟି ସହିତ କଅଣ ଏତେ କଥାବାର୍ତ୍ତା ହେବାର ଅଛି, ତାହା ତା'ର ବାପା ମା'ଙ୍କୁ ବିସ୍ମୟରେ ପକାଇଦିଏ । ନବବାବୁଙ୍କୁ ଶାନ୍ତିଧାରା ବାରଣ୍ଡା ବା ଘରକୁ ଡାକିଲେ ଆସନ୍ତି ନାହିଁ । ତାଙ୍କର ସେଠାରେ ଆଭା ସହିତ ନିରୋଳା କଥାବାର୍ତ୍ତା ହୋଇପାରିବ ନାହିଁ ।

ପୁତ୍ରଶୋକ ଦୁଃଖ ଏଡ଼େ ହୃଦୟବିଦାରକ ହୋଇଥିଲା ଯେ ବହୁ ବନ୍ଧୁ ସାନ୍ତ୍ୱନା ଦେବାକୁ ଯିବାଲାଗି ଭୟ କରୁଥିଲେ । ଅନେକେ ଆସି ସାନ୍ତ୍ୱନା ଦେବାକୁ ଭାଷା ନ ପାଇ ବିନା ଭାଷାରେ

ବିଦାୟ ନେଉଥିଲେ । ତାଙ୍କର ପ୍ରିୟ ଭଣଜା ଜିତେନ୍ଦ୍ରନାଥ ମହାନ୍ତି ଯେଉଁ ସାନ୍ତ୍ୱନା ପତ୍ର ଲେଖିଥିଲେ, ତା'ରି ଉତ୍ତରରେ ନବବାବୁ ପ୍ରହ୍ଲାଦଙ୍କର ଭଗବାନଙ୍କୁ ମାଗିଥିବା ପ୍ରାର୍ଥନାକୁ ଉଦ୍ଧାର କରିଥିଲେ ।

'ନ ତ୍ୱହଂ କାମୟେ ରାଜ୍ୟମ୍ ନ ସ୍ୱର୍ଗଂ ନାପୁନର୍ଭବମ୍
କାମୟେ ଦୁଃଖତପ୍ତାନାମ୍ ପ୍ରାଣିନାମ୍ ଆର୍ତ୍ତ ନାଶନମ୍'

ଏହାପରେ ଅବଶ୍ୟ ସେ ପୁଣି ମୁଖ୍ୟମନ୍ତ୍ରୀ ଭାବରେ ଆସିଛନ୍ତି ; କିନ୍ତୁ ତାହା ନଥିଲା ଶାସନ-ଉଆସରେ ବିଳାସ ଭୋଗ ଲାଗି ବା ରାଜସିକ ଯଶ ଲାଭ ପାଇଁ । ଜୀବନର ଅବଶିଷ୍ଟ ଅଂଶ, ନିଜର ଶକ୍ତି ଥିବା ପର୍ଯ୍ୟନ୍ତ ସେ ଦୁଃଖତପ୍ତ ପ୍ରାଣୀମାନଙ୍କର ସେବାରେ ନିଜକୁ ଉତ୍ସର୍ଗ କରିଛନ୍ତି, ସେମାନଙ୍କ ଉପରେ ହେଉଥିବା ଅତ୍ୟାଚାର ବେଳେ ସେମାନଙ୍କ ପାଖରେ ପହଞ୍ଚିଛନ୍ତି, ସେମାନଙ୍କୁ ଦମ୍ଭ ଦେଇଛନ୍ତି । ସେହି କାମ ଭିତରେ ନିଜକୁ ଗଭୀର ଭାବରେ ଜଡ଼ିତ କରି ସେ ଶହ ଶହ କାଲୁଙ୍କୁ ଗଞ୍ଜାମର ମାଳ ଅଞ୍ଚଳରେ ଓ କୋରାପୁଟର ଡଙ୍ଗରରେ ଦେଖିଛନ୍ତି ।

ଏସବୁ ସତ୍ତ୍ୱେ ଜୀବନର ଶେଷ ପର୍ଯ୍ୟନ୍ତ କାଲୁ ଓ ଦୁଃଖୀ (ସରଳା ଦେବୀ) ତାଙ୍କ ଭିତରେ ବାରମ୍ବାର ଉଙ୍କିମାରିଛନ୍ତି । ସେ ତାଙ୍କର ଏକାନ୍ତ ବିଶ୍ୱସ୍ତ ବନ୍ଧୁ ଅନ୍ନଦାଶଙ୍କର ରାୟଙ୍କ ପାଖରେ ସ୍ୱୀକାର କରିଛନ୍ତି ଯେ କାଲୁ ମରିଗଲା ପରେ ତାଙ୍କ ଭିତରଟା ନିଃସ୍ୱ ହୋଇଯାଇଛି । 'ଦୁଃଖୀ' (ସରଳା ଦେବୀ)ଙ୍କ ଅବାଟ ଓ ଅବକ୍ଷୟ ପାଇଁ ସେ ଦାୟୀ ନଥିଲେ ; କିନ୍ତୁ ଜୀବନର ପ୍ରଥମ ପ୍ରେମିକାର ପତନ ତାଙ୍କୁ ନିଶ୍ଚିତ ଭାବରେ ଦାରୁଣ ଆଘାତ ଦେଇଛି । ତାଙ୍କର ପ୍ରଥମ ଜୀବନୀ ଲେଖକ ମନସ୍ତତ୍ତ୍ୱବିଦ୍ ଚିତ୍ତରଞ୍ଜନ ଦାସ ନବବାବୁଙ୍କ ମୁହଁରେ ସର୍ବଦା ଏକ ଗଭୀର ଦୁଃଖର ବୋଝ ଲକ୍ଷ୍ୟ କରିଥିଲେ ବୋଲି କହନ୍ତି । ଦେଶର ଦରିଦ୍ର ଲୋକଙ୍କର ଦାରୁଣ ଦୁଃଖ ଓ ନିର୍ଯାତନା ମର୍ମେ ମର୍ମେ ଅନୁଭବ କରୁଥିବା ନବକୃଷ୍ଣ ଚୌଧୁରୀଙ୍କୁ ବ୍ୟକ୍ତିଗତ ଜୀବନର ଏହି ଦୁଇ ଆଘାତ ନିଶ୍ଚିତ ଭାବରେ ସାରା ଜୀବନ ସହିବାକୁ ପଡ଼ିଥିଲା ।

**ମନ୍ତ୍ରିତ୍ୱରୁ ଇସ୍ତଫା :**

କାଲୁର ମୃତ୍ୟୁ ପରେ ନବବାବୁ ମନ୍ତ୍ରୀ ହୋଇ କାମ କରିବା ଅବସ୍ଥାରେ ନଥାନ୍ତି । ଏଣୁ ୧୯୪୮ ମସିହା ଏପ୍ରିଲ ୨୩ ତାରିଖ ଦିନ ସେ ମନ୍ତ୍ରି ପଦରୁ ଇସ୍ତଫାଦେଇ ଅନୁଗୋଳ ଚାଲିଗଲେ । ସେ ବର୍ଷ ଜୁଲାଇ ୧୫ ତାରିଖରେ ଗ୍ରାମ ପଞ୍ଚାୟତ ବିଲ୍‌ର ଆଲୋଚନା ହୋଇଛି । ଶାସନର ବିକେନ୍ଦ୍ରୀକରଣ ତାଙ୍କ ପାଇଁ ଅତି ଗୁରୁତ୍ୱପୂର୍ଣ୍ଣ ବିଷୟ ଥିଲା । କେବଳ ସେହି ଆଲୋଚନାରେ ଅଂଶ ଗ୍ରହଣ କରିବାକୁ ସେ ସେହିଦିନ ବିଧାନସଭା ଆଲୋଚନାରେ ଯୋଗ ଦେଇଛନ୍ତି ।

ତିରିଶ ବର୍ଷର ବନ୍ଧୁ ହରେକୃଷ୍ଣ ମହତାବଙ୍କ ଗତିରୀତି ତାଙ୍କୁ କେମିତି କେମିତି ଲାଗିଚି । ସାରଥି ହୋଇ ମହତାବଙ୍କ ରଥ ଚଳାଇବା ଲାଗି ତାଙ୍କୁ ନିଜର ନେତା ବୋଲି କହି ଆସିଥିଲେ । କିନ୍ତୁ ପ୍ରଧାନମନ୍ତ୍ରୀ ହେବାର ବର୍ଷକ ପରେ ତାଙ୍କଠାରୁ ଆଉ ଗାନ୍ଧିନୀତି କଥା ବିଶେଷ ଶୁଣାଗଲା ନାହିଁ । ୧୯୨୧ରୁ ୧୯୪୨ ପର୍ଯ୍ୟନ୍ତ ମହତାବଙ୍କଠାରୁ, ପ୍ରଧାନମନ୍ତ୍ରୀ ମହତାବ ଅନେକ ଫରକ ଜଣାପଡ଼ିଲେ । ଯେଉଁ ସୋସାଲିଷ୍ଟମାନେ ତାଙ୍କୁ ଟକ୍କର ଦେଇ ଆସିଥିଲେ, ସେମାନଙ୍କୁ ବିଦା କରିବା ଲାଗି ନାନା ଷଡ଼ଯନ୍ତ୍ର ଚାଲିଲା । ମାଳତୀଦେବୀ ତ ସ୍ୱେଚ୍ଛାରେ ରାଜନୀତିରୁ ଚାଲିଯାଇଥିଲେ, ତାଙ୍କର ଏକାନ୍ତ ବିଶ୍ୱସ୍ତ ସୁରେନ୍ଦ୍ର ଦ୍ୱିବେଦୀଙ୍କୁ କଂଗ୍ରେସ ନେତୃତ୍ୱରୁ ବିଦା କରିଦେବା ଲାଗି ବ୍ୟବସ୍ଥା ହୋଇଗଲା । ନବବାବୁ ମନ୍ତ୍ରିମଣ୍ଡଳରୁ ଗଲା ପରେ ପରେ ସାରଙ୍ଗଧର ଦାସଙ୍କ ପାଳି ପଡ଼ିଥିଲା । 'ସମାଜ' ଖବରକାଗଜର ଏକାଧିପତ୍ୟ ଲୋପ କରିବା ଲାଗି 'ପ୍ରଜାତନ୍ତ୍ର'କୁ ଠିଆ କରିବା ଦିଗରେ ନବକୃଷ୍ଣ ଚୌଧୁରୀ ସହଯୋଗ କରିଆସିଥିଲେ ଓ ତା' ଟ୍ରଷ୍ଟର ଅନ୍ୟତମ ସଦସ୍ୟ ବି ଥିଲେ । ସେହି ପ୍ରଜାତନ୍ତ୍ର ପରିସର ନାନା ଗୁପ୍ତ ଯୋଜନାର କେନ୍ଦ୍ର ହୋଇଉଠିଲା । ନବବାବୁଙ୍କ ଟାଣୁଆ ସହକର୍ମୀ ପ୍ରାଣନାଥ ପଟ୍ଟନାୟକ, ମୋହନ ଦାସ ଓ ବୈଷ୍ଣବ ପଟ୍ଟନାୟକ ତ ତାଙ୍କଠାରୁ ଚାଲିଯାଇଥିଲେ; ଏବେ ଅବଶିଷ୍ଟ ସୋସାଲିଷ୍ଟଙ୍କ ବିଦାୟ ଆଭାସ ନବବାବୁଙ୍କୁ ବିଚଳିତ କରିଛି । ଶାସନ କ୍ଷମତାକୁ ଲୋକଙ୍କ ମଙ୍ଗଳ କାର୍ଯ୍ୟରେ ଏକ ଅସ୍ତ୍ରରୂପେ ବିଚାର କରିଆସିଥିବା ନବବାବୁ ସତେ ଯେପରି ସୈନ୍ୟହରା ସେନାପତି ! ସାରା ଜୀବନ ରଥୀ ନ ହୋଇ ସାରଥିର ପଦ ବାଛିନେଇଥିବା ନବବାବୁ ଏବେ କେଉଁ ରଥୀର ସାରଥି ହେବେ, ଯେଉଁ ରଥୀ ସାରଥିର ବାଟରେ ଯିବ ନାହିଁ ? ଓଡ଼ିଶା ପାଇଁ ଯେଉଁ ସମୟରେ ନବବାବୁଙ୍କର ଆବଶ୍ୟକତା ଖୁବ୍ ଥିଲା, ସେ ଠିକ୍ ସେହି ସମୟରେ ଇସ୍ତଫା ଦେଇ ଚାଲିଯାଇଛନ୍ତି । ଏହି ପ୍ରକ୍ରିୟାରେ ନବବାବୁଙ୍କ ଭଳି ଦକ୍ଷ ମନ୍ତ୍ରୀଙ୍କ ଇସ୍ତଫା ମନ୍ତ୍ରିମଣ୍ଡଳକୁ ଦୁର୍ବଳ କରିଥିଲେ ମଧ୍ୟ ତାହା ହରେକୃଷ୍ଣ ମହତାବଙ୍କ ସ୍ଥିତିକୁ ଆହୁରି ସୁଦୃଢ଼ କଲା । ସେ ଏହି ଅବସରରେ ତାଙ୍କର ଜଣେ ଟାଣୁଆ ସମାଲୋଚକ ଉମାଚରଣ ପଟ୍ଟନାୟକଙ୍କୁ ମଧ୍ୟ କଂଗ୍ରେସ ଦଳରୁ ତଡ଼ିଛନ୍ତି । ନବବାବୁଙ୍କ ଇସ୍ତଫାର କାରଣ ସମ୍ପର୍କରେ ମଧ୍ୟ ହରେକୃଷ୍ଣ ମହତାବ ସନ୍ଦିଗ୍ଧ । ପୁଅ ମରିଯିବାର କିଛି ସମୟ ପରେ ନବବାବୁ ମନ୍ତ୍ରିତ୍ୱ ଛାଡ଼ିବା ସମୟକୁ ଲକ୍ଷ୍ୟ କରି ମହତାବବାବୁ କହନ୍ତି, ''୧୯୪୮ ଏପ୍ରିଲ ୨୩ ତାରିଖରେ ଶ୍ରୀ ନବକୃଷ୍ଣ ଚୌଧୁରୀ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଲେ । ଅବଶ୍ୟ ତାଙ୍କର ଏକମାତ୍ର ପୁତ୍ରର ଆତ୍ମହତ୍ୟା ଏ ଇସ୍ତଫାର କାରଣ ଥିଲା ବୋଲି ସେ କହିଲେ ଓ ଆମେ ବିଶ୍ୱାସ କଲୁ । କିନ୍ତୁ ମୋ ମନର ଏକ କୋଣରେ ପ୍ରଚ୍ଛନ୍ନ ସନ୍ଦେହ ରହିଗଲା ଯେ, ସେ ମନ୍ତ୍ରିମଣ୍ଡଳରେ ସୁସ୍ଥ ଅନୁଭବ କଲେ ନାହିଁ । ଯେଉଁମାନଙ୍କ ସହିତ କଂଗ୍ରେସ ସମାଜବାଦୀ ଦଳ ଗଠନ, ଗଡ଼ଜାତ ଆନ୍ଦୋଳନ ଇତ୍ୟାଦ କରିଆସିଥିଲେ, ସେମାନେ ମୋ'ଠାରୁ ନିଜକୁ

ଅଲଗା କରି ନେଇଥିଲେ ; ଯଥା–ମାଳତୀଦେବୀ, ସାରଙ୍ଗଧରବାବୁ ଇତ୍ୟାଦି । ସମସ୍ତଙ୍କୁ ସବୁକଥା ପଚାରି ବୁଝାଇ ଏକମତ କରାଇବା ହୁଏତ ମୁଁ କରିପାରିଲି ନାହିଁ ।''

(ସାଧନାର ପଥେ, ପୃଷ୍ଠା-୩୫୯)

ଏହି ଇସ୍ତଫା ସମ୍ପର୍କରେ ନବବାବୁଙ୍କର ଜଣେ ଅତ୍ୟନ୍ତ ବିଶ୍ୱସ୍ତ ବ୍ୟକ୍ତି ରବୀନ୍ଦ୍ରନାଥ ସାହୁ, ଏହି ଘଟଣାର ବହୁ ବର୍ଷ ପରେ ଥରେ ନବବାବୁଙ୍କୁ ପଚାରିଥିଲେ, ''ଆପଣ କଅଣ ସେଥର ପୁଅ ମରିଯିବାରୁ ମନ୍ତ୍ରିତ୍ୱ ଛାଡ଼ିଦେଇ ଚାଲିଯାଇଥିଲେ ?'' ଉତ୍ତରରେ ନବବାବୁ କହିଥିଲେ, ''ତାହା ହୋଇଥିଲେ ତ ମୁଁ ବାବାଜୀ ହୋଇଯାଇଥାନ୍ତି ।''

ଏଇଥିରୁ ମହତାବବାବୁଙ୍କର ସନ୍ଦେହ ଯେ ଯଥାର୍ଥ, ତାହା ପ୍ରମାଣିତ ହୋଇଯାଏ ।

ପୁଅ ମରିଯିବା ପରେ ତାଙ୍କ ସାନ ଭଣଜା ଜିତେନ୍ଦ୍ର ମହାନ୍ତିଙ୍କ ସମବେଦନାମୂଳକ ଚିଠିର ଉତ୍ତରରେ ନବବାବୁ ଲେଖିଥିଲେ ''ଆମେ ଭଗବାନଙ୍କୁ ଡାକୁଛୁ, ଯେପରି ଅନ୍ୟର ଦୁଃଖ ଘୁଞ୍ଚେଇବା କାମରେ ଆମ ଜୀବନ କଟିଯାଏ ।''

## ଜମିଜମା ସଂସ୍କାର ରିପୋର୍ଟ :

ସେ ଟିକିଏ ପ୍ରକୃତିସ୍ଥ ହେବାପରେ ନବବାବୁଙ୍କ ପରକଳ୍ପିତ 'ଦି ଓଡ଼ିଶା ଲ୍ୟାଣ୍ଡ ରେଭିନିଉ ଆଣ୍ଡ୍ ଲ୍ୟାଣ୍ଡ୍ ଟେନିୟୁର' କମିଟି କାର୍ଯ୍ୟରେ ସହଯୋଗ କରିବାପାଇଁ ତାଙ୍କୁ ଅନୁରୋଧ କରାଗଲା । ସେଥିରେ ସେ ବି ଚେୟାରମ୍ୟାନ ରହିଲେ । ଅନୁଗୋଳରେ ରହିଲେ ମଧ୍ୟ କମିଟି କାର୍ଯ୍ୟ ସୁଚାରୁରୂପେ ଚାଲିଲା । ରିପୋର୍ଟ ଲେଖାହେଲାବେଳକୁ ତାଙ୍କୁ ଜଣେ ଷ୍ଟେନୋ ଦିଆଗଲା । କମିଟିର ବୈଠକ ବେଳେ ସେ କଟକ ଆସୁଥିଲେ । ନିଜେ ଚେୟାରମ୍ୟାନ ଥିଲେ ବି ସେ ସେଥିରେ ତାଙ୍କର ସ୍ୱତନ୍ତ୍ର ମତ ଉଲ୍ଲେଖ କରିଥିଲେ । ସେହି ରିପୋର୍ଟରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ସ୍ୱତନ୍ତ୍ର ମତରେ ଜମିଦାରି ଉଚ୍ଛେଦ ସମ୍ପର୍କୀୟ ଅଭିମତ ଅନୁଧ୍ୟାନଯୋଗ୍ୟ । ଏହି ରିପୋର୍ଟ ଶାସନ ସଂସ୍କାର ଓ ଭୂ-ସଂସ୍କାର ତଥା କୃଷିସଂସ୍କାର ଦିଗରେ ଏକ ଯୁଗାନ୍ତକାରୀ ଦଲିଲ । ଭାରତବର୍ଷର କୌଣସି ପ୍ରଦେଶରେ ଏଭଳି ପରିକଳ୍ପନା ସେପର୍ଯ୍ୟନ୍ତ ହୋଇନଥିଲା । ପୁତ୍ରଶୋକ ସତ୍ତ୍ୱେ ସେ ଏହି କାର୍ଯ୍ୟଟି ଅଳ୍ପ ସମୟରେ ସାରି ୧୯୪୯ ଜୁଲାଇ ୭ ତାରିଖରେ ସରକାରଙ୍କୁ ରିପୋର୍ଟ ଦେଲେ । ସେହି ରିପୋର୍ଟକୁ ଭିତ୍ତି କରି ଓଡ଼ିଶାରେ ଜମିଦାରି ଉଚ୍ଛେଦ ହେଲା ଏବଂ ଭୂ-ସଂସ୍କାର ପାଇଁ ଆଇନ ହେଲା । ଏବକାର ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ ସେହି ରିପୋର୍ଟର ଛାୟାରେ ଗଠିତ । ଶାସନର ବିକେନ୍ଦ୍ରୀକରଣ କାର୍ଯ୍ୟକ୍ରମ ଏହାର ଉଲ୍ଲେଖଯୋଗ୍ୟ ଦିଗ । କିନ୍ତୁ ସେହି ରିପୋର୍ଟରେ ନବକୃଷ୍ଣ ଚୌଧୁରୀ ଯେଉଁ ଅଞ୍ଚଳ ଶାସନ ପ୍ରସ୍ତାବ ଦେଇଥିଲେ ଓ ନିଜେ ମୁଖ୍ୟମନ୍ତ୍ରୀ ହେଲାବେଳେ ଯାହାକୁ ଆଇନରେ ପରିଣତ

କରିଥିଲେ, ତାଙ୍କ ପରେ ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ହେବା ସମୟରେ ତାହାକୁ କାର୍ଯ୍ୟକାରୀ କଲେନାହିଁ । ଅଥଚ ଏହି ରିପୋର୍ଟ ବାହାରିବା ଦିନ ସେ ନିଜ ଖବରକାଗଜ 'ଇଷ୍ଟର୍ଣ୍ଣ ଟାଇମ୍ସ୍'ରେ, ତାଙ୍କ ସରକାର ଦ୍ୱାରା ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ରିପୋର୍ଟ ପ୍ରସ୍ତୁତ ହୋଇଛି ବୋଲି ନିଜେ ବାହାଦୁରି ନେଲେ । ହେଲେ, ରିପୋର୍ଟଟି ଯାହାଙ୍କ ଚିନ୍ତାପ୍ରସୂତ, ସେହି ଚେୟାରମ୍ୟାନଙ୍କୁ ସ୍ୱୀକୃତି ଜଣାଇ ପଦେ ଲେଖିଲେ ନାହିଁ । ଏହି ଗୁରୁତ୍ୱପୂର୍ଣ୍ଣ ରିପୋର୍ଟ ଉପରେ 'ଷ୍ଟେଟ୍ସ୍‌ମ୍ୟାନ' ସମ୍ପାଦକୀୟ ଲେଖିଥିଲେ ବୋଲି ସେ ସମୟର ବିଧାୟକ ଜୟକୃଷ୍ଣ ମହାନ୍ତି କହନ୍ତି । ହରେକୃଷ୍ଣ ମହତାବ, ବନ୍ଧୁ ନବକୃଷ୍ଣ ଚୌଧୁରୀଙ୍କ ଅବଦାନ ଲାଗି ସ୍ୱୀକାର କରିବାକୁ କାର୍ପଣ୍ୟ କଲେ ବି ଓଡ଼ିଶାର ଲୋକେ ଜାଣିଥିଲେ ଯେ ସେହି ବିଖ୍ୟାତ ରିପୋର୍ଟ ନବକୃଷ୍ଣ ଚୌଧୁରୀଙ୍କ ଚିନ୍ତାପ୍ରସୂତ । ଏଣୁ ସାଧାରଣ ଲୋକେ ସେହି ରିପୋର୍ଟକୁ ଚୌଧୁରୀ କମିଟି ରିପୋର୍ଟ ବୋଲି କହୁଥିଲେ ।

ସେହି ରିପୋର୍ଟରେ ଅନ୍ୟାନ୍ୟ ସୁପାରିଶ ମଧ୍ୟରେ ଭୂ-ରାଜସ୍ୱ ବଦଳରେ କୃଷି ଆୟକର ପ୍ରସ୍ତାବ ଦିଆଯାଇଛି । ନବବାବୁ ମୁଖ୍ୟମନ୍ତ୍ରୀ ହେବା ସମୟରେ ଏହି ଅନୁସାରେ କୃଷି ଆୟକରରେ କେତେକ ଗୁରୁତ୍ୱପୂର୍ଣ୍ଣ ସଂଶୋଧନ କରିବା ଫଳରେ ଜମିଦାରମାନଙ୍କୁ ଅପେକ୍ଷାକୃତ କମ୍ କ୍ଷତିପୂରଣ ଦେବାକୁ ହୋଇଥିଲା ଏବଂ ଜମିଦାରି ଉଚ୍ଛେଦ ସହଜ ହୋଇଥିଲା । ରିପୋର୍ଟରେ ହରେକୃଷ୍ଣ ମହତାବ ଯେଉଁ ସ୍ୱତନ୍ତ୍ର ଅଭିମତ ଦେଇଛନ୍ତି, ସେଥିରେ ସେ ବିପୁଳ ପରିମାଣର କ୍ଷତିପୂରଣ କଥା ଉଠାଇଛନ୍ତି, ଯାହାକି ସେତେବେଳର ସରକାରଙ୍କ ପକ୍ଷରେ ଦେବା ସମ୍ଭବପର ନଥିଲା । ଜମିଦାରି ଉଠାଇବା ବଦଳରେ ଜମିଦାରମାନଙ୍କୁ ଶାସନର ମୁଖ୍ୟ କରି ରଖି ସୁଶାସନ ପାଇଁ ଗୋଟିଏ ଗୋଟିଏ ପରିଚାଳନା କମିଟି ପାଇଁ ସେ ସେଥିରେ ସୁପାରିଶ କରିଛନ୍ତି । ସେହି ପରିଚାଳନା କମିଟିରେ ଲୋକଙ୍କ ପ୍ରତିନିଧି ରହିବାପାଇଁ ମତ ପ୍ରକାଶ ପାଇଛି । ଅବଶ୍ୟ ସେଥିରୁ ଅପ୍ରିୟ ଜମିଦାରମାନଙ୍କୁ ବାଦ୍ ଦେବା କଥା ଉଲ୍ଲେଖ କରିଛନ୍ତି ।

## ମୌଳିକ ଶିକ୍ଷା ସଙ୍ଗଠନ :

ସ୍ୱାଧୀନତା ଆନ୍ଦୋଳନ କାଳରେ ମହାତ୍ମା ଗାନ୍ଧି ଯେଉଁ ଅସହଯୋଗ ପାଇଁ ଡାକରା ଦେଇଥିଲେ, ସେଥିଲାଗି ସରକାର ଚାକିରି ଓ କଚେରି ଛାଡ଼ିବା ସଙ୍ଗେସଙ୍ଗେ ସ୍କୁଲ୍ କଲେଜ୍ ଛାଡ଼ିବାକୁ ଆହ୍ୱାନ ଦିଆଯାଇଥିଲା । ସେତେବେଳର ସ୍କୁଲ୍ କଲେଜ୍ ଇଂରେଜ ସରକାରର ଗୋଲାମଗିରି ପାଇଁ ଗଢ଼ା ଯାଇଥିଲା ଏବଂ ସେସବୁ ଥିଲା ବର୍ଜନୀୟ । କିନ୍ତୁ ୧୯୩୭ ମସିହା ବେଳକୁ କଂଗ୍ରେସ ଲୋକେ ଶାସନଭାର ଗ୍ରହଣ କରିବା ସମ୍ପର୍କରେ ଯେତେବେଳେ ସମ୍ମତ ହେଲେ, ସେହି ସମୟକୁ ଭାରତବର୍ଷର ଶିକ୍ଷା କିଭଳି ହେବ, ସେକଥା ଗାନ୍ଧିଜୀ ଚିନ୍ତା

କରୁଥିଲେ । ତାଙ୍କ ପରିକଳ୍ପିତ ଶିକ୍ଷା ଗ୍ରାମସ୍ୱରାଜର ସହାୟକ ହେବାଭଳି ହେବ । ସେତିକିବେଳକୁ ଦିଲ୍ଲୀ ପାଖ ଜାମିଆ ମିଲିଆ ଶିକ୍ଷାନୁଷ୍ଠାନର ଅଧ୍ୟକ୍ଷ ଜାକିର୍ ହୋସେନ୍ ପ୍ରଚଳିତ ଶିକ୍ଷାର ବିକଳ୍ପ ଭାବରେ ଏକ ଶିକ୍ଷା ପଦ୍ଧତିର ଚିଠା କରିଥିଲେ । ତାହା ଗାନ୍ଧିଜୀଙ୍କ ସ୍ୱୀକୃତି ଲାଭ କରିଥିଲା । ଏହି ଶିକ୍ଷାକୁ ମୌଳିକ ଶିକ୍ଷା କୁହାଗଲା । ଆମ ଦେଶର ବାସ୍ତବ ଜୀବନ ଉପଯୋଗୀ ହେଲାଭଳି ପାଠ୍ୟକ୍ରମ ଏଥିରେ ରହିଲା । ବିଶେଷକରି ମାକଲେ ପ୍ରବର୍ତ୍ତିତ ବାବୁଗିରି ଶିକ୍ଷାରେ ଶିକ୍ଷିତ ଲୋକଙ୍କ ମଧ୍ୟରେ ଶରୀରଶ୍ରମ ପ୍ରତି ଯେଉଁ ଘୃଣାଭାବ ଥିଲା, ତାକୁ ଭାଙ୍ଗିବା ଲାଗି କାର୍ଯ୍ୟକ୍ରମମାନ ମୌଳିକ ଶିକ୍ଷାରେ ରହିଲା । ୧୯୩୭ ମସିହାରେ ବିଭିନ୍ନ ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ାଯିବା ବେଳେ ଏହି ମୌଳିକ ଶିକ୍ଷାକୁ ପରୀକ୍ଷାମୂଳକ ଭାବରେ କେତେକ ସ୍ଥାନରେ ପ୍ରୟୋଗ କରାଯାଇଥିଲା । କିନ୍ତୁ ୧୯୩୯ ମସିହାର ନଭେମ୍ବର ମାସରେ ମନ୍ତ୍ରିମଣ୍ଡଳ ଭାଙ୍ଗିଯିବାରୁ ତାହା ଆଉ ଆଗେଇ ପାରିନଥିଲା ।

୧୯୪୬ ମସିହାରେ ପୁଣି କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ାଯିବା ପରେ ମୌଳିକ ଶିକ୍ଷାର ପ୍ରସାର ଲାଗି ଉଦ୍ୟମ ହେଲା । କିଛି ଶିକ୍ଷାବିତ୍ ସେବାଗ୍ରାମରେ ମୌଳିକ ଶିକ୍ଷା ସମ୍ପର୍କରେ ତାଲିମ ପାଇଁ ଗଲେ ଓ ସେମାନେ ବି କିଛି ଶିକ୍ଷକଙ୍କୁ ଏ ଦିଗରେ ତାଲିମ ଦେଲେ । ସ୍ୱାଧୀନତା ପୂର୍ବରୁ ଓ ପରେ ଆର୍ଯ୍ୟନାୟକମ୍ ଓ ଆଶାଦେବୀ ସେବାଗ୍ରାମରେ ମୌଳିକ ଶିକ୍ଷା ଦିଗରେ ବିଶେଷ ଗବେଷଣା ଓ ପ୍ରୟୋଗରେ ନିୟୋଜିତ ଥିଲେ । ଏମାନେ ନବକୃଷ୍ଣ ଚୌଧୁରୀ ଓ ମାଳତୀଦେବୀଙ୍କର ଘନିଷ୍ଠ ବନ୍ଧୁ । ପୁତ୍ରବିୟୋଗ ପରେ ନବବାବୁ ଅତି ବିମର୍ଷ ଭାବରେ ସମୟ କଟାଉଥିଲେ । ଲ୍ୟାଣ୍ଡ୍ ରେଭିନିଉ ଆଣ୍ଡ୍ ଲ୍ୟାଣ୍ଡ୍ ଟେନିୟୁର୍ କମିଟି ରିପୋର୍ଟ ପ୍ରସ୍ତୁତ କରିସାରିବା ପରେ ତାଙ୍କ ଲାଗି କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ ନଥାଏ । ତାଙ୍କ ଭଳି ଜଣେ ଦକ୍ଷ ଓ କର୍ମଠ ଲୋକ କିଛି କାମରେ ଲାଗିଗଲେ କ୍ରମେ ସ୍ୱାଭାବିକ ଅବସ୍ଥାକୁ ଆସିଯିବେ ବୋଲି ଭାବି ନବବାବୁଙ୍କୁ ମୌଳିକ ଶିକ୍ଷା ସଙ୍ଗଠନ ଦାୟିତ୍ୱ ଦିଆଯିବା ପ୍ରସ୍ତାବ ଆର୍ଯ୍ୟନାୟକମ୍ ଓଡ଼ିଶା ସରକାରଙ୍କୁ ଦେଇଥିଲେ । ସରକାର ଓ ନବବାବୁ ସେହି ପ୍ରସ୍ତାବକୁ ଗ୍ରହଣ କରିଥିଲେ । ଏଥିଲାଗି ସେ ବିଧାନସଭାରୁ ଇସ୍ତଫା ଦେଇଥିଲେ । ସେ ଅନୁଗୋଳରେ ରହୁଥିବାରୁ ମୌଳିକ ଶିକ୍ଷା ସଙ୍ଗଠନ ଅଫିସ ଅନୁଗୋଳର ଏକ ଛୋଟ ଘରକୁ ଉଠିଗଲା । ନବବାବୁ ସେଠାକୁ ଓ ଆଖପାଖ ମୌଳିକ ସ୍କୁଲକୁ ସାଇକେଲରେ ଯା'ଆସ କରୁଥିଲେ । କିଛିଦିନ ପରେ ତାଙ୍କୁ ଏକ ଜିପ୍ ମିଳିଲା ଓ ସେଥିରେ ବିଭିନ୍ନ ଅଞ୍ଚଳର ମୌଳିକ ବିଦ୍ୟାଳୟ ପରିଦର୍ଶନ ପାଇଁ ସୁବିଧା ହେଲା । ଏହି ସମୟରେ ଜଣେ ନବବାବୁଙ୍କୁ ପଚାରିଥିଲେ, ''ଆପଣ ଜଣେ ମନ୍ତ୍ରୀ ଥିଲେ ଏବଂ ଜଣେ ସରକାରୀ କର୍ମଚାରୀ କିଭଳି କାର୍ଯ୍ୟ କରୁଛନ୍ତି ?'' ନବବାବୁ ଉତ୍ତରରେ କହିଥିଲେ, ''ସ୍ୱାଧୀନ ଦେଶରେ ଏକ ମେହନ୍ତରର କାମ ମିଳିଲେ ମଧ୍ୟ ମୁଁ ତାହା କରିବାକୁ ପ୍ରସ୍ତୁତ ।''

ସେ ପରିଦର୍ଶନରେ ଗଲେ ସ୍କୁଲକୁ ପ୍ରବେଶ କରି ପଢ଼ାପଢ଼ି କଥା ନବୁଝି ପିଲାଙ୍କ ରୋଷେଇରେ ସାହାଯ୍ୟ କରନ୍ତି । ସେହି ରୋଷେଇ କଲାବେଳେ ଏବଂ ଖାଇଲାବେଳେ ପିଲାମାନଙ୍କୁ ଏବଂ ଶିକ୍ଷକମାନଙ୍କୁ ବିଭିନ୍ନ ବିଷୟ ପଚାରି ବୁଝନ୍ତି ଓ ପଢ଼ାର ପରୀକ୍ଷା ନିଅନ୍ତି ଏବଂ ପରାମର୍ଶ ଦିଅନ୍ତି । ସେତେବେଳକୁ ଯଦିଓ ମୌଳିକ ଶିକ୍ଷା ଲାଗି କେତେକ ପାଠ୍ୟ ସ୍ଥିର ହୋଇଥିଲା, ତେବେ ତାହା ଥିଲା ଅତ୍ୟନ୍ତ ପ୍ରାଥମିକ ପରୀକ୍ଷାମୂଳକ ସ୍ତରର । ଏଥିପାଇଁ ଉପଯୁକ୍ତ ଶିକ୍ଷକଙ୍କର ଅଭାବ ଖୁବ୍ ଥିଲା । ସେ ଅବଶ୍ୟ ମାତ୍ର ୯ ମାସ ଏହି ଦାୟିତ୍ୱରେ ଥିଲେ । ପରେ ଯେତେବେଳେ ସେ ମୁଖ୍ୟମନ୍ତ୍ରୀ ହେଲେ ସେତେବେଳେ ସେ ମୌଳିକ ଶିକ୍ଷକମାନଙ୍କ ତାଲିମ ପାଇଁ ଅନୁଗୋଳଠାରେ ଏକ ମୌଳିକ ଶିକ୍ଷା ତାଲିମ ମହାବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ତାଙ୍କ ଆଗ୍ରହ ଓ ସଦିଚ୍ଛା ସତ୍ତ୍ୱେ ମୌଳିକ ଶିକ୍ଷା ଖୁବ୍ ପ୍ରସାର ଲାଭ କରିପାରିନଥିଲା । ପ୍ରାଥମିକ ଅବସ୍ଥାର କଳ୍ପିତ ମୌଳିକ ଶିକ୍ଷାକୁ ଆହୁରି ଆଧୁନିକ ଓ ଯୁଗୋପଯୋଗୀ କରିବାକୁ ତାଙ୍କର କଳ୍ପନା ଥିଲା ; କିନ୍ତୁ ସେ ସରକାରରୁ ଚାଲିଗଲା ପରେ ସରକାରୀ ଉଦ୍ୟମ ଓ ଉତ୍ସାହରେ ଭଟ୍ଟା ପଡ଼ିଗଲା । କେବଳ ସାଧାରଣ ଲୋକ କାହିଁକି, ସେ ବେଳର ଶିକ୍ଷିତ ଲୋକେ ବି ସେଭଳି ବୈପ୍ଳବିକ ଚିନ୍ତାପ୍ରସୂତ ଶିକ୍ଷା ପ୍ରତି ଆଗ୍ରହ ଦେଖାଇ ନଥିଲେ । ଏଣୁ ସରକାରଙ୍କ ଅନାଗ୍ରହ ଓ ଅନାସ୍ଥାର କିଛି ପ୍ରତିକ୍ରିୟା ଦେଖାଦେଲା ନାହିଁ । ଜୀବନର ଶେଷ ପର୍ଯ୍ୟନ୍ତ ଶିକ୍ଷା ସମ୍ପର୍କରେ ନବବାବୁଙ୍କର ଆଗ୍ରହ ଥିଲା ।



## ସପ୍ତମ ଅଧ୍ୟାୟ

# ମୁଖ୍ୟମନ୍ତ୍ରୀ

**ଖାଣ୍ଟି ସୁନା :**

୧୯୪୬ ନିର୍ବାଚନରେ ଓଡ଼ିଶାରେ କଂଗ୍ରେସର ବିପୁଳ ବିଜୟ ପରେ, ଗଡ଼ଜାତ ମିଶ୍ରଣର ସାଫଲ୍ୟ ଆଦି ଯୋଗୁଁ, ଦେଶରେ ହରେକୃଷ୍ଣ ମହତାବଙ୍କ ଖ୍ୟାତି ଖୁବ୍ ବଢ଼ିଯାଇଥାଏ । ନେହେରୁ ଏଥିରେ ପ୍ରୀତ ହୋଇ ତାଙ୍କୁ କେନ୍ଦ୍ର ମନ୍ତ୍ରିମଣ୍ଡଳକୁ ନେବାକୁ ଇଚ୍ଛା ପ୍ରକାଶ କରିଥାନ୍ତି । ତେବେ ତାଙ୍କର ଇଚ୍ଛା ଥାଏ, ହରେକୃଷ୍ଣ ମହତାବଙ୍କ ବଦଳରେ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୁଅନ୍ତୁ । ଉଭୟଙ୍କ ମଧ୍ୟରେ ସମ୍ପର୍କ କେତେ ଘନିଷ୍ଠ ଥିଲା, ତାହା ପରବର୍ତ୍ତୀ ଅଧ୍ୟାୟମାନଙ୍କରୁ ଅଧିକ ଜାଣିହେବ । କିନ୍ତୁ ନବବାବୁ ପୁଣି ଶାସନକଳକୁ ଫେରିବାକୁ ଏକାନ୍ତ ଅନିଚ୍ଛୁକ । ମହତାବବାବୁ କେନ୍ଦ୍ର ମନ୍ତ୍ରିମଣ୍ଡଳକୁ ଯିବା ଲାଗି ଆଗ୍ରହୀ ଥିଲେ ବି ଓଡ଼ିଶାର ଗାଦିଟି ତାଙ୍କ ପାଇଁ, ଆବଶ୍ୟକ ସ୍ଥଳେ, ଖାଲି ହେବାର ବ୍ୟବସ୍ଥା ଥିବା କଥାଟିକୁ ସେ ବିଚାର କରୁଥାନ୍ତି ।

ମହତାବଙ୍କ ପରେ ଓଡ଼ିଶାର ମୁଖ୍ୟମନ୍ତ୍ରିତ୍ୱ ଲାଗି ସେତେବେଳେ ଦୁଇଟି ନାମ ଉଠୁଥାଏ । ପ୍ରଥମ ଦାବିଦାର ଥିଲେ ଓଡ଼ିଶାର ପୂର୍ବତନ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ । ତେବେ ତାଙ୍କ ପ୍ରତି ନେହେରୁଙ୍କର ଅନୁକୂଳ ମତ ନଥାଏ ଓ ମହତାବବାବୁ ମଧ୍ୟ ତାଙ୍କ ପ୍ରତ୍ୟାଗମନକୁ ସୁବିଧାଜନକ ମନେକରୁନଥାନ୍ତି । ତାଙ୍କ ପ୍ରଧାନମନ୍ତ୍ରିତ୍ୱ ବେଳର ସୁଖ୍ୟାତି ସେ ପର୍ଯ୍ୟନ୍ତ ରାଜ୍ୟରେ ଏତେ ଥାଏ ଯେ ମହତାବବାବୁ ଭାବୁଥାନ୍ତି, ସେଭଳି ଲୋକଙ୍କୁ ଥରେ ଗାଦି ଛାଡ଼ିଦେଲେ ତାଙ୍କର ଫେରିବା ବାଟ ବନ୍ଦ ହୋଇଯିବ । ଅନ୍ୟ ଜଣକ ହେଉଛନ୍ତି ପୂର୍ବ ମନ୍ତ୍ରିମଣ୍ଡଳର ନିତ୍ୟାନନ୍ଦ କାନୁନ୍‌ଗୋ । ସେ ପୂର୍ବରୁ ଜଣେ ମନ୍ତ୍ରୀ ଥିଲେ ଏବଂ ଦଳ ଗଢ଼ିବାରେ ବି ତାଙ୍କର ଦକ୍ଷତା ଥାଏ । ଏଣୁ ମହତାବବାବୁ କାନୁନ୍‌ଗୋଙ୍କୁ ଗୋଟିଏ ନିରାପଦ କା' ଭାବରେ ବିଚାର କରୁନଥାନ୍ତି । ସେ ବେଶ୍ ଜାଣିଥିଲେ ଯେ ନବକୃଷ୍ଣ ଚୌଧୁରୀ କୂଟନୀତିର ଧାର୍ ଧାରନ୍ତି ନାହିଁ ଓ ଗୋଷ୍ଠୀ ଗଢ଼ିବାରେ ଅନାଗ୍ରହୀ । ଟିକିଏ ଟିଣବାଡ଼ିଆ କରିଦେଲେ, ଅଳ୍ପ ଆୟାସରେ, ତାଙ୍କୁ ବିଦା କରିଦେଇ ହେବ । ହେଲେ, ନବବାବୁ ଶାସନକୁ ଫେରିବା

ଲାଗି ଏକାନ୍ତ ଅନିଚ୍ଛୁକ ଥିବା ଜାଣିଲା ପରେ ନେହେରୁ ମହତାବଙ୍କୁ ଓଡ଼ିଶା ଛାଡ଼ିବା ଲାଗି ଆଉ ଚାପ ପକାଇଲେ ନାହିଁ । ଏହାସତ୍ତ୍ୱେ ମହତାବବାବୁ କେନ୍ଦ୍ର ମନ୍ତ୍ରିମଣ୍ଡଳକୁ ଯାଇ ନିଜର ପ୍ରଭାବ ଓ ପ୍ରତିପତ୍ତି ବିସ୍ତାର କରିବାର ଅଭିଳାଷ ଛାଡ଼ି ନଥାନ୍ତି । ଏହି ସମୟକୁ ୧୯୫୦ ମସିହାର ପ୍ରଥମ ଭାଗରେ ନେହେରୁଙ୍କ ଓଡ଼ିଶା ଆଗମନ କାଳରେ ମହତାବବାବୁଙ୍କ ଦିଲ୍ଲୀ ଯିବା ଓ ନବବାବୁଙ୍କୁ ଶାସନକୁ ଫେରାଇଆଣିବା କଥା ପୁଣି ପଡ଼ିଥିଲା । ଏହି ଉଦ୍ଦେଶ୍ୟରେ ବନମାଳୀ ପଟ୍ଟନାୟକଙ୍କୁ ପଠାଇ ନବବାବୁଙ୍କୁ ନେହେରୁଙ୍କ ପାଖକୁ ଅଣାଯାଇଥିଲା । ନେହେରୁ ତାଙ୍କୁ କୁଆଡ଼େ କହିଥିଲେ, ''ତୁମେ ଯାହା କରୁଛ (ଅର୍ଥାତ୍ ମୌଳିକ ଶିକ୍ଷା ସଙ୍ଗଠକ ଭାବରେ) ତାହା ଦେଶ ପାଇଁ ଖୁବ୍ ଉପଯୋଗୀ; କିନ୍ତୁ ଦେଶର ଅନ୍ୟାନ୍ୟ ଗୁରୁଦାୟିତ୍ୱ ସମ୍ପାଦନ ପାଇଁ ଶାସନ କ୍ଷେତ୍ରରେ ତୁମର ଆବଶ୍ୟକତା ଅଧିକ ।'' ଉଭୟଙ୍କ ମଧ୍ୟରେ ଆଲୋଚନା ପରେ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବାକୁ ରାଜି ହେଲେ । ଦଳୀୟ ବୈଠକରେ ମହତାବବାବୁଙ୍କର ହସ୍ତକ୍ଷେପ ଯୋଗୁଁ ଏହି ପଟ୍ଟପରିବର୍ତ୍ତନ ହେଲା ବୋଲି ଯାହା ମହତାବବାବୁ ତାଙ୍କ 'ସାଧନାର ପଥେ' ପୁସ୍ତକରେ ବର୍ଣ୍ଣନା କରିଛନ୍ତି (ପୃଷ୍ଠା-୩୮୯), ତାହା ଅର୍ଦ୍ଧସତ୍ୟ । ନବବାବୁଙ୍କୁ ଫେରାଇଆଣିବାର ସାମର୍ଥ୍ୟ ମହତାବବାବୁଙ୍କର ନଥିଲା । ଅବଶ୍ୟ ସବୁଠାରୁ କମ୍ ବିପଜ୍ଜନକ ପ୍ରତିଦ୍ୱନ୍ଦ୍ୱୀ ଓ ସହଜରେ ହଟିଯିବା ଭଳି ବ୍ୟକ୍ତି ବୋଲି ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରିତ୍ୱକୁ ମହତାବବାବୁ ପୂର୍ଣ୍ଣପ୍ରାଣରେ ସମର୍ଥନ କରୁଥିଲେ । ଏହି ବ୍ୟବସ୍ଥା ଭିତରେ ହରେକୃଷ୍ଣ ମହତାବ ଓଡ଼ିଶା ଶାସନରେ ନିଜର କା' ରଖିଗଲେ ବୋଲି ଭାବିଲେ ଓ ସେହି ଢଙ୍ଗରେ ଦିଲ୍ଲୀରୁ ଚିଠିପତ୍ର ଦେଉଥିଲେ । ଏହି ପରିବର୍ତ୍ତନରେ ଓଡ଼ିଶାର ବହୁ ଲୋକ ଆନନ୍ଦିତ ହୋଇଥିଲେହେଁ ମାଳତୀଦେବୀ କୁଆଡ଼େ ଖୁସି ନଥିଲେ । ସେ କୁଆଡ଼େ ବିରକ୍ତି ପ୍ରକାଶ କରି କହିବାର ଶୁଣାଯାଇଥିଲା ଯେ, ''ନବବାବୁ ଯଦି ଶାସନ କ୍ଷେତ୍ରକୁ ଫେରିଯାଉଥାନ୍ତି, ତାହା ତାଙ୍କର ବ୍ୟକ୍ତିଗତ ନିଷ୍ପତ୍ତି । ଏପରିକି ସେ ଯଦି ପୁଣି ବିବାହ କରନ୍ତି ତ ମୋର ବି ଆପତ୍ତି ନାହିଁ ।''

ନବବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ଯୁବଗୋଷ୍ଠୀକୁ ଉତ୍ସାହିତ କରିଥିଲା । ଯେଉଁଦିନ ଏ ନିଷ୍ପତ୍ତି ହେଲା, ସେଦିନ ଜାତୀୟ କବି ବୀରକିଶୋର ଦାସ କଂଗ୍ରେସ ଅଫିସ୍‌କୁ ଆସି ମନ୍ତବ୍ୟ ଦେଇଥିଲେ, ''ତୁମ୍ଭେମାନେ ସୁନାଗହଣାଟିଏ ପିନ୍ଧିବାକୁ ଇଚ୍ଛା କରିଛ । ଭଲ କଥା, କିନ୍ତୁ ପିନ୍ଧିପାରିବ ନାହିଁ । କାରଣ ଖାଣ୍ଟି ସୁନାରେ (ଖାଦ ନ ମିଶିଲେ) ଗହଣା ତିଆରି ହୋଇପାରେନା ।'' ଯେଉଁମାନେ ତାଙ୍କ ସହିତ ବିଭିନ୍ନ ବନ୍ଦିଶାଳାରେ ସହବନ୍ଦୀ ଥିଲେ, ସେଭଳି ବହୁ ସଂଗ୍ରାମୀଙ୍କଠାରୁ ଅଭିନନ୍ଦନ ବାର୍ତ୍ତା ଆସିଲା । କିନ୍ତୁ ଯେଉଁମାନେ ନବବାବୁଙ୍କୁ ଭଲଭାବରେ ଜାଣିଥିଲେ, ସେମାନେ ପ୍ରକାଶ କରିଥିଲେ, ''ମୁଖ୍ୟମନ୍ତ୍ରିତ୍ୱ ପାଇଁ ନବବାବୁ ଧନ୍ୟ ନୁହନ୍ତି; ମୁଖ୍ୟମନ୍ତ୍ରୀ ଗାଦି ତାଙ୍କ ପାଇଁ ବରଂ ଧନ୍ୟ ହୋଇଛି ।''

ନବବାବୁଙ୍କଠାରୁ ଲୋକେ ବହୁତ କିଛି ଆଶା କଲେ । କିନ୍ତୁ ସେ ତାଙ୍କର ସୀମା ଓ ପ୍ରତିବନ୍ଧକ ସବୁ ଭଲଭାବରେ ଜାଣିଥିଲେ । ସେ ଜାଣିଥିଲେ ଯେ ଭାରତୀୟ ସମ୍ବିଧାନ ପରିସର ମଧ୍ୟରେ ଓ ବ୍ରିଟିଶ ଶାସନ ଦ୍ୱାରା ତାଲିମ ପାଇଥିବା ଏକ ଶାସନ କଳ ଦ୍ୱାରା ତାଙ୍କୁ କାମ କରିବାକୁ ହେବ । ନବବାବୁ ମୁଖ୍ୟମନ୍ତ୍ରୀ ହୋଇ ଆସି ସମସ୍ତଙ୍କର ସହଯୋଗ ଲାଭ କଲେ ସତ; କିନ୍ତୁ ଆଇନ ବଦଳାଇ ଶାସନର ଦିଗ ଓ ଢଙ୍ଗ ବଦଳାଇବା ଲାଗି, ଶାସନ ବାହାରେ ଯେଉଁ ଚାପ ପ୍ରୟୋଗକାରୀ ଶକ୍ତିର ଆବଶ୍ୟକତା ଅପରିହାର୍ଯ୍ୟ, ତାହା ସେତେବେଳକୁ କଂଗ୍ରେସ ଦଳରେ ନଥିଲା କହିଲେ ଚଳେ । କାରଣ ଗୌରାଙ୍ଗ ଚରଣ ଦାସ, ରାଧାକୃଷ୍ଣ ବିଶ୍ୱାସରାୟ, ସଦାଶିବ ତ୍ରିପାଠୀ, ଜୟକୃଷ୍ଣ ମହାନ୍ତି ଆଦି ଅଳ୍ପ କେତେଜଣଙ୍କ ଛଡ଼ା କଂଗ୍ରେସ ଦଳରେ ସୋସାଲିଷ୍ଟ ମନୋଭାବାପନ୍ନ ସହକର୍ମୀ ବିଶେଷ ନଥାନ୍ତି । କଂଗ୍ରେସ ସଙ୍ଗଠନ ମୁଖ୍ୟତଃ ବିଶ୍ୱନାଥ ଦାସ ଓ ହରେକୃଷ୍ଣ ମହତାବଙ୍କ ସମର୍ଥକ ଗୋଷ୍ଠୀଙ୍କ ହାତରେ ଥାଏ; ଯେଉଁମାନେ କି ଏକ ପ୍ରଗତିଶୀଳ ଜନମତ ସୃଷ୍ଟି କରିବାକୁ ଅସମର୍ଥ ।

ନବବାବୁ ମୁଖ୍ୟମନ୍ତ୍ରୀ ଭାବରେ ଭୁବନେଶ୍ୱର ଆସି ପ୍ରଥମେ, ବର୍ତ୍ତମାନ ବାଚସ୍ପତି ରହୁଥିବା ଘରର ବିପରୀତ ପାଖ ଦୋମହଲା ଘରର ଉପର ମହଲାରେ ରହିଲେ । ଫଳରେ ତଳ ମହଲାରେ ରହୁଥିବା ବ୍ୟକ୍ତିଙ୍କର ତ ଅସୁବିଧା ହେଲା, ମୁଖ୍ୟମନ୍ତ୍ରୀଙ୍କ ଷ୍ଟାଫ୍‌ଙ୍କ କାମ କରିବା ଲାଗି ବି ଅସୁବିଧା ହେଲା । ସେହିଠାରୁ ଆସି ସେ, ବର୍ତ୍ତମାନ ଇଣ୍ଡିଆନ୍ ଏୟାର୍ ଲାଇନ୍ ଅଫିସ ଥିବା ଧାଡ଼ିର ମଝି ଆଡ଼କୁ B-2 ନମ୍ବର ଟାଇପ VI ଘରେ ରହିଲେ । ରାସ୍ତାର ଆରପାଖର ଦୁଇଟି ଛୋଟ କ୍ୱାଟରରେ ମୁଖ୍ୟମନ୍ତ୍ରୀଙ୍କ ଅଫିସ କର୍ମଚାରୀମାନେ କାର୍ଯ୍ୟ କଲେ । ତା'ପର ପ୍ଲଟ B-1 ନମ୍ବର ଘରେ (ସେହି ଟାଇପ୍ VI ର) ତାଙ୍କର ସହକାରୀ ସଚିବ ସଚ୍ଚିଦାନନ୍ଦ ମିଶ୍ର ଏବଂ ଗୋଟିଏ ପ୍ଲଟ୍ ଛାଡ଼ି B-4 ନମ୍ବର ଘରେ ସେତେବେଳର ଅନୁଶାସନ ସଚିବ ଗଣନାଥ ଦାସ ସେତେବେଳେ ରହୁଥିଲେ । ଏସବୁ ଘର ସମ୍ପ୍ରସାରିତ ହୋଇ ଏବେ ଟାଇପ୍-VIIରେ ପରିଣତ ହୋଇଛି । ବର୍ତ୍ତମାନ ରାଜଧାନୀର ବଡ଼ କୋଠି ସବୁ ସେତେବେଳକୁ ତିଆରି ହୋଇନଥାଏ । ସବୁଠାରୁ ବଡ଼ ଘରେ, ଏବର ଇଣ୍ଡିଆନ୍ ଏୟାର ଲାଇନ୍ସ ଅଫିସ ଘରେ, ରହିଲେ ଦଶପଲ୍ଲା ରାଜା (ସେତେବେଳର ପୂର୍ତ୍ତମନ୍ତ୍ରୀ) । ଏହି ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ଯେ ପରବର୍ତ୍ତୀ କାଳର ବିଧାୟକ ଓ ମନ୍ତ୍ରୀମାନଙ୍କର ବଡ଼ ଘର ପାଇଁ ଟଣାଓଟରା ସମାଧାନ ଲାଗି ମୁଖ୍ୟମନ୍ତ୍ରୀଙ୍କ ହସ୍ତକ୍ଷେପ ଆବଶ୍ୟକ ହେଉଛି । ପରବର୍ତ୍ତୀ କାଳରେ ଦୁଇଜଣ ମୁଖ୍ୟମନ୍ତ୍ରୀଙ୍କୁ ଟାଇପ୍-VIII ଘର ବି ଛୋଟ ହେଲା । ସେମାନେ ସର୍କିଟ୍ ହାଉସ୍ ପାଇଁ ଉଦ୍ଦିଷ୍ଟ ବିରାଟ ଦୋମହଲା କୋଠିରେ କେବଳ ରହିଲେ ନାହିଁ, ତାକୁ ବଢ଼ାଇ ଆହୁରି ଅଧିକ ବଖରା ସଂଯୋଗ କରାଇଲେ ଏବଂ ରାଜକୀୟ ଢଙ୍ଗରେ ଘରସଜା ଚାଲିଲା । ଅଥଚ ଏହି ଦୁଇ ମୁଖ୍ୟମନ୍ତ୍ରୀ ବିବାହିତ ଜୀବନ ଆରମ୍ଭରେ ଅନେକ ବର୍ଷ ତିନିବଖରିଆ ଆଜ୍‌ବେସ୍‌ଟସ୍ ଘରେ ରହୁଥିଲେ ।

ନବବାବୁ ତାଙ୍କ ପାଇଁ ଉଦ୍ଦିଷ୍ଟ ନୂଆ ଘରକୁ ଆସି ଦେଖନ୍ତି ତ ଘରର ଚଟାଣରେ ଦାମିକା ନୂଆ ଦରି ପଡ଼ିଛି । ସେତେବେଳକୁ ଏସବୁ ଘର ଦାୟିତ୍ୱରେ ଥିବା ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଗୋବିନ୍ଦ ଗୁପ୍ତା ସେଠାରେ ଉପସ୍ଥିତ ଥାଆନ୍ତି । ନବବାବୁ ଓ ମାଳତୀଦେବୀ ଆସି ଘରଟି ଦେଖିସାରି ଗୋବିନ୍ଦ ଗୁପ୍ତାଙ୍କୁ ଧନ୍ୟବାଦ ଜଣାଇବା ପୂର୍ବରୁ ଦରିଟି ଉଠାଇନେବାକୁ କହିଲେ ଏବଂ ସଙ୍ଗେ ସଙ୍ଗେ ଲୁଗା ରଖିବା ଏବଂ ସାବୁନ ଓ ତେଲ ରଖିବା ଷ୍ଟାଣ୍ଡ ଦେବାପାଇଁ କହିଲେ । ଗୋବିନ୍ଦ ଗୁପ୍ତା ଭାବିଲେ, ଦରିଟି ତ ନୂଆ, ଆଉ ଦୋଷ କେଉଁଠି ରହିଲା ? ନବବାବୁ ତାଙ୍କ ମୁହଁର ଅବସ୍ଥାକୁ ଲକ୍ଷ୍ୟ କରି କହିଲେ ଯେ ତାଙ୍କ ଘରେ ଦରି, ଗାଲିଚା ବା ଅନ୍ୟ କିଛି ବିଛାହେବା ସେ ପସନ୍ଦ କରନ୍ତି ନାହିଁ । କାରଣ ସେଗୁଡ଼ିକରେ ଧୂଳି ଜମିଯାଏ ଏବଂ ସେସବୁ ଧୂଳି ସଫା କରିବା କଷ୍ଟକର । ଗୋବିନ୍ଦ ଗୁପ୍ତାଙ୍କ ପାଇଁ ଏହା ଥିଲା ଏକ ଶିକ୍ଷା । ପରବର୍ତ୍ତୀ କାଳରେ ସେ ସରକାରୀ ଅଫିସ୍ ଓ ବିଶ୍ରାମ ଭବନମାନଙ୍କରେ ଦରି ବା ଗାଲିଚା ବଦଳରେ ମୋଜାଇକ୍ ଚଟାଣ କରାଇଲେ ଏବଂ ବିଲାତି ପାଇଖାନା କମୋଡ୍ ବଦଳରେ ଭାରତୀୟଙ୍କ ପାଇଁ ସୁବିଧା ହେବାଭଳି ପାଇଖାନା ପ୍ରବର୍ତ୍ତନ କଲେ ଓ ଗାଧୁଆଘରୁ ଗାଧୁଆ ଟବ୍ ଉଠାଇଦେଲେ । ପାଶ୍ଚାତ୍ୟ ଥଣ୍ଡା ଦେଶ ଲାଗି ଦରି ଗାଲିଚା ଦରକାର ହେଉଥିବାରୁ ସାହେବମାନଙ୍କ ଅମଳରୁ ଏସବୁ, ଅନ୍ଧ ଭାବରେ, ସରକାରୀ କୋଠାରେ ପରବର୍ତ୍ତୀ କାଳରେ ବି ଚାଲିଥିଲା ।

ଏହି ଘଟଣାର ପ୍ରାୟ ୩୦ ବର୍ଷ ପରେ ଏକ ଆନ୍ତର୍ଜାତୀୟ ଲୋକ-ସଂସ୍କୃତି ସେମିନାରରେ ଗୋବିନ୍ଦ ଗୁପ୍ତା ପୁଣି ଭେଟନ୍ତି ନବବାବୁଙ୍କୁ, ସେହି ସମ୍ମିଳନୀ କକ୍ଷର ଶେଷ ଧାଡ଼ିରେ । ସଂସ୍କୃତି ପ୍ରତି ତାଙ୍କର ରୁଚି ତ ସେ ଜାଣିଥିଲେ; ତେବେ, ନବବାବୁଙ୍କ ଚାଲିଚଳନରେ ଅସାଧାରଣତା ଓ ତାଙ୍କର ଅମାୟିକତା ଗୋବିନ୍ଦ ଗୁପ୍ତାଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା ।

ସେ ମୁଖ୍ୟମନ୍ତ୍ରୀ ଥିଲାବେଳେ ଖାଲିଦେହରେ ବି ବିଧାୟକମାନେ ରହୁଥିବା ୨ ନମ୍ବର ଇଉନିଟ୍ ପର୍ଯ୍ୟନ୍ତ ବୁଲିଯାଆନ୍ତି ଓ ବେଳେବେଳେ ବାଟରେ କୌଣସି କୌଣସି ଅତି ଜଣାଶୁଣା ଅଫିସର୍‌ଙ୍କ ଘରକୁ ଯାଇ କଥାବାର୍ତ୍ତା କରନ୍ତି ଏବଂ ସେମାନଙ୍କ ମଧ୍ୟରୁ କେହି ଚାହା ବା ଜଳଖିଆ ଖାଇବାକୁ ଡାକିଲେ ବି ସେ ସଙ୍କୋଚ କରନ୍ତି ନାହିଁ । ଠିକ୍ ସମୟରେ ସେ ସେକ୍ରେଟେରିଏଟକୁ ଯାଆନ୍ତି ଓ ସେଠାରୁ ଫେରି ନିଜ ବଗିଚା ତଥା ଗାଈଙ୍କ ଖବର ବୁଝନ୍ତି । ସକାଳ ଓଳି ଏହି ବଗିଚାରେ ଥିଲାବେଳେ ଅନେକ ଅଫିସର୍ ଆସି ସେହି ବଗିଚାରେ ବି ଗୁରୁତ୍ୱପୂର୍ଣ୍ଣ କଥାବାର୍ତ୍ତା କରିଯାଆନ୍ତି । ସନ୍ଧ୍ୟାବେଳେ ବାପୁଜୀନଗର ନିକଟସ୍ଥ (ଏବର ନୂଆ ଫ୍ଲାଇ ଓଭର୍ ପାଖ) ହାଟ ଦେଇ ପୁରୁଣା ଭୁବନେଶ୍ୱରର ବଇଆ କୋରାଖଇ ଦୋକାନ ପାଖ ଦେଇ ରାଜମହଲ ଛକ ପାଖ ହୋଇ ଫେରିବା ଥିଲା ନବବାବୁଙ୍କର ଏକ ଦୈନନ୍ଦିନ

ଧାରା । ତାଙ୍କ ବସାକୁ କେହି ବିଶିଷ୍ଟ ଅତିଥି ଆସିଲେ, ସେ ତାଙ୍କ ଭୁବନେଶ୍ୱରର ବିଖ୍ୟାତ ବଇଆ କୋରାଖଇ ଖାଇବାକୁ ଦିଅନ୍ତି । ନବବାବୁ ମୁଖ୍ୟମନ୍ତ୍ରୀ ଥିଲାବେଳେ ଥରେ ନୀଳକଣ୍ଠ ଦାସ ତାଙ୍କ ବସାକୁ ଯାଇ ଦେଖନ୍ତି ଯେ ସେ ପଖାଳ ଭାତ ଓ ଲାଉ ସନ୍ତୁଳା ଖାଉଛନ୍ତି । ଖାଇବା ଦିଗରେ ସଉକ ଓ ମାଛ ଖାଇବା ଏବଂ ଖୁଆଇବା ପାଇଁ ପ୍ରସିଦ୍ଧ ନୀଳକଣ୍ଠଙ୍କ ପାଇଁ ସେ ଖାଦ୍ୟ ଥିଲା ଆଶ୍ଚର୍ଯ୍ୟଜନକ ।

ଅଫିସରଙ୍କଠାରୁ ଆରମ୍ଭ କରି ପିଅନ ପର୍ଯ୍ୟନ୍ତ ସମସ୍ତଙ୍କୁ ସେ ସହକର୍ମୀ ଭାବରେ ଦେଖୁଥିଲେ । ତାହାର ଏକ ନମୁନା ନିମ୍ନ ଘଟଣାରୁ ଜାଣିହେବ । ଦିନେ ସନ୍ଧ୍ୟାବେଳେ ପ୍ରଚାର ବିଭାଗ ତରଫରୁ ତାଙ୍କ ବସାରେ ଏକ ଚଳଚ୍ଚିତ୍ର ପ୍ରଦର୍ଶିତ ହେବାର ଥାଏ । ତାଙ୍କ ଭଣଜା ରବୀନ୍ଦ୍ରନାଥ ମହାନ୍ତି (ପରବର୍ତ୍ତୀ କାଳରେ ରାଜସ୍ୱ ବୋର୍ଡ୍‌ର ସଦସ୍ୟ) ସେହି ସନ୍ଧ୍ୟାରେ ମାମୁଙ୍କ ବସାରେ ପହଞ୍ଚିଥାଆନ୍ତି । ଚଳଚ୍ଚିତ୍ର ଦେଖାହେବା ଲାଗି ସବୁ ପ୍ରସ୍ତୁତ, ଦେଖଣାହାରି ପନ୍ଦର କୋଡ଼ିଏ ଜଣ (ପିଲା, ଛୁଆ ସମେତ) ବସିଥାନ୍ତି । ସେମାନଙ୍କ ମଧ୍ୟରେ ବେଶି ଥାଆନ୍ତି ମାଳୀ ଓ ଚପରାସୀଙ୍କ ପିଲା ଓ ସ୍ତ୍ରୀ । ନବବାବୁ ବଗିଚାରେ ବୁଲୁଥାନ୍ତି । କିନ୍ତୁ ଚଳଚ୍ଚିତ୍ର ଦେଖା ଆରମ୍ଭ ହେଉ ନଥାଏ । ଅତ୍ୟଧିକ ଡେରି ହେବାର କାରଣ ବୁଝିବାକୁ ଯାଇ ରବିବାବୁ ଜାଣିଲେ ଯେ ଆଉକିଛି ଦର୍ଶକ ଆସିନଥିଲେ । ସେମାନେ ଏକ କାର୍‌ରେ ପହଞ୍ଚିଲେ । ସେମାନେ ଥିଲେ ତାଙ୍କ ଘରଜଗୁଆଳି ପୋଲିସ କନ୍‌ଷ୍ଟେବ୍‌ଲ୍‌ଙ୍କ ସ୍ତ୍ରୀ ଏବଂ ପିଲା । ସେମାନଙ୍କ ଆସିବା ଡେରି ଦେଖି ନବବାବୁ ନିଜ କାର୍ ପଠାଇଥିଲେ । ସେମାନେ ଆସିଲା ପରେ ନବବାବୁ ତାଳି ମାରି ଖୁସିରେ କହି ଉଠିଗଲେ, ''ଆସିଗଲେ, ଆସିଗଲେ, ଏଣିକି ଆରମ୍ଭ କର ।'' ସେ ସେହି ପିଲାଙ୍କ ମେଳରେ ମିଶିଯାଇ ଗୋଟିଏ ଛୋଟ ପିଲାକୁ କାଖରେ ଉଠାଇ ଚଳଚ୍ଚିତ୍ର ଦେଖାଳିଙ୍କ ମଧ୍ୟରେ ମିଶିଗଲେ ।

ଏଭଳି ଏକ ଅବସ୍ଥାରେ ସେ ଶାସନ ଭାର ହାତକୁ ନେଇ ସାଧାରଣ ଲୋକଙ୍କ ପାଇଁ, ବିଶେଷ ଭାବରେ ଗରିବ ଚାଷୀ, ଆଦିବାସୀ, ହରିଜନ ଏବଂ ଗଡ଼ଜାତ ଲୋକଙ୍କ ଉନ୍ନତି ଲାଗି କାର୍ଯ୍ୟକ୍ରମମାନ ଆରମ୍ଭ କଲେ । ରାଜସ୍ୱମନ୍ତ୍ରୀ ଥିଲା ବେଳର ଅସମ୍ପୂର୍ଣ୍ଣ କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିବା ଛଡ଼ା 'ଓଡ଼ିଶା ଲ୍ୟାଣ୍ଡ୍ ରେଭିନିଉ ଆଣ୍ଡ୍ ଟେନିୟୁର' କମିଟିର ସୁପାରିଶଗୁଡ଼ିକୁ କାର୍ଯ୍ୟକାରୀ କରିବାପାଇଁ ସେ ପଦକ୍ଷେପ ଗ୍ରହଣ କଲେ । ଶାସନକୁ ନୂଆ ଢଙ୍ଗରେ ଚଳାଇବା ଲାଗି ସେ ରାଜ୍ୟର ବୁଦ୍ଧିଜୀବୀମାନଙ୍କ ସହଯୋଗ ଲୋଡ଼ିଲେ । ଏଥିପାଇଁ ଥରେ ସେ ରେଭେନ୍ସା କଲେଜର ଅଧ୍ୟାପକମାନଙ୍କ ସହିତ ଆଲୋଚନା ଆରମ୍ଭ କରିଥିଲେ । ସେହି ଉଦ୍ଦେଶ୍ୟରେ ସେ ରାଜ୍ୟର କେତେକ ମୁଖ୍ୟ ଅଫିସରଙ୍କୁ ସଙ୍ଗରେ ନେଇଥିଲେ । ଅନ୍ୟାନ୍ୟ ଦେଶରେ ଶାସନ ବାହାରେ ଥିବା, ବିଶେଷକରି ବିଶ୍ୱବିଦ୍ୟାଳୟମାନଙ୍କର, ଜ୍ଞାନୀ ଲୋକମାନଙ୍କୁ ନେଇ think tank ଗଢ଼ାଯାଇଥାଏ । ଅବଶ୍ୟ ସେହି ଆଲୋଚନାରେ ବେଶ୍ କେତେକ ମୂଲ୍ୟବାନ ପ୍ରସ୍ତାବ ଆସିଲା ; କିନ୍ତୁ ବ୍ରିଟିଶ ଅମଳର ତାଲିମପ୍ରାପ୍ତ ବି. ଶିଭରମନ୍‌ଙ୍କ

ଭଳି ଅଫିସର ଏସବୁ ପସନ୍ଦ କରୁନଥିଲେ । ତେଣୁ ଏହି ଉଦ୍ୟମ ବେଶି ଦୂର ଆଗେଇ ପାରିଲା ନାହିଁ ।

ସ୍ୱାଧୀନତା ପୂର୍ବରୁ ଜମିଦାରି ପ୍ରଥା ଧ୍ୱଂସ ହେବା ଏକ ବଡ଼ ଦାବି ଥିଲା । କିନ୍ତୁ ଭାରତୀୟ ସମ୍ବିଧାନ ପ୍ରଣୟନ ସଭାରେ, ଜମିଦାରି ଭଳି, ସମ୍ପତ୍ତି ନେବା ଲାଗି କ୍ଷତିପୂରଣ ଦେବାର ବ୍ୟବସ୍ଥା ହେଉଥିବାରୁ, ଓଡ଼ିଶାର ସୀମିତ ସମ୍ବଳ ଦୃଷ୍ଟେ, ତାହା କାର୍ଯ୍ୟକାରୀ କରି ହେଉନଥାଏ । ଏହାସତ୍ତ୍ୱେ ଆଗକୁ ନିର୍ବାଚନ ଥିବାରୁ ସମ୍ବିଧାନ ଗୃହୀତ ହେବାର ୯ ଦିନ ପୂର୍ବରୁ ୧୯୫୦ ମସିହା ଜାନୁଆରି ୧୭ ତାରିଖ ଦିନ ଓଡ଼ିଶା ସରକାର ଜମିଦାରି ଉଚ୍ଛେଦ ଆଇନ ବିଧାନସଭାରେ ପେଶ୍ କରିଥିଲେ । ଧାରଣା ଥିଲା ଯେ ସମ୍ବିଧାନ ଗୃହୀତ ହେବା ପୂର୍ବରୁ ଆଇନ୍ ହୋଇଗଲେ ତାହା ପ୍ରତି କ୍ଷତିପୂରଣ ଲାଗୁ ହେବ ନାହିଁ । ଇତିପୂର୍ବରୁ ବିହାର ଓ ଉତ୍ତର ପ୍ରଦେଶରେ ଜମିଦାରି ଆଇନ ପାସ୍ ହୋଇଥାଏ । କିନ୍ତୁ ବିହାରର ଜମିଦାରି ଆଇନକୁ ପାଟନା ହାଇକୋର୍ଟ ଅକାମୀ କରିଦେବା ଫଳରେ ସମସ୍ୟା ଦେଖାଦେଲା । ଏହାକୁ ଏଡ଼ିବା ଲାଗି ପାର୍ଲାମେଣ୍ଟରେ ସମ୍ବିଧାନ ସଂଶୋଧନ କରାଯିବାରୁ ଉତ୍ତର ପ୍ରଦେଶ ଓ ବିହାରର ଜମିଦାରମାନେ ସୁପ୍ରିମ୍‌କୋର୍ଟରେ ମକଦ୍ଦମା କଲେ । ଏଭଳି କାରଣରୁ ଏକ ଅଚଳ ଅବସ୍ଥା ସୃଷ୍ଟି ହୋଇଥାଏ ।

କ୍ଷତିପୂରଣ ସମସ୍ୟାଟି କିଭଳି ସମାଧାନ କରାଯାଇ ପାରିବ, ତାହା ସମସ୍ତଙ୍କର ଚିନ୍ତାର ବିଷୟ ଥାଏ । ଜମିଦାରିର ମୋଟ ଆୟରୁ ପରିଚାଳନା ଓ ଉନ୍ନୟନ ବାବଦ ଖର୍ଚ୍ଚକୁ ବାଦ୍ ଦିଆଯାଇ ନେଟ୍ ଆୟ ହିସାବ କରାଯାଏ । ସେହି ନେଟ୍ ଆୟର ୫ ଗୁଣ ଠାରୁ ୧୦ ଗୁଣ ପର୍ଯ୍ୟନ୍ତ କ୍ଷତିପୂରଣ ଦେବାକଥା ଉଠୁଥାଏ । ଜମିଦାରମାନେ ଜାଣିଥାନ୍ତି ଯେ ସରକାର କ୍ଷତିପୂରଣ ଦେବା ଅବସ୍ଥାରେ ନାହାନ୍ତି । ସରକାରଙ୍କର ରାଜସ୍ୱ ବିଭାଗ ଓ ଅର୍ଥ ବିଭାଗର ସେକ୍ରେଟାରୀମାନେ ବି ସେହିକଥା କହୁଥାନ୍ତି ।

ଏହି ପରିସ୍ଥିତିରେ ନବବାବୁ କୃଷି ଆୟକରକୁ ବଢ଼ାଇବା ପାଇଁ ୧୯୫୦ ମସିହା ଅଗଷ୍ଟ ୫ ତାରିଖ ଦିନ ବିଧାନସଭାରେ ଏକ ଆଇନ୍ ଆଣିଲେ । ଜମିଦାର ଓ ବଡ଼ ବଡ଼ ଚାଷୀମାନେ ସେମାନଙ୍କ ଆୟର ୬୦ ଭାଗ ଖଜଣା, ଆଦାୟ ବାବଦ ଖର୍ଚ୍ଚ ଓ ଉନ୍ନୟନ କାର୍ଯ୍ୟ ଆଦିରେ ଖର୍ଚ୍ଚ ହେଉଚି ଦର୍ଶାଇ କୃଷି ଆୟକର କମ୍ ହେବା ଲାଗି ଯୁକ୍ତି କରୁଥାନ୍ତି । ସରକାରଙ୍କ ତରଫରୁ କୁହାଯାଉଥାଏ ଯେ ଏସବୁ ବାବଦରେ ଜମିଦାରମାନେ ଖୁବ୍ ବେଶି ହେଲେ ମୋଟ ଆୟର ଶତକଡ଼ା ୨୦ ଭାଗ ଖର୍ଚ୍ଚ କରୁଥିବେ । ଶେଷରେ ସରକାର ଜମିଦାରମାନଙ୍କ ଯୁକ୍ତିକୁ ଏକାବେଳକେ ଏଡ଼ି ପାରୁନାହାନ୍ତି ବୋଲି କହି ମୋଟ ଆୟର ୪୦ ଭାଗ ଖଜଣା ଆଦାୟ ଓ ଉନ୍ନୟନ ବାବଦରେ ଖର୍ଚ୍ଚ ହେଉଥିବା କଥାରେ ରାଜି ହେଲେ । ଏତଦ୍ୱାରା ଜମିଦାରମାନଙ୍କ ନେଟ୍ ଆୟ ଯେ ବହୁତ କମ୍, ଏହା ସେହିମାନଙ୍କର

ବିଧାନସଭାର ପ୍ରତିନିଧିମାନେ ସ୍ୱୀକାର କରିଗଲେ । କଥାଟି କିନ୍ତୁ ଜମିଦାରି ବାବଦ କ୍ଷତିପୂରଣ ହିସାବ ବେଳେ ଜମିଦାରମାନଙ୍କ ବିରୁଦ୍ଧରେ ଗଲା । ସରକାରଙ୍କୁ ଯେତେ କ୍ଷତିପୂରଣ ଦେବାକୁ ପଡ଼ିଥାନ୍ତା, ନବବାବୁଙ୍କ ଚତୁର ବିଚାର ଫଳରେ ତାହାଠାରୁ ବହୁତ କମ୍ କ୍ଷତିପୂରଣ ଦେବାକୁ ପଡ଼ିଲା । ଏମିତି କ୍ଷତିପୂରଣ ବାବଦ ପ୍ରତିବନ୍ଧକ ଦୂର କରାଯାଇ ୧୯୫୧ ମସିହା ଜୁଲାଇ ୧୮ ତାରିଖ ଦିନ ପୂର୍ବର ଆଇନ୍‌କୁ ଏକ ସିଲେକ୍ଟ କମିଟିକୁ ପଠାଯାଇଥିଲା । ସେପ୍ଟେମ୍ବର ୧୪ରୁ ୨୮ ତାରିଖ ପର୍ଯ୍ୟନ୍ତ ଦୀର୍ଘ ଆଲୋଚନା ପରେ ୧୯୫୧ ମସିହା ସେପ୍ଟେମ୍ବର ୨୮ ତାରିଖ ଦିନ ଜମିଦାରି ଉଚ୍ଛେଦ ଭଳି ଯୁଗାନ୍ତକାରୀ ଆଇନ ଓଡ଼ିଶା ବିଧାନସଭାରେ ଗୃହୀତ ହେଲା । ଏହାଫଳରେ ହଜାର ହଜାର ବର୍ଷର ସାମନ୍ତବାଦୀ ଶୋଷଣ ବହୁ ପରିମାଣରେ ଲୋପ ପାଇଲା । ରାଜସ୍ୱମନ୍ତ୍ରୀ ସଦାଶିବ ତ୍ରିପାଠୀ ଯେଉଁ କଲମ୍‌ରେ, ଜମିଦାରି ଉଚ୍ଛେଦ ଆଇନ ଗୃହୀତ ହେଲା ବୋଲି ଦସ୍ତଖତ କରିଥିଲେ, ସେଇଟିକୁ ଏକ ବିଶେଷ ସ୍ମାରକୀ ଭାବରେ ଶେଷ ଜୀବନ ପର୍ଯ୍ୟନ୍ତ ସେ ସାଇତି ରଖିଥିଲେ ।

**ଜଗା ଭାଇ ଓ ନେପାଳୀ ବାବା :**

ବାଜି ରାଉତ ଛାତ୍ରାବାସ ଯେଉଁମାନଙ୍କ ଲାଗି ଗୌରବାନ୍ୱିତ, ଜଗା ଭାଇ ସେମାନଙ୍କ ମଧ୍ୟରେ ଅନ୍ୟତମ । ୧୯୩୦ ଲବଣ ସତ୍ୟାଗ୍ରହ ଦେଖିବା ଲାଗି ସେ ସ୍କୁଲର ୧୦ମ ଶ୍ରେଣୀରୁ ଚାଲିଆସିଥିଲେ । ସେହି ଅପରାଧ ଲାଗି ତାଙ୍କୁ ଓ ତାଙ୍କର କେତେ ସହଧର୍ମୀଙ୍କୁ ସ୍କୁଲରୁ ବହିଷ୍କାର କରାଯାଇଥିଲା । ଏଇଠୁ ଜଗନ୍ନାଥ ଦାସଙ୍କ ପାରମ୍ପରିକ ସ୍କୁଲଶିକ୍ଷାରେ ଡୋରି ବନ୍ଧା ହେଲା । ଏହା ପରଠାରୁ ଜାତୀୟ ଆନ୍ଦୋଳନ ଓ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଆନ୍ଦୋଳନରେ ବାନରସେନା ଭଳି କାର୍ଯ୍ୟ କରିବାରେ କିଛି ବର୍ଷ କଟିଗଲା । ୧୯୪୨ର ଅଗଷ୍ଟ ଆନ୍ଦୋଳନରେ ସେ ବନ୍ଦୀ ହୋଇଥିଲେ । ବନ୍ଦିଶାଳାରେ ଅଙ୍ଗାରରେ ଜେଲ୍ କାନ୍ଥରେ ଚିତ୍ର କରୁଥିବାରୁ ତାଙ୍କୁ ଦଣ୍ଡ ଦିଆଯାଇଥିଲା । ତାଙ୍କର କଳାପ୍ରୀତି ନବବାବୁଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ବନ୍ଦୀଜୀବନ ପରେ ସ୍ୱାଧୀନତା ଆସିବା ପରେ ସେ ଶାନ୍ତିନିକେତନରେ ଲଳିତକଳା ଅଧ୍ୟୟନ ପାଇଁ ମନୋନୀତ ହୋଇ ସେଠାରେ ବିଖ୍ୟାତ ଶିଳ୍ପୀ ନନ୍ଦଲାଲ ବୋଷଙ୍କଠାରୁ ଶିକ୍ଷାଲାଭ କରିବାର ସୁଯୋଗ ଲାଭ କରିଥିଲେ । ଅନୁଗୋଳର ସର୍ବୋଦୟ ସମ୍ମିଳନୀ ଉଦ୍ଦେଶ୍ୟରେ ଆୟୋଜିତ ସାଜସଜ୍ଜା ଓ ପ୍ରଦର୍ଶନୀ ଥିଲା ତାଙ୍କ ଶିଳ୍ପୀଜୀବନର ପ୍ରଥମ ସାର୍ଥକତା । ତାହା ପରେ ସେ ସରକାରୀ ଚାକିରି ନକରି ସେଠାକାର ମୌଳିକ ବିଦ୍ୟାଳୟ ଓ ମୌଳିକ ଶିକ୍ଷା ତାଲିମ କେନ୍ଦ୍ରରେ ଅଧ୍ୟାପନା କଲେ । ଏହା ସହିତ ବାଜି ରାଉତ ଛାତ୍ରାବାସ ହେଲା ତାଙ୍କର ବାସ୍ତବ କର୍ମକ୍ଷେତ୍ର । ସେଠାକାର କଳା ଭବନକୁ ସଜାଇବା, ପିଲାମାନଙ୍କ ମଧ୍ୟରେ କଳାଚର୍ଚ୍ଚା କରିବା, ନୃତ୍ୟସଙ୍ଗୀତ ଓ ଅଭିନୟରେ ଅଂଶ ଗ୍ରହଣ କରିବା ଦିଗରେ ତାଙ୍କର ବିଶେଷ ଆଗ୍ରହ ।

ବାଜି ରାଉତ ଛାତ୍ରାବାସରେ ତାଙ୍କ ଅବସ୍ଥାନ କାଳରେ ଅନୁଗୋଳ ନିକଟସ୍ଥ ରନ୍ତଲେଇ ଗ୍ରାମର ଏକ ଛୋଟ ପିଲା, ନେପାଳୀ ବାବା, ହୁକୁମ ଦେଉଥିବା କଥା ଖବର-କାଗଜମାନଙ୍କରେ ବାହାରିଲା । ସେ ହୁକୁମ ଦେଲେ ବହୁ ଦୁରାରୋଗ୍ୟ ବ୍ୟାଧିରେ ପୀଡ଼ିତ ରୋଗୀ ଭଲ ହେଉଛନ୍ତି ବୋଲି ବ୍ୟାପକ ପ୍ରଚାର ହେଲା । ତୁଣ୍ଡବାଇଦ ସହସ୍ର କୋଶ ଭଳି ଏହି ସମ୍ବାଦ ଓଡ଼ିଶା ସୀମା ଟପି ବିଶେଷ ଭାବରେ ମଧ୍ୟପ୍ରଦେଶରେ ପ୍ରଚାରିତ ହେଲା । ରନ୍ତଲେଇ ଓ ଅନୁଗୋଳର ବ୍ୟବସାୟୀମାନେ ପ୍ରଥମେ ପ୍ରଥମେ ବେଶ୍ ଦି'ପଇସା ରୋଜଗାର କଲେ । କିନ୍ତୁ ଲୋକସମାଗମ କ୍ରମେ ଅସମ୍ଭବ ହୋଇପଡ଼ିଲା । ଖାଇବାକୁ ତ ଜିନିଷ ମିଳିଲା ନାହିଁ; ପିଇବାକୁ ପାଣି ବି ମିଳିଲା ନାହିଁ । ହଜାରହଜାର ଲୋକ ଏକ ପୋଖରୀକୁ ଗାଧୁଆ, ଶୌଚ ଓ ପାନୀୟ ଜଳ ପାଇଁ ବ୍ୟବହାର କଲେ । ଫଳରେ ଏକ ସାଂଘାତିକ ଧରଣର କଲେରା ଦେଖାଦେଲା । ଅସ୍ୱାଭାବିକ ଲୋକ ଗହଳି ଦେଖି ମାଳତୀଦେବୀ ଦିନେ ନବବାବୁଙ୍କୁ ଏହାକୁ ରୋକିବା ଲାଗି ସେଠାରେ ୧୪୪ ଧାରା ଜାରି କରାଇବାକୁ କହିଲେ । ସେତେବେଳକୁ ନେପାଳୀ ବାବାଙ୍କ ପ୍ରଚାର ତୁଙ୍ଗ ଅବସ୍ଥାରେ ପହଞ୍ଚିଥାଏ । ଓଡ଼ିଶାର ଉଚ୍ଚ ବିଚାରାଳୟର ବିଚାରପତିଙ୍କ ସମେତ ବହୁ ବିଶିଷ୍ଟ ବ୍ୟକ୍ତି ସେଠାକୁ ଯିବାର ଶୁଣାଗଲା । ସରକାରୀ ହସ୍ତକ୍ଷେପ କଥା ଶୁଣାଯିବାରୁ 'ପ୍ରଜାତନ୍ତ୍ର'ରେ ବାହାରିଲା ଯେ ଲୋକଙ୍କ ଧର୍ମବିଶ୍ୱାସରେ ବାଧା ଦେବାଭଳି ଅଧିକାର ସରକାରର ନାହିଁ । ନବବାବୁ ଏସବୁ ଶୁଣି ମାଳତୀଦେବୀଙ୍କୁ କହିଥିଲେ, ''ତୁମେ ତ ସମ୍ବିଧାନ ପ୍ରଣୟନ ସଭାର ସଦସ୍ୟ ଥିଲ । ସମ୍ବିଧାନରେ ଅଛି, କେହି କାହାରି ଧର୍ମବିଶ୍ୱାସରେ ବାଧା ଦେଇପାରିବେ ନାହିଁ । ଏଥିରେ ସରକାର ନାଚାର ।''

ଏହା ଶୁଣି ମାଳତୀଦେବୀ କୁଆଡ଼େ କହିଥିଲେ, ''ନପାରିବ ତ ଇସ୍ତଫା ଦେଇଦିଅ । ଏଭଳି ମାଇଚିଆ ସରକାର ଦରକାର ନାହିଁ ।''

କିନ୍ତୁ ହଇଜା ପ୍ରକୋପରେ ଶହ ଶହ ଲୋକ ମରି ବାଟଘାଟରେ ପଡ଼ିବା ଖବର ପାଇ ଦିନେ ମାଳତୀଦେବୀ ଏଇ ଜଗାଭାଇ ଓ ବିଧାୟକ ହୃଷୀକେଶ ତ୍ରିପାଠୀଙ୍କୁ ସଙ୍ଗରେ ନେଇ ଏକ ଜିପ୍‌ରେ ରନ୍ତଲେଇରେ ପହଞ୍ଚି ଦେଖନ୍ତି ଯେ ଅବସ୍ଥା ଅତ୍ୟନ୍ତ ଉଦ୍‌ବେଗଜନକ । ସେମାନେ ଦର୍ଶକ ଭଳି ନେପାଳୀବାବା ପାଖକୁ ଗଲେ । ସେଠାରେ ଜଗାଭାଇ ନେପାଳୀ ବାବାକୁ ଏକ ଚାପଡ଼ ଦେଇ କହିଲେ, ''ବାବା ହୋଇ ହୁକୁମ ଦେଉଛୁ; ଏଣେ ହଜାର ହଜାର ଲୋକ ମଲେଣି ।'' ସେହି ଚାପଡ଼ାରେ ନେପାଳୀବାବା ପାଖ ଜଙ୍ଗଲକୁ ଦୌଡ଼ି ପଳାଇଲେ । ଏହା ଦେଖି ଉପସ୍ଥିତ ଭକ୍ତ, ବିଶେଷକରି ମଧ୍ୟପ୍ରଦେଶର ଲୋକ 'ହମାରା ବାବାକୋ ମାର୍ ଡାଲା' କହି ଚିତ୍କାର କଲେ ଏବଂ ମାଳତୀଦେବୀ ଓ ଜଗାଭାଇଙ୍କ ଆଡ଼କୁ ମାରିବା ଲାଗି ଧାଇଁଲେ । ଏ ଦୁହେଁ ସାହସ ଓ କୌଶଳର ସହ ସେହି ଆକ୍ରମଣମୁଖୀ ଲୋକଙ୍କ କବଳରୁ ରକ୍ଷା ପାଇ ଜିପ୍ ନେଇ ପଳାଇଆସିଥିଲେ । ଏହାପରେ ଅବଶ୍ୟ ସରକାରୀ

ହସ୍ତକ୍ଷେପରେ ସେଠାରେ ୧୪୪ ଧାରା ଜାରି କରାଗଲା, ଅନୁଗୋଳକୁ ଯିବା ବନ୍ଦ କରାଗଲା ଓ କଲେରାରୋଗୀଙ୍କ ଚିକିତ୍ସା ଲାଗି ବ୍ୟାପକ ବନ୍ଦୋବସ୍ତ କରାଗଲା ଏବଂ ସେଠାରେ ରହିଯାଇଥିବା ଲୋକଙ୍କୁ ଟ୍ରେନ୍ ଓ ବସ୍‌ରେ ସ୍ୱସ୍ଥାନକୁ ପଠାଇବା ବ୍ୟବସ୍ଥା ହେଲା ।

ଜଗାଭାଇ ଏହାପରେ ସରକାରଙ୍କ ହସ୍ତଶିଳ୍ପ ବିଭାଗରେ କାର୍ଯ୍ୟ କଲେ; କିନ୍ତୁ ଅନୁଗୋଳର ବାଜିରାଉତ ଛାତ୍ରାବାସ ତଥା ମାଳତୀଦେବୀ ଏବଂ ନବକୃଷ୍ଣ ଚୌଧୁରୀଙ୍କ ସହିତ ତାଙ୍କର ସମ୍ପର୍କ ସାରା ଜୀବନ ଅକ୍ଷୁଣ୍ଣ ରହିଥିଲା । ସେଠାରେ ଥିବାବେଳେ ଏକ ଗ୍ରାମରେ ଅସ୍ପୃଶ୍ୟତା ନିବାରଣ ଲାଗି ଏକ ସଭାର ଆୟୋଜନ ହୋଇଥାଏ । କିନ୍ତୁ ସବର୍ଣ୍ଣମାନେ ସଭାରେ ଗଣ୍ଡଗୋଳ କରିବେ ବୋଲି ଶୁଣାଯାଇଥିଲା । ଜଗାଭାଇ ସଙ୍ଗୀତ ଓ ନୃତ୍ୟ ଜରିଆରେ ସଭାଟିକୁ ଏଭଳି ଜମାଇଦେଲେ ଯେ ଗଣ୍ଡଗୋଳକାରୀଙ୍କ ଉଦ୍ୟମ ପଣ୍ଡ ହୋଇଗଲା । ଆଉଦିନେ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସହ ପୁରୀ ଯାଉଥିବାବେଳେ କୌଶଲ୍ୟାଗଙ୍ଗଠାରେ ବହୁ ପ୍ରାଚୀନ ପ୍ରସ୍ତର ମୂର୍ତ୍ତି ବିକୃତ ହୋଇ ଖୁଣ୍ଟ ଆକାରରେ ବ୍ୟବହୃତ ହେଉଥିବା କଥା ଜଗାଭାଇଙ୍କ ଆଖିରେ ପଡ଼ିଥିଲା । ନବବାବୁଙ୍କୁ ଏହା କହିବା ଫଳରେ, ସେହିଦିନ ଭାସ୍କର୍ଯ୍ୟମଣ୍ଡିତ ଖୁଣ୍ଟଗୁଡ଼ିକ ଉଦ୍ଧାର କରାଯାଇ ରାଜ୍ୟ ସଂଗ୍ରହାଳୟରେ ରହିବା ଲାଗି ଆଦେଶ ଦିଆଗଲା । ଶାନ୍ତିନିକେତନର କଳାଭବନ ଢାଞ୍ଚାରେ ବାଜି ରାଉତ ଛାତ୍ରାବାସର କଳା ଭବନ ତାଙ୍କରି ଦ୍ୱାରା ନିର୍ମିତ । କଳା ଭବନର ଗାତ୍ରରେ ଆଦିବାସୀ ନୃତ୍ୟ ଓ ପରିବେଶ ଏବଂ ଜୀବନଯାତ୍ରା ଏବେ ବି ଜଗାଭାଇଙ୍କ ହାତର ମହିମା ପ୍ରକାଶ କରେ ।

ନବବାବୁଙ୍କ ସହିତ ତାଙ୍କର ବହୁଦିନର ଅଭିଜ୍ଞତା ବର୍ଣ୍ଣନା କରି ସେ କହନ୍ତି ଯେ ଉଭୟେ ଅନୁଗୋଳ ନିକଟସ୍ଥ ଏକ ଗ୍ରାମରୁ ବାଜିରାଉତ ଛାତ୍ରାବାସକୁ ଫେରିବା ବେଳେ ହଠାତ୍ ଅସମ୍ଭବ ବେଗରେ ମେଘ ମାଡ଼ିଆସିଲା । ପାଖରେ କିନ୍ତୁ ଛତା ନାହିଁ । ସାଙ୍ଗରେ କିଛି ମୂଲ୍ୟବାନ କାଗଜପତ୍ର ଥାଏ । ଆଖି ପଡ଼ିଲା ରାସ୍ତା କଡ଼ ଘୁଷୁରିଆ କୁଡ଼ିଆ ଉପରେ । ନବବାବୁ ସେ କୁଡ଼ିଆକୁ ଯାଇ ଦେଖନ୍ତି ତ ପୁରୁଣା ଖଜୁରିଆ ମସିଣା ଛଡ଼ା ଆଉ କିଛି ନାହିଁ । ସେମାନଙ୍କଠାରୁ ଦୁଇଟି ପୁରୁଣା ଖଜୁରିଆ ମସିଣା ଆଣି ସେଇଆକୁ ଘୋଡ଼େଇ ହୋଇ କାଗଜପତ୍ରକୁ ସୁରକ୍ଷିତ ଭାବରେ ନେଇ ଆଶ୍ରମରେ ପହଞ୍ଚିଲେ । ଅବଶ୍ୟ ପରଦିନ ଖଜୁରିଆ ଦୁଇଟି ଫେରାଇଦେଲେ । ନବବାବୁଙ୍କ ନିର୍ବିକାରତାରେ ସେ ସେଦିନ କାବା ହୋଇଯାଇଥିଲେ ।

**ପ୍ରଥମ ବଜେଟ୍ ଅଧିବେଶନ :**

୧୯୫୧ ମସିହା ଫେବୃଆରି ୨୧ ତାରିଖ ଦିନ ନବବାବୁ ଓଡ଼ିଆରେ ଲେଖା ପ୍ରଥମ ବଜେଟ୍ ବିଧାନସଭାରେ ଉପସ୍ଥାପନ କରିଥିଲେ । ଏହି ପୁସ୍ତକର ଲେଖକ ବିଧାୟକ ଜୀବନରେ ୫ଥର ଓଡ଼ିଆରେ ବଜେଟ୍ ଭାଷଣ ପଢ଼ିବାକୁ ପାଇଛି । ସେସବୁ କିନ୍ତୁ ମନ୍ତ୍ରୀଙ୍କର

ନିଜର ଲେଖା ନୁହେଁ, କର୍ମଚାରୀମାନଙ୍କର ଓଡ଼ିଆ ଅନୁବାଦ । ନବବାବୁଙ୍କ ଓଡ଼ିଆ ବଜେଟ୍ ଭାଷଣ ଲୋକଙ୍କ ଭାଷାରେ ଲେଖାଯାଇଛି ଏବଂ ପ୍ରତ୍ୟେକଟିରେ ଆୟବ୍ୟୟ ବେଶ୍ ବୁଝାଇ ଲେଖାଯାଇଛି । ସେବର୍ଷ ସେ ବଳକା ବଜେଟ୍ ପେଶ୍ କରିଛନ୍ତି ।

ଏହି ବଜେଟ୍‌ର କେତେକ ନୂତନ ଦିଗ ଥିଲେ ବି ସେ ନିଶାନିବାରଣ କଥାରେ ଭାରି ଅଡୁଆରେ ପଡ଼ିଛନ୍ତି । ସ୍ୱାଧୀନତା ଆନ୍ଦୋଳନ କାଳରେ ନିଶାନିବାରଣ ଏକ ବଡ଼ କାର୍ଯ୍ୟକ୍ରମ ଥିଲା । ସେହି କାର୍ଯ୍ୟକ୍ରମରେ ଅନେକ କର୍ମୀ, ଏପରିକି ନାରୀ କର୍ମୀମାନେ, ମାଡ଼ ଖାଇଛନ୍ତି ଓ ଜେଲ୍ ଯାଇଛନ୍ତି । ଅଥଚ ନିଜେ କ୍ଷମତା ଦାୟିତ୍ୱ ନେଲାପରେ ସେ ନିଶା ନିବାରଣ ପାଇଁ କିପରି ଇତସ୍ତତଃ ହୋଇଛନ୍ତି, ତାହା ତାଙ୍କର, ଫେବୃଆରି ୨୦ ତାରିଖ, ରାଜ୍ୟପାଳଙ୍କ ଭାଷଣ ଉପରେ ବିତର୍କର ଉତ୍ତରରୁ ଜଣାଯାଏ । ସେ କହିଛନ୍ତି, ‘‘ପୁଣି ଲୋକେ କହୁଛନ୍ତି, ନିଶା ଉଠାଇ ଦିଆଗଲା ନାହିଁ କାହିଁକି ? ମୋର ବ୍ୟକ୍ତିଗତ ମତ ଯେ କଲେଜ ସବୁ ବନ୍ଦ କରାଯାଉ । ଯେତେ ଯାହା କାର୍ଯ୍ୟ ହେଉଛି, ବନ୍ଦ ହୋଇଯାଉ...କିନ୍ତୁ ସାଧାରଣ ଲୋକଙ୍କର ଯେଉଁଥିରେ ଉପକାର ହେବ, ଯଥା–ମଦ ଦୋକାନ ଉଠାଇଦେବା, ନିଶାନିବାରଣ କରିବା ଇତ୍ୟାଦି କୌଣସିମତେ ହୋଇଯାଉ । ...ପ୍ରକୃତରେ ଏହାକୁ କାର୍ଯ୍ୟକାରୀ କରିବା ସେତେ ସହଜ ନୁହେଁ । ...ପୁରୀ ପଣ୍ଡା ଓ ପୁରୀର ଲୋକେ କହିଲେଣି ଯେ ଏଥର ସ୍ୱରାଜ୍ୟ ହୋଇଗଲା, ଗଞ୍ଜେଇ ଉପରୁ ଅବକାରୀ ଟିକସ୍ ଛାଡ଼ ହୋଇଯିବ । ଯଦି ଲୋକଙ୍କର ଏଭଳି ଧାରଣା ହୁଏ, ସରକାର ବା କଅଣ କରିବେ ? ନିଶା ନିବାରଣ କଲେ ଆମକୁ ୧ କୋଟି ୮୫ ଲକ୍ଷ ଟଙ୍କା ହରାଇବାକୁ ହେବ । (ଉଲ୍ଲେଖଯୋଗ୍ୟ ଯେ ସେ ସମୟରେ ରାଜ୍ୟର ସର୍ବମୋଟ ରାଜସ୍ୱ ଥିଲା ମାତ୍ର ୧୦ କୋଟି ଟଙ୍କା)... ଏହାଛଡ଼ା ନିଶା ନିବାରଣକୁ କଡ଼ାକଡ଼ି ଲାଗୁ କରିବାକୁ ଆଉ ୨୫ରୁ ୩୦ ଲକ୍ଷ ଟଙ୍କା ବ୍ୟୟ କରିବାକୁ ପଡ଼ିବ । ଏପରି ୨ କୋଟି ୧୫ ଲକ୍ଷ ଟଙ୍କାର ଅଭାବ ହେବ । ଏ ଟଙ୍କା ଆସିବ କୁଆଡୁ ? ଅନ୍ୟାନ୍ୟ ଖର୍ଚ୍ଚ ବନ୍ଦ କରି ଏହାକୁ କାର୍ଯ୍ୟକାରୀ କରିବାକୁ ପଡ଼ିବ । ମୁଁ ଲଜ୍ଜାର ସହିତ ସ୍ୱୀକାର କରିବାକୁ ଯାଉଛି ଯେ ବର୍ଷେ ନୁହେଁ, ଗଲା ତିନିବର୍ଷ ହେଲା ଏ ବିଷୟ ଚିନ୍ତା କରାଯାଉଛି; କାହିଁକିନା ଯାହା ହୋଇଗଲାଣି, ତହିଁରେ ହାତ ଦିଆଯାଇପାରିବ ନାହିଁ ।...ତାକୁ ଯଦି ଆମକୁ ବନ୍ଦ କରିବାକୁ ହେବ, ତାହାହେଲେ ଆମର ମନକୁ ମଧ ଆମେ ପରିଷ୍କାର କରିବାକୁ ହେବ ଯେ ଏହି ସବୁ ଖର୍ଚ୍ଚ ବନ୍ଦ କରାଯାଉ । କାଲିଠାରୁ ରେଭେନ୍ସା କଲେଜ ବନ୍ଦ କରାଯାଉ । ନୂଆ କଲେଜ କରିବା ବନ୍ଦ କରାଯାଉ । ତାହାହେଲେ ଟଙ୍କା ବଳିବ, ନିଶା ନିବାରଣ ସମ୍ଭବପର ହେବ । ଆମେ ତ କହିବା ଆମର ସବୁ ଚାଲୁ, ଦୁନିଆର ସବୁ ଆଡ଼କୁ ଆମ ମନ ଯାଉଛି । ଯେ ଯେତେ ଚାହିଁଲେ ମଧ ଘରର ମାଲିକ ଯେପରି ସବୁ ଆଡ଼କୁ ଲକ୍ଷ୍ୟ ରଖି ଘର ଚଳାଏ, ସରକାର ସେପରି ସବୁଆଡ଼କୁ ନଜର ରଖି କରୁଛନ୍ତି ।’’...

ଅବକାରୀ ଖର୍ଚ୍ଚ ଦାବି ଉପରେ ଆଲୋଚନାରେ ଅଂଶ ଗ୍ରହଣ କରି ସେ ନିଶା ନିବାରଣ ଦିଗରେ ଏକ କାର୍ଯ୍ୟକାରୀ ହେଲାଭଳି ବାସ୍ତବବାଦୀ ନୀତିର ବୟାନ କରିଛନ୍ତି । ସେ କହିଥିଲେ, ''ନିଶା ସମଗ୍ର ପୃଥିବୀରେ ଓ ଭାରତବର୍ଷରେ ଖାଲି ଗରିବଗୁରୁବାଙ୍କ ମଧ୍ୟରେ ସୀମାବଦ୍ଧ ନୁହେଁ । ପୌରାଣିକ ଯୁଗରେ ବି ଥିଲା ଏବଂ ବର୍ତ୍ତମାନ ଦେଶର ରାଜା, ମହାରାଜା, ବଡ଼ କର୍ମଚାରୀ ଏବଂ ଧନୀ ତଥା ପଣ୍ଡିତ ଲୋକମାନେ ସୁରାସକ୍ତ । ଏଣୁ ଖାଲି ଆଇନ୍ କରିଦେଲେ ଏହା ତ ବନ୍ଦ ହେବନାହିଁ; ଅନ୍ୟ ପକ୍ଷରେ ରାଜ୍ୟ ଅଯଥା ବହୁ ଅର୍ଥ ହଠାତ୍ ହରାଇବ । ବ୍ୟାପକ ଜନମତ ସୃଷ୍ଟି ହେଲେ ହିଁ ଏହା ସମ୍ଭବପର ।'' ସେ ଦର୍ଶାଇଥିଲେ ଯେ ''ସରକାରୀ ହିସାବ ଅନୁସାରେ ଅଫିମ ଓ ମଦ ଖାଇବା ସ୍ୱାଧୀନତା ପରେ କମିଛି ଓ ଆଉ ସେହି ଢଙ୍ଗରେ କମିଲେ ୧୦ ବର୍ଷ ମଧ୍ୟରେ ପୂରା ବନ୍ଦ ହୋଇଯାଇପାରେ । ଅବଶ୍ୟ ପାଖଆଖ ପ୍ରଦେଶରେ ନିଶା ନିବାରଣ ଚାଲୁ ହେବା ଦରକାର ।'' ଆନ୍ଧ୍ର ମୁଖ୍ୟମନ୍ତ୍ରୀ ରାମାରାଓଙ୍କ ଭଳି ବା ଇତିପୂର୍ବରୁ ଗୁଜରାତରେ ଚାଲୁଥିବା ପରି ନବକୃଷ୍ଣ ଚୌଧୁରୀ ଅବାସ୍ତବ ଭାବର ସମ୍ପୂର୍ଣ୍ଣ ନିଶା ନିବାରଣ ଘୋଷଣା କରିବାର ପକ୍ଷପାତୀ ନଥିଲେ । ନିଶା ନିବାରଣ ଦିଗରେ ସରକାରୀ କର୍ମଚାରୀମାନଙ୍କ ଦୋଷତ୍ରୁଟି ସମ୍ପର୍କରେ ସେ ଅବହିତ ଥିଲେ ଓ ସେଭଳି କାର୍ଯ୍ୟ ତାଙ୍କ ନଜରକୁ ଆଣିବା ଓ ଏ ଦିଗରେ ବ୍ୟାପକ ଜନମତ ସୃଷ୍ଟି କରିବା ଲାଗି ସେ ସଦସ୍ୟମାନଙ୍କୁ ନିବେଦନ କରିଥିଲେ ।

ତାଙ୍କ ବଜେଟର ପ୍ରତ୍ୟେକ ଦିଗକୁ ସେ ବୁଝାଇବାକୁ ଚେଷ୍ଟା କରିଛନ୍ତି ଓ ସମାଲୋଚକ ଯାହା କହିବେ, ତାକୁ ଆଖିଆଗରେ ରଖି ସେସବୁର ଉତ୍ତର ଦେଇଛନ୍ତି । ସେ 'ଯେତିକି ଚୂନା ସେତିକି ପିଠା' ନୀତିକୁ ଅପସନ୍ଦ କରିଛନ୍ତି । ନିଅଁଟ ପୂରଣ ପାଇଁ ଆୟ ବୃଦ୍ଧି କଥା କହିବାକୁ ଗଲାବେଳେ ସେ କହିଛନ୍ତି, ''ମୋ'ର ପୂରା ବିଶ୍ୱାସ ଅଛି ଯେ ଆମ୍ଭେମାନେ ଯଦି କେବଳ ଦୁର୍ନୀତି, ଅପାରଗତା ଏବଂ ଲୋକମୁଖରେ ଲାଲ୍ ଫିତାର କରାମତି ବୋଲି ପରିଚିତ କାମକୁ, ଫଳପ୍ରଦ ଭାବରେ ଲୋପ କରିଦେଇପାରୁ ଏବଂ ଏହାଦ୍ୱାରା ସର୍ବସାଧାରଣଙ୍କଠାରୁ ଆଦାୟ ହେଉଥିବା ପ୍ରତ୍ୟେକଟି ଟଙ୍କା ଯେପରି ଯଥାର୍ଥରୂପେ ଖର୍ଚ୍ଚ ହେବ ତହିଁର ବ୍ୟବସ୍ଥା କରୁ, ତାହାହେଲେ ଓଡ଼ିଶାର ଜନସାଧାରଣ ବିଶେଷ ଉନ୍ନୟନ ଯୋଜନା କାର୍ଯ୍ୟକାରୀ ହେବାପାଇଁ କରରୂପେ ବା ଋଣରୂପେ ସରକାରଙ୍କୁ ଟଙ୍କା ଦେବା ନିମନ୍ତେ ଅନିଚ୍ଛୁକ ହେବେ ନାହିଁ ।...''

ସେବର୍ଷ ସେ ବ୍ୟୟସଙ୍କୋଚ ଆରମ୍ଭ କରିଛନ୍ତି । ଏହା ଆରମ୍ଭ ହୋଇଛି 'ହେଡ୍ ଅଫ୍ ଦି ଷ୍ଟେଟସ୍' ଗଭର୍ଣ୍ଣର, ତାଙ୍କ ଷ୍ଟାଫ୍ ଏବଂ ହାଉସ୍ ହୋଲ୍ଡ ଅଫ୍-ଦି ଗଭର୍ଣ୍ଣରଙ୍କଠାରୁ । ମନ୍ତ୍ରୀମାନଙ୍କ ବାବଦ ଖର୍ଚ୍ଚ ପୂର୍ବ ବର୍ଷ ଅପେକ୍ଷା ସାମାନ୍ୟ ବଢ଼ିଛି । ସେ କାରଣ ଦର୍ଶାଇଛନ୍ତି ଯେ ଗଡ଼ଜାତ ମିଶ୍ରଣ ପରେ ନୂଆ ଅଞ୍ଚଳମାନଙ୍କର ସମସ୍ୟା ବୁଝିବାକୁ ମନ୍ତ୍ରୀମାନଙ୍କୁ ବାରମ୍ବାର ବିଭିନ୍ନ ସ୍ଥାନକୁ ଗସ୍ତ କରିବାକୁ ପଡୁଛି । ଏଣୁ ପୂର୍ବ ବର୍ଷ ଅପେକ୍ଷା ସାମାନ୍ୟ ଅଧିକ ଖର୍ଚ୍ଚ

ହେବ; ଯଦିଓ ବିଧାନସଭା ବାବଦ ଖର୍ଚ୍ଚ ମଧ୍ୟ ସାମାନ୍ୟ କମାଇ ଦିଆଯାଇଛି । ପର ବର୍ଷ ନିର୍ବାଚନ ହେବାକୁ ଥିବାରୁ ସେ ବାବଦରେ କିଛି ଅଧିକ ଖର୍ଚ୍ଚ ପାଇଁ ବ୍ୟବସ୍ଥା ରହିଛି । କିନ୍ତୁ ସେକ୍ରେଟେରିଏଟ୍ ଖର୍ଚ୍ଚ କମାଇ ଦିଆଯାଇଛି । ଏସବୁ ସତ୍ତ୍ୱେ ସରକାରଙ୍କ କାର୍ଯ୍ୟର ତତ୍ପରତା ଯେଭଳି କମି ନଯାଏ, ସେଥିପ୍ରତି ଦୃଷ୍ଟି ଦିଆଯାଇଛି ।

ବଜେଟ୍ ଅଧିବେଶନର ଭାଷଣରୁ ଜଣାଯାଏ ଯେ ନବକୃଷ୍ଣ ଚୌଧୁରୀ ରାଜ୍ୟର ଭବିଷ୍ୟତ ସମ୍ପର୍କରେ ବେଶ୍ ଆଶାବାନ୍ । ପୁରୁଣା ଶାସନକଳର କାମ କରିବାର ଢଙ୍ଗ ସମ୍ପର୍କରେ ଅବହିତ ଥିଲେ ବି ବ୍ରିଟିଶ ଅମଳର ବହୁ ଅଫିସର୍ ଓ କର୍ମଚାରୀଙ୍କ ମଧ୍ୟରେ ସ୍ୱଦେଶପ୍ରୀତି ଓ ସାଧୁତା ଲକ୍ଷ୍ୟ କରି ସେ ଉତ୍ସାହିତ ବୋଧ କରିଛନ୍ତି । ଗଡ଼ଜାତର ରାଜାମାନେ ଯେଭଳି ଶାସନ ଛାଡ଼ିଦେଲେ, ତାହା ତାଙ୍କ ପାଇଁ ଆତ୍ମତୃପ୍ତିର କାରଣ ହୋଇଛି । ହେଲେ ସେ ଜନସାଧାରଣଙ୍କଠାରୁ ଯେଉଁ ତ୍ୟାଗ ଆଶା କରିଛନ୍ତି, ତାହା ବାସ୍ତବବାଦୀ ନଥିଲା । ଗରିବ ଲୋକ ପେଟରୁ କାଟି ଉପବାସ ରହି ମଧ୍ୟ ବିହନ ସାଇତେ ଭବିଷ୍ୟତ ପାଇଁ ସତ; କିନ୍ତୁ ସାମୂହିକ ଉନ୍ନତି ଓ ଦୀର୍ଘମିଆଦୀ ବିକାଶ ଲାଗି କର, ଟିକସକୁ ସେ ଗ୍ରହଣ କରିପାରିନାହିଁ । ଶହ ଶହ ବର୍ଷର ପରାଧୀନତା ପରେ ସ୍ୱରାଜର ମହତ୍ତ୍ୱ ବୁଝିବାକୁ ସେ ଅକ୍ଷମ । କଂଗ୍ରେସ ଲୋକେ, ବିଶେଷକରି କଂଗ୍ରେସ ସୋସାଲିଷ୍ଟମାନେ 'ଖଜଣା ଟିକସ ନ କମିଲେ ଭାଇ, ସବୁ ଜାତିଙ୍କର କୁଳ ବୁଡ଼ିବ' ବୋଲି ଯେଉଁ ଧ୍ୱନି ଦେଉଥିଲେ, ସୋସାଲିଷ୍ଟ ଓ କମ୍ୟୁନିଷ୍ଟମାନେ ସେହି ଧ୍ୱନିକୁ କଂଗ୍ରେସ ସରକାର ବିରୋଧରେ ପ୍ରୟୋଗ କରିଛନ୍ତି । ଅବଶ୍ୟ ଖଜଣା ଓ ଟିକସ ନକମିଥିଲେ ବି ସେହି ସମୟକୁ ମୁଦ୍ରାର ମୂଲ୍ୟହ୍ରାସ ଫଳରେ ଲୋକେ ବାସ୍ତବରେ ପୂର୍ବ ଅପେକ୍ଷା କମ୍ ଖଜଣା ଓ ଟିକସ ଦେଉଥିଲେ । କିନ୍ତୁ ଏହି ସତ୍ୟ ଲୋକମାନଙ୍କୁ ବୁଝାଇବା ସହଜ ନଥିଲା । ମଣିଷର ମଣିଷପଣିଆ ଓ ବିବେକ ଏବଂ ତା' ଭିତରର ଦେବତ୍ୱ ଉପରେ ଅନେକ ବେଶି ଭରସା କରି ପରବର୍ତ୍ତୀ କାଳରେ ସେ ହତାଶ ହୋଇଛନ୍ତି । ତାଙ୍କ ଅମଳରେ ଦୁର୍ନୀତି ବହୁ କମ୍ ଥିଲା । କେବଳ ହୀରାକୁଦ କାର୍ଯ୍ୟ ଛଡ଼ା ଅନ୍ୟତ୍ର ଅପବ୍ୟୟ ପ୍ରାୟ ନଥିଲା । ସରକାର ଯଥାସମ୍ଭବ ବ୍ୟୟସଙ୍କୋଚ କରୁଥିଲେ । ଏଣୁ ସେ ଆଶା କରୁଥିଲେ ଲୋକେ ଦେଶର ଅଗ୍ରଗତି ଓ ବିକାଶ ଲାଗି, କଷ୍ଟ ହେଲେ ବି, କିଛି ପରିମାଣ କର ଟିକସ ବୃଦ୍ଧିକୁ ଗ୍ରହଣ କରିବେ ।

### ଛାତ୍ର ଆନ୍ଦୋଳନ :

ଏହି ବର୍ଷକ ମଧ୍ୟରେ, ନବବାବୁଙ୍କ ପଚାଶ ବର୍ଷର ବନ୍ଧୁ, ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ସହିତ ତାଙ୍କର ମନାନ୍ତର ଘଟିଛି, ଘରୋଇ ବିଭାଗକୁ ନେଇ । ବିଷୟଟି ନବବାବୁଙ୍କ ପାଇଁ ନିଶ୍ଚିତ ଭାବରେ ଅସୁବିଧାଜନକ ଥିଲା । ନିତ୍ୟାନନ୍ଦ କାନୁନ୍‌ଗୋଙ୍କର କିଛି କାର୍ଯ୍ୟକଳାପକୁ

ହୁଏତ ଦଳର ଅନ୍ୟମାନେ ଅପସନ୍ଦ କରି ମୁଖ୍ୟମନ୍ତ୍ରୀଙ୍କ ନିକଟରେ ଅଭିଯୋଗ କରିଥିବାର ଜଣାପଡ଼େ । ଏ ସମ୍ପର୍କୀୟ ୧୧-୫-୧୯୫୧ ତାରିଖ ଚିଠିରେ ନିତ୍ୟାନନ୍ଦବାବୁ ନବବାବୁଙ୍କୁ ଜଣାଇଛନ୍ତି ଯେ ବର୍ଷକ ପୂର୍ବ ନେତା ନିର୍ବାଚନରେ ସେ ଆଶାୟୀ ଥିଲେ ଏବଂ ତାହା ନ ହୋଇପାରିବାରୁ ସେ ଈର୍ଷାପରାୟଣ ହୋଇଛନ୍ତି ବୋଲି କଂଗ୍ରେସ ଦଳର କିଛି ନେତା ତାଙ୍କୁ ଧାରଣା ଦେଇଛନ୍ତି । ସେହି ଶ୍ରେଣୀର ଲୋକେ କିଛି ଅନୁଚିତ ସୁବିଧା ହାସଲ ପାଇଁ ଚାହିଁଥିଲେ, ଯାହା ନିତ୍ୟାନନ୍ଦବାବୁ କରାଇ ନାହାନ୍ତି ବୋଲି ଉକ୍ତ ଚିଠିରେ ଉଲ୍ଲେଖ କରିଛନ୍ତି । ସେହିମାନେ ତାଙ୍କ ବିରୋଧରେ ନାନା ପ୍ରକାର ପ୍ରଚାର ଚଳାଇଛନ୍ତି । ତେବେ, ସେ ସମୟରେ ଘରୋଇ ବିଭାଗ ଖୁବ୍ ଗୁରୁତ୍ୱପୂର୍ଣ୍ଣ ବିଭାଗ ଥିବାରୁ ସେଇଟିକୁ ନିତ୍ୟାନନ୍ଦ କାନୁନ୍‌ଗୋଙ୍କଠାରୁ କାଢ଼ି ନିଆହେବା ଫଳରେ ତାଙ୍କର ଅସନ୍ତୋଷ ରହିଗଲା ଓ ସେ ପରବର୍ତ୍ତୀ କାଳରେ ପ୍ରାଦେଶିକ ରାଜନୀତିରେ ନ ରହି ସଂସଦୀୟ ରାଜନୀତି ଆଡ଼େ ମନ ବଳେଇଛନ୍ତି ।

ଏତେବେଳକୁ ସରକାରୀ କଲେଜମାନଙ୍କରେ ଛାତ୍ରମାନଙ୍କର ଦରମା, ହଷ୍ଟେଲ୍ ଭଡ଼ା ଆଦି ଦ୍ୱିତୀୟ ମହାସମର ପୂର୍ବଠାରୁ ବଢ଼ିନଥିଲା । ମୁଦ୍ରାସ୍ଫୀତି ଯୋଗୁଁ ଓ ଅଧିକ ମହାବିଦ୍ୟାଳୟ ଖୋଲାଯାଉଥିବା ହେତୁ ଶିକ୍ଷାବିସ୍ତାରକୁ କାର୍ଯ୍ୟକାରୀ କରିବା ଲାଗି ସରକାର ଏସବୁ ବଢ଼ାଇଲେ । ସେତେବେଳକୁ ଗରିବ ଘର ପିଲାମାନେ ମହାବିଦ୍ୟାଳୟରେ ପଢ଼ିବା ଆରମ୍ଭ କଲେଣି । ସେହିମାନଙ୍କୁ ଏହି ଦରମାବୃଦ୍ଧି ଆଦି ନିଶ୍ଚୟ ବାଧିବାର କଥା । ବାମପନ୍ଥୀ ବିରୋଧୀ ଦଳମାନେ ଏ ସୁଯୋଗ ଛାଡ଼ିନଥିଲେ । ସେମାନଙ୍କର ଯୁକ୍ତି ଥିଲା ଯେ ଯେଉଁ ରାଜା, ମହାରାଜାମାନେ ଶହଶହ ବର୍ଷ ଧରି ଶୋଷଣ ଓ ଅତ୍ୟାଚାର କରିଆସିଥିଲେ ଓ ଯେଉଁମାନଙ୍କର ହଜାରହଜାର ଏକର ସମ୍ପତ୍ତି ଥିଲା ଏବଂ କୋଟିକୋଟି ଟଙ୍କା ଓ ବହୁ ଅଳଙ୍କାରମାନ ଥିଲା, ସେମାନଙ୍କୁ ପୁଣି କାହିଁକି ଭତ୍ତା ଦିଆଗଲା ? ବ୍ରିଟିଶ ଅମଳ ପରେ ବି କର୍ମଚାରୀମାନଙ୍କ ଦରମାରେ ଏତେ ତାରତମ୍ୟ କାହିଁକି ? ବିଦେଶୀ ଶିଳ୍ପପତି ଓ ବଡ଼ ବ୍ୟବସାୟୀଙ୍କ ସମ୍ପତ୍ତି ବାଜ୍ୟାପ୍ତ କରାଯାଉନାହିଁ କାହିଁକି ? ଇତ୍ୟାଦି । କର ଟିକସ ନବଢ଼ାଇ ସରକାର ଏଇସବୁ ଥିଲାବାଲାଙ୍କଠାରୁ ଟଙ୍କା ଆଦାୟ କରି ରାଜସ୍ୱ ବଢ଼ାନ୍ତୁ । ଯେଉଁ ନବକୃଷ୍ଣ ଚୌଧୁରୀ ୧୯୪୬ ମସିହାରେ ଛାତ୍ର କଂଗ୍ରେସର ଦିଗ୍‌ଦ୍ରଷ୍ଟା ଥିଲେ, ୧୯୫୧ ମସିହା ବେଳକୁ ତାଙ୍କ ପାଖରେ ଛାତ୍ର ସଙ୍ଗଠନର କୌଣସି ଗୋଷ୍ଠୀ ନଥିଲେ । ସେହି ଛାତ୍ର କଂଗ୍ରେସର ପରବର୍ତ୍ତୀ କାଳର ଉଦୀୟମାନ ଯୁବକମାନେ ସୋସାଲିଷ୍ଟ ପାର୍ଟି ସହିତ ସମ୍ପୃକ୍ତ ହୋଇଯାଇଥିଲେ । କମ୍ୟୁନିଷ୍ଟ ଓ ସୋସାଲିଷ୍ଟ ପାର୍ଟି ଅନୁଗତ ଛାତ୍ରସଙ୍ଗଠନଗୁଡ଼ିକ ମଧ୍ୟରେ ଛାତ୍ରମାନଙ୍କ ମଧ୍ୟରେ ପ୍ରଭାବ ବିସ୍ତାର ଲାଗି ପ୍ରତିଯୋଗିତା ଚାଲିଥିଲା । ଏଣୁ ଦରମା ବୃଦ୍ଧି ବିରୋଧୀ ଆନ୍ଦୋଳନରେ ଉଭୟ ମୁଖର ହୋଇଉଠିଥିଲେ । ଏହି ଆନ୍ଦୋଳନର ତୀବ୍ରତା ଯୋଗୁଁ ରେଭେନ୍ସା କଲେଜ ଭଳି ସରକାରୀ କଲେଜ ବନ୍ଦ କରିଦିଆଗଲା । କମ୍ୟୁନିଷ୍ଟ ପାର୍ଟିର,

ଯୁଦ୍ଧ ସମୟରେ, ବ୍ରିଟିଶ ସରକାରକୁ ସହାୟତା ଓ ସଶସ୍ତ୍ର ବିପ୍ଳବ ଆଭିମୁଖ୍ୟ ଯୋଗୁଁ କମ୍ୟୁନିଷ୍ଟମାନେ ଲୋକପ୍ରିୟତା ହରାଇଥାନ୍ତି । ଏଣୁ ଛାତ୍ରଙ୍କ ମଧ୍ୟରେ ସେମାନଙ୍କର ପ୍ରାଧାନ୍ୟ ନଥିଲା । ସୋସାଲିଷ୍ଟ ପାର୍ଟି ଅନୁଗତ ଛାତ୍ରନେତାମାନେ ହିଁ ରେଭେନ୍ସା କଲେଜ ଭଳି ବଡ଼ କଲେଜର ନେତୃତ୍ୱରେ ଥାଆନ୍ତି । ୧୨ ଦିନ ଲାଗି ରେଭେନ୍ସା କଲେଜରୁ ଚାନ୍ଦିନୀଚୌକ ପର୍ଯ୍ୟନ୍ତ ଶୋଭାଯାତ୍ରା ଯାଏ । ଧର୍ମଘଟ ପରିଚାଳନା ପାଇଁ ଏକ 'କାଉନ୍‌ସିଲ୍ ଅଫ୍ ଆକ୍‌ସନ୍' ଗଢ଼ାଯାଇଥାଏ । ସେଥିରେ ସଭାପତି ଥାଆନ୍ତି ଏମ୍.ଏ. ପରୀକ୍ଷା ଦେଇଥିବା ଗୋବିନ୍ଦ ଚନ୍ଦ୍ର ଦାସ । ଅନ୍ୟମାନଙ୍କ ମଧ୍ୟରେ ରାଜେନ୍ଦ୍ର ପ୍ରସାଦ ଦାସ, ଦେବୀପ୍ରସନ୍ନ ପଟ୍ଟନାୟକ, ପ୍ରବୀର ପାଲିତ, ଅଖିଳମୋହନ ପଟ୍ଟନାୟକ, ବ୍ରଜମୋହନ ମହାନ୍ତି, ରମାକାନ୍ତ ମହାପାତ୍ର ଓ ଚନ୍ଦ୍ରମଣି ନାୟକ । ସରକାର କିଛି ନ ଶୁଣୁଥିବାରୁ ନିଷ୍ପତ୍ତି ହେଲା ଯେ ଜୁଲାଇ ୧୭ ତାରିଖ ଦିନ ବିଧାନ ସଭା ଅବରୋଧ କରାଯିବ । ସେତେବେଳ ବିଧାନସଭା, ରେଭେନ୍ସା କଲେଜର ପୂର୍ବ ଛାତ୍ରାବାସ ପାଖ ହଲ୍‌ରେ ହେଉଥିଲା । ଯେଉଁଦିନ ବିଧାନସଭା ଅବରୋଧ କରାଗଲା, ସେଦିନ ନବକୃଷ୍ଣ ଚୌଧୁରୀ ପିଲାମାନଙ୍କୁ ସେ ଅବସ୍ଥାରେ ଦେଖି ବୁଝାଇଲେ ଯେ ସେଦିନ ଜମିଦାରି ଉଚ୍ଛେଦ ଆଇନ ବିଧାନସଭାରେ ଆଗତ ହେବାର କଥା । ହଜାରହଜାର ବର୍ଷ ଧରି ଚାଲିଆସିଥିବା ସାମନ୍ତବାଦୀ ଶାସନର ଅବସାନ ଲାଗି ଏକ ଆଇନ ଆସିବ । କିନ୍ତୁ ପିଲାମାନେ ସେସବୁ ଶୁଣିବା ଅବସ୍ଥାରେ ନଥାନ୍ତି । ଅନ୍ୟ ସଦସ୍ୟ ଓ ମନ୍ତ୍ରୀମାନେ ଯାଇ ନପାରି ଫେରିଲେ । କେବଳ ପିଲାଙ୍କୁ ମାଡ଼ି ଭିତରକୁ ଯାଇଥିଲେ ବିଜୟାନନ୍ଦ ପଟ୍ଟନାୟକ । ନବବାବୁ ପ୍ରାୟ ୪୦, ୫୦ ମିନିଟ ଖରାରେ ଠିଆହେଲେ । ଜଣେ କେହି ଛତା ଆଣି ମୁଣ୍ଡ ଉପରେ ଦେଖାଇବାରୁ ବିରକ୍ତ ହୋଇ କହିଲେ, ''ତୁମ୍ଭେମାନେ ଖରାରେ ତଳେ ଶୋଇଛ ଆଉ ଖରାରେ ମୋ' ମୁଣ୍ଡ କଅଣ ଫାଟିଯିବ ?'' ନବବାବୁ ଶେଷକୁ ଫେରିଗଲେ ।

ଧର୍ମଘଟର ସମାଧାନ ପାଇଁ ସେ ସମୟର ଆଡ୍‌ଭୋକେଟ୍ ଜେନେରାଲ ବାଞ୍ଛାନିଧି ମହାପାତ୍ର, ବୀରେନ୍ ମିତ୍ର, ବିଜୁ ପଟ୍ଟନାୟକ ଓ ଅଧ୍ୟାପକ ଶ୍ରୀରାମଚନ୍ଦ୍ର ଦାଶ ଚେଷ୍ଟା କରୁଥାନ୍ତି । ଏଥିପାଇଁ ଥରେ ହରେକୃଷ୍ଣ ମହତାବ ବି କଟକ ଆସିଥିଲେ । ଏଥିଲାଗି 'ପ୍ରଜାତନ୍ତ୍ର' ପରିସର ମଧ୍ୟରେ ଅନେକ ବୈଠକ ହୋଇଥିଲା । କିନ୍ତୁ କିଛି ନିଷ୍ପତ୍ତି ନହେବାରୁ ଜୁଲାଇ ୧୯ ତାରିଖ ଦିନ ସଙ୍ଗଠିତ ଭାବରେ ବିଧାନସଭା ବନ୍ଦ୍ କରାଯିବାର ନିଷ୍ପତ୍ତି ହେଲା । ଏହି ଖବର ସରକାର ଜାଣିବାକୁ ପାଇଥିଲେ । ଶେଷ ପଦକ୍ଷେପ ପୂର୍ବରୁ ଜୁଲାଇ ୧୭ ତାରିଖ ରାତିରେ ରାଜେନ୍ଦ୍ର ପ୍ରସାଦ ଦାସ, ଚନ୍ଦ୍ରମଣି ନାୟକ ଆଦି ଅଧ୍ୟାପକ ଶ୍ରୀରାମଚନ୍ଦ୍ର ଦାଶଙ୍କ ପ୍ରବର୍ତ୍ତନାରେ ଏବଂ ବିଜୟାନନ୍ଦ ପଟ୍ଟନାୟକଙ୍କ ସଙ୍ଗରେ ନବବାବୁଙ୍କ ସହିତ କଥାବାର୍ତ୍ତା କରିବାକୁ ଯାଇଥିଲେ । ପୂର୍ବୋକ୍ତ ଛାତ୍ରନେତାମାନେ ନବବାବୁଙ୍କ ପୁଅ କାଲୁର ସହପାଠୀ ଓ ଅତି ଅନ୍ତରଙ୍ଗ । ନବବାବୁ ଏମାନଙ୍କୁ ଦେଖି ପ୍ରଥମେ କହିଲେ, ଏ କଅଣ କଲ ? ମତେ କି

ଅବସ୍ଥାରେ ପକାଇଲ ? କାଲି ପୋଲିସ ଧରପଗଡ଼ ବାଡ଼ିଆପିଟା କରିବ । ତମ ଅଣ୍ଟା ଭାଙ୍ଗିଯାଉ ବୋଲି ମୁଁ ଚାହୁଁ ନଥିଲି । ତମେ ମତେ ବାଧ୍ୟ କଲ ।' ଆଲୋଚନା ଭିତରେ ନବବାବୁଙ୍କ ଆଖିରୁ ଲୁହ ବୋହୁଥାଏ । ବହୁ କଥା କଟାକଟି ପରେ ରାଜିନାମା ହେଲା ଯେ ଦରମା ଦୁଇଟଙ୍କା ବଦଳରେ ଟଙ୍କାଏ ବଢ଼ିବ ଓ ହଷ୍ଟେଲରେ ରହୁଥିବା ଛାତ୍ରଙ୍କ ପାଇଁ ଚାରିଟଙ୍କା ବଦଳରେ ଦୁଇଟଙ୍କା ଦେବାକୁ ପଡ଼ିବ, ପରଦିନ ରେଭେନ୍ସା କଲେଜ ଖୋଲିବାପାଇଁ ପଦକ୍ଷେପ ନିଆଯିବ ଇତ୍ୟାଦି । ଏହି ରାଜିନାମାରେ କମ୍ୟୁନିଷ୍ଟପନ୍ଥୀ ଛାତ୍ରନେତାମାନେ ସମ୍ମତ ହୋଇଥିଲେ ମଧ୍ୟ ପରଦିନ କିନ୍ତୁ ଏହା ବିରୁଦ୍ଧରେ ଛାତ୍ରମାନଙ୍କୁ ମତାଇଲେ । ଫଳରେ ରାଜିନାମା କାର୍ଯ୍ୟକାରୀ ନ ହୋଇ ଧର୍ମଘଟ ଚାଲିଲା । ଜୁଲାଇ ୧୮ ତାରିଖରେ ସରକାରଙ୍କ ତରଫରୁ ରାଜିନାମା ବିଜ୍ଞପ୍ତି ପ୍ରକାଶିତ ହୋଇ ଡାକବାଜି ଯନ୍ତ୍ର ସାହାଯ୍ୟରେ ପ୍ରଚାରିତ ହୋଇଥିଲେ ବି ଛାତ୍ରମାନଙ୍କୁ କେହି ଧର୍ମଘଟରୁ ନିବର୍ତ୍ତାଇ ପାରିନଥିଲେ ।

ଜୁଲାଇ ୧୯ ତାରିଖ ପିକେଟିଙ୍ଗ ଶାନ୍ତିପୂର୍ଣ୍ଣ ଭାବରେ ହେବ ଏବଂ ନିର୍ଦ୍ଦିଷ୍ଟ ଛାତ୍ରଛାତ୍ରୀମାନେ ଦଳ ଦଳ ହୋଇ ସେଥିରେ ଅଂଶ ଗ୍ରହଣ କରିବାପାଇଁ ଆଗରୁ ନିଷ୍ପତ୍ତି ହୋଇଥିଲେ ବି ଅନାହୂତ ଭାବରେ ନନ୍ଦିନୀ ଶତପଥୀ ଓ କେତେକ କମ୍ୟୁନିଷ୍ଟ ଛାତ୍ର ବିଧାନସଭା ପ୍ରଧାନ ଦ୍ୱାରରେ ବସିଲେ । ଲାଠିଚାର୍ଜ ପରେ, ପାଣିର ଜେଟ୍ ଛଡ଼ାଗଲା ଓ ଗିରଫଦାରି ଚାଲିଲା । ଏତେବେଳକୁ ବାହାରର ଲୋକେ ଓ ବିଶେଷକରି କମ୍ୟୁନିଷ୍ଟମାନଙ୍କର ଗଡ଼ ଶଙ୍କରପୁରରୁ ଲୋକମାନେ ଆସି ଟେକା ପକାଇବାକୁ ଆରମ୍ଭ କରିଦେଇଥିଲେ । ସେହି ଟେକାମରାଳିଙ୍କ ମଧ୍ୟରେ ବି ଥିଲେ ଓଡ଼ିଶାର ଜଣେ ଜଣାଶୁଣା ଛନ୍ଦକବି । ଏହାଫଳରେ ଜଣେ ସର୍ଜେଣ୍ଟଙ୍କ ନାକ ଫାଟିଲା । ସେ ରିଭଲ୍‌ଭର ଚଳାଇଲେ । ସ୍ୱସ୍ତି ମହାପାତ୍ରଙ୍କ ଗୋଡ଼ରେ ଗୁଳି ବାଜିଲା । ପୋଲିସ ଉପରକୁ ଟେକାମାଡ଼ ଓ ପୋଲିସ ଲାଠି ପ୍ରହାରରେ ବହୁ ଲୋକ ଆହତ ହେଲେ । ପ୍ରାୟ ସନ୍ଧ୍ୟା ପର୍ଯ୍ୟନ୍ତ ଏହା ଚାଲିଲା ।

ପରଦିନ ଛାତ୍ରନେତାମାନେ ମୁଖ୍ୟମନ୍ତ୍ରୀଙ୍କ ବାସଭବନ ଆଗରେ ଅନଶନ କରିବାକୁ ଆସିବା ବାଟରେ ଗିରଫ ହେଲେ । ୧୫ ଦିନ ପରେ ସେମାନେ ଜାମିନରେ ଖଲାସ ହୋଇ ଆସିଲେ ସତ, କିନ୍ତୁ ଆଉ ପଢ଼ିପାରିଲେ ନାହିଁ । କେତେ ନେତା ଦୁଇ ବର୍ଷ ଲାଗି କଲେଜରୁ ବହିଷ୍କୃତ ହେଲେ । ଏହି ଆନ୍ଦୋଳନରେ କମ୍ୟୁନିଷ୍ଟପନ୍ଥୀ ଛାତ୍ରମାନେ ଫାଇଦା ଉଠାଇଲେ ଏବଂ ନବକୃଷ୍ଣ ଚୌଧୁରୀଙ୍କ ସରକାର ବିଶେଷ ଭାବରେ ବଦନାମ ହେଲେ ।

ଏହାର ପରଦିନ ଯେତେବେଳେ ବିଧାନସଭାରେ ପୋଲିସର ମାତ୍ରାଧିକ୍ୟ କଥା ଅଭିଯୋଗ କରାଗଲା, ନବବାବୁ କହିଥିଲେ, ''ପୋଲିସର ଧୈର୍ଯ୍ୟଚ୍ୟୁତି ହେଲାଭଳି କାର୍ଯ୍ୟ

ହୋଇଛି । ପୋଲିସ ଖୁବ୍ ସଂଯମର ସହିତ କାର୍ଯ୍ୟ କରିଛି । କିଛି ସାଇକେଲ ଆଦି ଭାଙ୍ଗିଛି ଓ କେତେଜଣ ମାଡ଼ ଖାଇଛନ୍ତି ସତ, କିନ୍ତୁ ପୋଲିସ ସେତକ ନ କରିଥିଲେ ଗଣ୍ଡଗୋଳ ଆହୁରି ତୀବ୍ର ହୋଇଥାନ୍ତା ଓ ହୁଏତ କେତେକ ମରିଥାନ୍ତେ । ପୋଲିସ ବିଭାଗର ଉପର ଅଫିସର ପୋଲିସଙ୍କୁ ବନ୍ଧୁକ ନଦେଇ ଠେଙ୍ଗା ଦେଇ ସେମାନଙ୍କ ଧୈର୍ଯ୍ୟଚ୍ୟୁତି କରାଇବା ଉଚିତ ହୋଇନାହିଁ ।''

## ପ୍ରଥମ ସାଧାରଣ ନିର୍ବାଚନ :

୧୯୫୧ ମସିହା ସେପ୍ଟେମ୍ବର ଦ୍ୱିତୀୟାର୍ଦ୍ଧ ବେଳକୁ ସାଧାରଣ ନିର୍ବାଚନ ଲାଗି ସଜବାଜ ହୋଇଯାଇଥାଏ । ଓଡ଼ିଶା କଂଗ୍ରେସର ସଭାପତି ସେତେବେଳକୁ ବିଶ୍ୱନାଥ ଦାସ । ତାଙ୍କୁ ଭାବୀ ମୁଖ୍ୟମନ୍ତ୍ରୀ ଭାବରେ ଆଣିବାପାଇଁ ତାଙ୍କ ଗୋଷ୍ଠୀ ଇଚ୍ଛା କରୁଥାନ୍ତି । ହରେକୃଷ୍ଣ ମହତାବ ଦିଲ୍ଲୀରେ ଥିଲେ ବି ବିଶ୍ୱନାଥ ଦାସ ମୁଖ୍ୟମନ୍ତ୍ରୀ ଭାବରେ ଓଡ଼ିଶା ରାଜନୀତିକୁ ଫେରିବାଟା ଚାହୁଁନଥାନ୍ତି । ତାଙ୍କର ଭୟ ଥାଏ, ୧୯୩୭ ମସିହାରେ ପ୍ରଧାନମନ୍ତ୍ରୀ ଭାବରେ ସୁନାମ ଅର୍ଜନ କରିଥିବା ବିଶ୍ୱନାଥ ଦାସ ଥରେ ମୁଖ୍ୟମନ୍ତ୍ରୀ ହୋଇଗଲେ ତାଙ୍କୁ ହଟାଇବା କଷ୍ଟକର । ଅନ୍ୟ ପକ୍ଷରେ କ୍ଷମତା ପ୍ରତି ବୀତସ୍ପୃହ ନବକୃଷ୍ଣ ଚୌଧୁରୀଙ୍କୁ ଅନାୟାସରେ ଗାଦିରୁ ତଡ଼ିହେବ । ମହତାବବାବୁଙ୍କ ଯୁକ୍ତି ଥାଏ ଯେ ବିଶ୍ୱନାଥବାବୁ ଯଦି ମୁଖ୍ୟମନ୍ତ୍ରୀ ହେବା ଲକ୍ଷ୍ୟରେ ନିର୍ବାଚନ ଅଭିଯାନରେ ଅବତୀର୍ଣ୍ଣ ହେବାକୁ ଇଚ୍ଛୁକ, ତେବେ ସେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ପଦ ଓ ପ୍ରାଦେଶିକ ନିର୍ବାଚନ ମନୋନୟନ ବୋର୍ଡ଼ର ଚେୟାରମ୍ୟାନ ପଦ ଛାଡ଼ନ୍ତୁ (ମହତାବବାବୁଙ୍କର ବିଶ୍ୱନାଥ ଦାସଙ୍କୁ ୧୯୫୧ ମସିହା ସେପ୍ଟେମ୍ବର ୧୭ ତାରିଖ ଚିଠି ଦ୍ରଷ୍ଟବ୍ୟ) ।

ଆସନ୍ନ ନିର୍ବାଚନ ସତ୍ତ୍ୱେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ନିର୍ବାଚନ ପ୍ରସ୍ତୁତି ଦିଗରେ ସକ୍ରିୟ ନଥିବା ଦେଖି ନବକୃଷ୍ଣ ଚୌଧୁରୀ ଜବାହରଲାଲ ନେହେରୁଙ୍କୁ ଓଡ଼ିଶା କଂଗ୍ରେସ ଦଳର ପରିସ୍ଥିତି ସମ୍ପର୍କରେ ଅବଗତ କରାଇଛନ୍ତି ଓ ନିର୍ବାଚନ ସମ୍ପର୍କରେ ନିଷ୍ପତ୍ତି ନେବା ଲାଗି ମହତାବ ବାବୁ ଓ ବିଶ୍ୱନାଥବାବୁ ତାଙ୍କୁ ନେଇ ଏକ ଛୋଟ କମିଟି ଗଢ଼ାଯିବା ଲାଗି ପ୍ରସ୍ତାବ ଦେଇଛନ୍ତି । ଏହା ପରେପରେ ସେ ସମ୍ପର୍କରେ ନେହେରୁଙ୍କୁ ଏକ ଟେଲିଗ୍ରାମ କରିଛନ୍ତି ।

ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟିର ଅବ୍ୟବସ୍ଥା ଲକ୍ଷ୍ୟ କରି ଅକ୍ଟୋବର ୨୮ ତାରିଖରେ କେନ୍ଦ୍ରୀୟ ନିର୍ବାଚନ କମିଟି ତରଫରୁ ନବବାବୁଙ୍କ ପାଖକୁ ପୁଣି ଏକ ଟେଲିଗ୍ରାମ ଆସିଛି । ସେଥିରେ ରାଜ୍ୟ ନିର୍ବାଚନ ପରିଚାଳନା ପାଇଁ ପ୍ରାଦେଶିକ କମିଟି ସଭାପତିଙ୍କ ସହିତ ପରାମର୍ଶ କରି ଏକ ଛୋଟ କମିଟି ଗଢ଼ିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ଏହି କମିଟି ପାଣ୍ଠି ଆଦାୟଠାରୁ ଆରମ୍ଭ କରି ନିର୍ବାଚନ ପ୍ରଚାର ଦାୟିତ୍ୱରେ ରହିବ ।

ଜଣାଯାଏ ଯେ ବିଶ୍ୱନାଥ ଦାସ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଓ ପ୍ରାଦେଶିକ ନିର୍ବାଚନ ପରିଚାଳନା ବୋର୍ଡ଼ର ଚେୟାରମ୍ୟାନ୍ ରହିଲେ । କେନ୍ଦ୍ରୀୟ କମିଟି ଓ ବିଶେଷ କରି ନେହେରୁ ତାଙ୍କୁ ଓଡ଼ିଶା ରାଜନୀତିକୁ ଫେରିବା ପାଇଁ ଅନୁକୂଳ ମତ ଦେଲେ ନାହିଁ; ତାଙ୍କୁ ପାର୍ଲାମେଣ୍ଟକୁ ପ୍ରାର୍ଥୀ ଭାବରେ ବଛାଗଲା ଓ ସେ ଉମାଚରଣ ପଟ୍ଟନାୟକଙ୍କଠାରୁ ହାରିଯାଇଥିଲେ । ଅବଶ୍ୟ ନିର୍ବାଚନ ପରେ ସେ ରାଜ୍ୟସଭାକୁ ମନୋନୀତ ହେଲେ । ଏଣୁ ଓଡ଼ିଶା ନିର୍ବାଚନର କେନ୍ଦ୍ରବିନ୍ଦୁ ରହିଲେ ନବକୃଷ୍ଣ ଚୌଧୁରୀ ଓ ତାଙ୍କର ପୃଷ୍ଠପୋଷକ ରହିଲେ ହରେକୃଷ୍ଣ ମହତାବ ।

ପ୍ରାଦେଶିକ କଂଗ୍ରେସ କମିଟି ତରଫରୁ ଏକ ନିର୍ବାଚନ କମିଟି ଗଢ଼ା ହୋଇଥିଲେ ମଧ୍ୟ ତାହା ଠିକଣା ଭାବରେ ଚାଲୁ ନଥାଏ । ମୟୂରଭଞ୍ଜ ଜିଲ୍ଲା ପାଇଁ ପ୍ରାର୍ଥୀ ମନୋନୟନ ହୋଇପାରୁ ନଥାଏ । ତେଣୁ ସେହି ଜିଲ୍ଲାର ପ୍ରାର୍ଥୀ ମନୋନୟନ କାର୍ଯ୍ୟ ମୁଖ୍ୟମନ୍ତ୍ରୀଙ୍କୁ ଦିଆଯାଇଥିବାର ଜଣାଯାଏ । ତଦନୁସାରେ ନବବାବୁ ନିଜ ମନୋନୀତ ତାଲିକା ପ୍ରାଦେଶିକ କମିଟିକୁ ଦେବା ସଙ୍ଗେସଙ୍ଗେ କେନ୍ଦ୍ରୀୟ ନିର୍ବାଚନ କମିଟିକୁ ପଠାଇଥିଲେ ।

ଗଡ଼ଜାତ ମିଶ୍ରଣ ପରେ ବୃହତ୍ତର ଓଡ଼ିଶାର ଏହା ହେଉଛି ପ୍ରଥମ ନିର୍ବାଚନ । ଏତେବେଳକୁ କେତେକ ରାଜା, ରାଣୀ ଓ ଜମିଦାର ପରିସ୍ଥିତିକୁ ଲକ୍ଷ୍ୟ କରି କଂଗ୍ରେସରେ ମିଶିବାକୁ ବ୍ୟାକୁଳତା ପ୍ରକାଶ କରିଥାନ୍ତି । ନାନା ଦୃଷ୍ଟିରୁ କଂଗ୍ରେସ ଅଳ୍ପକେତେକ ରାଜା ଓ ରାଜବଂଶୀୟ ବ୍ୟକ୍ତିଙ୍କୁ ଦଳୀୟ ପ୍ରାର୍ଥୀ କରିଥିଲା । କିନ୍ତୁ ଓଡ଼ିଶାର ଗଡ଼ଜାତ ରାଜା ଓ ମହାରାଜାମାନେ କଂଗ୍ରେସ ବିରୋଧରେ ଏକ ସମ୍ମିଳିତ ଆକ୍ରମଣ ଲାଗି ଗଣତନ୍ତ୍ର ପରିଷଦ ନାମରେ ଏକ ଦଳ ଗଠନ କରିଥାନ୍ତି । କଂଗ୍ରେସକୁ ଉପକୂଳ ଅଞ୍ଚଳରେ ସାମ୍ୟବାଦୀ ଓ ସମାଜବାଦୀଙ୍କ ସହିତ ମୁକାବିଲା କରିବା ସଙ୍ଗେସଙ୍ଗେ ପଶ୍ଚିମ ଓଡ଼ିଶାର ଗଣତନ୍ତ୍ର ପରିଷଦ ସହିତ ମୁକାବିଲା କରିବାକୁ ପଡୁଥାଏ ।

ସାମ୍ୟବାଦୀ ଓ ସମାଜବାଦୀମାନେ ଦ୍ରୁତ ଓ ମୌଳିକ ଅର୍ଥନୈତିକ ପରିବର୍ତ୍ତନ ଦାବି କରୁଥିବା ସ୍ଥଳେ ଗଣତନ୍ତ୍ର ପରିଷଦ ଉପକୂଳ ରାଜନୀତିର ପ୍ରାଧାନ୍ୟ ଓ ହୀରାକୁଦ ବନ୍ଧ ବିରୋଧୀ ଧ୍ୱନି ଦେଇ ଲଢୁଥାନ୍ତି । ଏଥର ହରେକୃଷ୍ଣ ମହତାବ ପାର୍ଲାମେଣ୍ଟ ଲାଗି କଟକ ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହେଲେ । ନବବାବୁଙ୍କ ଉପରେ ସମଗ୍ର ପ୍ରଦେଶର ନିର୍ବାଚନ ପରିଚାଳନା ଦାୟିତ୍ୱ ଥିବାରୁ ସେ ଅପେକ୍ଷାକୃତ ସହଜସାଧ୍ୟ ବଡ଼ଚଣା ଭଳି ନିର୍ବାଚନମଣ୍ଡଳୀରୁ ଠିଆହେଲେ । ଏହି ନିର୍ବାଚନ ପୂର୍ବରୁ, କଲେଜ ଛାତ୍ରଙ୍କ ଦରମାବୃଦ୍ଧି ବିରୋଧୀ ଆନ୍ଦୋଳନ ଯୋଗୁଁ, ନବବାବୁ ଓ କଂଗ୍ରେସ ଓଡ଼ିଶାର ଛାତ୍ରସମାଜର ବିଷଦୃଷ୍ଟିରେ ପଡ଼ିଥାନ୍ତି । ଏଣୁ ବଡ଼ଚଣାରେ ତାଙ୍କ ବିରୋଧରେ ଠିଆହେଲେ ସମାଜବାଦୀ ଯୁବନେତା କୁଳମଣି ମହାପାତ୍ର । ତାଙ୍କ ସଂଗ୍ରାମର ସେନାପତି ଥିଲେ ସେ ସମୟର ବିଖ୍ୟାତ ଛାତ୍ରନେତା ଓ ଶିକ୍ଷାରୁ ବଞ୍ଚିତ

ରାଜେନ୍ଦ୍ର ପ୍ରସାଦ ଦାସ । ରାଜେନ୍ଦ୍ରବାବୁଙ୍କ ଅଭିଯୋଗ ଯେ ନବବାବୁଙ୍କ ତରଫରୁ ନିର୍ବାଚନ ପୂର୍ବରୁ ଛତା ଓ କମ୍ବଳ ବଣ୍ଟାଯାଇଥିଲା । କିନ୍ତୁ କୁଳମଣି ମହାପାତ୍ରଙ୍କଠାରୁ ଟାଣୁଆ ପ୍ରତିଦ୍ୱନ୍ଦ୍ୱୀ ଥିଲେ ଡାକ୍ତର ଜଗନ୍ନାଥ ଦାସ । ସେ ଚାକିରି ନ କରି ଛତିଆଠାରେ ଘରୋଇ ଚିକିତ୍ସା କରୁଥିଲେ ଏବଂ ବେଶ୍ ଲୋକପ୍ରିୟ ବି ଥିଲେ । ତାଙ୍କ କହିବା ଅନୁସାରେ ନବବାବୁଙ୍କ ନିର୍ବାଚନର ମୁଖ୍ୟ ଦାୟିତ୍ୱ ଥିଲା ବୀରେନ୍ ମିତ୍ରଙ୍କ ଉପରେ । ସେ ବଡ଼ଚଣା ସହିତ ଆଗରୁ ପରିଚିତ୍ ଥିଲେ ଓ ବଡ଼ଚଣା ହାଇସ୍କୁଲର ସମ୍ପାଦକ ଥିଲେ । ମହତାବବାବୁ ପାଖ କଟକ ପାର୍ଲାମେଣ୍ଟ ନିର୍ବାଚନ ମଣ୍ଡଳୀରୁ ଲଢୁଥିବାରୁ ଅନେକ ସମୟରେ ନିର୍ବାଚନ ପ୍ରଚାରରେ ବଡ଼ଚଣା ଯାଉଥିଲେ ।

ନବକୃଷ୍ଣ ଚୌଧୁରୀ ନିଜେ ଗାଁ ଗାଁ ବୁଲି ଭୋଟ୍ ଭିକ୍ଷା କରୁଥିଲେ । ବୀରେନ୍ ମିତ୍ରଙ୍କ ନେତୃତ୍ୱରେ ଯେଉଁ ନିର୍ବାଚନ ପ୍ରଚାର ହେଉଥିଲା, ତାହା ଟିକିଏ ଭିନ୍ନ ପ୍ରକାରର ଥିଲା । ନବବାବୁଙ୍କ ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ ଜଗନ୍ନାଥ ଦାସଙ୍କ କହିବା ଅନୁସାରେ ବ୍ୟକ୍ତିଗତ ଭୋଟରକୁ ଟଙ୍କା ଦିଆଯାଇ ନଥିଲେ ବି ରାସ୍ତା, ମନ୍ଦିର, ଚଉପାଢ଼ୀ ପାଇଁ ଟଙ୍କା ଦିଆଯାଇଥିଲା । ବିଜୟାନନ୍ଦ ପଟ୍ଟନାୟକ ଓ ଆସ୍କାର ଖାଁ ମଟର ସର୍ଭିସର ମାଲିକ ନିର୍ବାଚନ ଖର୍ଚ୍ଚ ଯୋଗାଉଥିଲେ ବୋଲି ଜଣାଯାଏ । ନିର୍ବାଚନମଣ୍ଡଳୀର ବିଶିଷ୍ଟ ଜମିଦାର ଓ ପ୍ରଭାବଶାଳୀ ବ୍ୟକ୍ତି ତଥା ପୂର୍ବତନ ବିଧାୟକ ୰ଧନଞ୍ଜୟ ଲେଙ୍କା ଏବଂ ପୂର୍ବତନ ବିଧାୟକ ମାନଗୋବିନ୍ଦ ସାମଲ, ସ୍ୱାଧୀନତା ସଂଗ୍ରାମୀ ୰ଗୋବିନ୍ଦ ଚନ୍ଦ୍ର ମିଶ୍ର, ସ୍ୱାଧୀନତା ସଂଗ୍ରାମୀ ଶଶିଭୂଷଣ ଦାସ, ୰ବୃନ୍ଦାବନ ତ୍ରିପାଠୀ, ୰ଗୌରାଙ୍ଗ ଚରଣ ଦାସ ଆଦି ନିର୍ବାଚନ ପରିଚାଳନାରେ ଥିଲେ । ଏମାନଙ୍କ ଛଡ଼ା ଛତିଆବଟର ମହନ୍ତ ଓ ମହନ୍ତଙ୍କ ମ୍ୟାନେଜର କୃଷ୍ଣଚନ୍ଦ୍ର ନନ୍ଦ ଏବଂ ସେ ଅଞ୍ଚଳର ଅନ୍ୟାନ୍ୟ ଜମିଦାର, ମହାଜନ, କଳକଳାର ରାଜା, କୁଳିଆମଠ ମହନ୍ତ ନିର୍ବାଚନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଛତିଆବଟ ଛଡ଼ା ବିଭିନ୍ନ ଗାଁ ଭୋଜିରେ ବହୁସଂଖ୍ୟକ ଲୋକ ଯୋଗ ଦିଅନ୍ତି । ଛତିଆବଟର ପଙ୍‌କ୍ତିଭୋଜନ ପରେ ଭୋଟ୍ ପାଇଁ ଶପଥ ନେବା ଶୁଣାଯାଇ ନଥିଲେ ବି ଅନ୍ୟ କେତେକ ଗାଁ ସଭା ପରେ ପଙ୍‌କ୍ତିଭୋଜନ କାଳରେ କଂଗ୍ରେସକୁ ଭୋଟ୍ ଦେବା ଲାଗି ଶପଥ ଦିଆଇବା କଥା ଶୁଣାଯାଇଥିଲା ।

ବୀରେନ୍ ମିତ୍ର କଟକର ବିଭିନ୍ନ ଜାତିର ମୁଖ୍ୟ ଲୋକମାନଙ୍କୁ ବଡ଼ଚଣାକୁ ନିର୍ବାଚନ ପ୍ରଚାର ଲାଗି ପଠାଇଥିଲେ । ଭୋଟ ପାଖାପାଖି ବେଳକୁ ଏତେ କଟକିଆ ଲୋକ ବଡ଼ଚଣା ଯାଇଥିଲେ ଯେ ସେମାନଙ୍କୁ ଦେଖି ସ୍ଥାନୀୟ ଲୋକେ ଭୟ କରିଯାଇଥିଲେ । ଏତେ ପ୍ରଚାରକ ଯାଇଥିଲେ ବି କୌଣସି ସ୍ଥାନରେ ବଳ ପ୍ରୟୋଗ ହୋଇନଥିଲା । ଶୀତଦିନ ହେତୁ କେଉଁଠି କେଉଁଠି କମ୍ବଳ ଦିଆଯାଇଥିବା କଥା ଶୁଣାଯାଇଥିଲା, କିନ୍ତୁ ଗୋଟିଏ ଶବର ସାହିର ସବୁ ସ୍ତ୍ରୀ ଲୋକ ନୂଆ ଶାଢ଼ି ପିନ୍ଧି ଭୋଟ୍ ଦେବାକୁ ଯାଇଥିଲେ ବୋଲି ଡାକ୍ତର ଜଗନ୍ନାଥ ଦାସ କହନ୍ତି ।

ବୀରେନ୍ ମିତ୍ରଙ୍କର ଏସବୁ କାରବାର ନବବାବୁଙ୍କୁ ଜଣାଥିଲା କି ନାହିଁ, କହି ହେବ ନାହିଁ । ଓଡ଼ିଶାର ଭାବୀ ମୁଖ୍ୟମନ୍ତ୍ରୀଙ୍କୁ ଭୋଟ୍ ଦେଲେ ବଡ଼ଚଣାର ବହୁ ଉନ୍ନୟନମୂଳକ କାମ ହେବ, ଏହି ଆଶାରେ ହିଁ ବଡ଼ଚଣାବାସୀ ନବବାବୁଙ୍କୁ ବିପୁଳ ସଂଖ୍ୟକ ଭୋଟ୍ ଦେଇ ଜିତାଇଥିଲେ । ଶାଢ଼ି, କମ୍ବଳ, ଟଙ୍କା ଓ ଡାଲିଭାତ ଦିଆ ନହୋଇଥିଲେ ବି ସେ ଜିତିଥାନ୍ତେ ବୋଲି ପୂର୍ବତନ ବିଧାୟକ ମାନଗୋବିନ୍ଦ ସାମଲ ଆଦିଙ୍କର ମତ । ତଥାପି ବୀରେନ୍ ମିତ୍ର ତାଙ୍କ କାର୍‌ପଟଦାରି ଦେଖାଇଥିଲେ । ଯେଉଁ ଶ୍ରେଣୀର ଲୋକଙ୍କୁ ନବବାବୁ ଘୃଣା କରନ୍ତି, ସେହିମାନେ ଏଥର ତାଙ୍କ ନିର୍ବାଚନରେ ଛାମୁଆଁ ହେବା କଥାଟିକୁ ନବବାବୁ ଅବଶ୍ୟ ଜାଣିଥିଲେ । ତେବେ ଗୋଟିଏ କ୍ଷେତ୍ରରେ ଭାଗଚାଷୀକୁ ଆଇନସଙ୍ଗତ ଭାଗରୁ ବଞ୍ଚିତ କରିଥିବା ଜଣେ ଧନୀ ଚାଷୀଙ୍କୁ ନିର୍ବାଚନ କାଳରେ ସେ ନିଜ ଜିପ୍‌ରୁ ଓହ୍ଲାଇ ଦେଇଥିଲେ । କହିଥିଲେ, ''ଏଥିଲାଗି ଯଦି ସେ ନିର୍ବାଚନରେ ହାରିଯାଆନ୍ତି ତ ପରବାୟ ନାହିଁ ।'' ବଡ଼ଚଣାର ଅଧିବାସୀ ଆଡ୍‌ଭୋକେଟ୍ ଶ୍ରୀନିବାସ ମିଶ୍ର ଏହାର ପ୍ରତ୍ୟକ୍ଷଦର୍ଶୀ ଥିଲେ । ତେବେ ବଡ଼ଚଣା ଛଡ଼ା ଅନ୍ୟତ୍ର ନିର୍ବାଚନରେ କ୍ୱଚିତ୍ ଅସଙ୍ଗତ ଅର୍ଥବ୍ୟୟ ହୋଇଥିଲା ।

ସେହି ନିର୍ବାଚନରେ କଂଗ୍ରେସ ପଶ୍ଚିମ ଓଡ଼ିଶାରେ ଶୋଚନୀୟ ଭାବରେ ପରାଜିତ ହୋଇଥିଲା । ରାଜାରାଣୀମାନେ ଗାଁ ଗାଁ ବୁଲି ଭୋଟ୍ ପ୍ରଚାର କରିବା ଫଳରେ ବହୁ ନିର୍ବାଚନମଣ୍ଡଳୀରୁ କଂଗ୍ରେସ ଦଳ ଶୋଚନୀୟ ଭାବରେ ପରାସ୍ତ ହୋଇଥିଲା । ସମ୍ବଲପୁର ଜିଲ୍ଲାର ହୀରାକୁଦ ବନ୍ଧ ବିରୋଧୀ ଆନ୍ଦୋଳନ କଂଗ୍ରେସ ବିରୁଦ୍ଧରେ ଯାଇଥିଲା ଓ ମୟୂରଭଞ୍ଜରେ ସ୍ୱତନ୍ତ୍ର ଝାଡ଼ଖଣ୍ଡ ଦାବି ଉପରେ ଝାଡ଼ଖଣ୍ଡ ଦଳ ବିଶେଷ ସାଫଲ୍ୟ ଲାଭ କରିଥିଲା । ସଂଖ୍ୟାଗରିଷ୍ଠତା ହାସଲ କରି ନ ପାରିଥିବାରୁ ସେଥର ଝାଡ଼ଖଣ୍ଡ ଟିକେଟ୍‌ରେ ନିର୍ବାଚିତ ହୋଇଥିବା ସଭ୍ୟ ଓ କେତେକ ସ୍ୱାଧୀନ ସଭ୍ୟଙ୍କ ସହଯୋଗରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ିଲା । କଂଗ୍ରେସ ଦଳର ଟିକେଟ୍‌ରେ ଦଶପଲ୍ଲାର ରାଜା, ରଣପୁର ରାଣୀ ନିର୍ବାଚିତ ହୋଇ ମନ୍ତ୍ରୀ ଓ ଉପମନ୍ତ୍ରୀ ହେଲେ ଏବଂ କେନ୍ଦୁଝରର ଛୋଟରାୟ ଲକ୍ଷ୍ମୀନାରାୟଣ ଭଞ୍ଜଦେଓ କଂଗ୍ରେସ ଟିକେଟ ପାଇବାରୁ ବଞ୍ଚିତ ହୋଇ ସ୍ୱାଧୀନ ଭାବରେ ନିର୍ବାଚିତ ହୋଇଥିଲେ ହେଁ କଂଗ୍ରେସ ମନ୍ତ୍ରିମଣ୍ଡଳକୁ ସମର୍ଥନ ଜଣାଇଥିଲେ ।

ଏହିଥର ନିର୍ବାଚନ କାଳରେ ନବକୃଷ୍ଣ ଚୌଧୁରୀ ଅସୁବିଧାରେ ପଡ଼ିଥାନ୍ତି, ସୋସାଲିଷ୍ଟ ଓ କମ୍ୟୁନିଷ୍ଟ ପ୍ରାର୍ଥୀଙ୍କ ନିର୍ବାଚନ ମଣ୍ଡଳୀରେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ନବବାବୁଙ୍କର ଅନ୍ତରଙ୍ଗ ସହକର୍ମୀ । ସାଲେପୁର ନିର୍ବାଚନ ମଣ୍ଡଳୀରେ କଂଗ୍ରେସ ପ୍ରାର୍ଥୀ ଥାଆନ୍ତି ସୁରେନ୍ଦ୍ରନାଥ ପଟ୍ଟନାୟକ ଓ ସୋସାଲିଷ୍ଟ ପ୍ରାର୍ଥୀ ଥାଆନ୍ତି ସୁରେନ୍ଦ୍ରନାଥ ଦ୍ୱିବେଦୀ । ସେଠାରେ ଯାଇ ନବବାବୁ ଯେଉଁଭଳି ଭାଷଣ ଦେଲେ, ସେଥିରେ ସୁରେନ୍ଦ୍ର ପଟ୍ଟନାୟକ ଅସନ୍ତୋଷ ପ୍ରକାଶ କରିଥିଲେ । ନବବାବୁ କାହିଁକି ସୋସାଲିଷ୍ଟ ପାର୍ଟି ଓ ସୁରେନ୍ଦ୍ର ଦ୍ୱିବେଦୀଙ୍କୁ କଟୁ ସମାଲୋଚନା

କଲେନାହିଁ, ଏହା ଥିଲା ତାଙ୍କର କ୍ଷୋଭ । ମୟୂରଭଞ୍ଜରେ ସୋସାଲିଷ୍ଟ ପ୍ରାର୍ଥୀ ପ୍ରସନ୍ନ କୁମାର ଦାସଙ୍କ ବିରୋଧୀ କଂଗ୍ରେସ ପ୍ରାର୍ଥୀଙ୍କ ସପକ୍ଷରେ ପ୍ରଚାର କଲାବେଳେ ପ୍ରସନ୍ନବାବୁଙ୍କର ଜଣେ ସମର୍ଥକ ତାଙ୍କୁ ଏକ ଚିଠି ଦେଖାଇ ପ୍ରଶ୍ନ କରିଥିଲେ ଯେ, ପ୍ରସନ୍ନକୁମାର ଦାସଙ୍କୁ କଂଗ୍ରେସରେ ଯୋଗ ଦେବାପାଇଁ ସେ ପ୍ରବର୍ତ୍ତାଇ ଏଭଳି ଚିଠି ଲେଖିଥିଲେ କି ? ନବବାବୁ ସେହି ସଭାରେ କହିଥିଲେ ଯେ, ହଁ ସେ ପ୍ରସନ୍ନବାବୁଙ୍କୁ କଂଗ୍ରେସରେ ମିଶିବାକୁ ଚିଠି ଲେଖିଥିଲେ ; କାରଣ ପ୍ରସନ୍ନ କୁମାର ଦାସ ଜଣେ ସଚ୍ଚୋଟ ଲୋକ । ନବବାବୁଙ୍କର ଏହି ଉକ୍ତି କଂଗ୍ରେସ ପ୍ରାର୍ଥୀଙ୍କୁ ଅସୁବିଧାରେ ପକାଇଥିଲା । ଏମିତି ଅସୁବିଧାରେ ସେ ପଡ଼ିଥିଲେ ଢେଙ୍କାନାଳରେ । ସେଠାରେ ବୈଷ୍ଣବ ପଟ୍ଟନାୟକ କମ୍ୟୁନିଷ୍ଟ ଦଳ ତରଫରୁ ବିଧାନସଭାକୁ ଓ ସାରଙ୍ଗଧର ଦାସ ସୋସାଲିଷ୍ଟ ପାର୍ଟି ତରଫରୁ ପାର୍ଲାମେଣ୍ଟକୁ ପ୍ରତିଦ୍ୱନ୍ଦ୍ୱିତା କରୁଥାନ୍ତି । ନବବାବୁ କୌଣସି ନିର୍ବାଚନ ସଭାରେ ବ୍ୟକ୍ତିଗତ ଆକ୍ଷେପ ତ ମୋଟେ କରନ୍ତି ନାହିଁ, ବରଂ କଂଗ୍ରେସର ନୀତି ଓ କାର୍ଯ୍ୟକ୍ରମ କଥା କହି କଂଗ୍ରେସ ପ୍ରାର୍ଥୀଙ୍କୁ ନିର୍ବାଚିତ କରିବା ଲାଗି କହନ୍ତି । ଏହି ସମୟକୁ କମ୍ୟୁନିଷ୍ଟ ପାର୍ଟିର ସଶସ୍ତ୍ର ବିପ୍ଳବ କାର୍ଯ୍ୟକ୍ରମ ଥାଏ ଓ ସେହି ଯୋଗୁଁ ବୈଷ୍ଣବ ପଟ୍ଟନାୟକ ଆଦି କେତେକ ନେତା ବନ୍ଦୀ ଥାଆନ୍ତି । ନବବାବୁ ଯାହା କହିବା କଥା, କହିସାରିଲା ପରେ ବୈଷ୍ଣବ ପଟ୍ଟନାୟକଙ୍କ ସମର୍ଥକମାନେ ତାଙ୍କୁ ପଚାରିଲେ ଯେ ସେ କାହିଁକି ବୈଷ୍ଣବବାବୁଙ୍କୁ ବନ୍ଦୀ କରି ରଖିଛନ୍ତି ? ଏହା ଶୁଣି ନବବାବୁ କହିଥିଲେ ''ବୈଷ୍ଣବ ପଟ୍ଟନାୟକ କଅଣ ମୋ'ଠାରୁ ତୁମର ବେଶି ଆପଣାର ? ବୈଷ୍ଣବକୁ ମୁଁ ବନ୍ଦୀ କରିନାହିଁ, କଂଗ୍ରେସ ସରକାର କରିଛି । କଂଗ୍ରେସ ଚାହେଁ, ଦେଶରେ ଶାନ୍ତିଶୃଙ୍ଖଳା ରହୁ, କିନ୍ତୁ ଏହି କମ୍ୟୁନିଷ୍ଟମାନେ ସଶସ୍ତ୍ର ବିପ୍ଳବ କରି କ୍ଷମତା ଦଖଲ କରିବାକୁ ଚାହାନ୍ତି । ଏଣୁ ଆଇନ୍ ଭାଙ୍ଗିଲେ ଯାହା ହେବାର କଥା, ସେଇଆ ହୋଇଛି ।''

ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ ୧୯୪୨ ଆନ୍ଦୋଳନ କାଳରେ ବୈଷ୍ଣବ ପଟ୍ଟନାୟକ କମ୍ୟୁନିଷ୍ଟ ଦଳଭୁକ୍ତ ହୋଇଥିଲେ ବି ଭାରତଛାଡ଼ ଆନ୍ଦୋଳନରେ ଚମକପ୍ରଦ କାଣ୍ଡ କରିଥିଲେ ଏବଂ ମଡ଼ି ଥାନା (ଏବେକାର କାମାକ୍ଷାନଗର) ଦଖଲ କରି ସେଠାରେ କିଛିଦିନ ସ୍ୱାଧୀନ ସରକାର ପ୍ରତିଷ୍ଠା କରିଥିଲେ । ନବବାବୁ ତାଙ୍କୁ ଶ୍ରଦ୍ଧାରେ ଡାକୁଥିଲେ ମାଙ୍କଡ଼ । ନବବାବୁଙ୍କ ଢେଙ୍କାନାଳ ଭାଷଣ ସେଠାକାର କଂଗ୍ରେସ ପ୍ରାର୍ଥୀଙ୍କୁ ସାହାଯ୍ୟ କଲା ନାହିଁ । ଗଡ଼ଜାତ ଆନ୍ଦୋଳନର ପୁରୋଧା ସାରଙ୍ଗଧର ଦାସଙ୍କୁ ଲୋକେ ନିର୍ବାଚିତ କରିବା ସଙ୍ଗେସଙ୍ଗେ ବନ୍ଦୀ ବୈଷ୍ଣବ ପଟ୍ଟନାୟକଙ୍କୁ ଜିତାଇଲେ । ଅଗଷ୍ଟ ଆନ୍ଦୋଳନ ପରେ ବୈଷ୍ଣବ ପଟ୍ଟନାୟକ ଜେଲ୍‌ରୁ ଖଲାସ ହୋଇ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ ଏବଂ ସଶସ୍ତ୍ର ବିପ୍ଳବ ଆହ୍ୱାନ ଦେଇ ପୁଣି ବନ୍ଦୀ ହୋଇଥିଲେ । ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ହେବାପରେ ଦିନେ କଟକ ଜେଲ୍‌କୁ ଯାଇ ବୈଷ୍ଣବ ପଟ୍ଟନାୟକଙ୍କୁ ଭେଟିଥିଲେ । ବହୁ ଚାଞ୍ଚଲ୍ୟକର ଘଟଣାବଳୀ ପରେ ବହୁ

ବର୍ଷ ପରେ ଦେଖା । ନବବାବୁ ସ୍ନେହର ବୈଷ୍ଣବଙ୍କୁ କୁଣ୍ଢାଇ ଖାଲି କାନ୍ଦିଲେ, କିଛି କହିପାରିଲେ ନାହିଁ; ପାଖରେ ଠିଆହୋଇଥାନ୍ତି ମାଳତୀଦେବୀ । ଲୋକଙ୍କୁ ବୈଷ୍ଣବବାବୁଙ୍କ ପକ୍ଷର ଲୋକେ ଧାରଣା ଦେଇଥିଲେ ଯେ ବୈଷ୍ଣବ ପଟ୍ଟନାୟକଙ୍କୁ ଜିତାଇଲେ ସେ ଜେଲ୍‌ଖାନାରୁ ଖଲାସ ହୋଇଯିବେ । ବୀର ବୈଷ୍ଣବଙ୍କର ଗୌରବ ତ ସେତେବେଳେ ଶିଖର ଦେଶରେ; ଆଉ ତାଙ୍କୁ ହଟାଇବାର ସାଧ ଥିଲା କାହାର ? ପ୍ରସନ୍ନ କୁମାର ଦାସ, ବୈଷ୍ଣବ ପଟ୍ଟନାୟକ, ବନମାଳୀ ମହାରଣାଙ୍କ ଭଳି ବହୁ ବାମପନ୍ଥୀ ନେତାଙ୍କୁ ହରାଇ ନବବାବୁ ପରବର୍ତ୍ତୀ କାଳରେ ଅସହାୟ ହୋଇଥିଲେ; ଯଦିଓ ସେମାନେ ତାଙ୍କ ସରକାରକୁ ପ୍ରଗତିମୂଳକ ଆଇନ ଗଢ଼ିବାରେ ସହାୟକ ହୋଇଥିଲେ ।

୧୯୫୨ ସାଧାରଣ ନିର୍ବାଚନରେ କଂଗ୍ରେସ ଓଡ଼ିଶାରେ ଆଶାନୁରୂପକ ଫଳ ଲାଭ କରିପାରିଲା ନାହିଁ । କିନ୍ତୁ ଆହୁରି ଶୋଚନୀୟ ହେଲା ସୋସାଲିଷ୍ଟ ପାର୍ଟିର ଅବସ୍ଥା । ଏହି ଦଳର ତୁଙ୍ଗ ନେତା ସୁରେନ୍ଦ୍ର ଦ୍ୱିବେଦୀ ଆଦି ହାରିଗଲେ । ଓଡ଼ିଶା ଓ ଭାରତବର୍ଷର ଇତିହାସର ବିଡ଼ମ୍ବନା ଯେ ସୁରେନ୍ଦ୍ର ଦ୍ୱିବେଦୀ, ପ୍ରସନ୍ନ କୁମାର ଦାସ, ବାଙ୍କବିହାରୀ ଦାସ ଏବଂ ବୈଷ୍ଣବ ପଟ୍ଟନାୟକଙ୍କ ଭଳି ବାମପନ୍ଥୀ ନେତା ଜବାହରଲାଲ୍ ନେହେରୁ ଓ ନବକୃଷ୍ଣ ଚୌଧୁରୀଙ୍କ ପରି ସମାଜବାଦୀ ମନୋଭାବାପନ୍ନ ନେତାମାନଙ୍କ ସମୟରେ କଂଗ୍ରେସ ଦଳରେ ରହିପାରିଲେ ନାହିଁ; ଆଉ କଂଗ୍ରେସ ଦଳରେ ପୁଣି ଯୋଗ ଦେଲେ ଇନ୍ଦିରା ଗାନ୍ଧୀ, ବିନାୟକ ଆଚାର୍ଯ୍ୟ, ନନ୍ଦିନୀ ଶତପଥୀଙ୍କ ଅମଳରେ !

ନବବାବୁ ମନ୍ତ୍ରିମଣ୍ଡଳ ଗଢ଼ିବାରେ ଯେଉଁମାନେ ଅଭିନନ୍ଦନ ଜଣାଇଛନ୍ତି, ସେମାନଙ୍କ ମଧ୍ୟରୁ ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତିଦେବଙ୍କର ହାତଲେଖା ଚିଠିଟି ବିଶେଷ ଉଲ୍ଲେଖଯୋଗ୍ୟ । ନବବାବୁ ଜମିଦାରି ଉଚ୍ଛେଦ କରିଥିଲେହେଁ ପାରଳା ମହାରାଜା ତାଙ୍କ ଅଭିନନ୍ଦନ ପତ୍ରରେ ମହାନୁଭବତାର କାର୍ପଣ୍ୟ କରିନାହାନ୍ତି । ସେ ଲେଖିଛନ୍ତି, "ଓଡ଼ିଶାରେ ଏକ ସ୍ଥିର ସରକାର ଗଠିତ ହେବାରୁ ମୁଁ ଆପଣଙ୍କୁ ଅଭିନନ୍ଦନ ଜଣାଉଛି । ଯାହା ହେଉ ବିଜ୍ଞତା ଦେଖାଇ କେତେକ ସ୍ୱାଧୀନ ସଦସ୍ୟ ସରକାରଙ୍କୁ ସମର୍ଥନ ଜଣାଉଥିବାରୁ ମୁଁ ଆଶ୍ୱସ୍ତ । ସେମାନେ ଆପଣଙ୍କ ଭଳି ଜଣେ ଲୋକଙ୍କୁ ନେତା ଭାବରେ ବାଛିବାଠାରୁ ଆଉ ଭଲ କଅଣ କରିପାରିଥାନ୍ତେ ? ମୁଁ ମୋ'ର ଅନ୍ତରର କଥା କହୁଛି ଯେ, ବର୍ତ୍ତମାନ ଓଡ଼ିଶାର ମଧ୍ୟବିତ୍ତ ଶ୍ରେଣୀରେ ସଚ୍ଚୋଟତା ଓ ଜୀବନର ବିଭିନ୍ନ ଦିଗରେ ଆପଣଙ୍କ ସମକକ୍ଷ ହେଲାଭଳି ବ୍ୟକ୍ତି ନାହାନ୍ତି । ଭଗବାନ ଆପଣଙ୍କୁ ଏହି ଦିଗରୁ ସୌଭାଗ୍ୟବାନ୍ କରିଛନ୍ତି ।"

ନବବାବୁ ୧୯-୨-୧୯୫୨ ତାରିଖରେ ମହାରାଜାଙ୍କ ଚିଠିର ଉତ୍ତରରେ ତାଙ୍କୁ ଆନ୍ତରିକ ଅଭିନନ୍ଦନ ପାଇଁ କୃତଜ୍ଞତା ଜଣାଇଛନ୍ତି । କିନ୍ତୁ ରାଜ୍ୟରେ ସାଧାରଣ ରାଜନୀତିକ ସ୍ତର ହ୍ରାସ ପାଉଥିବାରୁ ସେ ଉଦ୍‌ବେଗ ପ୍ରକାଶ କରିଛନ୍ତି । ସେଭଳି ଜଟିଳ ପରିସ୍ଥିତିକୁ ସେ

କେତେଦୂର ସୁଧାରିପାରିବେ, ସେ ଦିଗରେ ନବବାବୁ ଆଶଙ୍କା ପ୍ରକାଶ କରିଛନ୍ତି । କମ୍ୟୁନିଷ୍ଟମାନେ ରାଜ୍ୟରେ ଅସନ୍ତୋଷ ଜଳାଇରଖିବାକୁ ଚାହାନ୍ତି ଓ ଅନ୍ୟାନ୍ୟ ଦଳ ସେମାନଙ୍କ ପାଲରେ ପଡ଼ିଯାଇପାରନ୍ତି ବୋଲି ସେ ସେହି ଚିଠିରେ ଦର୍ଶାଇଛନ୍ତି ।

ମନ୍ତ୍ରିମଣ୍ଡଳ ଗଠନ ଦିଗରେ ସେତେବେଳେ ଖୁବ୍ ଚାପ ନଥିଲେ ମଧ୍ୟ ନୀଳମଣି ପ୍ରଧାନ, ମହମ୍ମଦ ହନିଫ୍ ଏବଂ ବିଜୟାନନ୍ଦ ପଟ୍ଟନାୟକ ମନ୍ତ୍ରୀ ବା ଉପମନ୍ତ୍ରୀ ହେବା ଲାଗି ଆଶାୟୀ ଥିବାର ଜଣାଯାଏ । ସେମାନେ ସିଧାସଳଖ ଏହା ପ୍ରକାଶ ନ କଲେ ମଧ୍ୟ ନବବାବୁଙ୍କର ନୀଳମଣି ପ୍ରଧାନଙ୍କ ଚିଠିରୁ ଓ ହନିଫ୍ ବାବୁଙ୍କ ଚିଠିର ଉତ୍ତରରେ ନବବାବୁଙ୍କ ଚିଠିରୁ ଏହା ସ୍ପଷ୍ଟ ହୋଇଯାଏ । ବିଜୁ ପଟ୍ଟନାୟକ ଶିଳ୍ପ ବିଭାଗର ଉପମନ୍ତ୍ରୀଟିଏ ହେବାଲାଗି ବିଶେଷ ଆଗ୍ରହ ପ୍ରକାଶ କରିବାରୁ ନବବାବୁ ସେଥିରେ ସମ୍ମତ ହୋଇନାହାନ୍ତି, କାରଣ ସେ ଶିଳ୍ପ ଓ ବାଣିଜ୍ୟରେ ଓଡ଼ିଶା ସରକାର ସହିତ ବହୁ ଭାବରେ ଜଡ଼ିତ ଥିଲେ । ତଥାପି ତାଙ୍କୁ ଅପଦସ୍ଥ ନ କରିବା ଲାଗି, ସେ ଯେ ଜଣେ ମନ୍ତ୍ରୀ ହେବାଭଳି ଲୋକ, ଏତକ ପ୍ରତିପାଦନ କରିବା ଭଳି ଏକ ଚିଠି ବୀରେନ୍ ମିତ୍ର ନବବାବୁଙ୍କ ଦ୍ୱାରା ବିଜୟାନନ୍ଦ ପଟ୍ଟନାୟକଙ୍କୁ ଲେଖାଇଥିଲେ ଓ ସେତିକିରେ ବିଜୟାନନ୍ଦ ପଟ୍ଟନାୟକ ସନ୍ତୁଷ୍ଟ ହୋଇ ରହିଲେ ।

ମହତାବବାବୁଙ୍କ ପରାମର୍ଶରେ ମନ୍ତ୍ରିମଣ୍ଡଳ ଗଢ଼ାଯାଇଥିବା କଥା ପୂର୍ବୋକ୍ତ ଦୁଇ ଚିଠିରୁ ଜଣାଯାଏ । ତହିଁରେ ତାଙ୍କର ଅନୁରକ୍ତ ନୀଳମଣି ରାଉତରାୟ ଓ ଦୀନବନ୍ଧୁ ସାହୁ ତଥା ବସନ୍ତମଞ୍ଜରୀ ଦେବୀ ଆଦି ରହିଲେ । ବୃହତ୍ତର ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ପ୍ରତିନିଧି ନେବା ଉଦ୍ଦେଶ୍ୟରେ ଉପକୂଳ ଅଞ୍ଚଳରୁ ଅପେକ୍ଷାକୃତ କମ୍ ମନ୍ତ୍ରୀ ନିଆଯାଇଥିଲେ ; ଏପରିକି ଗଡ଼ଜାତ ଆନ୍ଦୋଳନର ଜଣେ ପ୍ରମୁଖ ନେତା ପବିତ୍ରମୋହନ ପ୍ରଧାନ ବି ବାଦ୍ ପଡ଼ିଥିଲେ ।

ଏହି ମନ୍ତ୍ରିମଣ୍ଡଳ ବେଳେ ବିରୋଧୀ ଦଳରେ ସାମ୍ୟବାଦୀ, ସମାଜବାଦୀ ଓ ସାମନ୍ତବାଦୀ ରହିଗଲେ ବି ସଂଖ୍ୟାଦୃଷ୍ଟିରୁ ସାମନ୍ତବାଦୀ ଥିଲେ ଅଧିକ । ଏଭଳି ଏକ ବିରୋଧୀ ଦଳ ସରକାର ବିରୋଧରେ ଯେତେବେଳେ ଅବିଶ୍ୱାସ ପ୍ରସ୍ତାବ ଆଣିଛନ୍ତି, ସେତେବେଳେ ବଡ଼ ଅସୁବିଧାରେ ପଡ଼ିଛନ୍ତି । ରାଜନୈତିକ ଦିଗରୁ ଏମାନଙ୍କୁ ସାମ୍ନା କରିବାପାଇଁ ନବକୃଷ୍ଣ ଚୌଧୁରୀଙ୍କୁ ଅସୁବିଧାରେ ପଡ଼ିବାକୁ ହୋଇନାହିଁ ।

## ଯୋଜନା ଯୁଗର ଅଧିବାସ :

ସ୍ୱାଧୀନତା ମିଳିବାର ୫ ବର୍ଷ ପୂରିଯାଇଥାଏ । ଲୋକେ ହଠାତ୍ ପରିବର୍ତ୍ତନ ଆଶା କରିବା ସ୍ୱାଭାବିକ । ବିରୋଧୀ ଦଳ ତା'ରି ସୁଯୋଗ ନେଇ ନାନା ସମାଲୋଚନା ଆରମ୍ଭ କରିଥାନ୍ତି । ପୂର୍ବର ସାଧାରଣ ପ୍ରଶାସନ ଛଡ଼ା ପାଞ୍ଚବର୍ଷିଆ ଯୋଜନା ପାଇଁ ଆବଶ୍ୟକୀୟ ଯୋଗ୍ୟତାସମ୍ପନ୍ନ ବ୍ୟକ୍ତି ନଥାନ୍ତି । ଏହା ସାଙ୍ଗକୁ ଭାରତବର୍ଷର ସର୍ବବୃହତ୍ ନଦୀବନ୍ଧ ଯୋଜନା

ହୀରାକୁଦ ଲାଗି ଓଡ଼ିଶା ଶାସନର ଶକ୍ତି ଓ ସାମର୍ଥ୍ୟ ନଥାଏ । ଏଣୁ ସେ କାର୍ଯ୍ୟ କେନ୍ଦ୍ର ସରକାର ଦ୍ୱାରା ହେଉଥାଏ । ଦ୍ୱିତୀୟ ମହାସମର କାଳରେ ନାନା ଅପବ୍ୟୟ ହେଲାଭଳି କାର୍ଯ୍ୟରେ କଣ୍ଟ୍ରାକ୍ଟର ଓ ଇଞ୍ଜିନିୟରମାନେ ଅଭ୍ୟସ୍ତ ହୋଇଥାନ୍ତି । ହୀରାକୁଦ ଭଳି ବଡ଼ କାମ ପାଇଁ ଓଡ଼ିଶାରେ ଇଞ୍ଜିନିୟର ବା କଣ୍ଟ୍ରାକ୍ଟର ନଥାନ୍ତି । ସେମାନଙ୍କ କାର୍ଯ୍ୟରେ କିଛି ପରିମାଣ ଅପବ୍ୟୟ ଦେଖି ବିରୋଧୀ ଦଳ ସରକାରକୁ ସମାଲୋଚନା କରିବାରେ ଶତମୁଖ ହୋଇଥାନ୍ତି । ଏଭଳି କାମ ଖାଲି ଓଡ଼ିଶା ପାଇଁ ନୂଆ ନୁହେଁ, ଭାରତବର୍ଷ ଲାଗି ମଧ୍ୟ ନୂଆ । ଏଥିରେ ଏକ ବଡ଼ ସମସ୍ୟା ରହିଲା, ଶହ ଶହ ଗାଁର ଲୋକଙ୍କୁ ଥଇଥାନ କରିବା । ଓଡ଼ିଶା ସରକାର କ୍ରମେ ଏହି କାମ ଉପରେ ନିଜର ନିୟନ୍ତ୍ରଣ ଜାରି କଲେ ବି ଥଇଥାନ ପାଇଁ ଖୋଲାହାତର ଖର୍ଚ୍ଚ କରିବା ଦାବି କରି ପାରୁନଥାନ୍ତି । ଓଡ଼ିଶା ଛଡ଼ା ଏଭଳି ନଦୀ ବନ୍ଧ ଲାଗି ଆହୁରି ଅନ୍ୟ ପ୍ରଦେଶର ଦାବି ଥିଲା । ଏଣୁ ଏ ଦିଗରେ କେନ୍ଦ୍ର ସରକାରଙ୍କ ସହିତ ଅଧିକ ଭାଉଭଟା କରିହେଉନଥାଏ । ଗଡ଼ଜାତମାନଙ୍କରୁ ଯେତିକି ଆୟ ହେଉଥାଏ, ତାହାଠାରୁ ଅଧିକ ଖର୍ଚ୍ଚ ହେଉଥାଏ; କାରଣ ଉନ୍ନୟନ ବିଚାରରୁ ଗଡ଼ଜାତଗୁଡ଼ିକ ସମତଳ ଅଞ୍ଚଳଠାରୁ ବହୁତ ପଛୁଆ ଥିଲେ । ଏହାଠାରୁ ଆହୁରି ଅଧିକ ନଜର ଦେବାକୁ ପଡୁଥାଏ ଆଦିବାସୀ ଓ ମାଳ ଅଞ୍ଚଳ ପାଇଁ ।

## ଗ୍ରାମଗୋଷ୍ଠୀ ଯୋଜନା :

୧୯୫୧ ମସିହାରୁ ପଞ୍ଚବାର୍ଷିକ ଯୋଜନା ଆରମ୍ଭ ହେଲା ଏବଂ ତା'ର ଏକ ଅଂଶ ଭାବରେ ଗ୍ରାମଗୋଷ୍ଠୀ ଯୋଜନା (କମ୍ୟୁନିଟି ପ୍ରୋଜେକ୍ଟ) ଭଞ୍ଜନଗର, ଭଦ୍ରକ ଓ କୁନାଗଡ଼ ଅଞ୍ଚଳରେ କାର୍ଯ୍ୟକାରୀ ହେଲା । ଏହି ଗ୍ରାମଗୋଷ୍ଠୀ ଯୋଜନା ଲାଗି ନବବାବୁ ତିନିଜଣ ଭଲ କାମିକା ଅଫିସର ବାଛିଥିଲେ । ନିଜେ ସେସବୁ ଅଞ୍ଚଳ ବୁଲି କାର୍ଯ୍ୟକୁ ଉତ୍ସାହିତ କରୁଥିଲେ । ଗାଁଗହଳିମାନଙ୍କ ପାଇଁ ଏହା ବେଶ୍ ଉତ୍ସାହ ଯୋଗାଇଥିଲା । ଗାଁ ସ୍ତରରେ ବି ଲୋକଙ୍କୁ ସାହାଯ୍ୟ ଓ ପରାମର୍ଶ ଦେବାକୁ କିଛି ସରକାରୀ କର୍ମଚାରୀ ରହିଲେ । ସେମାନଙ୍କୁ ଗ୍ରାମସେବକ କୁହାଗଲା । ଏହି ଗ୍ରାମସେବକ ନାମକରଣ ନବବାବୁ ହିଁ ଦେଇଥିଲେ; ଯଦିଓ ସେବକ ଶବ୍ଦଟିକୁ ସେ ସମୟରେ ଅବଜ୍ଞା ଓ ହୀନକାର୍ଯ୍ୟ ଅର୍ଥରେ ବ୍ୟବହୃତ ହେଉଥିଲା । କାରଣ ସେବାଟା, ଚାରିଜାତି ମଧ୍ୟରେ ନିମ୍ନ ଜାତି, ଶୂଦ୍ରର କାର୍ଯ୍ୟ ବୋଲି ଚଳି ଆସିଥିଲା । ଏହି ସମାଲୋଚନା ଶୁଣି ସେ ବୁଝାଇ ଦେଇଥିଲେ ଯେ ଆମେ ସମସ୍ତେ ଜନସାଧାରଣଙ୍କ ସେବକ; ସେବାଠାରୁ ମହତ କାର୍ଯ୍ୟ ଆଉ ନାହିଁ ।

ଏହି ଗ୍ରାମଗୋଷ୍ଠୀ ଅଫିସରମାନଙ୍କୁ ନିଜ ଘରକୁ ଡାକି ନବବାବୁ ପଚାରନ୍ତି, "ତୁମେ ଗାଁର ଗରିବ ଲୋକଙ୍କ ଘରକୁ ଗଲେ କେଉଁଠି ବସିବ ? ସେମାନଙ୍କ ଘରେ ତ ଚେୟାର

ନଥିବ, ଦାଣ୍ଡେ ଦାଣ୍ଡେ କଥା ହୋଇ ଯିବ କି ? ଲୋକେ ଭୟ ନକରି ଯେଭଳି ନିର୍ଭୟରେ ତାଙ୍କ କଥା କହିବେ, ସେହିଭଳି ବ୍ୟବହାର କରିବ ।''

ଗ୍ରାମ ବିକାଶ ଦିଗରେ ଏହି ଗ୍ରାମଗୋଷ୍ଠୀ ଯୋଜନା ଦିଗ୍‌ଦର୍ଶକ ଭାବରେ କାର୍ଯ୍ୟ କରିଥିଲା । ଗାଁ ଲୋକେ ତାଙ୍କର ବିଭିନ୍ନ ଉନ୍ନୟନମୂଳକ ସମସ୍ୟା ଲାଗି, ଜିଲ୍ଲା ଅଫିସରଙ୍କ ପାଖକୁ ନ ଦୌଡ଼ି, ପାଖଆଖର ଅଫିସର ଓ କର୍ମଚାରୀମାନଙ୍କଠାରୁ ସେ ବାବଦରେ ସାହାଯ୍ୟ ପାଆନ୍ତୁ–ଏହା ଥିଲା ତାଙ୍କର ସ୍ୱପ୍ନ । ତେଣୁ ସେ ଯେତେବେଳେ ଗ୍ରାମଗୋଷ୍ଠୀ ଯୋଜନା ଅଞ୍ଚଳକୁ ଯାଉଥିଲେ, ସେଠାରେ ଗ୍ରାମସେବକଙ୍କଠାରୁ ଆରମ୍ଭ କରି ଅଫିସରମାନଙ୍କଠାରୁ ସବୁକଥା ଟିକିନିଖି ପଚାରୁଥିଲେ ଓ ସେସବୁ ଦେଖି ସେ ଖୁବ୍ ସନ୍ତୋଷ ଲାଭ କରୁଥିଲେ ।

## ଗଡ଼ଜାତମାନଙ୍କର ନୂଆ ଶାସନ :

ଠିକ୍ ଏହିଭଳି ପୂର୍ବତନ ଗଡ଼ଜାତମାନଙ୍କର ଉନ୍ନୟନ ଲାଗି ସେ ବାଛି ବାଛି ଭଲ ଅଫିସର ପଠାଉଥିଲେ । କାରଣ ରାଜୁଡ଼ା ଶାସନ ପରେ ସ୍ୱାଧୀନ ଭାରତର ଶାସନରେ କେତେକ ଜଟିଳତା ଥାଏ । ଲୋକେ ରାଜା ଅମଳର ଶାସନଠାରୁ ଭଲ ଶାସନ ଆଶା କରୁଥିଲେ ତେବେ ସେଥିଲାଗି ଆବଶ୍ୟକ ସଂଖ୍ୟକ ପାରଙ୍ଗମ ଅଫିସର ମିଳୁ ନଥାନ୍ତି । ତେଣୁ ବାଧ ହୋଇ ଓଡ଼ିଶା ସରକାର ପୂର୍ବତନ ଗଡ଼ଜାତର ବହୁ ଅଫିସର ଏବଂ କର୍ମଚାରୀଙ୍କୁ ଗ୍ରହଣ କଲେ । ସେତେବେଳେ ଉନ୍ନୟନ କାର୍ଯ୍ୟ ପାଇଁ ସମ୍ବଳ ଥିଲା ଅତି ନଗଣ୍ୟ ଅଥଚ ଲୋକଙ୍କର ଆବଶ୍ୟକତା ଥାଏ ଅନେକ ବେଶି ।

୧୯୫୦–୫୧ ମସିହାରେ ପୂର୍ବତନ ନରସିଂହପୁର ରାଜ୍ୟର ପ୍ରଶାସନ ଦାୟିତ୍ୱରେ ଥାଆନ୍ତି ଉଦୟନାଥ ସାହୁ । ସେ ଥିଲେ ପାଲଲହଡ଼ା ଗଡ଼ଜାତର ଲୋକ । ଏଣୁ ଗଡ଼ଜାତ ଲୋକ ଓ ଆଦିବାସୀମାନଙ୍କ ସହିତ ମିଶିବା ତାଙ୍କ ପକ୍ଷରେ ସହଜ ହୋଇଥିଲା । ସେ ବର୍ଷ ସମଗ୍ର ଅଞ୍ଚଳ ପାଇଁ ମାତ୍ର ଟ୨୦୦୦ଙ୍କା ମିଳିଥାଏ ଦୁଇଟି କୂଅ ଖୋଳାବା ପାଇଁ । ଏପ୍ରିଲ ମାସରେ ଏ ବାବଦ ଚିଠି ପାଇ ସେ ଏହାକୁ କାର୍ଯ୍ୟକାରୀ କରିବା ଦିଗରେ ବଡ଼ ଅସୁବିଧାରେ ପଡ଼ିଲେ । ପ୍ରାୟ ୬୩୫ ବର୍ଗ କିଲୋମିଟର ଅଞ୍ଚଳ ପାଇଁ ଦୁଇଟି କୂଅ ; ଯେଉଁଠି କଲେ ବି ଆଖିଦୃଶିଆ ହେବନାହିଁ । ବହୁ ଗାଁରେ କୂଅର ଆବଶ୍ୟକତା ଥାଏ । ସେ ଉକ୍ତ ଟଙ୍କାରେ ଦଶଟି କୂଅ ଖୋଳାଇବାପାଇଁ ଲୋକଙ୍କଠାରୁ ସହଯୋଗ ପାଇଲେ । ଲୋକଙ୍କୁ ସରକାରଙ୍କ ପକ୍ଷରୁ ଇଟା ସିମେଣ୍ଟ୍ ଦେବାର ପ୍ରତିଶ୍ରୁତି ଦେଇ ଲୋକଙ୍କଦ୍ୱାରା ଜୁନ୍ ମାସ ମଧଭାଗ ସୁଦ୍ଧା ସେ ୧୦ଟି କୂଅ ଖୋଳାଇଦେଲେ । ସେ ଅଞ୍ଚଳ ତ ପଥୁରିଆ । ରଜ ସଂକ୍ରାନ୍ତି ପୂର୍ବରୁ ଏକ ମିଟର ପାଣି ହେବାଭଳି ଗଭୀର ପର୍ଯ୍ୟନ୍ତ କୂଅ ଖୋଳା ସରିଥାଏ । କିନ୍ତୁ ବର୍ଷା ପୂର୍ବରୁ ଇଟା ପଲସ୍ତରା

ନ ହେଲେ କୂଅଗୁଡ଼ିକ ଭୁଶୁଡ଼ିପଡ଼ିଥାନ୍ତା । ଏ.ଜି.ଙ୍କ ଅଥରିଟି ମିଳିବାରେ ବିଳମ୍ବ ହେବାରୁ ସେ ଟ୍ରେଜେରିରୁ ଉକ୍ତ ଦୁଇହଜାର ଟଙ୍କା ଡ୍ର କରି ଦଶଟିଯାକ କୂଅ କାମ ବର୍ଷାଦିନ ପୂର୍ବରୁ ଶେଷ କରାଇଦେଲେ । ଏହି ଖର୍ଚ୍ଚ ଲାଗି ଅଥରିଟି ସ୍ଲିପ୍ ଦେବାକୁ ଏ.ଜି.ଙ୍କୁ ଅନୁରୋଧ କରିବାରେ ଏ.ଜି. ଏହାକୁ ଗୁରୁତର ଅପରାଧ ବିଚାର କରି ତାଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ନେବା ଲାଗି ସରକାରଙ୍କୁ ଲେଖିଲେ । ସରକାରଙ୍କର ସବୁଠାରୁ ବଡ଼ ଅଫିସର ରାମନାଥନ୍ ତଦନ୍ତ କରିବାକୁ ଯାଇ ଦୁଇଟି କୂଅ ବଦଳରେ ଦଶଟି କୂଅ ହୋଇପାରିଥିବାରେ ସନ୍ତୋଷ ପ୍ରକାଶ କଲେ ; ହେଲେ, ଏଭଳି ଅନିୟମିତ କାର୍ଯ୍ୟ ଲାଗି ଦୁଃଖ ପ୍ରକାଶ କରି, ତାଙ୍କୁ ଅନ୍ୟ ଦଣ୍ଡାଦେଶ ନ ଦେଇ, ଖାଲି ତାଗିଦ୍ କରିବାଲାଗି ସୁପାରିଶ କଲେ ।

ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଏହି ଘଟଣା ପରେ ନରସିଂହପୁର ଗସ୍ତରେ ଯାଇଥିଲେ । ଉନ୍ନୟନମୂଳକ କାର୍ଯ୍ୟର ପର୍ଯ୍ୟାଲୋଚନା କାଳରେ ଦୁଇଟି କୂଅ ବଦଳରେ ଦଶଟି କୂଅ ହୋଇଥିବା ଜାଣି ଅତ୍ୟନ୍ତ ଖୁସି ହୋଇଗଲେ ଏବଂ ସେଠାରେ ଆୟୋଜିତ ବିରାଟ ସଭାରେ ଘୋଷଣା କଲେ ଯେ ସରକାରୀ ତହବିଲ୍ ଲୁଣ୍ଠନକାରୀ ଦୁର୍ନୀତିଗ୍ରସ୍ତ କର୍ମଚାରୀଙ୍କୁ ଦଣ୍ଡ ଦେବା ଲାଗି ଆଇନ୍‌କାନୁନ୍ ହୋଇଛି । ଯଦି ସରକାରୀ ଟଙ୍କା ଠିକ୍ ଠିକ୍ ଭାବରେ ଖର୍ଚ୍ଚ ହୋଇଥାଏ ତ ଆଇନ କାନୁନ୍‌କୁ ଜାବୁଡ଼ି ଧରିବା ଅର୍ଥହୀନ । ସେଠାରୁ ଫେରି ସେ ଉଦୟନାଥ ସାହୁଙ୍କ ବିରୁଦ୍ଧରେ ହୋଇଥିବା ଦଣ୍ଡାଦେଶକୁ ଅଗ୍ରାହ୍ୟ କରି ତାଙ୍କ ସମ୍ପର୍କରେ ଉତ୍ତମ ମନ୍ତବ୍ୟ ଉଲ୍ଲେଖ କରିଥିଲେ । ଏହାଫଳରେ ଉପଜିଲ୍ଲାପାଳ ହେବା ପାଇଁ ତାଙ୍କର ପଥ ପରିଷ୍କାର ହୋଇଯାଇଥିଲା ।

## ଆଦିବାସୀ ଅଞ୍ଚଳ ଆଡ଼କୁ ଆଖି :

୧୯୩୭-୩୯ ମନ୍ତ୍ରିମଣ୍ଡଳ କାଳରେ Partially Excluded Committeeର ସଦସ୍ୟ ଭାବରେ ନବକୃଷ୍ଣ ଚୌଧୁରୀ ଗଞ୍ଜାମ, କୋରାପୁଟ ଓ କନ୍ଧମାଳର ଅନୁନ୍ନତ ଆଦିବାସୀ ଅଞ୍ଚଳର ସମସ୍ୟା ସମ୍ପର୍କରେ ଅନେକ କଥା ଜାଣିପାରିଥିଲେ । ୫୦ ବର୍ଷ ପୂର୍ବେ କୋରାପୁଟ ଜିଲ୍ଲା ଓ ବିଶେଷକରି ତାହାର ମାଲକାନଗିରି ଅଞ୍ଚଳ ଅତିଶୟ ଅନୁନ୍ନତ ଥିଲା । ସେହି ସୁଯୋଗରେ ଉଗ୍ର ସାମ୍ୟବାଦୀମାନେ ସଂଲଗ୍ନ ଆନ୍ଧ୍ର ପ୍ରଦେଶର ତେଲେଙ୍ଗାନା ଆଦି ଅଞ୍ଚଳରୁ ଆସି ଆଦିବାସୀମାନଙ୍କୁ ଉତ୍ତେଜିତ କରି ନାନା ସମସ୍ୟା ସୃଷ୍ଟି କରୁଥିଲେ । ତାହାକୁ ପ୍ରଚଳିତ ବ୍ୟବସ୍ଥା ଅନୁସାରେ ପୋଲିସ ଓ ମିଲିଟାରୀ ପୋଲିସଙ୍କ ଦ୍ୱାରା ଦମନ କରାଯାଉଥିଲା । ନବକୃଷ୍ଣ ଚୌଧୁରୀ ଏହି ସମସ୍ୟାକୁ ଭିନ୍ନ ଭାବରେ ସମାଧାନ କରିବାକୁ ଚାହିଁଲେ । ସେତେବେଳେ ସୁଦୂର ମାଲକାନଗିରି ଅଞ୍ଚଳ ନବରଙ୍ଗପୁର ସବ୍‌ଡିଭିଜନ ଅଧୀନରେ ଥିଲା । ଏଣୁ ଆଦିବାସୀଙ୍କ ଉନ୍ନୟନ ଲାଗି ମାଲକାନଗିରି ଅଞ୍ଚଳ ପାଇଁ ଜଣେ ସ୍ୱତନ୍ତ୍ର ଅଫିସର

ନିଯୁକ୍ତ କରିବା କଥା ସରକାର ଭାବୁଥାନ୍ତି । କିନ୍ତୁ ମାଲକାନଗିରି ଯିବା ଲାଗି କୌଣସି ଅଫିସର ରାଜି ହେଉନଥିଲେ । ସେ ସମୟରେ ବିହାର ଓ ଓଡ଼ିଶାର ତଫସିଲଭୁକ୍ତ ଜାତି ଓ ଉପଜାତିଙ୍କ ପାଇଁ କେ.କେ. ଲଡ଼୍‌ଭା ନାମକ ଜଣେ ଆଞ୍ଚଳିକ ସହକାରୀ କମିଶନର ଥାଆନ୍ତି । କେନ୍ଦ୍ର ସରକାରଙ୍କ ଦ୍ୱାରା ପ୍ରକାଶିତ 'ବୈଜୟନ୍ତୀ' ନାମକ ପତ୍ରିକାରେ ସେ ସେହି ସମୟର ମାଲକାନ୍‌ଗିରି ଅଞ୍ଚଳ କଥା ଉଲ୍ଲେଖ କରିଛନ୍ତି । ସେ ଲେଖିଛନ୍ତି ଯେ ସେତେବେଳକୁ ମାଲକାନଗିରିକୁ ରାସ୍ତାଘାଟ ବୋଲି କିଛି ନଥାଏ କହିଲେ ଚଳେ । ଆଉ ସ୍ୱାସ୍ଥ୍ୟ ଏବଂ ଶିକ୍ଷାର ଅବସ୍ଥା ବି ତଦ୍ରୂପ । ଚିଠି ପଠାଇଲେ ତିନି ମାସରେ ଚିଠି ପହଞ୍ଚେ ।

ଏହି ସମୟକୁ ପୂର୍ବୋକ୍ତ ଉଦୟନାଥ ସାହୁ ଉପଜିଲ୍ଲାପାଳ ପଦକୁ ପଦୋନ୍ନତି ପାଇଥାନ୍ତି ଓ ସେ ସମୟର ଅର୍ଥମନ୍ତ୍ରୀ ରାଧାନାଥ ରଥ ତାଙ୍କୁ ଆଠଗଡ଼ର ଉପଜିଲ୍ଲାପାଳ ଭାବରେ ନିଯୁକ୍ତି ଦେବାଲାଗି ଆଗ୍ରହ ପ୍ରକାଶ କରିଥାନ୍ତି । ମାଲକାନଗିରି ଏକ ଉପଜିଲ୍ଲା ନହେଲେ ବି ଓ ସେଠାରେ ଜଣେ ଡେପୁଟୀ କଲେକ୍ଟର ରହିବା ପ୍ରଥା ଥିଲେ ବି ନବକୃଷ୍ଣ ଚୌଧୁରୀ ଉଦୟନାଥ ସାହୁଙ୍କୁ ମାଲକାନଗିରି ପଠାଇଲେ ଓ ତାଙ୍କ ପାଇଁ ସ୍ୱତନ୍ତ୍ର ଆର୍ଥିକ ଭତ୍ତାର ବ୍ୟବସ୍ଥା କଲେ । ରାସ୍ତାଘାଟ ନଥିବାରୁ ତାଙ୍କ ଯିବାଆସିବା ଲାଗି ଜୟପୁର ମହାରାଜାଙ୍କ ହାତୀରୁ ଗୋଟିଏ ହାତୀ କିଣାହୋଇ ଯୋଗାଇ ଦିଆଯାଇଥିଲା ।

୧୯୫୨ରୁ ୧୯୫୪ ମସିହା ମଧ୍ୟରେ ସେହି ଅଞ୍ଚଳର ଶିକ୍ଷା, ରାସ୍ତା ଓ ପାନୀୟ ଜଳ ବ୍ୟବସ୍ଥା ଦିଗରେ ଉଲ୍ଲେଖନୀୟ ଅଗ୍ରଗତି ହେଲା । ସରକାରୀ କାମରେ ନବକୃଷ୍ଣ ଚୌଧୁରୀ ମାନ୍ଦ୍ରାଜ ଯିବାଆସିବା ବାଟରେ ବିଜୟନଗରମ୍‌ରୁ ମାଲକାନଗିରି ଯାଇ ସେଠାକାର ଖବର ବୁଝୁଥିଲେ । ମାଲ୍‌କାନଗିରି ପର୍ଯ୍ୟନ୍ତ ତ କାର୍ ଯିବା ସମ୍ଭବପର ନଥିଲା ; ଏଣୁ ବାଟରେ କାର୍ ଛାଡ଼ି ଜଣେ ଦୁଇଜଣ ଲୋକଙ୍କୁ ସାଙ୍ଗରେ ଧରି ପାହାଡ଼ପର୍ବତ ଟପି, ଗିରି ନଈରେ ପଶି, ସେ ମାଲକାନଗିରି ଯାଉଥିଲେ । ସେ ଥରେ ଯାଇ ସେଠାକାର ସବୁକଥା ଶୁଣିବା ପରେ ଜାଣିଲେ ଯେ ବହୁ ଅଞ୍ଚଳରେ କୂଅ ଖୋଳାଯାଇଥିଲେ ବି ଆଦିବାସୀ ମହିଳାମାନେ କୂଅରୁ ପାଣି ନେଉନାହାନ୍ତି । କୂଅପାଣିରେ ନିଜର ଛାଇକୁ ଦେଖି ସେମାନେ ଭୂତ ବୋଲି ଡରୁଥିଲେ । ଏଣୁ ସେମାନେ କୂଅପାଣି ବ୍ୟବହାର କରୁନଥିଲେ । ଉଦୟନାଥବାବୁଙ୍କ ସହିତ ଆଲୋଚନା ପରେ ଏ ସମସ୍ୟା ସମାଧାନ ପାଇଁ ଏକ ଉପାୟ ବାହାର କରାଗଲା । ନବବାବୁ ସରକାରଙ୍କ ତରଫରୁ ଏକ ଟ୍ରକ ଛୋଟଛୋଟ ଦର୍ପଣ କିଣାଇ ସେସବୁ ଆଦିବାସୀ ଗାଁରେ ବଣ୍ଟାଇଥିଲେ । ଆଦିବାସୀ ଲୋକେ ଦର୍ପଣରେ ମୁହଁ ଦେଖିଲା ପରେ ଜାଣିଲେ ଯେ କୂଅରେ ଭୂତ ନାହିଁ, ତାହା ମଣିଷର ପ୍ରତିବିମ୍ବ ବା ଛାଇ ।

ଆଦିବାସୀ ଅଞ୍ଚଳରେ ବାଘ, ଭାଲୁ ଆଦି ବଣୁଆ ଜନ୍ତୁଙ୍କ ଉପଦ୍ରବ ଏକ ବଡ଼ ସମସ୍ୟା । ଧନୁଶର ଦ୍ୱାରା ସେମାନଙ୍କୁ ବହୁ ସମୟରେ ଜବତ୍ କରି ହୁଏନାହିଁ । ନବବାବୁ ଉଦୟନାଥ

ସାହୁଙ୍କ ସହିତ ଏ ବିଷୟ ଆଲୋଚନା କରିବା ଅବସରରେ ଜାଣିବାକୁ ପାଇଲେ ଯେ ଜୟପୁର ମହାରାଜାଙ୍କ ୫୦୦ ବନ୍ଧୁକ ସରକାରୀ ସମ୍ପତ୍ତି ହୋଇ ସରକାରଙ୍କ ମାଲ୍‌ଖାନାରେ ରହିଛି । ସେ ସେହି ୫୦୦ ବନ୍ଧୁକ ବିନା ମୂଲ୍ୟରେ ଆଦିବାସୀମାନଙ୍କୁ ଦେବାପାଇଁ ଆଦେଶ ଦେବା ସଙ୍ଗେସଙ୍ଗେ ସେମାନଙ୍କୁ ବନ୍ଧୁକ ଲାଇସେନ୍ସ ଦେବାର ବ୍ୟବସ୍ଥା କରାଇଥିଲେ ।

ସେଠାକାର ସମସ୍ୟା ବୁଝିବା ଭିତରେ ସେ ଉଦୟନାଥବାବୁଙ୍କ ବ୍ୟକ୍ତିଗତ ଅସୁବିଧା କଥା ପଚାରିଥିଲେ । ସେହି ସମୟତକ ଉଦୟନାଥବାବୁ ନିଜ ପିଲାପିଲିଙ୍କୁ ନିଜ ଗାଁରେ ଛାଡ଼ିଦେଇ ଆସିଥାନ୍ତି । ମାଲକାନଗିରି ଛାଡ଼ି ଯିବା ସମ୍ଭବପର ହେଉନଥାଏ । ଯିବା ଆସିବାରେ ତ ବେଶ୍ କିଛିଦିନ ଚାଲିଯିବ, ପୁଣି ଉପର ହାକିମଙ୍କ ଅନୁମତି ମିଳିଲେ ତ ହେବ ! ଏ କଥା ଶୁଣି ନବବାବୁ ତାଙ୍କୁ କୋରାପୁଟ କଲେକ୍ଟରଙ୍କୁ ସଙ୍ଗରେ ନେଇ କଟକରେ ଦେଖା କରିବାକୁ କହି ଚାଲିଗଲେ । ଲିଖିତ ଆଦେଶ ନ ପାଇଥିଲେ ବି ମୁଖ୍ୟମନ୍ତ୍ରୀ ଚାହିଁଛନ୍ତି ଶୁଣି କଲେକ୍ଟର ସ୍ପେଶାଲ ଅଫିସର ଉଦୟନାଥ ସାହୁଙ୍କୁ ସଙ୍ଗରେ ନେଇ ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିବାକୁ ଆସିଲେ । ମାଲକାନଗିରି ତଥା କୋରାପୁଟର ବିଭିନ୍ନ ସମସ୍ୟା ସର୍ବୋଚ୍ଚ ଅଫିସରଙ୍କ ସହିତ ଆଲୋଚନା ପରେ ନବବାବୁ ରେଭିନିଉ ବୋର୍ଡ଼ ମେମ୍ବରଙ୍କୁ କହିଥିଲେ, ''ଉଦୟନାଥ ତ ଏଠାକୁ ଆସିଯାଇଚି, ତାକୁ ବିନା ଛୁଟିରେ କିଛି ଦିନ ଗାଁକୁ ଯିବାପାଇଁ ଅନୁମତି ଦିଅ ।'' ଆଇ.ସି.ଏସ୍. ରାମନାଥନ୍ ଅନୁମତି ଦେଲେ ସିନା, କିନ୍ତୁ ଖୁବ୍ ଗୁଁପୁଁ ହେଲେ । ପ୍ରଥମତଃ ବିନା ଲିଖିତ ଅନୁମତିରେ ହେଡ୍‌କ୍ୱାଟର ଛାଡ଼ି ଆସିଛି, ପୁଣି ବିନା ଛୁଟି ମଞ୍ଜୁରରେ ଗାଁକୁ ଯିବ । କିନ୍ତୁ ସର୍ବୋଚ୍ଚ କର୍ତ୍ତା ମୁଖ୍ୟମନ୍ତ୍ରୀଙ୍କ ଆଦେଶ ଯୋଗୁ ସେ ନାଚାର । ପରବର୍ତ୍ତୀ କାଳରେ ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟ୍ ହେବା ସମୟକୁ ନବବାବୁ ଯେତେବେଳେ ଉଦୟନାଥ ସାହୁଙ୍କ ନାମ ତାଲିକାରେ ଦେଖିଲେ ନାହିଁ, ସେତେବେଳେ ସେ ନିଜ ଭଣଜା ରବୀନ୍ଦ୍ରନାଥ ମହାନ୍ତିଙ୍କ ନାମକୁ ବାଦ୍ ଦେଇ ଉଦୟନାଥ ସାହୁଙ୍କ ନାମ ତାଲିକାରେ ଅନ୍ତର୍ଭୁକ୍ତ କରିଥିଲେ ।

### ହାତୀ ମାହାନ୍ତି ଓ ଭୂ-ସତ୍ୟାଗ୍ରହ :

୧୯୪୦ ମସିହା ବେଳକୁ କୋରାପୁଟ ଜିଲ୍ଲା ଅତି ଅଗମ୍ୟ ଓ ଅସ୍ୱାସ୍ଥ୍ୟକର ଥିଲା । ଏଣୁ କୋରାପୁଟକୁ କୌଣସି ଅଫିସରଙ୍କୁ ବଦଳି କରାଗଲେ, ସେଇ ବଦଳିକୁ ଏକ ଦଣ୍ଡ ଦିଆଗଲା ବୋଲି ବିଚାର କରାଯାଉଥିଲା । ତେବେ ସେଠାରେ ରହିଗଲେ, ଅଫିସର ଓ କର୍ମଚାରୀମାନେ ଅନେକ ସୁବିଧା ହାସଲ କରୁଥିଲେ । ସେମାନଙ୍କର ଘରକାମ ଲାଗି ବେଠି କଲା ଭଳି ଲୋକ ନିଯୁକ୍ତ ହେଉଥିଲେ ଏବଂ ଲାଞ୍ଚ ପାଇଁ ସୁବିଧା ଥିଲା । ଓଡ଼ିଶାର ବିଖ୍ୟାତ ଔପନ୍ୟାସିକ ଗୋପୀନାଥ ମହାନ୍ତି ସେହି ସମୟରେ କୋରାପୁଟକୁ ତାଲୁକ ଅଫିସର ଭାବରେ ଗଲେ । ଏଇଟି ନିରୋଳା ଆଦିବାସୀ ଅଞ୍ଚଳ । ଏଣୁ ଆଦିବାସୀଙ୍କ ଭାଷା ଶିଖିବା ପ୍ରଥମେ

ଦରକାର । ସେଥିଲାଗି ସେ କୁଇ ଓ ପରଜାମାନଙ୍କ ଭାଷା ଖାଲି ଶିଖିଲେ ନାହିଁ, ସେଥିରେ ପ୍ରବୀଣତା ହାସଲ କରିଥିବାର ସାର୍ଟିଫିକେଟ୍ ବ୍ରହ୍ମପୁରର ଏକ ଅନୁଷ୍ଠାନରୁ ଲାଭ କରିଥିଲେ । ତାଙ୍କ ରହଣି ସମୟର ନିଜ କାର୍ଯ୍ୟରେ ପୂର୍ବପ୍ରଚଳିତ ବେଠି (ମାଗଣା କାମ) ଉଠାଇ ଦେବା ସଙ୍ଗେସଙ୍ଗେ ଏଭଳି କାର୍ଯ୍ୟ ନ କରିବାକୁ ପରାମର୍ଶ ଦେଲେ । ସରଳ ଆଦିବାସୀମାନେ କିଛି କାମ ଲାଗି ଲାଞ୍ଚ ଦେବା ପାଇଁ ଆଣିଥିବା ଟଙ୍କା ନିଜେ ତ ନେଲେ ନାହିଁ, ବରଂ ଏଭଳି ଟଙ୍କା ଯାଚିଲେ ଦଣ୍ଡ ଦେବେ ବୋଲି ଧମକ ଦେଲେ । ଏହା ସଙ୍ଗେସଙ୍ଗେ ଦୂରବାଟିଆ ଆଦିବାସୀଙ୍କୁ ବେଳେବେଳେ ଘରେ ଖୁଆଇ ଭୟ ଦୂରକରାଇ ବିଦା କରୁଥିଲେ । କ୍ରମେ ସେ ଆଦିବାସୀମାନଙ୍କ ସହିତ ଆହୁରି ଘନିଷ୍ଠ ଭାବରେ ମିଶିଲେ । ସେଥିପାଇଁ ଅନେକ ସମୟରେ ସେ ଚାଲିଚାଲି ବହୁ ଗହନ ଗାଁ ଭିତରକୁ ଯାଉଥିଲେ । ଶଗଡ଼ ଗାଡ଼ି ନେଉଥିଲେ ବି ସେଥିରେ ଫାଇଲ ପତ୍ର ଓ ନିଜର ଆବଶ୍ୟକ ଖାଦ୍ୟପଦାର୍ଥ ବୁହାହୋଇ ଯାଉଥିଲା ; କିନ୍ତୁ ସିଏ ଶଗଡ଼ରେ ନ ଯାଇ ଚାଲିଚାଲି ଯାଉଥିଲେ । ଲୋକଙ୍କ ପିଣ୍ଡା ବା କୁଡ଼ିଆରେ ବସି ତାଙ୍କ ସମସ୍ୟା ବୁଝିବା ସଙ୍ଗେସଙ୍ଗେ ସେ ସେମାନଙ୍କ ଚାଲିଚଳନ, ବିଶ୍ୱାସ ଓ ଜୀବନର ବିଶେଷତ୍ୱ ଲକ୍ଷ୍ୟ କଲେ ; ଆଦିବାସୀଙ୍କ ମନସ୍ତତ୍ତ୍ୱ ବୁଝିଲେ । ସେ ଖାଲି ସରକାରୀ ଅଫିସର ନଥିଲେ ; ଥିଲେ ତାହାଠାରୁ ଅନେକ କିଛି ଅଧିକ । ତାଙ୍କ ଚାଲିର ଏକ ଠାଣି ଥିଲା–ହାତୀ ଚାଲିଲା ଭଳି । ଏଣୁ ଆଦିବାସୀମାନେ ତାଙ୍କ ନାଁ ଦେଇଥିଲେ ହାତୀ ମାହାନ୍ତି ।

୧୯୫୧ ମସିହାରେ ଗୁଣୁପୁର ତାଲୁକ ସମେତ ଗଞ୍ଜାମ ଓ କୋରାପୁଟରେ ମରୁଡ଼ି ପଡ଼ିଥିଲା । ତା'ପରେ ଅନାହାରରେ ଶହଶହ ଲୋକ ମଲେ । ସେତେବେଳକୁ ବିଶ୍ୱନାଥ ପଟ୍ଟନାୟକ ଗୁଣୁପୁର ତାଲୁକାର କୁଜେନ୍ଦ୍ରୀଠାରେ ଏକ କେନ୍ଦ୍ର ପ୍ରତିଷ୍ଠା କରି ଗ୍ରାମସେବା କାର୍ଯ୍ୟ କରୁଥିଲେ । ସିଏ ପୂର୍ବରୁ ବରୀ ରାମଚନ୍ଦ୍ରପୁର ଆଶ୍ରମରେ ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀଙ୍କ ନିକଟରେ ରହି ଗ୍ରାମ ସଙ୍ଗଠନ ତାଲିମ ପାଇଥିଲେ । ଅନାହାର ପଡ଼ିଥିବା କୁଜେନ୍ଦ୍ରୀ ଅଞ୍ଚଳରେ ବିଶ୍ୱନାଥ ପଟ୍ଟନାୟକଙ୍କୁ ରିଲିଫ୍ କାମରେ ସହାୟତା କରିବା ଲାଗି ଈଶ୍ୱରଲାଲ ବ୍ୟାସ ଓ ରତନ ଦାସ ଆଦି ସେ ସମୟକୁ ସେଠାରେ ପହଞ୍ଚିଥିଲେ । ରିଲିଫ୍ କାମ ସରିଲା ପରେ ସେମାନେ ଏ ଅଞ୍ଚଳର ଚିର ଦାରିଦ୍ର୍ୟ ସମ୍ପର୍କରେ କିଛି କରିବାକୁ ବିଚାର କଲେ । କାରଣ ଭଲ ବର୍ଷା ହେଉଥିବା ବର୍ଷ ବି ଏ ଅଞ୍ଚଳର ଲୋକେ ବର୍ଷର ଛଅମାସ ବଣର ଚେରମୂଳ ଓ ଫଳ ଖାଇ ଅର୍ଦ୍ଧାହାରରେ ରହନ୍ତି ।

ସେଠାକାର ଶତକଡ଼ା ୯୫ ଭାଗ ଲୋକଙ୍କର ଜମି ବହୁ ବର୍ଷ ପୂର୍ବରୁ ବାହାର ଅଞ୍ଚଳର ସାହୁକାରମାନେ ସ୍ଥାନୀୟ ଲୋକଙ୍କଠାରୁ ଠକି ନେଇଥିଲେ । ସେହି ଆଦିବାସୀମାନଙ୍କ ଦ୍ୱାରା ସେ ଜମି ଭାଗଚାଷ କରାଇ ସେଥିରେ ବି ସେମାନଙ୍କୁ ନାନା ଭାବରେ ଲୁଣ୍ଠନ କରୁଥିଲେ । ସେସବୁ ଜମି ଫେରିନପାଇ ସେମାନେ ପୋଡୁଚାଷ କରି ବି ବର୍ଷେଅଧେ ଚଳନ୍ତି ।

ଏହାଫଳରେ ସେମାନଙ୍କ ନାମରେ ସରକାରଙ୍କ ତରଫରୁ ମକଦ୍ଦମା ହୋଇ ଜେଲ୍ ଜରିମାନା ହୁଏ । ବିଶ୍ୱନାଥ ପଟ୍ଟନାୟକ, ଈଶ୍ୱରଲାଲ ବ୍ୟାସ ଓ ରତନ ଦାସ ଆଦି ଆଦିବାସୀମାନଙ୍କ ଜମି ସମସ୍ୟା ଉପରେ ଆଲୋଚନା କରି ସ୍ଥିର କଲେ ଯେ ଭୂମିହୀନମାନେ ସେମାନଙ୍କ ଅପହୃତ ଜମି ଫେରି ପାଇବାଲାଗି ଶାନ୍ତିପୂର୍ଣ୍ଣ ମାର୍ଗରେ ଭୂ-ସତ୍ୟାଗ୍ରହ କରିବେ ଓ ସରକାରଙ୍କ ବଳକା ଜଙ୍ଗଲ ଜମି ମିଳିବା ଦିଗରେ ସରକାରଙ୍କ ଉପରେ ଚାପ ଦେବେ ।

ସେତେବେଳକୁ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ଏଣୁ ତାଙ୍କଠାରୁ ଏ ଦିଗରେ ସହାୟତା ପାଇବେ ବୋଲି ଉଦ୍ୟୋକ୍ତାମାନେ ଭାବୁଥିଲେ । ସେମାନେ ୧୯୫୧ ମସିହା ନଭେମ୍ବର ମାସରୁ ଏଭଳି ସତ୍ୟାଗ୍ରହ ସମ୍ପର୍କରେ ନବକୃଷ୍ଣ ଚୌଧୁରୀ ଓ ଗୋପବନ୍ଧୁ ଚୌଧୁରୀ ଆଦିଙ୍କୁ ଜଣାଇ ସେମାନଙ୍କ ପରାମର୍ଶ ମାଗିଥିଲେ । କିନ୍ତୁ ସେମାନଙ୍କଠାରୁ କିଛି ଉତ୍ତର ପାଇ ନଥିଲେ । ଖୁବ୍ ସମ୍ଭବ ୧୯୫୧ ମସିହା ଶେଷବେଳକୁ ନବକୃଷ୍ଣ ଚୌଧୁରୀ ସାଧାରଣ ନିର୍ବାଚନ ପାଇଁ ବ୍ୟସ୍ତ ରହି ଓ ୧୯୫୨ ମସିହା ପ୍ରାରମ୍ଭରେ ସରକାର ଗଠନ ଲାଗି ବ୍ୟସ୍ତ ଥାଇ ଏ ଦିଗରେ ମନ ଦେଇ ପାରିନାହାନ୍ତି । ତେବେ, ଗୋପବନ୍ଧୁ ଚୌଧୁରୀ ସେତେବେଳକୁ ଭୂ-ଦାନ କାମରେ ଲାଗିଥିଲେ । ସେହି ଉଦ୍ଦେଶ୍ୟରେ କୋରାପୁଟ ଜିଲ୍ଲାର କୁଳେନ୍ଦ୍ରୀ ଆସି ଭୂ-ସତ୍ୟାଗ୍ରହ କଥା ଜାଣି ସେ ଏହି ଭୂ-ସତ୍ୟାଗ୍ରହରେ ସମ୍ପୃକ୍ତ ନହୋଇ କଳାହାଣ୍ଡି ଚାଲିଯାଇଥିଲେ । ସତ୍ୟାଗ୍ରହୀମାନେ ନିଜ ଉଦ୍ୟମରେ ଦୃଢ଼ ହୋଇ, ସତ୍ୟାଗ୍ରହ ଲାଗି ଏକ ନିର୍ଦ୍ଦିଷ୍ଟ ତାରିଖ କଣ୍ଟ ଦେଇ ମୁଖ୍ୟମନ୍ତ୍ରୀ, ଜମିମାଲିକ ଓ ସ୍ଥାନୀୟ ତାଲୁକାଦାର ଆଦିଙ୍କୁ ଜଣେଇଦେଇଥିଲେ । ସତ୍ୟାଗ୍ରହ ଆରମ୍ଭ ହୋଇ କିଛି ଲୋକ ଜେଲ୍ ବି ଯାଇଥିଲେ । ଏହି ସମୟରେ ନବକୃଷ୍ଣ ଚୌଧୁରୀ ପରିସ୍ଥିତିକୁ ବିଚାର କରି ସତ୍ୟାଗ୍ରହ ପ୍ରତ୍ୟାହାର ପାଇଁ ବିଶ୍ୱନାଥ ପଟ୍ଟନାୟକଙ୍କୁ ଏକ ଚିଠି ଲେଖିଥିଲେ ।

ନବବାବୁ ଜାଣିଥିଲେ ଯେ ବାସ୍ତବରେ ଆଦିବାସୀମାନଙ୍କର ଜମି ଅନ୍ୟମାନେ ହରଣ କରିନେଇଥିଲେ ମଧ୍ୟ ତାହାର କିଛି ରେକର୍ଡ଼ ନାହିଁ । ପୂର୍ବରୁ ସେ ଅଞ୍ଚଳର ସେଟ୍‌ଲମେଣ୍ଟ ହୋଇନଥିଲା । ଏଣୁ ୫୦ରୁ ୧୦୦ ବର୍ଷ ତଳର ମାଲିକାନା ଜାଣିବା କଷ୍ଟକର । ସେଥିପାଇଁ ସେ ୧-୬-୫୨ ତାରିଖରେ ବିଶ୍ୱନାଥ ପଟ୍ଟନାୟକଙ୍କୁ ନିମ୍ନ ମର୍ମରେ ଏକ ଚିଠି ଲେଖିଥିଲେ-

ସ୍ନେହର ବିଶ୍ୱନାଥ !

ତମ ଚିଠି ପାଇଛି । ମୋ ପ୍ରତି ତମର ସ୍ନେହ ମତେ ସବୁବେଳେ ଅଭିଭୂତ କରିଥାଏ । ପରସ୍ପର ପ୍ରତି ସ୍ନେହ ଗୋଟାଏ କଥା, ସାଧାରଣ କ୍ଷେତ୍ରରେ ବିଭିନ୍ନ ସମସ୍ୟାର ସମାଧାନ ପାଇଁ କାମ କରିବା ଆଉ ଗୋଟିଏ କଥା । ସେପରି କାମ କଲାବେଳେ ନିଜର ବୁଦ୍ଧି ଓ ବିବେକ ଅନୁସାରେ ଭଲମନ୍ଦ ଆଗପଛ ବିଚାରି କାମ କରିବାକୁ ପଡ଼େ । ପ୍ରତ୍ୟେକ ଲୋକର ବୁଦ୍ଧି, ବିବେକ ଅନୁସାରେ କାମ ଭିନ୍ନ ଭିନ୍ନ ହୁଏ ।

ମୁଁ ତୁମକୁ ବୁଝାଇ କହିଥିଲି, ଆଇନ ଅମାନ୍ୟ କରି ଅନ୍ୟର ଜମି ପୁନର୍ବଣ୍ଟନ ସମସ୍ୟାର ସମାଧାନ କରିହେବ ନାହିଁ । ଯେଉଁଠାରେ ଜଣେ ଲୋକ ହଜାରେ ପାଞ୍ଚଶହ ଏକର ଜମି ନିଜେ ଚାଷ ନ କରି ରଖିଛନ୍ତି, ସେଠିକା କଥା ସ୍ୱତନ୍ତ୍ର । ସେଠି ମଧ୍ୟ ଜବରଦସ୍ତି ବିନା କ୍ଷତିପୂରଣରେ ତାଙ୍କର ଜମି ନେଇହେବ ନାହିଁ । ଆମର ଶାସନବିଧାନ ନ ବଦଳିବା ଯାଏଁ ରୟତି ଜମି ପାଇଁ ପୂରା ମୂଲ୍ୟ କ୍ଷତିପୂରଣ ଦେବାକୁ ପଡ଼ିବ । ଅଥଚ ବହୁ ମୂଲ୍ୟ ଦେଇ ଯେଉଁ ଜମି ଏପରି ଭାବରେ ମିଳିବ, ତାହା ବାଣ୍ଟିଦେଲେ ଅତି ଅଳ୍ପ ଜମିହୀନ ଲୋକ ୪/୫ ଏକର ଜମି ପାଇପାରିବେ ।

ତେଣୁ ଅନ୍ୟ ନୂଆ ଜମି ଖୋଜି ବାହାର କରିବା ଓ ଅନ୍ୟ କାମ ଯୋଗାଇଦେବା ହେଉଛି ଦାରିଦ୍ର୍ୟ ଦୂର କରିବା ପାଇଁ ଏକମାତ୍ର ବାଟ । ସେପରି ବହୁତ ଜମି ମିଳିପାରିବ, କିନ୍ତୁ ଲୋକମାନଙ୍କୁ ନେଇ ସେଠି ବସାଇବା ଗୋଟିଏ ବଡ଼ କାମ, ଯାହା ଆମକୁ କରିବାକୁ ହେବ । ତମେମାନେ ସେ କାମ ହାତକୁ ନେଲେ ବହୁସଂଖ୍ୟକ ଲୋକଙ୍କର ସ୍ଥାୟୀ ଭାବରେ ଅବସ୍ଥା ବଦଳାଯାଇପାରନ୍ତା ।

ତା' ଛଡ଼ା ରାସ୍ତା, ବନ୍ଧ ପ୍ରଭୃତି କାମ ପାଇଁ ଚାରିଆଡ଼େ ବହୁତ ଲୋକ ଦରକାର । କନ୍ଧ ସଉରାମାନଙ୍କୁ ନେଇ ଶ୍ରମିକଦଳ ଗଢ଼ି ଏ କାମସବୁ ହାତକୁ ନେଲେ ସେମାନେ ବହୁତ ଉପାର୍ଜନ କରିପାରିବେ । ସେ ଦିଗରେ ମଧ୍ୟ ତମେମାନେ ଆଦୌ ଧ୍ୟାନ ଦେଉନାହଁ । ସେଥିସକାଶେ ହାତରେ ଟଙ୍କା ଥିଲେ ସୁଦ୍ଧା ସ୍ଥାନୀୟ ଅଫିସରମାନେ କାମ ପୂରା କରି-ପାରୁନାହାନ୍ତି । ମୁଁ ତୁମକୁ କହୁଥିଲି, ଚା' ବଗିଚାରେ କାମ କରିବାପାଇଁ ଆସାମ ଭଳିଆ ଦୂର ଦେଶକୁ ଯଦି ଆଦିବାସୀମାନଙ୍କୁ ନିଆଯାଇପାରୁଛି, ଓଡ଼ିଶା ଭିତରେ ତାଙ୍କୁ ନେଇ ନିଶ୍ଚୟ କାମରେ ଲଗାଇହୁଅନ୍ତା, ଯଦି ସେଥିପାଇଁ ସଙ୍ଗଠିତ ଉଦ୍ୟମ କରାଯାନ୍ତା । ସରକାରୀ ଅଫିସରଙ୍କ ଦ୍ୱାରା ଏ କାମ ହେବା କଷ୍ଟକର–ଚା' ବଗିଚା ପାଇଁ ବଗିଚା ମାଲିକମାନେ 'ଲାଭ ଉଦ୍ଦେଶ୍ୟରେ' ଏ କାମ କରିପାରୁଛନ୍ତି । ''ଲାଭ ଉଦ୍ଦେଶ୍ୟ'' ପରିବର୍ତ୍ତେ ''ଦେଶସେବା ବ୍ରତ'' କେବଳ କାର୍ଯ୍ୟକାରୀ ହୋଇପାରେ–ସରକାରୀ ଚାକିରି ନୁହେଁ ।

ଯାହାହେଉ, ରାୟଗଡ଼ା ପ୍ରଭୃତି ଅଞ୍ଚଳ ପାଇଁ ମୁଁ ଜଣେ ଖୁବ୍ ସହାନୁଭୂତିସମ୍ପନ୍ନ ଅଫିସର ପଠାଇଛି । ସେ ସରକାରୀ ଅଫିସରଙ୍କ ଦ୍ୱାରା ଯେତେଦୂର ଯାହା କରାଯାଇ ପାରିବ, କରିବ । ତମେମାନେ ୨/୪ ମାସ ତାଙ୍କୁ ପରୀକ୍ଷା କରି ଦେଖିଲେ ଭଲ ହୁଅନ୍ତା । ତା' ନ କରି ଯଦି ତମେମାନେ ଅସହଯୋଗ ଓ ସତ୍ୟାଗ୍ରହ କର, ତା ହେଲେ ମୁଁ ନିରୁପାୟ । ସତ୍ୟାଗ୍ରହର ଅର୍ଥ ତ' ହେଉଛି ଆଇନଅମାନ୍ୟ କରି ଜାଣିଶୁଣି ଦଣ୍ଡବରଣ କରିବା–ସେୟା ହେବ । ଆଇନ୍ ଅନୁସାରେ ଦଣ୍ଡ ଦେବାପାଇଁ ଯେଉଁମାନେ ଅଛନ୍ତି, ସେମାନେ ତାହା ଦେବେ ।

ମୁଁ ଯେଉଁ ଅଫିସରଙ୍କୁ ପଠାଇଛି, ସେ ଚେଷ୍ଟା କରିବେ ଆଦିବାସୀଙ୍କ ଉପରେ ଯେଉଁ ବେଆଇନ୍ ଜୁଲମ ଅତ୍ୟାଚାର ଓ ଶୋଷଣ ହେଉଛି, ତାକୁ ବନ୍ଦ କରିବାପାଇଁ ।

। ଇତି ।

ସ୍ନେହାଧୀନ

ନବକୃଷ୍ଣ ଚୌଧୁରୀ

ଭୂ-ସତ୍ୟାଗ୍ରହ ସମାଧାନ ପାଇଁ ଅଫିସରମାନଙ୍କ ମଧ୍ୟରୁ ଗୋପୀନାଥ ମହାନ୍ତି ବଛାଗଲେ । କିନ୍ତୁ ଅସୁସ୍ଥତା ଯୋଗୁଁ, ଚାରିମାସ ଡେରିରେ, ୧୯୫୨ ଅଗଷ୍ଟ ୧୧ ତାରିଖରେ ସେ ଗୁଣୁପୁରରେ ପହଞ୍ଚିଲେ । ବିଶ୍ୱନାଥ ପଟ୍ଟନାୟକ ନବବାବୁଙ୍କ ଚିଠି ପାଇ ଭୂ-ସତ୍ୟାଗ୍ରହ ଚାରିମାସ ପଛେଇ ଦେଇଥିଲେ । ଗୋପୀନାଥବାବୁ ସେଠାରେ ପହଞ୍ଚି ବିକ୍ଷୁବ୍ଧ ଅଞ୍ଚଳଯାକ ବୁଲିବୁଲି ହଜାରହଜାର ଆଦିବାସୀଙ୍କୁ ବିଭିନ୍ନ ଗ୍ରାମରେ ଭେଟି ସେମାନଙ୍କ ସହିତ ରହି ସେମାନଙ୍କ ଅବସ୍ଥା ଅନୁସନ୍ଧାନ କଲେ । ସାହୁକାରମାନଙ୍କୁ ଭେଟିଲେ, ସରକାରୀ କର୍ମଚାରୀମାନଙ୍କ ସଙ୍ଗେ ଆଲୋଚନା କଲେ ଓ ବିବିଧ ନଥିପତ୍ର ଦେଖିଲେ । ଅଗଷ୍ଟ ୨୭ ତାରିଖରେ କଟକ ଫେରିଆସି ତାଙ୍କ ରିପୋର୍ଟ ଦାଖଲ କଲେ । ଆଦିବାସୀମାନଙ୍କ ଶୋଚନୀୟ ଦୁରବସ୍ଥା, ସେମାନଙ୍କ ବିଭିନ୍ନ ସମସ୍ୟା, ସରକାରୀ କର୍ମଚାରୀମାନଙ୍କ ଉଦାସୀନତା ଓ ଆଦିବାସୀମାନଙ୍କ ଦୁଃଖ ଦୂରକରିବାରେ ସରକାରୀ ବ୍ୟବସ୍ଥାର ଅପରାଗତା ଯାହା ଯାହା ଦେଖୁଥିଲେ, ବୁଝିଥିଲେ, ସେସବୁ ରିପୋର୍ଟରେ ସ୍ଥାନ ପାଇଲା ଓ ତାହା ସହିତ ବିବିଧ ସମସ୍ୟା ସମାଧାନ ବିଷୟରେ ମଧ୍ୟ ତାଙ୍କ ପରାମର୍ଶ ଦେଲେ ।

ନବକୃଷ୍ଣ ଚୌଧୁରୀଙ୍କ ସହିତ ସେତେବେଳକୁ ଗୋପୀନାଥବାବୁଙ୍କର ବ୍ୟକ୍ତିଗତ ସମ୍ପର୍କ ନଥିଲା । ସେ ଭାବି ନଥିଲେ ଯେ ସରକାରୀ କର୍ତ୍ତୃପକ୍ଷ ତାଙ୍କ ରିପୋର୍ଟ ପଢ଼ି ଖୁସିହେବେ, ବରଂ ଓଲଟା ହିଁ ଆଶଙ୍କା ଥିଲା । କିନ୍ତୁ ସେ ଯେତେବେଳେ ଶୁଣିଲେ ସରକାର ତାଙ୍କ ରିପୋର୍ଟରେ ସୁପାରିଶଗୁଡ଼ିକୁ ଗ୍ରହଣ କରି ତାଙ୍କୁ ରାୟଗଡ଼ା ସବ୍‌ଡିଭିଜନ୍‌ର ଏସ୍.ଡି.ଓ. କରି ପଠାଉଛନ୍ତି, ସେଥିରେ ସେ ଆଶ୍ଚର୍ଯ୍ୟ ହୋଇଥିଲେ । ଗୁଣୁପୁର ତାଲୁକା ଏହି ରାୟଗଡ଼ା ସବ୍‌ଡିଭିଜନ ଅନ୍ତର୍ଗତ । ସେ ସେହି ଅଞ୍ଚଳରେ ପହଞ୍ଚିଲା ପରେ ଆନ୍ଦୋଳନ ବନ୍ଦ ହୋଇଯାଇଥିଲା । ନୂଆ କାର୍ଯ୍ୟକ୍ରମମାନ ଆରମ୍ଭ ହୋଇଗଲା । ଦିନରାତି କାମ ଚାଲିଲା । ଆଦିବାସୀମାନଙ୍କ ସମସ୍ୟା ସମାଧାନ ଲାଗି ନାନା ଉଦ୍ୟମ ହେଲା । ୧୯୧୭ ମସିହାର ଆଦିବାସୀ ଭୂମି ହସ୍ତାନ୍ତର ନିଷେଧ ଆଇନ୍, ୧୯୪୭ର ଭାଗଚାଷୀ ଆଇନ୍, ୧୯୩୯ ଓଡ଼ିଶା ମହାଜନୀ ଆଇନ୍ ଥିଲେ ବି ସରକାରୀ କର୍ମଚାରୀମାନେ ସେସବୁକୁ କାର୍ଯ୍ୟକାରୀ କରୁନଥିଲେ ; ବରଂ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ସପକ୍ଷରେ ଗଲା ଭଳି କାର୍ଯ୍ୟ କରୁଥିଲେ । ଗୋପୀବାବୁଙ୍କୁ ଏହି କାର୍ଯ୍ୟରେ ସହାୟତା

କରିବା ଲାଗି ଆଉ ଦୁଇଜଣ କର୍ମଚାରୀ ବି ନିଯୁକ୍ତ ହେଲେ । ଆଦିବାସୀମାନଙ୍କୁ କୋର୍ଟ ଫି ଛାଡ଼ି ଦିଆଗଲା ଓ ତାଙ୍କ ତରଫରୁ ସରକାରୀ ଓକିଲ ନିଯୁକ୍ତ ହେଲେ । ଯେଉଁଠି ସରକାରୀ ପତିତ ଜମି ଥିଲା, ତାକୁ ଠାବ କରି ଆଦିବାସୀମାନଙ୍କୁ ଦିଆଗଲା ଓ ସେ ଜମି ଉଠିଆ କରିବା ଲାଗି ସରକାରୀ ଋଣ ଦିଆଗଲା । ଏହାଛଡ଼ା ଚାଷ ସମୟରେ ଧାନ ଋଣ ଦେବାଲାଗି ଗ୍ରେନ୍‌ଗୋଲା ଖୋଲାଗଲା ଓ ପୂର୍ବର ଅତ୍ୟାଚାର ତଥା ଶୋଷଣ ବନ୍ଦ ହେଲା । ଚାଷ ସମୟ ଛଡ଼ା ଅନ୍ୟ ସମୟରେ କାମ ଯୋଗାଇଦେବା ଲାଗି କୂଅ, ପୋଖରୀ, ରାସ୍ତା, କ୍ଷୁଦ୍ର ଜଳସେଚନ ଯୋଜନାମାନ କାର୍ଯ୍ୟକାରୀ ହେଲା । ଗୋପୀନାଥବାବୁଙ୍କର ଅଭ୍ୟନ୍ତରର ଗାଁ ସହିତ ଘନିଷ୍ଠ ସମ୍ପର୍କ ଫଳରେ ଲୋକଙ୍କ ଡର ଭାଙ୍ଗିଗଲା ଓ ସେମାନେ ହାଟବଜାରରେ ଠିକ୍ ମାପ ଓ ଠିକ୍ ଦର ପାଇଲେ । ଭାଗଚାଷ ଆଇନ୍ ଅନୁସାରେ ମକଦ୍ଦମା ହୋଇ ଜମିମାଲିକ ଭାଗଚାଷୀ ରୟତଙ୍କୁ ସମ୍ପୃକ୍ତ ବର୍ଷର ନ୍ୟାଯ୍ୟ ଅଂଶ ଦେଲେ; ଏପରିକି ପୂର୍ବ ବର୍ଷମାନଙ୍କରେ ନେଇଥିବା ଅତିରିକ୍ତ ପ୍ରାପ୍ୟ ଫେରାଇଦେଲେ । ଅନ୍ୟାୟ ଋଣ, ଅର୍ଥାତ୍ ଯେତିକି ଟଙ୍କା ଦିଆହୋଇଥାଏ ତା'ର ଦୁଇ ବା ତିନିଗୁଣ କାଗଜରେ ଲେଖା ହୋଇଥିବା ଋଣ, ଅକାମୀ ହେଲା ।

ଆଦିବାସୀମାନେ ନାନା ଭାବରେ ଉପକୃତ ହେଲେ, ସେମାନଙ୍କ ଅବସ୍ଥାର ଦ୍ରୁତ ପରିବର୍ତ୍ତନ ହେଲା । ସାହୁକାରମାନଙ୍କ ପ୍ରତି ସେମାନଙ୍କର ଭୟ ଦୂର ହେଲା । ଯେଉଁ ଭୂମି ତାଙ୍କର ବୋଲି ବିଶ୍ୱାସ କରି ସେମାନେ ଆନ୍ଦୋଳନ କରୁଥିଲେ, ନ୍ୟାୟ ବିଚାର ହୋଇ, ତହିଁରୁ ଯେଉଁଗୁଡ଼ିକ ସେମାନଙ୍କୁ ଫେରାଇଦେବା ଆଇନ ଅନୁସାରେ ଅସମ୍ଭବ ହେଲା, ସେ ବିଷୟରେ ବି ସେମାନଙ୍କର ଅଭିଯୋଗ କି ଅଶାନ୍ତି ରହିଲା ନାହିଁ । ଗୋପୀନାଥ ମହାନ୍ତି ରାୟଗଡ଼ାରେ ୧୯୫୨ରୁ ୧୯୫୪ ମସିହା ପର୍ଯ୍ୟନ୍ତ ଥିଲେ । ନବକୃଷ୍ଣ ଚୌଧୁରୀ ସେହି ସମୟ ମଧ୍ୟରେ କେତେଥର ସେ ଅଞ୍ଚଳକୁ ଯାଇ ସେଠାର ପରିବର୍ତ୍ତନ ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ ଓ ଆଦିବାସୀମାନଙ୍କଠାରୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ପାଇଥିଲେ । ଖାଲି ଗୁଣୁପୁର ଓ ମାଲକାନଗିରି ନୁହେଁ, କୋରାପୁଟ ଓ ଗଞ୍ଜାମର ଅଗମ୍ୟ ଅଞ୍ଚଳକୁ ସେ କିଭଳି ବାରବାର ଯାଉଥିଲେ ଏବଂ ବିଭିନ୍ନ ସମସ୍ୟା ସମାଧାନ ଦିଗରେ ପ୍ରତ୍ୟକ୍ଷ ଦୃଷ୍ଟି ଦେଉଥିଲେ, ସେକଥା ସେ ସମୟର ରାୟଗଡ଼ା ବିଧାୟକ ମାବାଙ୍ଗି କାମାୟା ଆବେଗର ସହ ବର୍ଣ୍ଣନା କରନ୍ତି ।

ଅବହେଳିତ ହୋଇଆସୁଥିବା ଲୋକଙ୍କ ପାଇଁ ସେ କିଭଳି ଗୁରୁତ୍ୱ ଦେଉଥିଲେ, ତା'ର ଏକ ଦୃଷ୍ଟାନ୍ତ ସେହି ସମୟର ଜଣେ ଅଫିସର ମାଧବାନନ୍ଦ ଷଡ଼ଙ୍ଗୀ କହନ୍ତି । ସରକାରଙ୍କର ଏକ ପରୀକ୍ଷାଗାରରେ ସେ ସେହି ସମୟରେ କାର୍ଯ୍ୟ କରୁଥିଲେ । ତାଙ୍କ ପାଖକୁ ଦିନେ କଟକ ଜେଲ୍‌ରୁ ମହାଦେବ ମୁଣ୍ଡା ନାମକ ଜଣେ ଯାବଜ୍ଜୀବନ ବନ୍ଦୀର ଖଙ୍କାର ପରୀକ୍ଷା

ପାଇଁ ଆସିଥିଲା । ସନ୍ଦେହ ହେଉଥିଲା, ତାହାର ଯକ୍ଷ୍ମା ହୋଇଯାଇଛି । ପ୍ରାଥମିକ ପରୀକ୍ଷାରୁ ଯକ୍ଷ୍ମାର ସୂଚନା ମିଳିଲା ନାହିଁ । ଏହାପରେ ଆଉଥରେ ଟିକିନିଖି ପରୀକ୍ଷା ହେବାର କଥା । କିନ୍ତୁ ଜେଲ୍ ସୁପରିନ୍‌ଟେଣ୍ଡେଣ୍ଟ ଆଉ ସେ ଦିଗରେ କିଛି ପଦକ୍ଷେପ ନେଲେ ନାହିଁ । ଏହି ଅବସ୍ଥାରେ ରୋଗୀକୁ ପ୍ୟାରୋଲ୍‌ରେ ଛାଡ଼ ପାଇଁ ଦରଖାସ୍ତ ଆସିଥିଲା । ଦରଖାସ୍ତଟି ମୁଖ୍ୟମନ୍ତ୍ରୀଙ୍କ ପାଖରେ ପହଞ୍ଚିବାକୁ ଡେରି ହୋଇଯାଇଥିଲା । ଯେଉଁଦିନ ଦରଖାସ୍ତଟି ନବବାବୁଙ୍କ ପାଖରେ ପହଞ୍ଚିଥିଲା, ଠିକ୍ ସେହିଦିନ ବନ୍ଦୀଟି ମରିଯାଇଥିଲା । କଥାଟା ସେଦିନ ବିଧାନସଭାରେ ଉଠିଲା । ନବବାବୁ ବିଧାନସଭାରୁ ସିଧା ଜେଲ୍‌କୁ ଯାଇ ଘଟଣାର ତଦନ୍ତ କରି ଜେଲ୍ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ଏବଂ ମହାଦେବ ମୁଣ୍ଡାର ଖଙ୍କାର ପରୀକ୍ଷା କରିଥିବା ମାଧବାନନ୍ଦ ଷଡ଼ଙ୍ଗୀଙ୍କ ପ୍ରତି ଦଣ୍ଡାଦେଶ ଦେଲେ । ଏହି ଘଟଣାରେ ମାଧବାନନ୍ଦବାବୁଙ୍କର ତ୍ରୁଟି ନଥିବା କଥା ଦର୍ଶାଇବା ଫଳରେ ନବବାବୁ ତାଙ୍କ ଉପରୁ ଦଣ୍ଡାଦେଶ ପ୍ରତ୍ୟାହାର କରିନେଲେ, କିନ୍ତୁ ଜେଲ୍ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ଦଣ୍ଡ ଭୋଗ କରିବାକୁ ହୋଇଥିଲା ।

**ଏକ ଦୁର୍ଘଟଣା :**

ନବବାବୁ ମୁଖ୍ୟମନ୍ତ୍ରୀ ଥିବାବେଳେ ମାଳତୀ ଦେବୀ ଢେଙ୍କାନାଳ ଜିଲ୍ଲାର କାମାକ୍ଷାନଗରର ସୌରିକ ଅଞ୍ଚଳରେ ବୁଲୁଥିବା ବେଳେ ତାଙ୍କୁ ଏକ ସାଂଘାତିକ ଧରଣର ମ୍ୟାଲେରିଆ ହୋଇଥିଲା । ତାଙ୍କୁ ସଙ୍କଟଜନକ ଅବସ୍ଥାରେ ଆଣି ଢେଙ୍କାନାଳ ହସ୍‌ପିଟାଲ୍‌ରେ ଭର୍ତ୍ତି କରାଯାଇଥାଏ । ନବବାବୁ ସେ ଖବର ପାଇ ବିଜୁ ପଟ୍ଟନାୟକଙ୍କ ଗାଡ଼ିରେ ମହତାବ ବାବୁଙ୍କ ଡ୍ରାଇଭରକୁ ନେଇ ଢେଙ୍କାନାଳ ଯାଇଥିଲେ । ସାଙ୍ଗରେ ଡାକ୍ତର ଜଗଦୀଶ ଦତ୍ତଙ୍କୁ ଓ ମାଳତୀଦେବୀଙ୍କ ବଡ଼ଭାଇଙ୍କ ଝିଅଙ୍କୁ ନେଇଥିଲେ । ଯିବା ବାଟରେ ଏକ ଗଛରେ ଧକ୍କା ହୋଇ ଡାକ୍ତର ଜଗଦୀଶ ଦତ୍ତଙ୍କର ଘଟଣାସ୍ଥଳରେ ମୃତ୍ୟୁ ହେଲା । ନବବାବୁ ଓ ଝିଆରୀ ଏବଂ ଡ୍ରାଇଭର ଆହତ ହେଲେ । ମାଳତୀ ଦେବୀଙ୍କୁ କଟକ ଅଣାଯାଇ ତାଙ୍କ ଭାଇଙ୍କ ଘରେ ରଖାଗଲା । ସେ ସୁସ୍ଥ ହେଲା ପରେ ତାଙ୍କୁ ଏ ମର୍ମନ୍ତୁଦ ଖବର ଦିଆଯାଇଥିଲା । ଏହି ଦୁର୍ବିପାକରେ ନବବାବୁ ଅତ୍ୟନ୍ତ ମର୍ମାହତ ହୋଇଥିଲେ । ଦିନସାରା କାମ କରି କରି ସମୟ କଟିଯାଏ । ରାତିରେ ଜଗଦୀଶବାବୁଙ୍କ କଥା ଭାବିଭାବି ସେ ବହୁଦିନ ପର୍ଯ୍ୟନ୍ତ ଶୋଇ ପାରୁନଥିଲେ । ଫଳରେ ତାଙ୍କର ସ୍ୱାସ୍ଥ୍ୟ ଖରାପ ହୋଇଗଲା । ଗାଡ଼ିମାଡ଼ରେ ଯେଉଁ ଆଘାତ ଲାଗିଥିଲା ତା'ର ଚିକିତ୍ସା ନ କରିବାରୁ ତାଙ୍କ ଦେହରେ ସେହି ବାଧା ଅନେକ ଦିନ ପର୍ଯ୍ୟନ୍ତ ରହିଗଲା ।

ଅନେକଦିନ ସେ ଜଗଦୀଶବାବୁଙ୍କ ସ୍ତ୍ରୀ ମାୟା ଦତ୍ତ ଓ ପୁଅଝିଅଙ୍କୁ ଦେଖିବାକୁ ଯାଆନ୍ତି ଓ ଫେରିଲା ବେଳକୁ ଅତି ବ୍ୟଥିତ ହୋଇପଡ଼ିଥାନ୍ତି । ମାୟା ଦତ୍ତ ପେନ୍‌ସନ୍ ପାଇଁ ଦରଖାସ୍ତ କଲେ । ନାନା ବାଧା ଓ ଆପତ୍ତି ସତ୍ତ୍ୱେ ତାଙ୍କୁ ପେନ୍‌ସନ୍ ମିଳିଲା ।

ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରିତ୍ୱରୁ ଗଲାପରେ ହରେକୃଷ୍ଣ ମହତାବଙ୍କ ଅମଳରେ ନବକୃଷ୍ଣ ଚୌଧୁରୀଙ୍କ ଅମଳର ଅନେକ କାର୍ଯ୍ୟ ବାତିଲ ହେବା ଭିତରେ ସେହି ପେନ୍‌ସନ୍ ବି କାଟି ଦିଆଯାଇଥିଲା । କିନ୍ତୁ ମାୟା ଦତ୍ତ ତାହା ବିରୋଧରେ ହାଇକୋର୍ଟ ପର୍ଯ୍ୟନ୍ତ ଲଢ଼ି ପୁନରାୟ ପିଛିଲା ପେନ୍‌ସନ୍ ପାଇଥିଲେ । ମାୟା ଦତ୍ତ ନବବାବୁଙ୍କ ଅନ୍ୟାନ୍ୟ ଗୁଣ ଭିତରେ ତାଙ୍କ ସରଳ ବିଶ୍ୱାସକୁ ଲକ୍ଷ୍ୟ କରିଥିଲେ । ଗୋଟିଏ ଦୁଇଟି ଘଟଣାରୁ ସେ ଜାଣିଥିଲେ ଯେ ଅନେକ ଲୋକ କିଭଳି ବିଶ୍ୱସନୀୟତା ଦେଖାଇ ନବବାବୁଙ୍କୁ ଠକନ୍ତି ।

**ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବି :**

କଂଗ୍ରେସ ଦଳ ପ୍ରଥମ ସାଧାରଣ ନିର୍ବାଚନରେ ସଂଖ୍ୟାଗରିଷ୍ଠତା ହାସଲ ନ କରିପାରିବା ନବକୃଷ୍ଣ ଚୌଧୁରୀଙ୍କୁ ନିରାଶ କରିଥିଲା । ଅବଶ୍ୟ ଝାଡ଼ଖଣ୍ଡ ଦଳ ଓ ସ୍ୱାଧୀନ ସଭ୍ୟଙ୍କ ସହାୟତାରେ ମନ୍ତ୍ରିମଣ୍ଡଳ ଗଢ଼ାଗଲା ଏବଂ ତାହାଫଳରେ ଖୁବ୍ ସଂଖ୍ୟାଗରିଷ୍ଠତା ନ ହୋଇଥିଲେ ମଧ୍ୟ ମନ୍ତ୍ରିମଣ୍ଡଳ ଭାଙ୍ଗିଯିବାର ମୋଟେ ଆଶଙ୍କା ନଥିଲା । କିନ୍ତୁ ବର୍ଷକ ଭିତରେ ଚାରିଗୋଟି ଉପନିର୍ବାଚନରେ କଂଗ୍ରେସ ହାରିବା ଫଳରେ ନବବାବୁ ଅସ୍ୱସ୍ତି ବୋଧ କରୁଥାନ୍ତି । ୧୯୫୩ ଜୁଲାଇ ୧୬ ତାରିଖ ଚିଠିରେ ସେ ଜବାହରଲାଲ ନେହେରୁଙ୍କୁ ରାଜ୍ୟ କଂଗ୍ରେସର ପରିସ୍ଥିତି ଜଣାଇ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ି ଗଠନମୂଳକ କାମରେ ଲାଗିପଡ଼ିବା ପାଇଁ ଲେଖିଥିଲେ । ସେ ଲେଖିଥିଲେ, ‘‘କଂଗ୍ରେସ ଦଳ ଯେଉଁସବୁ ପ୍ରତିଶ୍ରୁତି ଦେଇଥିଲା, କେନ୍ଦ୍ର ତଥା ରାଜ୍ୟ ସରକାର ତାହା ପୂରଣ କରିବାରେ ବ୍ୟର୍ଥ ହୋଇଛନ୍ତି ବୋଲି କଂଗ୍ରେସ କର୍ମୀମାନେ ଅନୁଭବ୍ କରୁଛନ୍ତି । ଏହାଛଡ଼ା ଦୁର୍ନୀତି ଦେଖାଦେଇଛି ଓ କର୍ମତତ୍ପରତାର ଅଭାବ ତ ଅଛି । କିନ୍ତୁ ଏଭଳି ପରିସ୍ଥିତିରେ କଂଗ୍ରେସ ଦଳରେ ଆଉ ପ୍ରାଣଶକ୍ତି ନାହିଁ । କଂଗ୍ରେସ କର୍ମୀଙ୍କ ମଧ୍ୟରେ ମିଶନାରୀ ଉତ୍ସାହ ନାହିଁ । ସେମାନେ ନିଜର ବ୍ୟର୍ଥତା ଲାଗି ଯାକୁ ତାକୁ ଓ ସରକାରକୁ ଦୋଷ ଦେଉଛନ୍ତି । ...ଅବସ୍ଥା ଅତି ଦ୍ରୁତ ଗତିରେ ଖରାପ ଆଡ଼କୁ ଯାଉଛି । କଂଗ୍ରେସ କର୍ମୀମାନଙ୍କର ନୈତିକ ଓ ବୌଦ୍ଧିକ ବଳର ଉନ୍ନତି ନ ଘଟିଲେ, ଏହାକୁ ରୋକିହେବ ନାହିଁ । ଆମ ଭିତରୁ ଯେଉଁମାନେ ଏ ଦିଗରେ କିଛି କରିପାରନ୍ତୁ, ଆମେ ଶାସନରେ ରହିଯାଇ ରାଜନୈତିକ ଦିଗରୁ କର୍ମଦକ୍ଷତା ହରାଇଲୁଣି । ...ମୁଁ ନିଶ୍ଚିତ ଯେ ମହତାବବାବୁ ଓ ମୁଁ ଗଠନମୂଳକ କାର୍ଯ୍ୟରେ ଲାଗିପଡ଼ିଲେ ଓଡ଼ିଶା ଲୋକଙ୍କ ଆଖିରେ କଂଗ୍ରେସ ଦଳର ସମ୍ମାନ ବୃଦ୍ଧି ପାଆନ୍ତା । ଏହାଫଳରେ ରାଜନୈତିକ ବିରୋଧୀମାନଙ୍କ ଅପପ୍ରଚାରକୁ ପ୍ରତିହତ କରିହୁଅନ୍ତା । ଏହାଦ୍ୱାରା ଦଳ ଭିତରର ଟଣାଓଟରା ବି ବନ୍ଦ ହୋଇଯାଆନ୍ତା ।...’’

ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ହେବାପରେ ବିଶ୍ୱନାଥ ଦାସ, ସୁରେନ୍ଦ୍ର ପଟ୍ଟନାୟକ ଗୋଷ୍ଠୀ ତାଙ୍କ ସହିତ ଅସହଯୋଗ କରୁଥିଲେ । ୧୯୫୩ ମସିହା ବେଳକୁ ମହତାବଙ୍କ

ଅନୁଗତ ବନମାଳୀ ପଟ୍ଟନାୟକ ପ୍ରଦେଶ କଂଗ୍ରେସର ସଭାପତି ହୋଇଥାନ୍ତି, କିନ୍ତୁ ମହତାବ ବାବୁ କେନ୍ଦ୍ର ମନ୍ତ୍ରିମଣ୍ଡଳରୁ ବାଦ୍ ପଡ଼ିଥାନ୍ତି । ସେହି ଅଭିମାନରେ ସେ କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ସେକ୍ରେଟେରୀ-ଜେନେରାଲ ପଦବୀ ଛାଡ଼ିଦେବା ସଙ୍ଗେସଙ୍ଗେ ନିଖିଳ ଭାରତ କଂଗ୍ରେସ କମିଟିର ସଦସ୍ୟ ପଦରୁ ଇସ୍ତଫା ଦେଇ ଗଠନମୂଳକ କାମରେ ଲାଗିବେ ବୋଲି ନେହେରୁଙ୍କୁ ଚିଠି ଲେଖି ସେ ଚିଠିର ନକଲ ବନମାଳୀ ପଟ୍ଟନାୟକଙ୍କୁ ପଠାଇଥାନ୍ତି । ନବବାବୁ ମହତାବ ବାବୁଙ୍କ ଆପାତ କ୍ଷମତାବିମୁଖତାକୁ ସତ୍ୟ ବୋଲି ଧରିନେଇ ନେହେରୁଙ୍କୁ ପୂର୍ବୋକ୍ତ ଚିଠି ଲେଖିଥିଲେ । ନବବାବୁ ଇସ୍ତଫା ଦେବା କଥା ଉଠିବାରୁ ମହତାବବାବୁ ତାଙ୍କୁ ବାରଣ କରି ଏକାଧିକ ଚିଠି ଲେଖିଥିଲେ । ମହତାବବାବୁଙ୍କ ଡର ଥାଏ ଯେ ନବବାବୁ ଇସ୍ତଫା ଦେଲେ ହୁଏତ ବିଶ୍ୱନାଥ ଦାସ ପୁଣି ମୁଖ୍ୟମନ୍ତ୍ରୀ ହୋଇପାରନ୍ତି । କିନ୍ତୁ ମହତାବବାବୁଙ୍କ ବାସ୍ତବ ଇଚ୍ଛା ଜାଣିବାକୁ ନବବାବୁଙ୍କୁ ବେଶି ସମୟ ଲାଗିନଥିଲା । ମହତାବ ଗୋଷ୍ଠୀ ନବବାବୁଙ୍କୁ ବିରୋଧ କଲାବେଳକୁ ବିଶ୍ୱନାଥ ଦାସ-ସୁରେନ୍ଦ୍ର ପଟ୍ଟନାୟକ ଗୋଷ୍ଠୀଙ୍କଠାରୁ ତାଙ୍କୁ ପୂର୍ଣ୍ଣ ସମର୍ଥନ ମିଳିଲା । ତେଣେ, ନେହେରୁ ମଧ୍ୟ ଚାହୁଁ ନଥାନ୍ତି ନବବାବୁ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ନ୍ତୁ ବୋଲି । ଏଣୁ ୧୯୫୫ ମସିହା ବନ୍ୟାରେ 'ଦଳେଇ ଘାଇ' ଭାଙ୍ଗିବା ପର୍ଯ୍ୟନ୍ତ ନବବାବୁଙ୍କ ସରକାର ପ୍ରତି ବିଶେଷ ଅସୁବିଧା ନଥିଲା ।

ଏଣେ ୧୯୫୨ ମସିହାରୁ ୧୯୫୪ ମସିହା ପର୍ଯ୍ୟନ୍ତ ଭୂଦାନ ଆନ୍ଦୋଳନର ଆପାତ ସାଫଲ୍ୟରେ ନବବାବୁ ଖୁବ୍ ଉତ୍ସାହିତ ହୋଇପଡ଼ିଥିଲେ । ତାଙ୍କ ଭାଇଭାଉଜ, ସ୍ତ୍ରୀ, ପୁତୁରା ଝିଆରୀ, ଝିଆରୀଜ୍ୱାଇଁ ଆଦି ସମସ୍ତେ ସେହି କାମରେ ଲାଗିପଡ଼ିଥାନ୍ତି । ଏଣୁ ୧୯୫୩ ମସିହା ଜୁଲାଇ ୧୬ ତାରିଖ ଚିଠିରେ ନବବାବୁ ସେଇକଥା ନେହେରୁଙ୍କୁ ଲେଖି ଜଣାଇଥାନ୍ତି ଯେ ତାଙ୍କ ମନ ଯାଇ ସେଇ କାମରେ । ତାଙ୍କୁ ମୁଖ୍ୟମନ୍ତ୍ରୀ ଦାୟିତ୍ୱରୁ ଅବ୍ୟାହତି ମିଳିଲେ, ସେ ଅଧିକ ସାର୍ଥକ କାମରେ ଲାଗନ୍ତେ ।

ପ୍ରଥମ ସାଧାରଣ ନିର୍ବାଚନ ପରେ ନବବାବୁ ମୁଖ୍ୟମନ୍ତ୍ରୀ ହେବାର କିଛିଦିନ ପରେ ନେହେରୁ ମହତାବ-ବିଜୁ ପଟ୍ଟନାୟକ ଗୋଷ୍ଠୀର କାର୍ଯ୍ୟକଳାପ ସମ୍ପର୍କରେ, କଟକରୁ ଏକ ବେନାମୀ ଅଭିଯୋଗ ପତ୍ର ପାଇଥିଲେ । ସେଥିରେ ନବବାବୁଙ୍କୁ ସିଧା ଅଭିଯୁକ୍ତ କରା ନ ଯାଇଥିଲେ ବି, ସେ ଉପର୍ଯ୍ୟୁକ୍ତ ଗୋଷ୍ଠୀର ସକ୍ଷୀକଣ୍ଢେଇ ଭାବରେ କାର୍ଯ୍ୟ କରୁଥିଲେ ବୋଲି ଅଭିଯୋଗ ହୋଇଛି । ସେ ସବୁ ଅଭିଯୋଗର ତଦନ୍ତ ହେଉଥାଏ । ସେଥିରେ ବିବ୍ରତ ହୋଇ ବିଜୁ ପଟ୍ଟନାୟକ ନିଜେ ଇସ୍ତଫା ଦେବାକୁ ନେହେରୁଙ୍କୁ ଜଣାଇଥାନ୍ତି । ନବବାବୁଙ୍କ ସରକାର କିଛି ଅନୁଚିତ ସୁବିଧା ମହତାବ-ବିଜୁ ପଟ୍ଟନାୟକ ଗୋଷ୍ଠୀଙ୍କୁ ଦେଇଛନ୍ତି, ଏଇ ଅଭିଯୋଗ ନବବାବୁଙ୍କୁ ଖୁବ୍ ବାଧିଥିଲା । ଏଣୁ ସେ ବି ମୁଖ୍ୟମନ୍ତ୍ରିତ୍ୱରୁ ଇସ୍ତଫା ଦେବାକୁ ନେହେରୁଙ୍କୁ ଚିଠି ଲେଖିଥାନ୍ତି । କିନ୍ତୁ ଓଡ଼ିଶା କଂଗ୍ରେସ ଦଳର ବିଧାନସଭାରେ ସଂଖ୍ୟାଗରିଷ୍ଠତା ନଥିବାରୁ ନେହେରୁ ଏ ଉଭୟଙ୍କୁ ଇସ୍ତଫା ନ ଦେବାଲାଗି ପ୍ରବର୍ତ୍ତାଇଥିଲେ ।

ଇତିମଧ୍ୟରେ ପୁରୀଠାରେ ସର୍ବୋଦୟ ସମ୍ମିଳନୀ ବସିଲା । ସେଠାରେ କେତେକ ଅତି ଉତ୍ସାହୀ ସର୍ବୋଦୟ ନେତା ପ୍ରସ୍ତାବ କଲେ ଯେ ତୁଙ୍ଗ କଂଗ୍ରେସ ନେତାମାନେ କ୍ଷମତା ଛାଡ଼ି ଭୂଦାନ, ଗ୍ରାମଦାନ କାର୍ଯ୍ୟକ୍ରମରେ ଝାସ ଦେଲେ ଉକ୍ତ କାର୍ଯ୍ୟକ୍ରମ ଆହୁରି ଅଧିକ ସଫଳ ହେବ । ସେଥିପାଇଁ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କଠାରୁ ଆରମ୍ଭ କରି ଅନ୍ୟାନ୍ୟ ନେତାମାନେ ଇସ୍ତଫା ଦିଅନ୍ତୁ ବୋଲି ପ୍ରସ୍ତାବ ହେଲା । ସେହି ସମ୍ମିଳନୀରେ ନବବାବୁ ଇସ୍ତଫା ଦେବାକଥା ଘୋଷଣା କରନ୍ତୁ ବୋଲି କିଛି ସର୍ବୋଦୟ ନେତା ଚାପ ଦେଇଥିଲେ । ନବବାବୁ କିନ୍ତୁ ହଠାତ୍ କିଛି ଘୋଷଣା କରିବାକୁ ପ୍ରସ୍ତୁତ ନଥିଲେ ଓ ବିଶେଷକରି ବିନୋବାଙ୍କ ଭୂଦାନ ଯାତ୍ରା ଓଡ଼ିଶାରେ ଚାଲିଥିବା ସମୟରେ ଏଭଳି ଘୋଷଣା କରିବେ ନାହିଁ ବୋଲି ଜଣାଇ ଦେଇଥିଲେ ।

ଅବଶ୍ୟ ଭୂଦାନ କାର୍ଯ୍ୟରେ ମୁଖ୍ୟମନ୍ତ୍ରୀ ଘନିଷ୍ଠ ଭାବରେ ସମ୍ପୃକ୍ତ ହୋଇଥିବାରୁ କେତେକ ସରକାରୀ କର୍ମଚାରୀ, ଶିକ୍ଷକ ଏବଂ ଛାତ୍ର ସେଥିରେ ସହଯୋଗ କରୁଥିଲେ । ନବବାବୁ ପାରମ୍ପରିକ ପ୍ରଶାସନିକ କାର୍ଯ୍ୟଚାପରୁ ଉଶ୍ୱାସ ପାଇବା ଲାଗି ଇତିମଧ୍ୟରେ ରାଧାନାଥ ରଥଙ୍କୁ ମନ୍ତ୍ରିମଣ୍ଡଳରେ ନେଇଥିଲେ । ରାଧାନାଥବାବୁ ବି ଅର୍ଥ ଓ ଶିକ୍ଷାମନ୍ତ୍ରୀ ଭାବରେ ନିଜର ଦକ୍ଷତା ପ୍ରତିପାଦନ କରିଥିଲେ ଓ ନବବାବୁଙ୍କ ଉପରୁ ଶାସନର ଚାପ ଅନେକଟା କମିଯାଇଥିଲା । ଭୂ-ଦାନ ଦିଗରେ ଅଧିକ ସମୟ ଦେଉଥିବାରୁ ଓ ଇସ୍ତଫା ଦେଇ ଚାଲିଯିବା କଥା କହୁଥିବାରୁ, ସରକାରୀ କାର୍ଯ୍ୟରେ ଅବହେଳା ଦେଖା ଦେଇଥିଲା ବୋଲି ସେତେବେଳେ ଅଭିଯୋଗ ଉଠିଥିଲା । ବିଶେଷ ଭାବରେ 'ପ୍ରଜାତନ୍ତ୍ର' ଗୋଷ୍ଠୀ ଏଭଳି ପ୍ରଚାର ଚଳାଇଥିଲେ ।

ମୁଖ୍ୟମନ୍ତ୍ରିତ୍ୱରୁ ଇସ୍ତଫା କଥା କହିହେଉଥିଲେ ବି ସେ ଇସ୍ତଫା ଦେବାଦିନ ପର୍ଯ୍ୟନ୍ତ ସବୁକିଛି କାମ ନିଷ୍ଠାର ସହିତ କରୁଥିଲେ । ଯେଉଁଦିନ ସେ ଇସ୍ତଫା ଦେଲେ, ସେଦିନ ବିଶ୍ୱନାଥ ପଣ୍ଡିତ ତାଙ୍କ ବାସଭବନକୁ ଆସିଥିଲେ । ସେତେବେଳକୁ ସେ ଫାଇଲ କାମ କରୁଥିଲେ । ବିଶ୍ୱନାଥ ପଣ୍ଡିତ ଯେତେବେଳେ କହିଲେ, ଆପଣ ତ ଇସ୍ତଫା ଦେଇଦେଲେଣି, ଆଉ ଫାଇଲ କାମ କାହିଁକି କରୁଛନ୍ତି ? ତା'ର ଉତ୍ତରରେ ସେ କହିଥିଲେ, ''ଆଜିର ଦରମା ତ ନେବି, ଏଣୁ କାମ କରିବି ନାହିଁ କାହିଁକି ?'' ଅବଶ୍ୟ ବହୁ କ୍ଷେତ୍ରରେ କ୍ଷମତାର ଶେଷଦିନର ମୁହୂର୍ତ୍ତଗୁଡ଼ିକୁ ଯେଭଳି ନିଜର ବା ନିଜ ଅନୁଗୃହୀତ ଲୋକଙ୍କ ଫାଇଦା ପାଇଁ କିଛି ମନ୍ତ୍ରୀ ବା ବରିଷ୍ଠ ଅଫିସର ଅନୁଚିତ ଆଗ୍ରହ ପ୍ରକାଶ କରି ସମ୍ପୃକ୍ତ ଫାଇଲରେ ନିଷ୍ପତ୍ତି ନେଇଥାଆନ୍ତି, ନବବାବୁ ସେପରି କରିନଥିଲେ ।

ମୁଖ୍ୟମନ୍ତ୍ରିତ୍ୱରୁ ଇସ୍ତଫା ଦେବେ ବୋଲି ସ୍ଥିର କରିସାରିଥିଲେ ମଧ୍ୟ ସେଇ ସମୟ ମଧ୍ୟରେ ହୀରାକୁଦ ବନ୍ଧ ଓ ରାଉରକେଲା ଇସ୍ପାତ କାରଖାନା ଛଡ଼ା ରାଜ୍ୟରେ ବିକାଶର

ଭିତ୍ତି ପଡ଼ିଥିଲା ଓ ଯୋଜନାର ଅଧିବାସ ହୋଇଯାଇଥିଲା । ସେହି ତିନିବର୍ଷ ଭିତରେ କଟକ ଶିକ୍ଷାଞ୍ଚଳ, କୃଷି ମହାବିଦ୍ୟାଳୟ, ପଶୁ ଚିକିତ୍ସା ଓ ପଶୁ ବିଜ୍ଞାନ ମହାବିଦ୍ୟାଳୟ ଏବଂ ବୁର୍ଲା ଇଞ୍ଜିନିୟରିଂ ମହାବିଦ୍ୟାଳୟ ଆଦି ପ୍ରତିଷ୍ଠା ଦିଗରେ ତାଙ୍କର ଆଗ୍ରହ ଓ ଉତ୍ସାହ ବିଶେଷ ଉଲ୍ଲେଖନୀୟ । ରାଉରକେଲା ଇସ୍ପାତ କରାଖାନା ପ୍ରତିଷ୍ଠା ପୂର୍ବରୁ ସେ ଜାପାନର ଏକ ଶିଳ୍ପ ପ୍ରତିଷ୍ଠାନ ସହିତ ଯୋଗାଯୋଗ ସ୍ଥାପନ କରିଥିଲେ । ଅବଶ୍ୟ ଭାରତ ସରକାର ସେଭଳି ପ୍ରସ୍ତାବରେ ଆଗ୍ରହ ପ୍ରକାଶ ନ କରିବାରୁ ସେକଥା ବେଶି ଆଗେଇନଥିଲା ।

ସେ ମୁଖ୍ୟମନ୍ତ୍ରୀ ରହିବେ ନାହିଁ ଏବଂ ପରବର୍ତ୍ତୀ ନିର୍ବାଚନ ଲଢ଼ିବେ ନାହିଁ ବୋଲି ସ୍ଥିରନିଶ୍ଚିତ ଥିଲେ ବି ସେ ସମୟର କଂଗ୍ରେସ ଦଳର ସାଧାରଣ ସମ୍ପାଦକ ସୁରେନ୍ଦ୍ରନାଥ ପଟ୍ଟନାୟକ ଯେତେବେଳେ ନିର୍ବାଚନ ପ୍ରସ୍ତୁତି ଲାଗି ଅନ୍ତତଃ ୫୦ ହଜାର ଟଙ୍କା ମାଗିଛନ୍ତି, ଇସ୍ତଫା ଦେବାର ମାତ୍ର ୩ ମାସ ପୂର୍ବରୁ, ନବବାବୁ ୨୭-୭-୧୯୫୬ରେ ପ୍ରାଦେଶିକ କଂଗ୍ରେସ କମିଟିକୁ ଏକଲକ୍ଷ ଟଙ୍କା ସଂଗ୍ରହ କରିଦେଇଛନ୍ତି । ସେ ଏହା ନ ଦେଇଥିଲେ ହୋଇଥାନ୍ତା । କିନ୍ତୁ ରାଜ୍ୟର ରାଜନୀତିରେ ମୁଖ୍ୟ ଥିବା କାରଣରୁ କିଛି ଚାନ୍ଦା ଆଦାୟ କରି ଦେବା ତାଙ୍କର କର୍ତ୍ତବ୍ୟ ବୋଲି ସେ ବିଚାର କରିଛନ୍ତି । ଜଣାଯାଏ ଖଣି ମାଲିକ ସିରାଜୁଦ୍ଦିନ ନବବାବୁଙ୍କୁ ଖୁସି କରିବା ଲାଗି ବାଜିରାଉତ ଛାତ୍ରାବାସ ପାଇଁ ସେ ଟଙ୍କା ଦେଇଥିଲେ । କିନ୍ତୁ ନବବାବୁ ସେ ଟଙ୍କାକୁ ନିର୍ବାଚନ ପାଣ୍ଠି ଲାଗି ଦେଇଦେଲେ ।

ଆଜିକାଲି ଦଳୀୟ ପାଣ୍ଠି ସଂଗ୍ରହ କରିବା ଭିତରେ ଯେଭଳି ନିଜର ବ୍ୟକ୍ତିଗତ ପାଣ୍ଠି ପ୍ରାଧାନ୍ୟ ଲାଭ କରୁଛି, ତାହା ତାଙ୍କ ପକ୍ଷରେ ଅଚିନ୍ତନୀୟ ଥିଲା । ମୁଖ୍ୟମନ୍ତ୍ରିତ୍ୱ ଛାଡ଼ି ଅନୁଗୋଳ ଯିବା ବାଟରେ ସେ କଟକରେ ମଟରଗାଡ଼ି ବିକ୍ରିର ବ୍ୟବସ୍ଥା କରିଥିଲେ । ସେହି ବିକ୍ରିଟଙ୍କାରୁ ଗାଡ଼ିବାବଦ ସରକାରୀ ଋଣ ପରିଶୋଧ ପରେ ଏକହଜାର ଟଙ୍କା ବଳିଥିଲା । ସେତକ ରହିଥିଲା ଝିଅବିବାହ ପାଇଁ ମୂଳପାଣ୍ଠି । ବହୁ ମନ୍ତ୍ରୀ ମନ୍ତ୍ରିତ୍ୱ କାଳରେ ଝିଅ ବିବାହ କରିବାର ଦେଖାଯାଏ । ଏଥିରେ ଅନେକ ସୁବିଧା ମିଳିଥାଏ । ଅନେକ ମନ୍ତ୍ରୀଙ୍କ ଝିଅ ବିବାହ ବେଳକୁ ଏତେ ଉପହାର ମିଳେ ଯେ ବିବାହ ଖର୍ଚ୍ଚ ଯାଇ, ଖର୍ଚ୍ଚର ଦୁଇ ତିନିଗୁଣ ଅଧିକ ଟଙ୍କା ଲାଭ ଆକାରରେ ରହିଯାଏ । ନବବାବୁଙ୍କ ସାନଝିଅର ବିବାହ ଅତି ନିରାଡ଼ମ୍ବର ଭାବରେ ହୋଇଥିଲା । କେବଳ ବୀରେନ ମିତ୍ର ସେସବୁ ଦେଖି ହୋ-ହା ପାଟି କରି ଗୁଡ଼ିଏ ମିଠା ମଗାଇ ଭୋଜିକୁ ଟିକିଏ ମଧୁର କରିଥିଲେ ।

ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବା ପରେ ସେ କିଭଳି ଆର୍ଥିକ୍ ପରିସ୍ଥିତିରେ ଗତି କରୁଥିଲେ, ତାହା ନିମ୍ନ କେତେକ ଘଟଣାରୁ ଜାଣିହୁଏ । ଦିନେ ନବବାବୁ କେଉଁଠୁ ଆସି ଥୋରିଆସାହିର ଭୂଦାନ ଅଫିସରେ ପହଞ୍ଚି ମୋ'ର କୈଶୋରର ବନ୍ଧୁ ବିଚିତ୍ରାନନ୍ଦ ମହାନ୍ତିଙ୍କୁ ତାଙ୍କ ପାର୍କର ଫାଉଣ୍ଟେନ୍ କଲମଟି ଦେଇ, ତା' ବଦଳରେ ପନ୍ଦର ଟଙ୍କା ନେଲେ । ସେହି ଫାଉଣ୍ଟେନ୍

କଲମଟିର ପୁଣି ଏକ କାହାଣୀ ଅଛି । ରମାଦେବୀ କଅଣ ଭାବି ବିଚିତ୍ରାନନ୍ଦ ମହାନ୍ତିଙ୍କଠାରୁ ସେଇଟି ନେଇଥିଲେ । ତାଙ୍କୁ ପୁଣି ହାଓ୍ୱାଡ଼ା ଷ୍ଟେସନରେ କିଏ ଜଣେ ରମାଦେବୀଙ୍କଠାରୁ ଲେଖିବାକୁ ମାଗିନେଇ ଆଉ ଫେରେଇଲେ ନାହିଁ ।

ପୂର୍ବତନ ବାଚସ୍ପତି ଯୁଧିଷ୍ଠିର ଦାସ ଥରେ ପଞ୍ଚାୟତ ସମିତି ଚେୟାରମ୍ୟାନ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ । ତାଙ୍କ ପାଇଁ ଗୋଟିଏଦୁଇଟି ସଭା କରିବା ପାଇଁ ସେ ନବବାବୁଙ୍କୁ ଅନୁରୋଧ କରିଥିଲେ । ସେତେବେଳେ ଅନୁଗୋଳଠାରୁ କଟକ ପର୍ଯ୍ୟନ୍ତ ବସ୍‌ଭଡ଼ା ପଠେଇବା ପାଇଁ ନବବାବୁ ତାଙ୍କୁ ଲେଖିଥିଲେ । ଯୁଧିଷ୍ଠିରବାବୁ ତଦନୁସାରେ ବସ୍‌ଭଡ଼ା ପଠାଇଥିଲେ । ନବବାବୁ ନିର୍ଦ୍ଧାରିତ ସମୟରେ କଟକ ଓ.ଏମ୍.ପି. ଛକରେ ପହଞ୍ଚିଲେ । ସେଦିନ ପରେ ଥାଏ ଲାଗ୍ ଲାଗ୍ ଦୁଇଦିନ ସରକାରୀ ଛୁଟି । ଏଣୁ ବାଦାମବାଡ଼ିରୁ ଏତେ ଘରମୁହାଁ ସରକାରୀ ଚାକିରିଆ ଆସୁଥାନ୍ତି ଯେ ଚାରି ପାଞ୍ଚୋଟି ବସ୍‌ରୁ କୌଣସିଟି ଓ.ଏମ୍.ପି. ଛକରେ ଅଟକିଲା ନାହିଁ । ଏହି ସମୟରେ ନବବାବୁ ଲକ୍ଷ୍ୟ କଲେ ଯେ ଓ.ଏମ୍.ପି. ଛକ ଦେଇ ପାରାଦ୍ୱୀପକୁ ବୋଝେଇ ଟ୍ରକସବୁ ଚାଲୁଛି ଏବଂ ସେଥିରେ ଅନେକ ଲୋକ ଉଠି ପାରାଦ୍ୱୀପ ଆଡ଼େ ଯାଉଛନ୍ତି । ନବବାବୁ ପ୍ରସ୍ତାବ ଦେଲେ, ‘‘ଆଉ ଅପେକ୍ଷା ନ କରି ଟ୍ରକ୍‌ରେ ଯିବା ।’’ ଯୁଧିଷ୍ଠିରବାବୁ ନବବାବୁଙ୍କର ଏହିଭଳି ଏକ ପ୍ରସ୍ତାବ ଆସିବ ବୋଲି ମୋଟେ ଚିନ୍ତା କରିନଥିଲେ । ସେ ନବବାବୁଙ୍କୁ ପଚାରିଲେ, ‘‘ଆପଣ କ’ଣ ଟ୍ରକରେ ପଛରେ ଠିଆ ହୋଇ ଯାଇପାରିବେ ?’’ ନବବାବୁ କହିଲେ, ‘‘ଏତେ ଲୋକ ଯାଉଛନ୍ତି, ଆମେ କାହିଁକି ଯାଇପାରିବା ନାହିଁ ?’’ ସେଇଆ ବି ହେଲା । ଉଭୟେ ଟ୍ରକ୍‌ର ପଛପଟେ ଅନ୍ୟ ଯାତ୍ରୀମାନଙ୍କ ସହିତ ତାରପୁର ପର୍ଯ୍ୟନ୍ତ ଯାଇଥିଲେ । ପୁଣି ସେମାନେ ଫେରିବା ଦିନ ଅଫିସ ଓ କଚେରି ଲୋକ ପାରାଦ୍ୱୀପ ଆଡୁ ଏଭଳି ଭିଡ଼ରେ ଆସୁଥାନ୍ତି ଯେ ଯୁଧିଷ୍ଠିରବାବୁ ଦୁଇଘଣ୍ଟା ଅପେକ୍ଷା କରି ବି ବସ୍‌ରେ ଆସିବାର ସମ୍ଭାବନା ଦେଖିଲେ ନାହିଁ । ନବବାବୁ ଏ ପରିସ୍ଥିତି ଦେଖି ପ୍ରସ୍ତାବ ଦେଲେ, ‘‘ଟ୍ରକରେ ଚାଲିଗଲେ ହୁଅନ୍ତା, ଆଉ କେତେ ସମୟ ଅପେକ୍ଷା କରିବା ?’’ ସେଦିନ ବି ସେ ଦୁହେଁ ତାରପୁରଠାରୁ କଟକ ପର୍ଯ୍ୟନ୍ତ ଟ୍ରକ୍‌ରେ ଆସିଥିଲେ ।

ଭୂଦାନ ଆନ୍ଦୋଳନ ବେଳେ ନବବାବୁ ଓ ମାଳତୀଦେବୀ ଦୁଇମାସ କାଳ ବରଗଡ଼ର ଗାଁକୁ ଗାଁ ବୁଲି ସଭା କରୁଥାନ୍ତି । ସାଙ୍ଗରେ ୧୫,୨୦ ଜଣ ସହକର୍ମୀ ଥାଆନ୍ତି । ଦିନେ ସେହି ପଦଯାତ୍ରା ସମୟରେ ନବବାବୁଙ୍କ ଉପସ୍ଥିତିରେ ମାଳତୀଦେବୀ ସେମାନଙ୍କ ଏକାନ୍ତ ବିଶ୍ୱସ୍ତ ଦୟାଲାଲ ଯୋଷୀଙ୍କୁ କହିଲେ, ‘‘ଆଚ୍ଛା ବାବୁ, ଆମ ମାସିକ କ୍ୟାମ୍ପ ଖର୍ଚ୍ଚ ତୁମେ ତୁଲାଇବ ।’’

ଏକଥା ଶୁଣି ଦୟାଲାଲବାବୁ ପ୍ରଥମେ ଡରିଗଲେ । ଦୟାଲାଲବାବୁ ପଚାରିଲେ, ‘‘ମାସିକ ଖର୍ଚ୍ଚ କେତେ ହେବ ?’’

ନବବାବୁ ତାଙ୍କ ଅବସ୍ଥା ବୁଝିପାରି କହିଲେ, ''ବେଶି ନାହିଁ, ସାତ ଆଠ ଟଙ୍କା, ନ ହେଲେ ଖୁବ୍ ବେଶିରେ ଦଶଟଙ୍କା ହେବ ।''

ଦୟାଲାଲ ବାବୁ ସଙ୍କୋଚ ଓ ଅବିଶ୍ୱାସରେ ପଚାରିଲେ, ''ଏହା କିପରି ସମ୍ଭବପର ?''

ନବବାବୁ କହିଲେ, ''କାହିଁକି ହେବ ନାହିଁ ? ଆମର ଆଉ କ'ଣ ଦରକାର କି ? ଯେଉଁ ଗାଁରେ ରହୁଛୁ ସେ ଗାଁର ତ ଗୋଟିଏ ଗୋଟିଏ ଘରେ ଆମେ ଜଣେ ଜଣେ ଖାଇଦେଇ ଓ ଚାଲିଚାଲି ଯାଉ । ଆମର କେବଳ କପଡ଼ା ଧୋଇବା ପାଇଁ ସନଲାଇଟ ସାବୁନ୍ ଦୁଇଟା ଓ ଟିକିଏ ବଦଭ୍ୟାସ ଅଛି ଚାହା ଖାଇବାର । ଅବଶ୍ୟ ଗାଁରେ ଅନେକ ସମୟରେ ଚାହା ମିଳିଯାଏ । କିନ୍ତୁ ଯେଉଁଠି ମିଳିବ ନାହିଁ, ସେଇଠି ଆମେ ଟିକିଏ ଚାହା ବନେଇ ଖାଉ ।''

ଏହା ଶୁଣି ଦୟାଲାଲ ଯୋଷୀ ଦୁଇହାତ ଯୋଡ଼ି କହିଲେ, ଆଜିଠୁଁ କ୍ୟାମ୍ପ ଖର୍ଚ୍ଚ ଦେବାଟା ମୋ' ଉପରେ ରହିଲା ; କିନ୍ତୁ ଆପଣଙ୍କୁ ମାସିକ ଦଶଟଙ୍କା ଦେବାପାଇଁ ଲାଜ ଲାଗିବ, ବରଂ ଆପଣଙ୍କ ପଦଯାତ୍ରା ଯେତେଦିନ ରହିବ, ସମଗ୍ର ସମୟତକ ଲାଗି ମୁଁ ଏକାଥରକେ କ୍ୟାମ୍ପଖର୍ଚ୍ଚ ଦେଇଦେବି ।''

ନବବାବୁ କହିଥିଲେ, ''ନା, ଆମର ଯେତେବେଳେ ଯେତିକି ଦରକାର, କେବଳ ସେତିକି ଆଣିଦେବ ।''

## ଭୂଦାନ ଓ ସର୍ବୋଦୟ ଆନ୍ଦୋଳନ :

ବ୍ରିଟିଶ ସରକାରଙ୍କୁ ହଟାଇ ସ୍ୱଦେଶୀ ସରକାର ଗଠନ କରିବାର ସୀମିତ ଲକ୍ଷ୍ୟରେ କେତେକ ଓକିଲ, ଡାକ୍ତର ଆଦି ଉପର ସ୍ତରର ଲୋକଙ୍କୁ ନେଇ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହୋଇଥିଲା । କିନ୍ତୁ ତାକୁ ସଫଳ କରିବା ଲାଗି ବ୍ୟାପକ ଗଣସମର୍ଥନର ଆବଶ୍ୟକତା ଦେଖା ଦେଇଥିଲା । ଏଣୁ କଂଗ୍ରେସ ଦଳକୁ ଚାଷୀ, କଳକାରଖାନାର ମଜୁରିଆ ଏବଂ କାରିଗର ଶ୍ରେଣୀର ସ୍ୱାର୍ଥରକ୍ଷା ଲାଗି କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ପଡ଼ିଥିଲା । କଂଗ୍ରେସର ଏକ ଆଗୁଆ ସାମୁଖ୍ୟ କଂଗ୍ରେସ ସୋସାଲିଷ୍ଟ ପାର୍ଟି ହିଁ ଏ ଦିଗରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲା । ପରବର୍ତ୍ତୀ କାଳରେ କଂଗ୍ରେସ ସୋସାଲିଷ୍ଟମାନଙ୍କ ମଧ୍ୟରୁ ଅଧିକାଂଶ କଂଗ୍ରେସ ଦଳ ଛାଡ଼ି ଚାଲିଯାଇଥିଲେ । ତଥାପି କଂଗ୍ରେସ ଦଳରେ ସମ୍ପୂର୍ଣ୍ଣାନନ୍ଦ, ଏନ୍.ଜି. ରଙ୍ଗା, ଚରଣ ସିଂ ଓ ନବକୃଷ୍ଣ ଚୌଧୁରୀଙ୍କ ଭଳି କିଛି ନେତା କୃଷକମାନଙ୍କର ସ୍ୱାର୍ଥ ଲାଗି ଅନେକ ପଦକ୍ଷେପ ନେଇଥିଲେ । କିନ୍ତୁ ଚାଷୀର ଜମିଜମା ସମ୍ପର୍କରେ ସାମଗ୍ରିକ ଭାବରେ କଂଗ୍ରେସ ଦଳରେ ଆନ୍ତରିକତାର ଅଭାବ ଦେଖିବାକୁ ମିଳିଥିଲା । ଗାନ୍ଧିଜୀ ଯେଉଁ ଗ୍ରାମ ସ୍ୱରାଜ କଥା କହୁଥିଲେ, ତାହାକୁ ରୂପ ଦେବା ଲାଗି ତାଙ୍କର ଆୟୁଷ ନଥିଲା । ତାଙ୍କ ବିଚାର ଥିଲା

ଯେ ଗ୍ରାମ ସବୁଦିଗରୁ ସ୍ୱାବଲମ୍ବୀ ହେଲେ ଏବଂ ଗାଁର ସମସ୍ୟା ଗାଁ ଲୋକେ ନିଜ ଭିତରେ ତୁଟାଇଲେ ଯାଇ ଗ୍ରାମ ସ୍ୱରାଜ ସମ୍ଭବପର । ଗାଁ ଲୋକେ ଗାଁର ଉନ୍ନୟନ ପାଇଁ ଯୋଜନା କରିବେ ଓ ଗାଁ ପାଣ୍ଠି ସୃଷ୍ଟି କରିବେ–ଏହା ଥିଲା ଗାନ୍ଧିଜୀଙ୍କ ପରିକଳ୍ପନା । କିନ୍ତୁ ଗାଁର ଲୋକଙ୍କ ମଧ୍ୟରେ, ବିଶେଷକରି ଚାଷୀମାନଙ୍କ ମଧ୍ୟରେ, ଜଣକ ପାଖରେ ଶହେ ଏକର ଜମି ଥିବାବେଳେ ବହୁ ଲୋକ ଭୂମିହୀନ ରହିଲେ, ଏହା ସମ୍ଭବପର ନୁହେଁ । ଏଣୁ ଗ୍ରାମ ସ୍ୱରାଜକୁ କିଭଳି ରୂପାୟିତ କରାଯାଇପାରିବ, ସେ ସମ୍ପର୍କରେ ଗାନ୍ଧିଜୀଙ୍କର ଦାୟାଦ ବିନୋବାଙ୍କ ଭଳି କିଛି ଲୋକ ଚିନ୍ତା କରୁଥିଲେ ।

ଭାରତବର୍ଷର ସ୍ୱାଧୀନତାର ଦୁଇବର୍ଷ ପରେ ଚୀନ୍‌ର ସ୍ୱାଧୀନତା ବିଶ୍ୱବିପ୍ଳବ ଇତିହାସରେ ଏକ ନୂଆ ଅଧ୍ୟାୟ ସୃଷ୍ଟି କରିଥିଲା । ସେଠାକାର କମ୍ୟୁନିଷ୍ଟ ପାର୍ଟି କୃଷକମାନଙ୍କୁ ସଙ୍ଗଠିତ କରି, ସେମାନଙ୍କୁ ସଶସ୍ତ୍ର ସଂଗ୍ରାମ ଲାଗି ତାଲିମ ଦେଇ ଯେଉଁ ସାଫଲ୍ୟ ଲାଭ କରିଥିଲା, ତାହା ଥିଲା ଭାରତୀୟ କମ୍ୟୁନିଷ୍ଟମାନଙ୍କ ଲାଗି ଖୁବ୍ ଆକର୍ଷଣୀୟ ପ୍ରେରଣା । କାରଣ ଦ୍ୱିତୀୟ ମହାସମର କାଳରେ "ପିପୁଲ୍‌ସ ୱାର" ଧ୍ୱନି ଦେଇ କମ୍ୟୁନିଷ୍ଟ ପାର୍ଟି ଭାରତବର୍ଷର ରାଜନୈତିକ ପ୍ରବାହରୁ ପ୍ରାୟ ବିଚ୍ଛିନ୍ନ ହୋଇପଡ଼ିଥିଲା । ତତ୍କାଳୀନ ମାନ୍ଦ୍ରାଜ ପ୍ରଦେଶର ତେଲେଙ୍ଗାନା ଅଞ୍ଚଳରେ ଜମି ମାଲିକାନାରେ ଅତିରିକ୍ତ ତରାତମ୍ୟ ଯୋଗୁଁ ଗରିବ ଚାଷୀମାନେ ତୀବ୍ର ଶୋଷଣର ଶିକାର ହୋଇପଡ଼ିଥିଲେ । ମାନ୍ଦ୍ରାଜର ତେଲେଙ୍ଗାନା (ପରବର୍ତ୍ତୀ କାଳର ଆନ୍ଧ୍ର) ଅଞ୍ଚଳ ସମେତ କୃଷ୍ଣା-ଗୋଦାବରୀ ଅବବାହିକା ଅଞ୍ଚଳର ଶକ୍ତିଶାଳୀ କମ୍ୟୁନିଷ୍ଟ ପାର୍ଟି ଏହି ଅବସ୍ଥାର ସୁଯୋଗ ନେଇ ଧନୀ ଚାଷୀଙ୍କ ବିରୋଧରେ ସଶସ୍ତ୍ର ସଂଗ୍ରାମ ଆରମ୍ଭ କରିଦେଇଥିଲେ । ଦ୍ୱିତୀୟ ମହାସମର ପରବର୍ତ୍ତୀ ଶୀତଳ ଯୁଦ୍ଧର ଯୁଗ ବି ଏଥିପାଇଁ ଅନୁକୂଳ ପଟ୍ଟଭୂମି ସୃଷ୍ଟି କରିଥିଲା । ପ୍ରତିଦିନ ଧନୀ ଚାଷୀଙ୍କୁ ହତ୍ୟା ଓ ଗରିବ ଚାଷୀ ତଥା ମୂଲିଆମାନଙ୍କ ଉପରେ ଅତ୍ୟାଚାର ସମ୍ବାଦ ଦୈନିକ ଖବରକାଗଜମାନଙ୍କରେ ବାହାରୁଥାଏ । ସାଧାରଣ ପ୍ରଶାସନ ଏହାର ପ୍ରଶମନ ଦିଗରେ ଅସମର୍ଥ । ଏହିଭଳି ପରିସ୍ଥିତିରେ ବିନୋବା ଭାବେ ତେଲେଙ୍ଗାନା ପରିସ୍ଥିତି ଅନୁଧ୍ୟାନ ଲାଗି ଏକ ଅଭିଯାତ୍ରା ଆରମ୍ଭ କରିଥିଲେ । ଏହି ସମସ୍ୟାକୁ ସେ ସମ୍ପୂର୍ଣ୍ଣ ଭିନ୍ନ ଢଙ୍ଗରେ ସଭାସମିତିରେ ବୁଝାଇଥିଲେ । ସେତେବେଳକୁ ସଶସ୍ତ୍ର ବିପ୍ଳବ ଜରିଆରେ ରୁଷ ଦେଶ ଓ ଚୀନ୍ ପୃଥିବୀରେ ଶକ୍ତିଶାଳୀ ଶିବିରରେ ପରିଣତ ହୋଇସାରିଥାନ୍ତି । ଧନୀ ଚାଷୀମାନେ ନିଜେ ନିଜର ପରିସ୍ଥିତି ଉପଲବ୍ଧି ନ କଲେ ସେମାନଙ୍କୁ ରୁଷ ଦେଶ ଓ ଚୀନ୍ ଦେଶର ଧନୀ ଚାଷୀଙ୍କ ଭଳି ଦୁର୍ଦ୍ଦଶା ଭୋଗିବାକୁ ପଡ଼ିବ ବୋଲି ସେ ସତର୍କ କରୁଥିଲେ । ଏହି ସମସ୍ୟାର ସମାଧାନ ଲାଗି ସେ ଧନୀ ଚାଷୀଙ୍କ କରୁଣାକୁ ଆବେଦନ କରୁଥିଲେ ଓ କହୁଥିଲେ ଯେ ସେମାନେ ସ୍ୱେଚ୍ଛାରେ କିଛି କିଛି ଜମି ଗରିବ ଲୋକଙ୍କୁ ନଦେଲେ ହୁଏତ ଆଇନ କରାଯାଇ

ସେମାନଙ୍କର ଉଦ୍‌ବୃତ୍ତ ଜମି କାଢ଼ିନିଆଯିବ; ନ ହେଲେ ସେମାନଙ୍କୁ ଭୋକିଲା ଲୋକେ "କତଲ" କରିବେ । ଏହି ତ୍ରିଧାରାକୁ ସେ କହୁଥିଲେ କରୁଣା, କାନୁନ୍, କତଲର ପ୍ରବାହ ।

ଗାନ୍ଧିଜୀଙ୍କଠାରୁ ବିନୋବା ଥିଲେ ଖୁବ୍ ପାଠୁଆ ଓ ଜ୍ଞାନୀ । ଭାରତୀୟ ଦାନ ପରମ୍ପରାକୁ ମନେପକାଇଦେଇ ସେ ଧନୀ ଚାଷୀଙ୍କଠାରୁ ସେମାନଙ୍କ ମଙ୍ଗଳ ତଥା ସମାଜର ମଙ୍ଗଳ ଲାଗି ଜମି ମାଗିଲେ । କଥାଟିକୁ ସେ ନୂଆ ଢଙ୍ଗରେ ରଖିଲେ । ସେ କହୁଥିଲେ, "ଭୂମି ହେଉଛି ଆମର ମାଆ । ଆମ ଭିତରୁ କିଛି ଲୋକ ନିଜକୁ ତା'ର ମାଲିକ କହିବା ଅସଙ୍ଗତ । ମା'ର ସନ୍ତାନ ହିସାବରେ ସମସ୍ତଙ୍କର ତା'ଠାରେ ଅଧିକାର ଅଛି । ଏଣୁ ଜମିର ବ୍ୟକ୍ତିଗତ ମାଲିକାନା ବଦଳରେ ତାହା ଉପରେ ସମସ୍ତଙ୍କର ଅଧିକାର ରହୁ । ସମସ୍ତେ ମିଶି ଜମିର ସେବା କରି ତା'ରି ଦାନରେ ଚଳନ୍ତୁ । ଏଣୁ ଧନୀ ଚାଷୀମାନେ ଭୂମିହୀନଙ୍କୁ କିଛି କିଛି ଜମିଦାନ କରନ୍ତୁ ଓ ଗାଁରେ କେହି ଭୂମିହୀନ ନ ରହୁ ।"

ଗ୍ରାମ ସ୍ୱରାଜ୍ ପାଇଁ ଏ କଥାଟି ବେଶ୍ ଖାପ୍ ଖାଇଲା । ବିନୋବା ନାନା ପୁରାଣରୁ ବିଭିନ୍ନ ଦୃଷ୍ଟାନ୍ତ ଦେଇ ଦାନର ମହିମା ପ୍ରଚାର କଲେ । ଏହା କିଛି ଲୋକଙ୍କ ମନକୁ ପାଇଲା । ତାଙ୍କର ଆବେଦନ ଫଳରେ ୧୯୫୧ ଏପ୍ରିଲ ୧୮ ତାରିଖ ଦିନ ଯେତେବେଳେ ତାଙ୍କରି ସଭାରେ ତେଲେଙ୍ଗାନାର ପୋଚାମପଲ୍ଲୀ ଗାଁର ରାମନ୍ଦ୍ର ରେଡ୍‌ଡ଼ୀ ୧୦୦ ଏକର ଜମି ଏହି ଉଦ୍ଦେଶ୍ୟରେ ଦାନ କଲେ, ତାହା ଥିଲା ଏକ ଚାଞ୍ଚଲ୍ୟକର ଖବର । ଯେଉଁମାନେ ଗ୍ରାମ ସ୍ୱରାଜ୍ୟ ଲାଗି କିଛି ଆକର୍ଷଣୀୟ କାର୍ଯ୍ୟକ୍ରମ ଖୋଜି ପାଉନଥିଲେ ସେମାନେ ଏହି ସମ୍ବାଦ ପାଇ ଆଶାନ୍ୱିତ ହୋଇପଡ଼ିଲେ । ବହୁ ବୁଦ୍ଧିଜୀବୀ ବିନୋବାଙ୍କ ବିଚାର ଓ ଆଭିମୁଖ୍ୟ ଦ୍ୱାରା ପ୍ରଭାବିତ ହେଲେ ।

୧୯୫୨ ମସିହା ଜୁନଆରି ୨ ତାରିଖରୁ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ କିଛି ରଚନାତ୍ମକ କର୍ମୀ ଓଡ଼ିଶାରେ ଏ ଦିଗରେ ଆଗଭର ହେଲେ ଏବଂ ଅଳ୍ପ ସମୟ ମଧ୍ୟରେ କିଛି ସାଫଲ୍ୟ ବି ଅର୍ଜନ କଲେ । ଏହି ସ୍ଥାନୀୟ ସାଫଲ୍ୟକୁ ଭିତ୍ତିକରି ଭାରତର କେତେକ ରାଜ୍ୟରୁ ଗ୍ରାମଦାନ ମିଳିଲା । ଗ୍ରାମଦାନ ଗାଁରେ ସବୁ ଜମିମାଲିକ ନିଜ ଜମିରୁ ଅତି କମ୍‌ରେ ଏକଷଷ୍ଠାଂଶ ଦାନ କରିଥିଲେ ଓ ସେସବୁ ଜମି ଭୂମିହୀନଙ୍କ ମଧ୍ୟରେ ବଣ୍ଟନ କରାଯାଇଥିଲା । ଗ୍ରାମର ସମସ୍ତ ଜମିର ମାଲିକାନା ବ୍ୟକ୍ତିଗତ ନରହି ସାମୂହିକ ହେଉଥିଲା । ଲୋକେ ଅଲଗା ଅଲଗା ଚାଷ କରୁଥିଲେ । ଏହି ଦାନ ଜମିକୁ ବିଧିବଦ୍ଧ ଭାବରେ ବଣ୍ଟନ ଲାଗି ସରକାରୀ ସ୍ୱୀକୃତି ଦେବା ଉଦ୍ଦେଶ୍ୟରେ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିମଣ୍ଡଳ ୧୯୫୩ ମସିହାର ଭୂଦାନ ଯଜ୍ଞ ବିଲ୍ ଆଣିଥିଲେ । ନିଜେ ନବକୃଷ୍ଣ ଚୌଧୁରୀ ଏହି ଆନ୍ଦୋଳନରେ ବିଶେଷ ଆଗ୍ରହ ପ୍ରକାଶ କରିବାରୁ ସରକାରୀ କଳ ବି ଏ ଦିଗରେ ଉତ୍ସାହ ପ୍ରକାଶ କଲା । ବହୁ ସ୍କୁଲର ଶିକ୍ଷକ ଓ ଛାତ୍ର ସେଥିରେ କିଛି ପରିମାଣରେ ସମ୍ପୃକ୍ତ ହୋଇଥିଲେ । ରାଜ୍ୟର ସରକାରୀ କର୍ମଚାରୀ

ଓ ସ୍କୁଲକଲେଜର ଶିକ୍ଷକ ଓ ଛାତ୍ରମାନେ ଏ ଦିଗରେ ନିୟୋଜିତ ହେବାକୁ ନବକୃଷ୍ଣ ଚୌଧୁରୀ ଅନୁଚିତ ମନେକଲେ ନାହିଁ । ଭୂମି ସମସ୍ୟା ଭଳି ବିରାଟ ସମସ୍ୟା ଦିଗରେ ସେମାନେ କିଛି ସମୟ ଦେବାଟାକୁ ବେନିୟମ ବା ନିରର୍ଥକ ବୋଲି ସେ ଭାବୁ ନଥିଲେ ବରଂ ସେମାନଙ୍କୁ ଏ ଦିଗରେ ଉତ୍ସାହିତ କରୁଥିଲେ ।

ଓଡ଼ିଶାର ପ୍ରଥମ ଗ୍ରାମଦାନ ଗାଁର ନାଁ ମାନପର । ସେଠାରେ ଜମିରେ ବ୍ୟକ୍ତିଗତ ମାଲିକାନା ଲୋପ ହୋଇଛି ଏବଂ କେହି ଭୂମିହୀନ ନାହାନ୍ତି; ଲୋକମାନଙ୍କ ମଧ୍ୟରେ ମୈତ୍ରୀ ପ୍ରତିଷ୍ଠିତ ହୋଇଛି, ସେମାନେ ଗାଁର ବିବାଦ ଗାଁରେ ତୁଟାଉଛନ୍ତି ବୋଲି ଖବରକାଗଜରେ ପ୍ରକାଶିତ ହେବାପରେ ଏହି ଲେଖକ ପୂର୍ବଯାଜପୁରର ସେହି ଅପନ୍ତରା ଗାଁକୁ ଚାଲି ଚାଲି ଯାଇଥିଲା । ସେଠାରେ ଅନେକ ଲୋକ ଜମିଦାନ କରିଥିଲେ ମଧ୍ୟ ଯେଉଁମାନଙ୍କର ଟିକିଏ ଅଧିକ ଜମି ଥିଲା, ସେମାନଙ୍କ ମନରେ ଅସନ୍ତୋଷ ଲକ୍ଷ୍ୟ କରିଥିଲା । ସଂଖ୍ୟାଧିକ ଲୋକଙ୍କର ନିଷ୍ପତ୍ତିକୁ ସେହି ସଂଖ୍ୟାଲଘୁ ଲୋକେ ଚାପରେ ପଡ଼ି ମାନିନେଇଥିଲେ । ଏହି ଗାଁର ପାଖଆଖରେ ଗାଁ ନାହିଁ । ପାଖ ଗାଁ ଲୋକେ ବା ବନ୍ଧୁବାନ୍ଧବ ଆସି ବିବାଦବେଳେ ସାହାଯ୍ୟ କରିପାରିଲା ଭଳି ପରିସ୍ଥିତି ନଥିଲା । ଏହାଛଡ଼ା ସେଇଟି ଗ୍ରାମଦାନ ଗାଁ ବୋଲି ଘୋଷିତ ହେଲେ ନାନା ପ୍ରକାର ବିକାଶମୂଳକ କାର୍ଯ୍ୟ ଲାଗି ସରକାରୀ ସାହାଯ୍ୟ ମିଳିବ ବୋଲି ଲୋକଙ୍କୁ ପ୍ରତିଶ୍ରୁତି ଦିଆଯାଇଥିଲା । ଏହି ସମୟରେ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ସେ ଭୂଦାନ କାମରେ ସଂଶ୍ଳିଷ୍ଟ ହୋଇଥିବାରୁ ଗାଁର ଉନ୍ନତି ନିଶ୍ଚୟ ହେବ ଏବଂ ତାଙ୍କ ଗାଁ, ସାରା ରାଜ୍ୟର ଦୃଷ୍ଟି ଆକର୍ଷଣ କରିବ ବୋଲି ପତିଆରା ସୃଷ୍ଟି ହୋଇଥାଏ । ଗ୍ରାମଦାନ ଘୋଷଣା ପରେ ସେଠାକାର ବାହ୍ୟ ପରିସ୍ଥିତି କିଛି ଉନ୍ନତ ହୋଇଥିଲା ଓ ଗାଁ ସଭା ଗାଁର ସମସ୍ୟା ସମାଧାନରେ ଅନେକ ପରିମାଣରେ ସମର୍ଥ ହୋଇଥିଲେ । ଓଡ଼ିଶାର ପ୍ରଥମ ଗ୍ରାମଦାନ ଗାଁ ହୋଇଥିବାରୁ ନବକୃଷ୍ଣ ଚୌଧୁରୀ ସେ ଗାଁକୁ ଯାଇଥିଲେ । କିନ୍ତୁ ସେଠାରେ ଯେଉଁସବୁ ପରିବର୍ତ୍ତନ ଘଟିଥିଲା, ଚୌଧୁରୀ ମୁଖ୍ୟମନ୍ତ୍ରିତ୍ୱରୁ ଚାଲିଯିବାର ସାତ ଆଠବର୍ଷ ପରେ ସେ ଗାଁ ପୂର୍ବର ଅବସ୍ଥାକୁ ଆସିଯାଇଥିଲା ।

ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ହୋଇ ଆସିବା ପରେ ଚାଷୀକୁ ସାହାଯ୍ୟ କରିବା ପାଇଁ ଅନେକ ଆଇନ ପ୍ରଣୟନ କଲେ; କିନ୍ତୁ ଚାଷୀମାନେ ଆଶାନୁରୂପ ସାହାଯ୍ୟ ପାଇ ପାରିଲେ ନାହିଁ; କାରଣ ଆଇନ କାର୍ଯ୍ୟକାରୀ ହେବାପାଇଁ ଯେଉଁ କଳ ରହିଲା, ତା'ର ପ୍ରତ୍ୟେକ ଅଙ୍ଗ ଚାଷୀ ବିରୋଧରେ କାର୍ଯ୍ୟ କଲେ । ଏହା ଖାଲି ଓଡ଼ିଶାର ଅଭିଜ୍ଞତା ନୁହେଁ; ଏହା ଥିଲା ସର୍ବଭାରତୀୟ ଅଭିଜ୍ଞତା । ବହୁ କମ୍ୟୁନିଷ୍ଟ ଓ ସୋସାଲିଷ୍ଟ ନେତା ଭାଷଣରେ ଚାଷୀ ସପକ୍ଷରେ ଓ ଜମିବଣ୍ଟନ କଥା କହିଲେ ବି ନିଜେ ନିଜ ଜମିରେ ତାହା କାର୍ଯ୍ୟକାରୀ କଲେନାହିଁ । ଭୂ-ଦାନକୁ କାହିଁକି ସେ ସମର୍ଥନ କରୁଥିଲେ, ତାହା ନବକୃଷ୍ଣ ଚୌଧୁରୀ ଓଡ଼ିଶା

ଭୂଦାନ ଯଜ୍ଞ ଆଇନ ଆଲୋଚନା କାଳରେ, ୧୯୫୩ ଏପ୍ରିଲ ୯ ତାରିଖରେ, ବିଧାନସଭାରେ କହିଛନ୍ତି । ସେ କହିଥିଲେ, ଆମେ ଯେତେ ଶାସନ ବିଧାନ ପରିବର୍ତ୍ତନ କରୁ ବା ଆମେ ଯାହା କିଛି କରୁନା କାହିଁକି, ଯେପର୍ଯ୍ୟନ୍ତ ଲୋକମାନଙ୍କର ମତିଗତି ପରିବର୍ତ୍ତନ ନ ହୋଇଛି, ସେପର୍ଯ୍ୟନ୍ତ ଆଇନ ବା ଶାସନ ବିଧାନର ପରିବର୍ତ୍ତନ ଦ୍ୱାରା ଏ ସମସ୍ୟାର ସମାଧାନ ହୋଇପାରିବ ନାହିଁ । ଏଥିପାଇଁ ମାନସିକ, ନୈତିକ ଓ ସାମାଜିକ ପରିବର୍ତ୍ତନ ଯଦି ନହୁଏ ଓ ମନ ଭିତରେ ଏକରକମ ବିପ୍ଳବାତ୍ମକ ଭାବ ନଆସେ, ତାହାହେଲେ କିଛି ହୋଇପାରିବ ନାହିଁ । ବିନୋବା ଆଜି ଏହି ପରିବର୍ତ୍ତନ ଆଣିବା ପାଇଁ ଯେଉଁ କାର୍ଯ୍ୟ କରୁଛନ୍ତି, ସେଥିରେ ଆଜି ସବୁ ଦଳର ଲୋକମାନେ ଯୋଗ.ଦେଉଛନ୍ତି । ଅବଶ୍ୟ ଯେଉଁ ଦଳ ହିଂସାଦ୍ୱାରା ଏ କଥା ହୋଇପାରିବ ବୋଲି ବିଶ୍ୱାସ କରନ୍ତି...ସେମାନେ ଏହାକୁ ବିରୋଧ କରିବେ... ଆଇନଟା ଆସିବ ପରେ । କେତେବେଳେ, ନା ଯେତେବେଳେ ଲୋକେ ଚାରିଆଡ଼େ ପ୍ରସ୍ତୁତ ହୋଇଯିବେ, ଲୋକମତ ଚାରିଆଡ଼େ ତିଆରି ହୋଇଯିବ ଯେ ଜମି ବାଣ୍ଟିବାଟା ଉଚିତ । ଶଙ୍କରାଚାର୍ଯ୍ୟ କହିଛନ୍ତି 'ସମ୍ୟକ ବିଭାଜନଂ ଦାନମ୍ ।' ଅର୍ଥାତ୍ 'ଜମି ହେଉ ବା ଅନ୍ୟ ଯାହା ହେଉ, ତାହାର ସମ୍ୟକ ବଣ୍ଟନ ହେଉଛି ଦାନର ପ୍ରକୃତ ଅର୍ଥ ।' ଦାନର ଅର୍ଥ ଏହା ନୁହେଁ ଯେ ଧନୀ ଲୋକ ଉପରପିଣ୍ଡାରେ ବସି, ନିଜ ଖୁସିରେ ତଳେ ଠିଆ ହୋଇଥିବା ଲୋକ ପାଖକୁ କିଛି ଫୋପାଡ଼ିଦେବ । ଏହା ଦାନର ଅର୍ଥ ନୁହେଁ । ଶଙ୍କରାଚାର୍ଯ୍ୟ ଦାନର ଯେଉଁ ଯେଉଁ ବ୍ୟାଖ୍ୟା କରିଚନ୍ତି, ବିନୋବାଜୀ ସେହି ହିସାବରେ ଜମି କିପରି ବଣ୍ଟାଯିବ, ସେଇଥିପାଇଁ ଲାଗିପଡ଼ି ଏହି ଆନ୍ଦୋଳନ ଆରମ୍ଭ କରିଛନ୍ତି ।''

ଗୋପବନ୍ଧୁ ଚୌଧୁରୀ ଓ ନବକୃଷ୍ଣ ଚୌଧୁରୀଙ୍କ ଭଳି ଲୋକେ ଗରିବ ଲୋକଙ୍କ ପାଇଁ ଜମି ମାଗୁଥିବାରୁ କିଛି ସ୍ୱଚ୍ଛଳ ଓ ଉଦାର ବିଚାରର ଲୋକେ କିଛିକିଛି ଜମି ଦାନ କରିଥିଲେହେଁ ତାହା କୋରାପୁଟ ଜିଲ୍ଲା ଛଡ଼ା ଅନ୍ୟତ୍ର କାଁ ଭାଁ ସାଫଲ୍ୟ ଲାଭ କରିଥିଲା । କୋରାପୁଟର ଭୂଦାନ ଓ ଗ୍ରାମଦାନର ସାଫଲ୍ୟର ବିଶେଷ କାରଣ ଥିଲା । ଜମି-ମାତା ସମସ୍ତଙ୍କର; ଏଣୁ ସମସ୍ତେ ତା'ର ସନ୍ତାନ ହିସାବରେ ଜମି ଉପରେ ସମସ୍ତଙ୍କ ସମାନ ଅଧିକାର କଥାଟି କୋରାପୁଟର ସରଳ ଆଦିବାସୀଙ୍କ ମନକୁ ପାଇଯାଇଥିଲା । ସେମାନଙ୍କ ମଧ୍ୟରେ ସମ୍ପତ୍ତିର ମୋହ ଖୁବ୍ ଗଭୀରକୁ ଯାଇନଥିଲା । କିଛି ଲୋକ ଆନ୍ତରିକ ଭାବରେ ଏ ବିଚାର ଗ୍ରହଣ କରିଥିଲେହେଁ ଅଧିକାଂଶ ଏହାକୁ ହାଲୁକା ଭାବରେ ଗ୍ରହଣ କରିଥିଲେ । ଗ୍ରାମଦାନ ଓ ଭୂଦାନ ଜମିତକ ବଣ୍ଟନ ହେବାପାଇଁ ଡେରି ହୋଇଯାଇଥିଲା । ଇତିମଧ୍ୟରେ ନବକୃଷ୍ଣ ଚୌଧୁରୀ ସରକାରରୁ ଚାଲିଯାଇଥିଲେ । ପରବର୍ତ୍ତୀ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ଭୂ-ଦାନକୁ ଦାରିଦ୍ର୍ୟ ବଣ୍ଟନ ବୋଲି ଉପହାସ କରୁଥିଲେ । ଏଣୁ ସେ ମୁଖ୍ୟମନ୍ତ୍ରୀ ହୋଇ ଆସିବା ପରେ, ଯେଉଁମାନେ ଚାପର ବଶବର୍ତ୍ତୀ ହୋଇ ଜମି ଦେଇଥିଲେ ବା ଆନ୍ତରିକତାହୀନ

ଭାବରେ ଦାନପତ୍ରରେ ସ୍ୱାକ୍ଷର କରିଥିଲେ, ସେମାନେ ନିଜ ଜମି ଛାଡ଼ିଲେ ନାହିଁ । ମୋଟ ଉପରେ କହିବାକୁ ଗଲେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରିତ୍ୱରୁ ଗଲାପରେ ଓଡ଼ିଶାରେ ଭୂଦାନ ବିରୋଧୀ ହାଓ୍ୱା ବଢ଼ିଲା । କୁଚିଣ୍ଡା ଅଞ୍ଚଳର ସର୍ବସ୍ୱ ଦାନ କରିଥିବା ଡିଲେଶ୍ୱର ଗୌନ୍ତିଆଙ୍କ ଅଞ୍ଚଳର ଅଘରିଆମାନେ ନବବାବୁଙ୍କ ଭୂ-ଦାନ ସଭାକୁ ଆସିଲେ ବି ନାହିଁ । ଯେଉଁ କୋରାପୁଟରେ ପ୍ରାୟ ୮୦୦ ପର୍ଯ୍ୟନ୍ତ ଗ୍ରାମଦାନ ହୋଇଥିଲା ବୋଲି କୁହାଯାଉଥିଲା ଏବଂ ଯେଉଁଠି ଓଡ଼ିଶା ସମେତ ଭାରତବର୍ଷର ବହୁ ଅଞ୍ଚଳର ସ୍ୱେଚ୍ଛାସେବୀ ଆସି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ନୂତନ ଜାଗରଣ ସୃଷ୍ଟି କରିଥିଲେ ଏବଂ ଲୋକଙ୍କ ମନରୁ ଭୟ ଦୂର କରିବା ଦିଗରେ ସମର୍ଥ ହୋଇଥିଲେ, ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରିତ୍ୱରୁ ଯିବାପରେ ସେଠାକାର ସରକାରୀ କର୍ମଚାରୀ ଓ ସାହୁକାର ଆଦି ନ୍ୟସ୍ତସ୍ୱାର୍ଥ ଶ୍ରେଣୀର ଲୋକ ଭୂ-ଦାନ ଓ ଗ୍ରାମଦାନ ତଥା ସେଥିରେ ନିଯୁକ୍ତ ଥିବା କର୍ମୀମାନଙ୍କ ବିରୋଧରେ ମୁଖର ହୋଇଉଠିଲେ । ଏହି ସମୟରେ ଓଡ଼ିଶାର ଭୂ-ଦାନ ଆନ୍ଦୋଳନର ମୁଖ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ଦେହାନ୍ତ ହେଲା ଏବଂ ନବକୃଷ୍ଣ ଚୌଧୁରୀ କୋରାପୁଟ କି ଓଡ଼ିଶାରେ ମନୋନିବେଶ ନ କରି ସର୍ବଭାରତୀୟ ଦାୟିତ୍ୱରେ ରହିଗଲେ । ସେ ୧୯୫୭ ମସିହାରେ ସର୍ବସେବା ସଂଘର ସଭାପତି ହୋଇ ବିନୋବାଙ୍କ ସହିତ ଓଡ଼ିଶା ସମେତ ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ଭୂ-ଦାନ ଓ ଶାନ୍ତିସେନା କାର୍ଯ୍ୟରେ ଲାଗିଲେ । ଅଳ୍ପ କିଛି ଗ୍ରାମ-ଦାନ ଗାଁରେ ପରବର୍ତ୍ତୀ ପଦକ୍ଷେପ ନିଆଯାଇଥିବାରୁ ସେଭଳି ପ୍ରାୟ ୫୦ଟି ଗାଁରେ ଗ୍ରାମଦାନ ଛାପ ବର୍ତ୍ତମାନ ପର୍ଯ୍ୟନ୍ତ ରହିଛି । କିନ୍ତୁ ଯାହାକୁ ଏକ ସମୟରେ ଏକ କ୍ରାନ୍ତି ବୋଲି କିଛି ଲୋକ ବିଚାର କରୁଥିଲେ, ତାହା ବ୍ୟର୍ଥ ହୋଇଗଲା ।

ଭୂ-ଦାନ ଆନ୍ଦୋଳନରେ ସମ୍ପୃକ୍ତ ଅନ୍ୟାନ୍ୟ ନେତୃସ୍ଥାନୀୟ ବ୍ୟକ୍ତିଙ୍କଠାରୁ ନବକୃଷ୍ଣ ଚୌଧୁରୀ ଥିଲେ ଅନେକ ପରିମାଣରେ ଅଲଗା । ଭୂ-ଦାନର ମୁଖ୍ୟ ବିନୋବା ଭାବେ କେବେ କୌଣସି ଚାଷୀ ଆନ୍ଦୋଳନରେ ସମ୍ପୃକ୍ତ ନଥିଲେ । ସେ ଥିଲେ ଜଣେ ସଂସାରଛଡ଼ା ସନ୍ଥ । ସଂସାରୀ ଲୋକର ଯେଉଁ ଆଗପଛ ବିଚାର, ତାହା ତାଙ୍କର ନଥିଲା । ଭୂ-ଦାନ ଗ୍ରାମ-ଦାନ କ୍ଷେତ୍ରରେ ଯେତେବେଳେ କିଛି ସମସ୍ୟା ଦେଖାଦେଲା, ତାକୁ ସାମ୍ନା କରିବାର ଇଚ୍ଛା ବି ତାଙ୍କର ନଥିଲା । ସେ କୁଆଡ଼େ କହୁଥିଲେ ଯେ ଭୂମିହୀନ ଓ ଭୂମିମାଲିକ ମଧ୍ୟରେ ସେ ପୁରୋହିତ କାମ କରୁଥିଲେ । ବିବାହ ପରେ ଦମ୍ପତିଙ୍କ ମାନମନାନ୍ତର ସେମାନେ ବୁଝିବେ; ପୁରୋହିତର ସେଥିରେ କିଛି ଦାୟ ନାହିଁ । ଭୂଦାନର ପ୍ରାଥମିକ ଅବସ୍ଥାର ସଫଳତାରେ ସେ ଏତେ ଭଳିଯାଇଥିଲେ ଯେ ଏ ଦିଗରେ ହେଉଥିବା ଗଲ୍ତି ଅନୁଧ୍ୟାନ କରିବା ଲାଗି ତାଙ୍କର ଆଗ୍ରହ ନଥିଲା ।

ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବା ପରେ ବିନୋବାଙ୍କ ସହିତ ବିଭିନ୍ନ ଅଞ୍ଚଳ ପଦଯାତ୍ରାରେ ଯୋଗ ଦେଇଥିଲେ । ୧୯୫୭ ମସିହାରେ କର୍ଣ୍ଣାଟକର ଏଲାବାଲ୍ଠାରେ

ସବୁଦଳର ନେତାମାନଙ୍କର ଏକ ସମ୍ମିଳନୀ ବସିଥିଲା । ସେହି ସମ୍ମିଳନୀକୁ ନେହେରୁଙ୍କ ସମେତ ସବୁ ମୁଖ୍ୟମନ୍ତ୍ରୀଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଭୂ-ଦାନକୁ ଏକ ସରକାରୀ କାର୍ଯ୍ୟକ୍ରମ ଭାବରେ ଗ୍ରହଣ କରାଯିବା ଲାଗି ସେଠାରେ ପ୍ରସ୍ତାବ କରାଗଲା । କେରଳର ମୁଖ୍ୟମନ୍ତ୍ରୀ ନମ୍ବୁଦ୍ରିପଦ, ବଙ୍ଗଳାର ମୁଖ୍ୟମନ୍ତ୍ରୀ ବିଧାନ ଚନ୍ଦ୍ର ରାୟ ଏବଂ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ଏହାକୁ ବିରୋଧ କରିଥିଲେ । ଉଲ୍ଲେଖଯୋଗ୍ୟ ଯେ ବେସରକାରୀ ଲୋକଙ୍କ ମଧ୍ୟରେ ନବକୃଷ୍ଣ ଚୌଧୁରୀ ହିଁ ଏକା ଏହାକୁ ବିରୋଧ କରି କହିଥିଲେ ଯେ ଭୂ-ଦାନ କାମ ସରକାରୀ କଳ ମାଧ୍ୟମରେ ଚାଲିଲେ ଆନ୍ଦୋଳନର କ୍ରାନ୍ତିକାରିତା ନଷ୍ଟ ହୋଇଯିବ । କାର୍ଯ୍ୟତଃ ଯେଉଁ ରାଜ୍ୟରେ ସରକାରୀ ସହାୟତା ନିଆହେଲା, ସେଠାରେ ନାନା ବିଭ୍ରାଟ ଦେଖାଦେଲା । ବିଶେଷକରି ବିହାରର ସରକାରୀ କର୍ମଚାରୀ ଭୂ-ଦାନ ସମ୍ପର୍କରେ ନାନା ଅତିରଞ୍ଜିତ ଓ ଜାଲ୍ ରିପୋର୍ଟ ଦେଲେ ଏବଂ ତାହାକୁ ଭିତ୍ତି କରି ବିହାରରେ ରାଜ୍ୟଦାନ ହୋଇଗଲା ବୋଲି କୁହାଗଲା । ଏହି ପ୍ରକାର ସହଯୋଗକୁ ବିନୋବା ସମର୍ଥନ କରୁଥିଲେ ଏବଂ ନବବାବୁଙ୍କ ଛଡ଼ା ସର୍ବୋଦୟର ଅନ୍ୟ ମୁଖ୍ୟ କର୍ମକର୍ତ୍ତାମାନେ ବିରୋଧ କରୁନଥିଲେ ।

ଭୂ-ଦାନ, ଗ୍ରାମ-ଦାନକୁ ସୁଦୃଢ଼ କରିବା ଲାଗି ଆନ୍ନାସାହେବ ସହସ୍ରବୁଦ୍ଧେ ସରକାରୀ ବିକାଶ କାମ, ଗ୍ରାମସଭା ଜରିଆରେ କରାଇଲେ ଓ କେତେକ ବ୍ଲକ୍‌ରେ ବେସରକାରୀ ଲୋକେ ବ୍ଲକର ଉନ୍ନୟନ ଅଧିକାରୀ ହେଲେ । ଏହାଫଳରେ ବିକାଶମୂଳକ କାମ ଆଗେଇଲା ସତ, କିନ୍ତୁ ଲୋକଙ୍କର ଆତ୍ମପ୍ରଚେଷ୍ଟା ପ୍ରତିହତ ହେଲା ବୋଲି ଗୋପବନ୍ଧୁ ଚୌଧୁରୀ କୋରାପୁଟ ଜିଲ୍ଲାରୁ ନିଜର ଘନିଷ୍ଠ ଲୋକଙ୍କ ସହ ଚାଲିଆସିଲେ । ବିଭିନ୍ନ କାରଣରୁ ସହସ୍ରବୁଦ୍ଧେଙ୍କ କାର୍ଯ୍ୟକ୍ରମ ଆଗେଇପାରିଲା ନାହିଁ । ଏଣୁ ଗ୍ରାମଦାନ ଗାଁଗୁଡ଼ିକରୁ ଭୂ-ଦାନ ବେଳର ଉନ୍ମାଦନା ଓ ପରିବର୍ତ୍ତନର ଧାରା ମଉଳିଗଲା ।

ପୂର୍ବେ ଜମିମାଲିକମାନଙ୍କୁ ନିଜ ଜମିର ଏକଷଷ୍ଠାଂଶ ଦାନ କରିବାକୁ କୁହାଯାଉଥିଲା । ଏ କାର୍ଯ୍ୟକ୍ରମ ଆଉ ନ ଆଗେଇବାରୁ ବିନୋବା ସୁଲଭ ଗ୍ରାମ-ଦାନ କଥା ଚଳାଇଲେ । ଏଣିକି ଜମିମାଲିକ ନିଜ ଜମିର ୧/୨୦ ଅଂଶ ଦାନ କଲେ ବି ତାହା ଗ୍ରହଣ କରାଗଲା । ଯେଉଁଦିନ ବିନୋବା ଏହିକଥା ଘୋଷଣା କଲେ, ସେଦିନ ନବବାବୁ ମଧ୍ୟପ୍ରଦେଶର ଏକ ସ୍ଥାନରେ ନିଜ ତମ୍ବୁ ମଧ୍ୟରେ ଅସ୍ଥିର ହୋଇ କହିବାର ଶୁଣାଯାଇଥିଲା, ''ବିନୋବା ସର୍ବନାଶ କରିଦେଲେ, ସବୁ ସାରିଦେଲେ ।'' ସର୍ବୋଦୟ କର୍ମୀ ନିଶାକର ଦାସ ସେକଥା ଶୁଣି ସର୍ବୋଦୟ କର୍ମୀ ବୁଦ୍ଧନାଥ ମଲ୍ଲିକ (ନନ୍ଦପୁର, କୋରାପୁଟ)ଙ୍କୁ କହିଥିଲେ ।

ନବକୃଷ୍ଣ ଚୌଧୁରୀ ଅପାତ ସାଫଲ୍ୟ ପାଇଁ ସରଳ ବାଟ ଖୋଜୁନଥିଲେ । ମନ୍ଥର ହେଲେ ବି କ୍ରାନ୍ତିର ଧାର ଦନ୍ଥଡ଼ା ନହେଉ, ଏହା ଥିଲା ତାଙ୍କର ବିଚାର । ବିନୋବାଙ୍କ

କାର୍ଯ୍ୟକଳାପ ଦେଖି ଏଣିକି ଅନେକେ ତାଙ୍କୁ ''ସରକାରୀ ବାବା'' ବୋଲି କହିଲେ । ଏସବୁ କାରଣରୁ ଜୟପ୍ରକାଶ ନାରାୟଣ ଆଦିଙ୍କ ସହ ନବବାବୁ ବିନୋବାଙ୍କଠାରୁ ଅଲଗା ହୋଇଗଲେ । ଏହି ଆନ୍ଦୋଳନର ଅନ୍ୟତମ ମୁଖ୍ୟ ବ୍ୟକ୍ତି ମନମୋହନ ଚୌଧୁରୀଙ୍କ ମତ ଯେ ଭୂ-ଦାନ ଏକ ପର୍ଯ୍ୟାୟରେ ଆଉ ଆଗେଇବା ଅବସ୍ଥାରେ ନଥିଲା । ଏହାପରେ ସତ୍ୟାଗ୍ରହର ପନ୍ଥା ନେବାର କଥା ; କିନ୍ତୁ ନବକୃଷ୍ଣ ଚୌଧୁରୀ, ମନମୋହନ ଚୌଧୁରୀ ଆଦି କେହି ଭୂ-ସତ୍ୟାଗ୍ରହ ଦିଗରେ ଆଗେଇବା କଥା ସେତେବେଳେ ଚିନ୍ତା କରିପାରି ନଥିଲେ । ଲୋକଙ୍କ ଭଲପଣିଆ ଓ ଭାରତୀୟ ପରମ୍ପରାରେ ଦାନର କାହାଣୀକୁ ଭିତ୍ତି କରି ଏହି ନେତାମାନେ ଥିଲାବାଲା ଲୋକଙ୍କଠାରୁ ବହୁତ କିଛି ଆଶା କରିବସିଲେ । ଚୌଧୁରୀ ପରିବାର ନିଜେ ନିଜର ସମସ୍ତ ପୈତୃକ ଘରବାଡ଼ି ଓ ଜମି ଦାନ କରିଦେଇ ଭାବୁଥିଲେ, ଅନ୍ୟମାନେ କାହିଁକି ଏକ-ଷଷ୍ଠାଂଶ ଦାନ ନ କରିବେ ? କେବଳ କୋରାପୁଟ ଭଳି ସ୍ଥାନ ଛଡ଼ା ଅନ୍ୟତ୍ର ଯେଉଁ ଦାନ ମିଳୁଥିଲା, ସେସବୁ ଦାନଜମିରୁ ଅଧିକାଂଶ ଥିଲା ପାହାଡ଼ିଆ ନଦୀଗତ ବା ଚାଷ ପକ୍ଷରେ ଅନୁପଯୁକ୍ତ । ଏ ସବୁକୁ ଲକ୍ଷ୍ୟ ନ କରି କିଛି ପ୍ରାଥମିକ ସାଫଲ୍ୟ ପାଇଯାଇ ଏହି ନେତାମାନେ ଖୁବ୍ ବେଶି ଆଶା କରିବସିଲେ । ଗାଁର ସାଧାରଣ ଲୋକେ ହିଡ଼ ବାଡ଼ରେ ସାମାନ୍ୟ ଛାଡ଼ବାଡ଼କୁ ସହ୍ୟ କରିପାରୁ ନଥିବା କଥା ଏହି ଉପର ସ୍ତରର ନେତାମାନେ ପ୍ରାୟ ଜାଣୁନଥିଲେ । ଭାଇ ଭାଇ ମଧ୍ୟରେ ଗୁଣ୍ଠେଅଧେ ଜମି ଲାଗି ସାରାଜୀବନ ଅଶାନ୍ତି ଲାଗିରହିଥିବା କଥା ଆମେ ଜାଣୁ । ଏହି ଆନ୍ଦୋଳନରେ ଏକ ବଡ଼ ତ୍ରୁଟି ରହିଲା ଯେ ଯାହାଙ୍କ ପାଇଁ ଏ ଆନ୍ଦୋଳନ ହେଉଥିଲା ସେମାନେ ଏଥିରେ ସକ୍ରିୟ ଅଂଶ ଗ୍ରହଣ କରିବା ଦିଗରେ କିଛି କରାଯାଇ ପାରିଲା ନାହିଁ । ଏଣୁ ହୃଦୟପରିବର୍ତ୍ତନ ମାର୍ଗର ସୀମା ଓ ପରିସର ସମ୍ପର୍କରେ ବାସ୍ତବବାଦୀ ଦୃଷ୍ଟି ଗ୍ରହଣ ନ କରାଯିବାରୁ ଏହି ଆନ୍ଦୋଳନ କାଞ୍ଜିଆ ହୋଇଗଲା ।

ନବକୃଷ୍ଣ ଚୌଧୁରୀ ଏ ଦିଗରେ ଅଧିକ ବାସ୍ତବବାଦୀ ଥିଲେ ବି ଆନ୍ଦୋଳନକୁ ଏକ ଭିନ୍ନ ମୋଡ଼ ଦେବାପାଇଁ ତାଙ୍କର ଶକ୍ତି ଓ ସାଙ୍ଗଠନିକ ସାମର୍ଥ୍ୟ ନଥିଲା । ଏଣୁ ବିନୋବାଙ୍କ ଏହି ବ୍ୟର୍ଥତାର କାରଣ ଖୋଜିବା ପାଇଁ ପୁଣି ସେ ଗାନ୍ଧିଙ୍କ ଆଡ଼କୁ ଚାହିଁଛନ୍ତି । ଏ ପର୍ଯ୍ୟନ୍ତ ବହୁ ଲୋକଙ୍କର ଧାରଣା ଥିଲା ଯେ ବିନୋବା ହେଉଛନ୍ତି ଗାନ୍ଧିଙ୍କ ବୌଦ୍ଧିକ ଉତ୍ତରାଧିକାରୀ । ଗାନ୍ଧିତତ୍ତ୍ୱକୁ ଆହୁରି ଅଧିକ ଅଧ୍ୟୟନ କରିବାକୁ ନବକୃଷ୍ଣ ଚୌଧୁରୀ ଓ ଜୟପ୍ରକାଶ ଆଦି ବନାରସଠାରେ ଗାନ୍ଧି ବିଦ୍ୟା ସଂସ୍ଥାନ ପ୍ରତିଷ୍ଠା କଲେ । ଗାନ୍ଧି ବିଚାର ଓ ଗାନ୍ଧି ମାର୍ଗର କାମ ପୃଥିବୀରେ ଯେଉଁଠି ଯେଉଁଠି ହେଉଥିଲା, ସେସବୁ କେନ୍ଦ୍ର ସହିତ ସଂଯୋଗ ସ୍ଥାପନ କଲେ । କିନ୍ତୁ ଏ ଦିଗରେ କାର୍ଯ୍ୟ କରିବାକୁ ସେମାନେ ଯଥେଷ୍ଟ ସମୟ ଓ ସୁଯୋଗ ପାଇନାହାନ୍ତି । ଏ ଦୁଇ ବ୍ୟକ୍ତି ରାଜନୀତି ସହିତ ସମ୍ପୃକ୍ତ ହୋଇଆସିଥିବାରୁ ସେମାନେ ୧୯୬୭ ମସିହାର ''କଂଗ୍ରେସ ହଟାଓ'' ଏବଂ ୧୯୭୭ ମସିହାର 'ଇନ୍ଦିରା ହଟାଓ' କାମ ଆଡ଼କୁ ଟାଣି

ହୋଇଆସିଛନ୍ତି । ଗଣତନ୍ତ୍ରକୁ ରକ୍ଷା କରିବା ଓ ମାନବିକ ଅଧିକାର ସାବ୍ୟସ୍ତ କରିବା ସେମାନଙ୍କ ପାଇଁ ଏକ ଜରୁରୀ କାର୍ଯ୍ୟକ୍ରମ ହୋଇପଡ଼ିଥିଲା । ଏହାଫଳରେ କଂଗ୍ରେସ ହଟିଛି ଏବଂ ଇନ୍ଦିରା ହାରିଛନ୍ତି ; କିନ୍ତୁ ସାମନ୍ତବାଦ ତଥା ପୁଞ୍ଜିବାଦ ଏବଂ ଅମଲାତନ୍ତ୍ରର ଜାଲ ଛିଡ଼ିନାହିଁ ଓ ସାମାଜିକ ନ୍ୟାୟ ବହୁ ଦୂରର କଥା ହୋଇ ରହିଛି ।

ଦେଶର ଜମି ସମସ୍ୟା ସହିତ ଶିକ୍ଷା ସମସ୍ୟା, ମାନବିକ ଅଧିକାର, ଗଣତନ୍ତ୍ରର ସୁରକ୍ଷା, ସାମ୍ପ୍ରଦାୟିକ ଦଙ୍ଗା, ବଙ୍ଗାଳୀ-ଅସମୀୟା ଦ୍ୱନ୍ଦ୍ୱ, ନାଗାଲାଣ୍ଡରେ ଶାନ୍ତିସ୍ଥାପନ ଇତ୍ୟାଦି ନାନା ସମସ୍ୟାରେ ନବକୃଷ୍ଣ ଚୌଧୁରୀ ହାତ ଦେଇଥିଲେ । ଏଣୁ ରାଜା-ମହାରାଜା ଓ ଜମିଦାରମାନଙ୍କୁ ଲୋପ କରିବା ଦିଗରେ ତାଙ୍କର ପ୍ରମୁଖ ଭୂମିକା ସତ୍ତ୍ୱେ ଜମି ସମସ୍ୟା ଦିଗରେ ସେ କେତେକ ଆଇନ କରିବା ଛଡ଼ା ଅଧିକ କିଛି କରିପାରିଲେ ନାହିଁ ।

## ବିକାଶର ଭିତ୍ତିଭୂମି :

ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲାବେଳକୁ ୨୫ଟି ଗଡ଼ଜାତ ଓଡ଼ିଶାରେ ମିଶିଥାଏ । ତଥାକଥିତ ଉପକୂଳ ଅଞ୍ଚଳରେ ବି ବାରଙ୍ଗ କାଚ କାରଖାନା ଏବଂ ଚୌଦ୍ୱାରରେ ଲୁଗାକଳ ଛଡ଼ା ଅନ୍ୟ ଶିଳ୍ପ ନଥାଏ । ଓଡ଼ିଶା କୃଷି, ଶିଳ୍ପ, ପରିବହନ ଓ ଯୋଗାଯୋଗ ଆଦି ସବୁ ଦିଗରେ ପଛୁଆ ଥାଏ । ନିଜେ ଗାଁର ବିକାଶକୁ ଗୁରୁତ୍ୱ ଦେଉଥିଲେ ବି ଓ ନିଜେ ଯାଇ ଅନୁଗୋଳ ଭଳି ଟାଉନ୍‌ରେ ଜୀବନର ପ୍ରାୟ ଅଧା ସମୟ କଟାଇଲେ ମଧ୍ୟ ତାଙ୍କରି ଅମଳରେ କଟକ ଉନ୍ନୟନ ଟ୍ରଷ୍ଟ ପ୍ରତିଷ୍ଠିତ ହୋ ଥିଲା । ଗାଁକୁ ଅଧିକ ଗୁରୁତ୍ୱ ନଦେଇ ସହର ବିକାଶ ପାଇଁ ସେ କାହିଁକି ଏତେ ଉତ୍ସାହୀ ... ଲି ବିଧାନସଭାରେ ସମାଲୋଚନା ହେଲାବେଳେ ସେ ତାହାର ସୁନ୍ଦର ଉତ୍ତର ଦେଇଥିଲେ । ଶିଳ୍ପ ବିକାଶ ଦିଗରେ ଓଡ଼ିଆ ଲୋକେ ଯେଭଳି ଆଗେଇବେ, ସେଥିଲାଗି ମଧୁପାଟଣାଠାରେ ସେ ଏକ ଶିଳ୍ପାଞ୍ଚଳ ସ୍ଥାପନ କରାଇଲେ । ଏହି ପଥପ୍ରଦର୍ଶକ ଶିଳ୍ପଯୋଜନା ଅନୁସାରେ ସରକାରଙ୍କୁ ନିଜେ ମୂଳଧନର ଶତକଡ଼ା ୯୦ ଭାଗ ଅର୍ଥ ବିନିଯୋଗ କରିବାକୁ ହେଉଥିଲା । କାଳକ୍ରମେ ଏହି ଶିଳ୍ପୋଦ୍ୟୋଗୀମାନେ କାରଖାନାର ସମସ୍ତ ସରକାରୀ ଅଂଶ କିଣିନେଇ ପୂରାପୂରି ମାଲିକ ହୋଇଥିଲେ । ତାଙ୍କରି ସମୟରେ ଆଉଏକ ବଡ଼ କାମ ହେଉଛି ଡୁଡୁମା ଜଳବିଦ୍ୟୁତ୍ କେନ୍ଦ୍ର ନିର୍ମାଣ ଓ ହୀରାକୁଦ ବହୁମୁଖୀ ନଦୀବନ୍ଧ ପ୍ରକଳ୍ପ । ଏଠାରୁ ବିଦ୍ୟୁତ୍ ପାଇ ରାଉରକେଲାରେ ଇସ୍ପାତ କାରଖାନା ଏବଂ ଓଡ଼ିଶାର ପ୍ରଥମ ସିମେଣ୍ଟ କାରଖାନା ରାଜଗାଙ୍ଗପୁରଠାରେ ହେଲା । ବହୁ ଘରୋଇ ମାଲିକଙ୍କୁ ଶିଳ୍ପ ପ୍ରତିଷ୍ଠା ଲାଗି ସରକାରୀ ଋଣ ଦିଆଯାଇଥିଲା । ସେ ମୁଖ୍ୟମନ୍ତ୍ରିତ୍ୱରୁ ଯିବା ବେଳକୁ ଚୌଦ୍ୱାରଠାରେ କାଗଜକଳ, କେନ୍ଦୁଝରର ଯୋଡ଼ାଠାରେ ଓ କୋରାପୁଟର ରାୟଗଡ଼ାଠାରେ ଫେରୋମାଙ୍ଗାନିଜ କାରଖାନା କାମ ଆରମ୍ଭ ହୋଇଥିଲା ।

୧୯୫୪ ମସିହା ପର୍ଯ୍ୟନ୍ତ ଓଡ଼ିଶାର ପିଲାମାନେ କୃଷି ସମ୍ପର୍କରେ ଉଚ୍ଚଶିକ୍ଷା ଲାଗି ପ୍ରଦେଶ ବାହାରକୁ ଯାଉଥିଲେ । ସେଇବର୍ଷ ଅଗଷ୍ଟ ମାସରେ ଭୁବନେଶ୍ୱର ଏକନମ୍ବର ଇଉନିଟ୍‌ରେ, ସ୍କୁଲ ପାଇଁ ନିର୍ମିତ ହୋଇଥିବା ଗୋଟିଏ ଘରେ, କୃଷିମହାବିଦ୍ୟାଳୟ ପ୍ରତିଷ୍ଠା କରାଯାଇଥିଲା । ମହାବିଦ୍ୟାଳୟ ଉଦ୍‌ଘାଟନ କରିସାରିବା ପରେ ୩୨ ଜଣ ଛାତ୍ର ଏବଂ ଅଧ୍ୟାପକମାନଙ୍କ ସଙ୍ଗରେ ନବବାବୁ ଏବକାର ଓ.ଏ.ୟୁ.ଟି. ଫିଲ୍‌ଡ଼ ପ୍ରାକ୍ଟିକାଲ ଚାଲିଥିବା ସ୍ଥାନକୁ ଯାଇଥିଲେ । ଛାତ୍ରମାନେ ହଳଦିଆ ଲୁଗା ପିନ୍ଧିଥାନ୍ତି ଓ ହଳଦିଆ ଠେକା ବାନ୍ଧିଥାନ୍ତି । ଶଙ୍ଖଧ୍ୱନି ଓ ପୂଜା ପରେ ନବବାବୁ ଏକ ସଂକ୍ଷିପ୍ତ ଭାଷଣ ଦେଇ ଛାତ୍ର, ଅଧ୍ୟାପକମାନଙ୍କ ସହିତ ଧାନ ରୋଇଥିଲେ । ଏହାର ୨୦ ବର୍ଷ ପୂର୍ବରୁ ଅବଶ୍ୟ ତରିକୁନ୍ଦଠାରେ ସେ ଧାନରୁଆ ଶିଖିଥିଲେ । ଦେହରେ ତାଙ୍କର ଥିଲା ଧୋତି, ଗଞ୍ଜି, ଅଣ୍ଟାରେ ଗାମୁଛା ଓ ଆଖିରେ ଚଷମା । କେତେକ ପିଲା ସାର ପକାଉଥିଲେ ଓ ଅନ୍ୟ କେତେକ ଛାତ୍ର ତଳି ଉପାଡୁଥିଲେ । ସେହି ଧାନରୁଆ ଫଟୋ Rice in Orissa ବହିରେ ଅଛି । ସେ ସମୟର ଅଧ୍ୟକ୍ଷ ଦାମୋଦର ମିଶ୍ର, ଅଧ୍ୟାପକ ବିଶ୍ୱନାଥ ସାହୁ ଓ ଜି.ଭି. ଚେଲମ୍ ସମସ୍ତେ ଏବେ ପରଲୋକରେ । ଏହାର ପରବର୍ଷ ୧୯୫୫ ମସିହାରେ କଟକର ମଙ୍ଗଳାବାଗଠାରେ ଗୋମଙ୍ଗଳ ସମିତିର ଏକ ଘରେ ୧୫ ଜଣ ପିଲାଙ୍କୁ ନେଇ ପଶୁଚିକିତ୍ସା ଓ ପଶୁପାଳନ ମହାବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ଏହାର ଅଧ୍ୟକ୍ଷ ହେଲେ ଡକ୍ଟର ଗଣେଶ୍ୱର ବିଶ୍ୱାଳ । ପରବର୍ଷ ଭୁବନେଶ୍ୱରରେ ଘର ତିଆରି ହେବାପରେ ସେହି ମହାବିଦ୍ୟାଳୟଦ୍ୱୟ ବର୍ତ୍ତମାନର ଓ.ଏ.ୟୁ.ଟି. ପରିସରକୁ ଆସି କାର୍ଯ୍ୟ କଲା ।

ଦେଶ ସ୍ୱାଧୀନ ହେଲାବେଳକୁ ଓଡ଼ିଶାର ପରିବହନ ପୂରାପୂରି ଘରୋଇ ମାଲିକଙ୍କ ହାତରେ ଥିଲା । ସେମାନେ ଅତି ଛୋଟ ଛୋଟ ବସ୍ ଚଳାଉଥିଲେ । ନବବାବୁଙ୍କ ସମୟରେ ହିଁ ବ୍ରହ୍ମପୁରକୁ କେନ୍ଦ୍ରକରି ଦକ୍ଷିଣାଞ୍ଚଳ ଲାଗି ଟ୍ରାନ୍ସପୋର୍ଟ କମ୍ପାନୀ ଗଢ଼ାଗଲା ଏବଂ ବଡ଼ ବଡ଼ ବସ୍ ଚଳାଗଲା ।

୧୯୫୬ ମସିହାରେ ନବବାବୁ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବା କଥା ପକ୍କା ହୋଇଯାଇଥାଏ । ସେ ଭୂ-ଦାନ କାମରେ ଅଧିକ ସମୟ ଦେଉଥିବାରୁ ଏବଂ ଶାସନକଳକୁ ସେ ଦିଗରେ ବ୍ୟବହାର କରୁଥିବାରୁ ଶାସନ ହୁଗୁଳି ଯାଇଥିଲା ବୋଲି ଖୁବ୍ ଅଭିଯୋଗ ହେଉଥାଏ । କିନ୍ତୁ ଅବସ୍ଥାକୁ ଶୀଘ୍ର ଅନୁଧ୍ୟାନ କରିବା ଓ ନିଷ୍ପତ୍ତି ନେବାରେ ନବବାବୁଙ୍କର ଦୃଢ଼ତା ଯୋଗୁଁ ବାସ୍ତବରେ କୌଣସି ସରକାରୀ କାମ ଅଟକୁନଥିଲା । ଭୂ-ଦାନ କାମରେ ସମୟ ଦେଇ ବି ସେହିବର୍ଷ ବୁର୍ଲା ଇଞ୍ଜିନିୟରିଂ କଲେଜ ଅତି ଅଳ୍ପ ସମୟ ମଧ୍ୟରେ ଖୋଲାଯିବା ସମ୍ଭବ ହୋଇପାରିଥିଲା । ବୁର୍ଲା ପାୱାର ଷ୍ଟେସନ ନିର୍ମାଣ ପାଇଁ ହୋଇଥିବା ଏକ ହଲ୍‌ରେ ପ୍ରଥମେ ୭୦ଜଣ ଛାତ୍ରଙ୍କୁ ନେଇ କ୍ଲାସ୍ ଆରମ୍ଭ ହେଲା । ପିଲାମାନେ ସେଠାକାର କେତୋଟି ସରକାରୀ

କ୍ୱାଟରରେ ରହିଲେ । ବୁର୍ଲା ଇଞ୍ଜିନିୟରିଂ କଲେଜର ପ୍ରଥମ ଅଧ୍ୟକ୍ଷ ହୋଇଥିଲେ ବିହାର ଇଞ୍ଜିନିୟରିଂ କଲେଜର ଅବସରପ୍ରାପ୍ତ ଅଧ୍ୟକ୍ଷ ଡକ୍ଟର ପ୍ରସାଦ । ସେହି ପ୍ରଥମ ବ୍ୟାଚ୍‌ର ଉଦୀୟମାନ ଛାତ୍ରମାନଙ୍କ ମଧ୍ୟରେ ଥିଲେ ନରେଶଚନ୍ଦ୍ର ରାଉତ, ଯେ କି ଇଞ୍ଜିନିୟର ଭାବରେ ଖୁବ୍ ସୁନାମ ଅର୍ଜନ କରିଥିଲେ ।

ଠିକ୍ ଏହିଭଳି ଉତ୍କଳ ବିଶ୍ୱବିଦ୍ୟାଳୟର ଭୂ-ତତ୍ତ୍ୱ ବିଭାଗ ଖୋଲାଯିବା ପାଇଁ ସେ ସରକାରୀ କଳ ଓ ବେସରକାରୀ ସାହାଯ୍ୟକୁ ବ୍ୟବହାର କରି ଉକ୍ତ ବିଭାଗ ଖୋଲାଇବାରେ ଆଶୁ ନିଷ୍ପତ୍ତି ନେଇଥିଲେ । କେନ୍ଦ୍ର ସରକାର ଏ ବାବଦରେ ଦୁଇଲକ୍ଷ ଟଙ୍କା ଓ ବିଜୁ ପଟ୍ଟନାୟକ ଏକଲକ୍ଷ ଟଙ୍କା ଦେଲାପରେ ବି ଟଙ୍କାର ନିଅଣ୍ଟ ଦେଖାଦେଲା । ନବବାବୁ ରାଜ୍ୟ ସରକାରଙ୍କ ତରଫରୁ ଅବଶିଷ୍ଟ ଭରଣା ଲାଗି ଶୀଘ୍ର ନିଷ୍ପତ୍ତି ନେବା ଫଳରେ ସେହି ବର୍ଷ ଉକ୍ତ ବିଭାଗ ଖୋଲାଗଲା । ଅନୁଗୋଳର ମୌଳିକ ତାଲିମ ମହାବିଦ୍ୟାଳୟ ଭାରତବର୍ଷରେ ଏଭଳି ଏକ ପ୍ରଥମ ପ୍ରତିଷ୍ଠାନ । ତାହା ବି ଅତିଶୀଘ୍ର ନବବାବୁଙ୍କ ଉଦ୍ୟମରେ ପ୍ରତିଷ୍ଠିତ ହୋଇଥିଲା ।

## ବିକାଶ ନିଆଁର ଚିଆଁ

### ହୀରାକୁଦ

ଦେଶ ସ୍ୱାଧୀନ ହେବାର ଅଳ୍ପକାଳ ପୂର୍ବରୁ ହୀରାକୁଦ ବନ୍ଧ ଯୋଜନା ଗୃହୀତ ହୋଇଥିଲା । କ୍ଷୁଦ୍ର ଓଡ଼ିଶାର ବନ୍ୟାଦୁର୍ଗତିଜନିତ କ୍ଷୟକ୍ଷତି ସମ୍ପର୍କରେ ବ୍ରିଟିଶ ସରକାର ବି ଅବହିତ ଥିଲେ । ଏଣୁ ତାଙ୍କ ଶାସନର ଶେଷବେଳକୁ ଏହି ପରିକଳ୍ପନା କାର୍ଯ୍ୟକାରୀ ହେବା କଥା ସ୍ଥିର ହୋଇଯାଇଥିଲା । ଏହା ପୂର୍ବରୁ ଭାରତବର୍ଷରେ କେବଳ ମେଟୁର୍ ଜଳଭଣ୍ଡାର ନିର୍ମିତ ହୋଇଥାଏ । କିନ୍ତୁ ହୀରାକୁଦ ଥିଲା ତାହାଠାରୁ ବହୁଗୁଣରେ ବଡ଼ । ସମ୍ବଲପୁର ସହରର ଉପରପଟକୁ ମହାନଦୀର ଏକ ପାର୍ଶ୍ୱରେ ସୁଦୀର୍ଘ ପର୍ବତରାଜି ଗୋଟିଏ ପଟର ଉତ୍ତୁଙ୍ଗ ପାଚେରି ଭଳି ରହିଛି । ଅନ୍ୟପଟେ ପଚିଶ କିଲୋମିଟର ଲମ୍ବର ବିରାଟ ମାଟି ବନ୍ଧ ରହିଛି । ନଦୀ ଗର୍ଭରେ ସୁଦୃଢ଼ ପଥରବନ୍ଧ । ସେ ସମୟକୁ ଏହା ଥିଲା ଏସିଆର ଗୋଟିଏ ଶ୍ରେଣୀର ବୃହତ୍ ଜଳଭଣ୍ଡାର । ଏଥିଲାଗି ପଡ଼ାଗାଁ ମିଶି ୩୬୯ ଗାଁର ଲୋକଙ୍କୁ ସେମାନଙ୍କ ଭିଟାମାଟି ଛାଡ଼ିବାକୁ ନୋଟିସ୍ ଦିଆହୋଇଥିଲା । ଏତେ ସଂଖ୍ୟକ ଗାଁର ଲୋକଙ୍କୁ ପୁନର୍ବସତି ଯୋଗେଇବା ଅଭିଜ୍ଞତା ଓଡ଼ିଶା କାହିଁକି ଭାରତବର୍ଷରେ ମଧ୍ୟ ନଥିଲା । ଏଣୁ ହୀରାକୁଦ ବନ୍ଧ ପ୍ରସ୍ତାବ ଶୁଣାଯିବା ସଙ୍ଗେସଙ୍ଗେ ସମ୍ବଲପୁର ଅଞ୍ଚଳରେ ତୀବ୍ର ବିରୋଧ ଦେଖାଦେଇଥିଲା । ଏପରିକି ସମ୍ବଲପୁର ଓଡ଼ିଶାରୁ ଅଲଗା ହୋଇ ମଧ୍ୟପ୍ରଦେଶରେ ମିଶିବା କଥା ଉଠିଥିଲା । ଦେଶ ସ୍ୱାଧୀନ ହେବାର ଠିକ୍ ପରେ ଓଡ଼ିଶା ସରକାରଙ୍କର ପ୍ରଚାର ବିଭାଗ ଅଫିସର୍

ଚିନ୍ତାମଣି ମିଶ୍ର ଓ ସୁଧୀର ଘୋଷ ଆଦି ଯେତେବେଳେ ହୀରାକୁଦ ସମ୍ପର୍କରେ ପ୍ରଚାର କରିବାକୁ ସମ୍ବଲପୁର ଯାଇଥିଲେ, ସେଠାରେ ସେମାନେ ସମ୍ବଲପୁରର ନାରୀମାନଙ୍କ ତୀବ୍ର ବିରୋଧର ସମ୍ମୁଖୀନ ହୋଇଥିଲେ । ସମ୍ବଲପୁରବାସୀଙ୍କ ହୃଦ୍‌ବୋଧ ହୋଇଥିଲା ଯେ ଉପକୂଳ ଅଞ୍ଚଳର ଲୋକ (ଶଲେ କଟକିଆ)ଙ୍କ ପାଇଁ ସମ୍ବଲପୁରକୁ ସର୍ବସ୍ୱାନ୍ତ କରାଯାଉଛି । ଉଦ୍‌ବାସ୍ତୁ ସମସ୍ୟା ଏତେ ଜଟିଳ ଯେ ହୀରାକୁଦ ବନ୍ଧ ଆରମ୍ଭ ହେବାର ଚାଳିଶ ବର୍ଷ ପରେ ବି ଯେଉଁସବୁ ନଦୀବନ୍ଧ ନିର୍ମିତ ହୋଇଛି, ସେଠାକାର ଲୋକଙ୍କୁ ଠିକଣା ଭାବରେ ଥଇଥାନ କରାଯାଇପାରିନାହିଁ । ଏବେ କ୍ଷତିପୂରଣ ଓ ଥଇଥାନ ପାଇଁ ସରକାର ଆହୁରି ଉଦାରତାର ସହ ଅର୍ଥ ଦେଉଛନ୍ତି । ତଥାପି ବହୁ କ୍ଷତ ରହି ଯାଉଛି ଓ ବିଶେଷକରି ଶହ ଶହ ବର୍ଷର ଭିଟାମାଟିର ମୋହମାୟା ଓ ସାମାଜିକ ପରିବେଶର ଉତ୍‌ପାଟନର ବିକଳ୍ପ ନାହିଁ ।

ହୀରାକୁଦର ଉଦ୍‌ବାସ୍ତୁଙ୍କୁ ଉଚିତ କ୍ଷତିପୂରଣ ଦିଆଗଲା ନାହିଁ କି ଠିକଣା ଭାବରେ ବସବାସ ଯୋଗାଯାଇପାରିଲା ନାହିଁ । ଅଭିଯୋଗ ତ ପ୍ରାୟ ୫ ବର୍ଷ ପରେ ଆସିଲା । କିନ୍ତୁ ହୀରାକୁଦ ବନ୍ଧ ପ୍ରସ୍ତାବ ଆସିବା ସଙ୍ଗେସଙ୍ଗେ ସମ୍ବଲପୁରର ଗୌନ୍ତିଆ (ଧନୀ ଚାଷୀ) ଓ ଓକିଲମାନେ (ଏମାନେ ବି ଅଧିକାଂଶ ଗୌନ୍ତିଆ) ହୀରାକୁଦ ବନ୍ଧ କରାଇ ନ ଦେବାର ଆଭିମୁଖ୍ୟ ଗ୍ରହଣ କରିଥିଲେ । ଏହା ବିରୋଧରେ ଆନ୍ଦୋଳନ ତୀବ୍ର ହେଲା, ବହୁସଂଖ୍ୟକ ଲୋକ ଜେଲ୍ ଗଲେ । ସମ୍ବଲପୁରରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିବା ସଭ୍ୟ ବୋଧରାମ ଦୁବେ ବିଧାନସଭାରୁ ଇସ୍ତଫା ଦେଲେ ।

ସମ୍ବଲପୁରର ବୁଡ଼ି ଅଞ୍ଚଳରେ ଯେଉଁ ଜମି ବୁଡ଼ିଗଲା, ସେଥିରେ ଜମିଦାର, ଗୌନ୍ତିଆ, କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କ ଜମି ଥାଏ । ୧୯୩୧ର ଜମି ଦଖଲ ଆଇନରେ କ୍ଷତିପୂରଣ କମ୍ ହୋଇଯିବ ବୋଲି ଧାରଣା କରି ୧୯୪୮ ମସିହାରେ ସରକାର ଏ ଦିଗରେ ନୂଆ ଆଇନ ଆଣିଲେ । ତଦନୁସାରେ ୧୯୨୫ ମସିହା ବନ୍ଦୋବସ୍ତରେ ଧାର୍ଯ୍ୟ ହୋଇଥିବା ଖଜଣାର ୫୦୦ ଗୁଣ କ୍ଷତିପୂରଣ ଦିଆଯିବା କଥା ସ୍ଥିର ହେଲା । କିନ୍ତୁ ସେହି ସମୟରେ ସମ୍ବଲପୁର ଅଞ୍ଚଳର ଖଜଣା ଏତେ କମ୍ ଥିଲା ଯେ ତାକୁ ବିଚାରକୁ ନେଇ ହିସାବ କରାଯିବାରୁ କେତେକ ଅଞ୍ଚଳର କ୍ଷତିପୂରଣ ଏକର ପିଛା ୧୦୦ ଟଙ୍କା ହେଲା । ପୁଣି ୧୯୨୫ ପରେ ଯେଉଁ ଗରିବ ଲୋକ ଜଙ୍ଗଲ କାଟି ଜମି ଆବାଦ କରିଥିଲେ, ସେମାନଙ୍କ ଜମି ଲାଗି ଏକର ପିଛା ଆଠ ଟଙ୍କାରୁ ଅଠର ଟଙ୍କା କ୍ଷତିପୂରଣ ଧାର୍ଯ୍ୟ ହେଲା । ଅଥଚ ୧୯୪୮ ମସିହାର ଠିକ୍ ପୂର୍ବରୁ ସମ୍ବଲପୁର ଜିଲ୍ଲାରେ କେତେକ ସାଧାରଣ ଜମି ଲାଗି ସରକାର ଏକର ପିଛା ଆଠଶହ ଟଙ୍କା କ୍ଷତିପୂରଣ ଦେଇଥିଲେ । ଏଣୁ ଅଧିକାଂଶ ଲୋକଙ୍କ ତରଫରୁ ତୀବ୍ର ପ୍ରତିବାଦ ପ୍ରକାଶିତ ହେଲା । ଅଧିକାଂଶ ଲୋକ କ୍ଷତିପୂରଣ ନେଲେନାହିଁ କି ପୁନର୍ବସତି ସ୍ଥାନକୁ ଉଠିଗଲେ ନାହିଁ । ତେଣୁ ସରକାର ୧୯୫୧ ଅକ୍ଟୋବର ମାସରେ ଏକ ଆର୍‌ବ୍ରିଟ୍ରେସନ୍

କୋର୍ଟ ବସାଇଲେ । କିନ୍ତୁ ସେ ଆର୍‌ବିଟ୍ରେସନ୍ କୋର୍ଟ୍ ୧୯୫୫ ମସିହା ପର୍ଯ୍ୟନ୍ତ ଗୋଟିଏ ସୁଦ୍ଧା ମକଦ୍ଦମା ଫଇସଲା କରିପାରିଲେ ନାହିଁ । ଏଣେ ଆଇନ୍‌ରେ ଥାଏ ଯେ ଆର୍‌ବିଟ୍ରେସନ୍ କୋର୍ଟର ଫଏସଲା ନସରିବାଯାଏ କେହି ହାଇକୋର୍ଟକୁ ଯାଇପାରିବେ ନାହିଁ ।

୧୯୫୫ ଏପ୍ରିଲ ମାସରେ ୯୧ ଖଣ୍ଡ ଗାଁର ଲୋକଙ୍କୁ ସାତଦିନ ମଧ୍ୟରେ ଗାଁ ଛାଡ଼ି ଚାଲିଯିବାକୁ ନୋଟିସ୍ ଦିଆଯାଇଥିଲା । ଅଥଚ ସେତେବେଳକୁ ଶତକଡ଼ା ୮୫ ଭାଗ ଲୋକ କ୍ଷତିପୂରଣ ନେଇ ନଥିଲେ ଓ ଶତକଡ଼ା ୧୫ ଭାଗ ଲୋକଙ୍କ କ୍ଷତିପୂରଣ (ଥଇଥାନ ପାଇଁ) ସରକାର ଗ୍ରହଣ କରିଥିଲେ । ସରକାର ନିକଟସ୍ଥ ଜଙ୍ଗଲଜମିକୁ ଆବାଦ କରିବା ଲାଗି ବହୁମୂଲ୍ୟ ଯନ୍ତ୍ରପାତି ଅଣାଇଥିଲେ । ଅବଶ୍ୟ ଦ୍ୱିତୀୟ ମହାସମରରେ ବ୍ୟବହୃତ ହୋଇଥିବାରୁ ସେସବୁ ଯନ୍ତ୍ରପାତି ଅନେକ ଶସ୍ତାରେ ମିଳିଥିଲା । ତାହା ସତ୍ତ୍ୱେ ଜଙ୍ଗଲ କାଟି ଜମି କରିବା ଲାଗି ଅନେକ ଟଙ୍କା ଲାଗିଥିଲା ; କିନ୍ତୁ ସେଠାକୁ ଯାଇ ବସବାସ ନ କରିବା ପାଇଁ ନେତାମାନେ ଲୋକଙ୍କୁ ପ୍ରବର୍ତ୍ତାଇଥିଲେ । ଫଳରେ ଅନେକ ଲୋକ ସେସବୁ ଜମିକୁ ଦେଖି, ନ ରହି, ଫେରିଆସିଥିଲେ । ଏଣୁ କଟା ହୋଇଥିବା ଜଙ୍ଗଲ ପୁଣି ବଢ଼ି ଜଙ୍ଗଲ ହୋଇଯାଇଥିଲା । ଏ ପରିସ୍ଥିତିରେ ସରକାର ବି ଅଧିକ ଜଙ୍ଗଲ କଟାଇଲେ ନାହିଁ । ଏହିଭଳି ୧୭ଟି ଆବାଦ ହୋଇଥିବା ସ୍ଥାନରୁ ମାତ୍ର ୧୨ଟି ସ୍ଥାନରେ ଛ'ହଜାର ଏକର ଜମିରେ ମାତ୍ର ଦୁଇହଜାର ପରିବାର ବସବାସ କଲେ । କିଛି ଲୋକ ନୂଆପଡ଼ା ଓ ବରଗଡ଼ ଅଞ୍ଚଳରେ ଜମି କିଣି ସେଠାକୁ ଉଠିଗଲେ । କିନ୍ତୁ ଉଦ୍‌ବାସ୍ତୁଙ୍କ ମଧ୍ୟରୁ ପ୍ରାୟ ପନ୍ଦରହଜାର ପରିବାର ହୀରାକୁଦ ବନ୍ଧ କଡ଼ରେ ଜଳଭଣ୍ଡାର ପାଖରେ ରହିଲେ । ପ୍ରାୟ ଦୁଇହଜାର ପରିବାର କୁଆଡ଼େ ଗଲେ, ସେମାନଙ୍କ ଠିକଣା ମିଳୁନାହିଁ । ଏହି ୧୫,୦୦୦ ପରିବାର ୧୨୦ଟି ବସତିରେ ରହିଛନ୍ତି । ସେମାନେ ଇତିମଧ୍ୟରେ ୫,୬୦୦ ଏକର ପତିତ ଜମି ଓ ଜଳଭଣ୍ଡାରକୁ ଲାଗି ହଜାରେ ଏକର ଜମି ପାଇଛନ୍ତି । ସେହି ଜମି ଏପର୍ଯ୍ୟନ୍ତ ସେ ଲୋକଙ୍କ ନାମରେ ରେକର୍ଡ଼ ହୋଇନାହିଁ । ଏଣୁ ସମୁଦାୟ ଏକଲକ୍ଷ ତିରିଶହଜାର ଏକର ଜମି ବଦଳରେ ଲୋକେ ମାତ୍ର ତେର ହଜାର ଏକର ପାଇଲେ ।

ଏହି ଜମିରୁ କେତେ ଜମି ଧନୀ ଚାଷୀ (ଗୌନ୍ତିଆ)ଙ୍କର ଥିଲା, ଠିକ୍ କହିହେବ ନାହିଁ । ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ ଏବଂ ସରକାରୀ କର୍ମଚାରୀମାନେ କହିଲେ ଯେ ହୀରାକୁଦ ଉଦ୍‌ବାସ୍ତୁ ସମସ୍ୟାରେ ଗରିବ ଲୋକେ ବିବ୍ରତ ନୁହନ୍ତି ; କାରଣ ସେମାନେ ହୀରାକୁଦରେ କାମ କରି ପୂର୍ବାପେକ୍ଷା ତିନି ଚାରିଗୁଣ ମୂଲ ପାଇଲେ । ଯେତେ ପାଟିଗୋଳ, ସେସବୁ କେବଳ ନ୍ୟସ୍ତସ୍ୱାର୍ଥ ଲୋକଙ୍କର । କିନ୍ତୁ ବାସ୍ତବରେ ଗୌନ୍ତିଆ ଓ ଧନୀ ଗୋଷ୍ଠୀ ଚାଷୀମାନେ ଏହି ଜମି ହରାଇବାରେ ଲାଭବାନ ହୋଇଥିଲେ । କାରଣ ସେମାନେ ଜମିଦଖଲ ବିରୋଧରେ ମକଦ୍ଦମା କରି ଅଧିକ କ୍ଷତିପୂରଣ ପାଇଲେ । ଗରିବ ଚାଷୀମାନେ

ମକଦ୍ଦମା ଲଢ଼ି ନ ପାରି ହତାଶ ହେଲେ । ଅଟକଳରୁ ଜଣାଯାଇଛି ଯେ ଗୌନ୍ତିଆଙ୍କ ମୋଟ ଜମିଠାରୁ କ୍ଷୁଦ୍ର ଚାଷୀ ଓ ନାମମାତ୍ର ଚାଷୀଙ୍କର ଜମିର ପରିମାଣ ଥିଲା ବହୁ ଅଧିକ । ଅବଶ୍ୟ ଏ କଥା ସତ ଯେ ଚାଷରୁ ଗୌନ୍ତିଆ କି ଛୋଟ ଚାଷୀ କେହି ଲାଭବାନ ହୋଇପାରୁ ନଥିଲେ । ଏହି ହୀରାକୁଦ ଆନ୍ଦୋଳନର ଜଣାଶୁଣା ନେତା ଶ୍ରଦ୍ଧାକର ସୂପକାର ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି, ତାଙ୍କର ଯଥେଷ୍ଟ ଭଲ ଜମି ଥିଲେ ବି ଏବଂ ବାପା ତାଙ୍କର ଭଲ ଚାଷୀ ଥିଲେ ମଧ, ବାପାଙ୍କ ମୃତ୍ୟୁ ଅନ୍ତେ ସେ ଜାଣିପାରିଥିଲେ ଯେ ବାପା କିଛି ଋଣ କରିଯାଇଛନ୍ତି । ଚାଷୀର ଆୟଠାରୁ ବ୍ୟୟ ଥିଲା ଅଧିକ । ସେ ସମୟରେ ସମ୍ବଲପୁର ଅଞ୍ଚଳର ଜମିର ଖଜଣା ଥିଲା ବହୁତ କମ୍ । ଉପକୂଳବର୍ତ୍ତୀ ଅଞ୍ଚଳରେ ଜମିର ଖଜଣା ଅଧିକ ଥିବାରୁ ତାହା ନ ଦେଇପାରି ବହୁ ଲୋକଙ୍କର ଘରଡିହ ବି ନିଲାମ ହୋଇଯାଇଛି । ସମ୍ବଲପୁର ଆଦି ପଶ୍ଚିମ ଅଞ୍ଚଳରେ ମୂଲିଆ ଶ୍ରେଣୀର ଲୋକଙ୍କୁ କୁହାଯାଏ 'ସୁଖବାସୀ' । କଥାଟା ଆମକୁ ଅଦ୍ଭୁଆ ଲାଗିଲେ ବି ସେ ଅଞ୍ଚଳର ଲୋକେ ଏହାର ଯଥାର୍ଥତା ବୁଝାଇବାକୁ ଯାଇ କହନ୍ତି ଯେ 'ସୁଖବାସୀ'ର ବାକିଆ ଖଜଣାର ଚିନ୍ତା ନ ଥାଏ କି କୌଣସି କାରଣରୁ ଫସଲ ନଷ୍ଟ ହୋଇଗଲେ ଶୋଚନା ନଥାଏ । ଏଣୁ ସେ ଚାଷୀଠାରୁ ସୁଖରେ ଥାଏ । ଅଧାପେଟରେ ରହିଲେ ବି ନିଶ୍ଚିନ୍ତରେ ଶୋଇପାରେ । ତେଣୁ ସେମାନଙ୍କୁ ସୁଖବାସୀ କୁହାଯାଏ ।

୧୯୨୮ରୁ ୧୯୩୮ ପର୍ଯ୍ୟନ୍ତ କୃଷିଜାତ ଦ୍ରବ୍ୟର ମୂଲ୍ୟ ଖୁବ୍ କମ୍ ଥିଲା । ଏହା ସତ୍ତ୍ୱେ ଚାଷୀର ଜମି ପ୍ରତି ଆକର୍ଷଣ ପିଲାର ମା' ପ୍ରତି ଆକର୍ଷଣ ଭଳି । ଏଣୁ ହୀରାକୁଦ ବନ୍ଧ ଯୋଗୁଁ ଯେଉଁ ହଜାର ହଜାର ପରିବାର ନିଜର ସାତପିଢ଼ିର ଭିଟାମାଟି, ଗାଁର ଦେବାଳୟ ଓ ନଈପଟୁଦ୍ୱାରା ଉର୍ବର ହୋଇଥିବା ଜମି ହରାଇଲେ, ତା'ର ଦାଗ ସେମାନେ ତିନି ପିଢ଼ି ପର୍ଯ୍ୟନ୍ତ ଭୁଲିପାରି ନାହାନ୍ତି । ନବକୃଷ୍ଣ ଚୌଧୁରୀ ଚାଷୀ ଓ ବିଶେଷକରି ଗରିବ ଚାଷୀଙ୍କ ପାଇଁ ଦରଦୀ ଥିଲେ ମଧ ଏ କ୍ଷେତ୍ରରେ ତାଙ୍କର ହୃଦୟହୀନତା, ସାମ୍ୟବାଦୀ ପ୍ରସନ୍ନକୁମାର ପଣ୍ଡାଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଛି । ପ୍ରଥମରୁ ସମ୍ବଲପୁର ଲୋକଙ୍କ ତୀବ୍ର ବିରୋଧ ଓ ଅଳ୍ପ କ୍ଷତିପୂରଣ ଦେଇ ଜମିଦଖଲ କରିବାରେ ଖୋସାମତିଆ କର୍ମଚାରୀମାନଙ୍କର ବାହାଦୁରି ଏବଂ ଶିବରମଣଙ୍କ ଭଳି ପକ୍କା ଅଫିସରଙ୍କ ସୀମା ଅତିକ୍ରମ କରି, ନବକୃଷ୍ଣ ଚୌଧୁରୀ ବୁଢ଼ି ଅଞ୍ଚଳର ସାଧାରଣ ଲୋକଙ୍କ ମନର ଆଘାତ ଜାଣିବାକୁ ଅସମର୍ଥ ହୋଇଛନ୍ତି । ତାଙ୍କ ପ୍ରଶାସନିକ ଜୀବନର ଏହିଟି ଏକ ଅକ୍ଷମଣୀୟ କଳା ଦାଗ । ଯିଏ ସବୁ କଥାର ବେଶ୍ ଗଭୀରର ଚେର ପର୍ଯ୍ୟନ୍ତ ଖୋଳିତାଡ଼ି ଦେଖନ୍ତି, ତାଙ୍କ ପକ୍ଷରେ ହୀରାକୁଦ ଉଦ୍‌ବାସ୍ତୁ ସମସ୍ୟା ଭଲ ଭାବରେ ଅନୁଧାନ କରିବାର ବିଫଳତା ବାସ୍ତବରେ ଆଶ୍ଚର୍ଯ୍ୟ ଲାଗେ ।

ନବକୃଷ୍ଣ ଚୌଧୁରୀ ଯେ ଜମି ହରାଉଥିବା ଲୋକଙ୍କ କ୍ଷତି ମୋଟେ ଜାଣି ନଥିଲେ, ବି ନୁହେଁ । କେନ୍ଦ୍ର ସରକାର ହୀରାକୁଦ ବନ୍ଧ ଲାଗି ଏକ ନିର୍ଦ୍ଦିଷ୍ଟ ସୀମା ଧାର୍ଯ୍ୟ କରି ପାଣ୍ଠି

ଯୋଗାଉଥିଲେ । ଏ ବାବଦରେ ଅଧିକ ଟଙ୍କା ଦାବି କରିବାପାଇଁ ଓଡ଼ିଶା ସରକାରଙ୍କର ଆଣ୍ଠ ନଥିଲା । ପୁଣି ନବବାବୁଙ୍କର ଏକ ଭୁଲ୍ ନିର୍ଦ୍ଧାରଣ ରହିଗଲା ଯେ ହୀରାକୁଦ ଯୋଜନା ଲାଗି ଜମି ହରାଇଥିବା ଅଧିକାଂଶ ଲୋକେ ଗୌନ୍ତିଆ । ଦେଶର ଏକ ମହାନ୍ କାର୍ଯ୍ୟ ପାଇଁ କିଛି ଲୋକଙ୍କ କଷ୍ଟ ସ୍ୱୀକାର କରିବା କଥାଟାକୁ ସେ ନିଜେ ଅତି ସହଜରେ ନେଇଯାଇଥିଲେ । ଏଣୁ ସେ ଧରିନେଇଥିଲେ ଯେ ନବ ଉତ୍କଳର କୋଣାର୍କ ଗଢ଼ିବା ଲାଗି କିଛି ଲୋକଙ୍କୁ ଧର୍ମପଦ-ଦୀକ୍ଷା ନେବାକୁ ହେବ । କିନ୍ତୁ ହୀରାକୁଦ ପାଇଁ ଧନୀ ଚାଷୀମାନେ ବରଂ ବିଶେଷ ଲାଭବାନ ହେଲେ । କାରଣ ପରବର୍ତ୍ତୀ ସମୟରେ ଭୂ-ସଂସ୍କାର ଫଳରେ ଜମିମାଲିକମାନେ ଯେଉଁ ଅସୁବିଧା ଭୋଗ କଲେ, ଗୌନ୍ତିଆମାନେ ସେଥିରୁ ରକ୍ଷା ପାଇଗଲେ ଓ ଅଧିକ କ୍ଷତିପୂରଣ ପାଇଲେ । ହୀରାକୁଦ ଫଳରେ ସମ୍ବଲପୁର ଜିଲ୍ଲାର କୃଷିରେ ଅଭୂତପୂର୍ବ ଉନ୍ନତି ହେଲା ଏବଂ ବର୍ଷସାରା ମୂଲ ମିଳିଲା ସତ, କିନ୍ତୁ ଉଦ୍‌ବାସ୍ତୁମାନଙ୍କ ମନର କ୍ଷତ ତିନିପିଢ଼ିକୁ ରହିଗଲା । ଅଥଚ ହୀରାକୁଦ ନିର୍ମାଣ ବେଳେ ପ୍ରଚାର ହେଲା ଯେ ନଦୀପାଣିରୁ ବିଜୁଳି ଉତ୍ପନ୍ନ ହେଉଥିବାରୁ ସେଥିରୁ ସବୁ ବଳ ଚାଲିଯିବ ଓ ହରାକୁଦ ପଚାଶ ବର୍ଷରେ ପୋତି ହୋଇପଡ଼ିବ ।

## ଓରିଏଣ୍ଟ କାଗଜକଳ

୧୯୩୮-୩୯ ମସିହାରେ ବିରଳା କମ୍ପାନୀ ସମ୍ବଲପୁରର ଇବ୍ ନଦୀ କୂଳରେ ରାମପୁର ଜମିଦାରିର ତେଲେନ୍‌ପାଲି ଗାଁକୁ ଜମିଦାର ବ୍ରଜମୋହନ ସିଂହଙ୍କଠାରୁ ଶସ୍ତା ଦରରେ କିଣି ଜଙ୍ଗଲରୁ ସରକାରଙ୍କଠାରୁ ଶସ୍ତାଦରରେ ପାଖ ବାଉଁଶ ଜଙ୍ଗଲକୁ ଲିଜ୍ ନେଇ କାଗଜକଳ୍ ଆରମ୍ଭ କରିଥିଲେ । ପାଖରେ ବି ବଡ଼ କୋଇଲା ଖଣି ଥିଲା । ଏଣୁ ଦଶବର୍ଷ ମଧ୍ୟରେ ଏଠାରେ ଏକ ବିରାଟ କାଗଜ କଳ ପ୍ରତିଷ୍ଠିତ ହେଲା । ତା' ନାଁ ହେଲା ଓରିଏଣ୍ଟ ପେପର୍ ମିଲ୍ । ଓଡ଼ିଶାରେ ସେତେବେଳକୁ ବାରଙ୍ଗଠାରେ ହିଁ ଛୋଟିଆ କାଚ କାରଖାନାଟିଏ ମାତ୍ର ଥାଏ । ତେଣୁ କାଗଜକଳ ପ୍ରତିଷ୍ଠିତ ହେବା ଯୋଗୁଁ ସମସ୍ତେ ଆନନ୍ଦିତ ହୋଇଥିଲେ ।

କିନ୍ତୁ ଏହି କାଗଜକଳ ବିକାଶ ଲାଭ କଲାପରେ ତହିଁରୁ ପ୍ରଚୁର ବିଷାକ୍ତ ପାଣି ଇବ୍ ନଦୀରେ ପଡ଼ିଲା । ସେହି ଦୂଷିତ ପାଣି ଯାଇ ମହାନଦୀରେ ମିଶିଲା । ଇବ୍ ନଦୀର ପାଣିର ରଙ୍ଗ ବି ବିବର୍ଣ୍ଣ ହେଲା । ଲୋକେ ସେ ନଈପାଣିରେ ଗାଧୋଉଥିଲେ ଓ ତାହାକୁ ପିଉଥିଲେ ବି । କାଗଜକଳର ଦୂଷିତ ପାଣିମିଶା ପାଣି ପିଇଲେ ପେଟ ରୋଗ ହେଲା ଏବଂ ଗାଧୋଇଲେ ନାନା ପ୍ରକାର ଚର୍ମରୋଗ ଦେଖାଦେଲା । ସେ ପାଣିରେ ମାଛ ମରିଗଲେ, କାରଖାନାର ପ୍ରସାର ହେବାଫଳରେ କାଗଜକଳର ଦୂଷିଜ ଜଳର କୁପରିଣାମ ସମ୍ବଲପୁର ଟପି ସୋନପୁର ଓ ବଉଦ ପର୍ଯ୍ୟନ୍ତ ଦେଖାଗଲା ।

ହୀରାକୁଦ ଆନ୍ଦୋଳନ ବେଳେ ବୋଧରାମ ଦୁବେ ଇସ୍ତଫା ଦେଇଥିବାରୁ ତାଙ୍କ ନିର୍ବାଚନମଣ୍ଡଳୀରୁ ଶ୍ରଦ୍ଧାକର ସୂପକାର ସ୍ୱାଧୀନ ଭାବରେ ନିର୍ବାଚିତ ହୋଇ ଓଡ଼ିଶା ବିଧାନସଭାକୁ ଯାଇଥାନ୍ତି । ତାଙ୍କର ନିର୍ବାଚନମଣ୍ଡଳୀ ଏହି କାଗଜ କଳର ଦୂଷିତ ଜଳଦ୍ୱାରା ଖୁବ୍ କ୍ଷତିଗ୍ରସ୍ତ ହୋଇଥିଲା । ସେ ଜନସ୍ୱାସ୍ଥ୍ୟ ବିଭାଗକୁ ଆପତ୍ତି କରି ବ୍ୟର୍ଥ ହେବାରୁ କାଗଜକଳ ମାଲିକଙ୍କ ବିରୋଧରେ ଏକ ମକଦ୍ଦମା କଲେ ଏବଂ ବିଧାନସଭାରେ ଏ କଥା ଉଠାଇଲେ । କିନ୍ତୁ ବିରଳା କମ୍ପାନୀର ଖାଲି ଅମାପ ଅର୍ଥ ନୁହେଁ, କଂଗ୍ରେସ ଦଳରେ ତା'ର ଅଖଣ୍ଡ ପ୍ରଭାବ ଥିଲା । ଏଣୁ ସରକାର ଏ ଦିଗରେ କଠୋର କାର୍ଯ୍ୟାନୁଷ୍ଠାନ କରିପାରି ନଥିଲେ । କିନ୍ତୁ ମକଦ୍ଦମାରେ କାଗଜକଳ ମାଲିକ ଏକାଧିକବାର ହାରିବା ପରେ ସରକାରଙ୍କୁ ପ୍ରଭାବିତ କରି ଏକ ଆଇନ୍ ବିଧାନସଭାରେ ପାସ୍ କରାଇଲେ । ଏହାଫଳରେ ଏ ସମ୍ପର୍କୀୟ ମକଦ୍ଦମା କୋର୍ଟକଚେରିକୁ ନ ଯାଇ ଏକ କମିଟି ଅଧୀନରେ ରହିଲା । ଏହା ଶ୍ରଦ୍ଧାକର ସୂପକାରଙ୍କ ସମେତ ସମ୍ବଲପୁରବାସୀଙ୍କୁ ଖୁବ୍ ବାଧିଥିଲା । କାରଣ, ସରକାର ଲୋକଙ୍କ ସ୍ୱାର୍ଥକୁ ଉପେକ୍ଷା କରି ବିରଳା କମ୍ପାନୀକୁ ସୁରକ୍ଷା ଦେବାପାଇଁ ଏଭଳି ବ୍ୟବସ୍ଥା କରିଥିଲେ ।

ଅବଶ୍ୟ ଓରିଏଣ୍ଟ କାଗଜକଳ କର୍ତ୍ତୃପକ୍ଷ ଏହି ମକଦ୍ଦମାର ଚାପରେ କାଗଜକଳରୁ ବାହାରୁଥିବା ଦୂଷିତ ଜଳକୁ ଇବ୍ ନଈରେ ଛାଡ଼ିବା ପୂର୍ବରୁ କେତେକ ଯନ୍ତ୍ର ଓ ପ୍ରକ୍ରିୟା ସାହାଯ୍ୟରେ ଶୋଧନ କଲେ; କିନ୍ତୁ ବହିର୍ଗତ ଦୂଷିତ ଜଳ ସମ୍ପୂର୍ଣ୍ଣ ଶୋଧିତ ହେଉନାହିଁ । ତେବେ ଇତିମଧ୍ୟରେ ହୀରାକୁଦ ବନ୍ଧ ନିର୍ମିତ ହେବା ଯୋଗୁ ଜଳଭଣ୍ଡାରରେ ପ୍ରଚୁର ଜଳ ଜମିରହୁଛି ଏବଂ ଇବ୍ ନଦୀ ଦେଇ କାଗଜକଳରୁ ଆସୁଥିବା ଦୂଷିତ ଜଳ ସେହି ବିରାଟ ଜଳଭଣ୍ଡାରରେ ମିଶିଯାଉଥିବାରୁ ତା'ର କୁଫଳ ବେଶି ଜଣାପଡୁନାହିଁ ।

ଓଡ଼ିଶା ବିଧାନସଭାରେ ଓରିଏଣ୍ଟ କାଗଜକଳକୁ ନିରାପତ୍ତା ଦେବା ଉଦ୍ଦେଶ୍ୟରେ ଯେତେବେଳେ ଆଇନ୍ ଅଣାଗଲା, ସେତେବେଳେ ନବକୃଷ୍ଣ ଚୌଧୁରୀ ଥିଲେ ମୁଖ୍ୟମନ୍ତ୍ରୀ । ସେ ପୁଞ୍ଜିପତିଙ୍କ ବିରୋଧୀ ଜନନେତା । ସେ କିଭଳି ଏପରି ଆଇନ ବିଧାନସଭାରେ ଅଣାଇଲେ, ତାହା ସମସ୍ତଙ୍କୁ ବିସ୍ମିତ କରିବା କଥା । ଏ କଥା ସତ ଯେ ବିରଳାଙ୍କର କଂଗ୍ରେସ ଦଳରେ ଅଖଣ୍ଡ ପ୍ରଭାବ ଥିଲା, ଯାହା ଯୋଗୁଁ ଏଭଳି ଆଇନ ଅଣାଯାଇପାରିଲା । ବିରଳାଙ୍କ ସ୍ୱାର୍ଥକୁ ଚାଲେଞ୍ଜ୍ ଦେବା ଭଳି ଶକ୍ତି ଓ ସାହସ ନବବାବୁଙ୍କର ଥିଲା କି ନାହିଁ, ତାହା ଏକ ତର୍କର ବିଷୟ । କିନ୍ତୁ ଓଡ଼ିଶାରେ ଶିଳ୍ପାୟନ ହେଉ, ଏହା ସେ ଚାହୁଁଥିଲେ । ବିଶେଷକରି ପୁସ୍ତକପ୍ରେମୀ ନବକୃଷ୍ଣ ଚୌଧୁରୀଙ୍କ ପାଇଁ କାଗଜକଳର ଅପରିହାର୍ଯ୍ୟତା ବିଷୟ ଏକ ବିଚାରର କଥା ହୋଇଥିବ । ଏଣୁ କାଗଜକଳକୁ ପୂରା ବନ୍ଦ ନ କରି ଯଥାସମ୍ଭବ ତା'ର ତ୍ରୁଟି

ସଂଶୋଧନ କରିବା ଦିଗଟି ନବବାବୁ ଧରିଛନ୍ତି । ତାଙ୍କ ବିଚାରରେ ଏସବୁ ଶିଳ୍ପସଭ୍ୟତାର ଅଲଂଘନୀୟ ଅଭିଶାପ । ହୀରାକୁଦ ବନ୍ଧ ତିଆରି ପାଇଁ ପ୍ରଚୁର ସିମେଣ୍ଟ ଦରକାର ହେବ ବୋଲି ଅନୁଭବ କରି ସେ, ସରକାରୀ ଋଣ ଦେଇ, ରାଜଗାଙ୍ଗପୁରଠାରେ ସିମେଣ୍ଟ କାରଖାନା ବସାଇଥିଲେ । ଠିକ୍ ସେହି କାରଣରୁ ବିଜୁ ପଟ୍ଟନାୟକ ଲୁଗାକଳ ଓ ଅନ୍ୟାନ୍ୟ କଳକାରଖାନା ବସାଇବା ବେଳେ ସେ ମଧ୍ୟ ବିଜୁବାବୁଙ୍କୁ ବେଶ୍ ସହାୟତା ଦେଇଥିଲେ । କଳକାରଖାନାମାନଙ୍କର ଖରାପ ଦିଗ ସମ୍ପର୍କରେ ସମ୍ପୂର୍ଣ୍ଣ ଅବହିତ ଥାଇ ବି ସେ ଶିଳ୍ପାୟନର ପକ୍ଷପାତୀ ଥିଲେ ଓ ସେ ଦିଗରେ ତାଙ୍କର ଯୁକ୍ତି ବିଧାନସଭା ବିବରଣୀରୁ ମିଳେ ।

**ସରକାରୀ ସ୍ତରରେ ଓଡ଼ିଆ ଭାଷା :**

ନବକୃଷ୍ଣ ଚୌଧୁରୀ ଶାସନକୁ ଲୋକାଭିମୁଖୀ କରିବା ଦିଗରେ ଯେଉଁସବୁ ପଦକ୍ଷେପ ନେଇଥିଲେ, ତନ୍ମଧ୍ୟରୁ ଗୋଟିଏ ଥିଲା, ସରକାରୀ କାର୍ଯ୍ୟାବଳୀକୁ ଲୋକମାନଙ୍କ ଭାଷାରେ ଚଳାଇବା । ତାହା ନ ହେଲେ ଶାସନର ବିକେନ୍ଦ୍ରୀକରଣ ହେଲେ ବି ଲୋକେ ତାହାର ପୂର୍ଣ୍ଣ ଉପଯୋଗ କରିପାରିବେ ନାହିଁ । ହେଲେ, ୧୯୫୪ ମସିହା ବେଳକୁ ଏହା ଥିଲା ଏକ ଅଚିନ୍ତନୀୟ ବ୍ୟାପାର । ସେତେବେଳର ଅଧିକାଂଶ ଉଚ୍ଚ ଅଫିସର ଅନ୍ୟ ରାଜ୍ୟର । ସେମାନେ ଓଡ଼ିଆ ଆସ୍ତେ ବୁଝିବାକୁ ଆରମ୍ଭ କରିଥିଲେ । ମାତ୍ର ଓଡ଼ିଆ ପଢ଼ିବା ସେମାନଙ୍କ ପକ୍ଷରେ ଦୁଃସାଧ୍ୟ ବ୍ୟାପାର ଥିଲା । ଆଉ ଓଡ଼ିଆରେ ଲେଖିବା ତ ପୂରାପୂରି ଅସାଧ୍ୟ କଥା । ଓଡ଼ିଆ ଟାଇପ୍ ରାଇଟର୍ ବାହାରିନଥାଏ । ଏଣୁ ଓଡ଼ିଆ ହାତଲେଖା ପଢ଼ିବା ସେମାନଙ୍କ ପକ୍ଷରେ ଅଲଂଘନୀୟ ପ୍ରତିବନ୍ଧକ ହୋଇଥାଏ ।

ସେତେବେଳର ଚିଫ୍ ସେକ୍ରେଟାରୀ ଆପତ୍ତି ଉଠାଇଲେ ଯେ ଅନ୍ୟ ରାଜ୍ୟରେ ତ ସ୍ଥାନୀୟ ଭାଷାରେ ସରକାରୀ କାର୍ଯ୍ୟ ଆରମ୍ଭ ହୋଇନାହିଁ, ଓଡ଼ିଶାରେ ଏ ଦିଗରେ କାହିଁକି ଏତେ ବ୍ୟଗ୍ରତା ପ୍ରକାଶ ପାଉଛି ? କୁହାଗଲା ଯେ କେନ୍ଦ୍ର ସରକାର ଓ ଆକାଉଣ୍ଟାଣ୍ଟ ଜେନେରାଲଙ୍କ ଅଫିସ୍ ସହ ରାଜ୍ୟ ସରକାରଙ୍କ ପତ୍ରାଳାପ କରିବାରେ ଅସୁବିଧା ହେବ ।

ଏସବୁ ସତ୍ତ୍ୱେ ନବକୃଷ୍ଣ ଚୌଧୁରୀ ୧୯୫୨ ମସିହାରେ ଏ ସମ୍ପର୍କୀୟ ଆଇନକୁ ସଂଶୋଧନ କରାଇବା ସଙ୍ଗେସଙ୍ଗେ ଏକ ପ୍ରଶାସନିକ ଇଂରାଜୀ-ଓଡ଼ିଆ ଶବ୍ଦକୋଷ ପ୍ରଣୟନ କରାଇଲେ । ବହୁ ଲୋକ ଓଡ଼ିଆ ଭାଷାକୁ ସରକାରୀ ସ୍ତରରେ ଚଳାଇବା ଅସମ୍ଭବ ମନେକରୁଥିଲେ ହେଁ ୧୯୫୪ ମସିହା ଏପ୍ରିଲ ୨୩ ତାରିଖ ଦିନ ନବବାବୁ ସରକାରୀ ଫାଇଲ୍‌ରେ ଓଡ଼ିଆରେ ନିଜର ମତାମତ ଲିପିବଦ୍ଧ କଲେ । ଅବଶ୍ୟ ପରେ, ସେହିବର୍ଷ 'ଦି ଓରିଶା ଅଫିସିଆଲ ଲାଙ୍ଗୁଏଜ୍ ବିଲ୍' ଓଡ଼ିଶା ବିଧାନସଭାରେ ୧୪ ଅକ୍ଟୋବରରେ ପାସ୍ ହୋଇଥିଲା ।

ଓଡ଼ିଆକୁ ସରକାରୀ ଭାଷା ରୂପରେ ଚାଲୁ କରିବା ଲାଗି ଓଡ଼ିଆ ଟାଇପ୍‌ରାଇଟର୍‌ର ଅପରିହାର୍ଯ୍ୟତା ଅନୁଭବ କରାଯାଇଥିଲା । ତେଣୁ ଶିଳ୍ପ ବିଭାଗ ଡିରେକ୍ଟର ଗଜେନ୍ଦ୍ର ମିତ୍ରଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଢ଼ାଯାଇଥିଲା ଓ ସେଥିରେ ଅନ୍ୟମାନଙ୍କ ମଧ୍ୟରେ ମନମୋହନ ଚୌଧୁରୀ ସଦସ୍ୟ ଥିଲେ । ସେହି କମିଟିଙ୍କ ସୁପାରିଶ ଅନୁସାରେ କି' ବୋର୍ଡ୍ ପ୍ରସ୍ତୁତ କରାଗଲା ଓ ଓଡ଼ିଆ ଟାଇପ୍‌ରାଇଟର୍ ନିର୍ମାଣ ଲାଗି ୧୯୫୬ ମସିହାରେ ରେମିଙ୍ଗଟନ୍ କମ୍ପାନୀକୁ ଅର୍ଡ଼ର୍ ଦିଆଗଲା । ସେହି ବର୍ଷ ଅକ୍ଟୋବର ମାସରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରିତ୍ୱରୁ ଇସ୍ତଫା ଦେଇ ଚାଲିଗଲେ । ପରବର୍ତ୍ତୀ ସରକାରମାନଙ୍କର ଏ ଦିଗରେ ବିଶେଷ ଆଗ୍ରହ ପ୍ରକାଶ ନ ପାଇବାରୁ ଓଡ଼ିଆ ଟାଇପ୍‌ରାଇଟର୍ ନିର୍ମାଣ ବହୁ ବର୍ଷ ବିଳମ୍ବିତ ହୋଇଗଲା ଏବଂ ଓଡ଼ିଆ ଭାଷା ସରକାରୀ ସ୍ତରରେ ପ୍ରଚଳନ ଲାଗି ପ୍ରାୟ ୩୦ ବର୍ଷ ଧିମେଇଗଲା ।

**ଅଞ୍ଚଳ ଶାସନ :**

ଓଡ଼ିଶା ଜମିଜମା କମିଟି ରିପୋର୍ଟ (The Orissa Land Revenue and Land Tenure Report) ଯେଉଁ ଯୁଗାନ୍ତକାରୀ ସୁପାରିଶମାନ କରିଥିଲା, ତାହାରି ଭିତରେ ଅଞ୍ଚଳ ଶାସନର ସୂଚନା ଥିଲା । ଶାସନକୁ ଖାଲି ଲୋକାଭିମୁଖୀ କରାଇବା ନୁହେଁ, ଲୋକଙ୍କ ପାଖରେ ପହଞ୍ଚାଇବା ପାଇଁ ଏଥିରେ ବ୍ୟବସ୍ଥା ଥିଲା । ଗଡ଼ଜାତ ମିଶ୍ରଣ ଓ ଜମିଦାରି ଉଚ୍ଛେଦ ପରେ ରାଜ୍ୟର ପ୍ରଶାସନିକ ଢାଞ୍ଚାରେ ମୌଳିକ ପରିବର୍ତ୍ତନ ଅପରିହାର୍ଯ୍ୟ ହୋଇଉଠିଥିଲା । ବର୍ତ୍ତମାନର ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲାପରିଷଦ ଆଇନଠାରୁ ତାହା ଥିଲା ଅଧିକ ବ୍ୟାପକ ଓ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ । ଶାସନକୁ ମୁଣ୍ଡଭାରି ନ କରି ଅଧିକ କାର୍ଯ୍ୟଦକ୍ଷ କରାଇବା ଲାଗି ସେଥିରେ ବ୍ୟବସ୍ଥା ହୋଇଥିଲା । ତଦନୁସାରେ ପ୍ରତ୍ୟେକ ଜିଲ୍ଲାକୁ (ଲୋକସଂଖ୍ୟା ଓ ଆୟତନକୁ ବିଚାର କରାଯାଇ) କେତେକ 'ଅଞ୍ଚଳ'ରେ ପରିଣତ କରାଯାଇଥା'ନ୍ତା । ସେହି ଅଞ୍ଚଳର ଶାସନ ସେଠାକାର ଲୋକପ୍ରତିନିଧିଙ୍କ ଉପରେ ଥା'ନ୍ତା । ପଞ୍ଚାୟତ ସ୍ତରରୁ ସେଠାକୁ ପ୍ରତିନିଧି ଯାଇଥାନ୍ତେ । ଶାସନ ପରିଚାଳନା ପାଇଁ ଜଣେ ଅଞ୍ଚଳ ଅଧିକାରୀ ଥାଆନ୍ତେ । ବିଭିନ୍ନ ବିକାଶମୂଳକ କାମ ପାଇଁ ଜିଲ୍ଲା ଅଫିସ୍‌କୁ ଦୌଡ଼ିବାକୁ ହେଉନଥାନ୍ତା । ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ପଶୁପାଳନ, ଗ୍ରାମ୍ୟଶିଳ୍ପ ଆଦି ସେହି ଅଞ୍ଚଳ ଅଫିସ୍‌ରୁ ପରିଚାଳିତ ହୋଇଥାନ୍ତା । ଜମିର ଖଜଣା ସେହି ଅଞ୍ଚଳରେ ରହୁଥାଆନ୍ତା ଓ ରାଜ୍ୟ ସରକାର ବିକାଶମୂଳକ କାମ ପାଇଁ ଗ୍ରାଣ୍ଟ୍ ଦେଇଥାନ୍ତେ । ଅଞ୍ଚଳ ଅଧିକାରୀ ଅଞ୍ଚଳ ଶାସନର ପ୍ରତିନିଧିମାନଙ୍କ ଦ୍ୱାରା ନିୟନ୍ତ୍ରିତ ହୋଇଥାନ୍ତେ, ଇତ୍ୟାଦି । ଏହି ଆଇନ ଉପରେ ଲୋକମତ ସଂଗ୍ରହ କରାଯାଇଥିଲା ଓ ଦୀର୍ଘ ତିନିବର୍ଷ ଧରି ବିଧାନସଭାରେ ଆଲୋଚନା ହୋଇଥିଲା । ଏହି ଆଇନ ପାସ୍ ହେବା ପୂର୍ବରୁ ଏ ସମ୍ପର୍କୀୟ ସିଲେକ୍ଟ କମିଟି ବୈଠକ ୪୭ଥର ବସିଥିଲା ।

ବିଧାନସଭାର ଇତିହାସରେ କୌଣସି ଆଇନ ଉପରେ ଏଭଳି ଆଲୋଚନା ହୋଇ ସମସ୍ତଙ୍କ ମନକୁ ଗଲା ଭଳି ଆଇନର ସଂଶୋଧନ ହୋଇନଥିଲା । ୧୨-୧୨-୧୯୫୫ରେ ଏହି ଆଇନ ପାସ୍ ହେଲା । ସେଦିନ ନବକୃଷ୍ଣ ଚୌଧୁରୀ ଯାହା କହିଥିଲେ, ତାହା ବିଶେଷ ଉଲ୍ଲେଖଯୋଗ୍ୟ । ତହିଁରୁ କିଛି ଅଂଶ ନିମ୍ନରେ ଦିଆଗଲା । ଏହି ଆଇନ ପ୍ରଣୟନରେ ସେ କିଭଳି ଆତ୍ମସନ୍ତୋଷ ଲାଭ କରିଥିଲେ, ତାହା ଏଥିରୁ ଜଣାଯାଏ ।

'ଶ୍ରୀ ନବକୃଷ୍ଣ ଚୌଧୁରୀ (ମୁଖ୍ୟମନ୍ତ୍ରୀ) : ସଭାପତି ମହାଶୟ, ଅଞ୍ଚଳ ଶାସନର ଏ ଚିଠା ଆଇନ ଆଜି ଆଇନ୍‌ରେ ପରିଣତ ହେବାକୁ ଯାଉଛି । ଅନେକ ମାନ୍ୟବର ସଭ୍ୟ କହୁଛନ୍ତି ଯେ ଅନେକ ଦିନରୁ ଏହା ଆରମ୍ଭ ହୋଇ ଆଜି ଶେଷ ହେବାକୁ ଯାଉଛି । କେତେକ ମାନ୍ୟବର ସଭ୍ୟ ଆଶଙ୍କା କରିଛନ୍ତି ଯେ ଏ ଆଇନକୁ କାର୍ଯ୍ୟକାରୀ କରିବାରେ ଯଦି ଡେରି ହୁଏ, ତାହାହେଲେ ଦୁର୍ଭାଗ୍ୟର କଥା ହେବ । ଆସ୍କାର ମାନ୍ୟବର ସଭ୍ୟ କହିଲେ ଯେ, ଏ ମନ୍ତ୍ରିମଣ୍ଡଳ ଥାଉ ଥାଉ ଏହା କାର୍ଯ୍ୟକାରୀ ହେବା ଉଚିତ । ମୁଁ ଭାବୁଛି, ଆମେ ଥାଉ ଥାଉ ଯଦି ଏହା କାର୍ଯ୍ୟରେ ପରିଣତ ହୋଇଯାଏ, ତା'ହେଲେ ଅନ୍ତତଃ ମୋ' ଜୀବନରେ ଯେଉଁ Ambition ରହିଛି, ତାହା ପୂରଣ ହୋଇପାରିବ ନାହିଁ । ଏହା ପୂର୍ବରୁ ନିର୍ବାଚନ ହୋଇଗଲେ, ମୁଁ ଭାବୁଛି, କୌଣସି ଅଞ୍ଚଳରେ ଚେଷ୍ଟା କରି ମୁଁ ପଞ୍ଚାୟତର ସଭ୍ୟ ହେବି ଏବଂ ସେଠାରୁ ଅଞ୍ଚଳ ସଭା ସଭ୍ୟ ହୋଇ Chairman ହେବି । ସେପର୍ଯ୍ୟନ୍ତ ଏହାକୁ ରଖିଦିଆଯିବ, ଯେତେବେଳେ କି ଆମ ଅନ୍ତେ ମୁଁ ସେଠାକୁ ଯିବି । ତାହା ନ ହେଲେ ମୋ'ର ଯେଉଁ ଆକାଙ୍କ୍ଷା ରହିଛି, ତାହା ଅପୂରଣ ରହିଯିବ । ଆସ୍କାର ମାନ୍ୟବର ସଭ୍ୟ ମଧ୍ୟ ସେହିଭଳିଆ ଆକାଙ୍କ୍ଷା ରଖନ୍ତୁ । ସେ ଏ ଗୃହକୁ ନ ଆସି ଗୋଟିଏ ଅଞ୍ଚଳ ସଭାର Chairman ହେବା ପାଇଁ ଚେଷ୍ଟା କରନ୍ତୁ । ଭଞ୍ଜନଗର Advisory Committeeରେ ଥିବାରୁ ସେଠା ଅଫିସରମାନଙ୍କୁ ଏପରି ତାଲିମ କରିଦେଇପାରିଛନ୍ତି ଯେ ତାଙ୍କୁ ଶତମୁଖରେ ପ୍ରଶଂସା କରାଯାଉଛି । ସେ ଯଦି ଅଫିସରମାନଙ୍କୁ ସେହିପରି ତାଲିମ କରିବେ, ତାହାହେଲେ ସେଭଳି ଅଫିସର ଚାରିଆଡେ ହୋଇଯିବେ । ଅଞ୍ଚଳ ସଭାର Chairman ହେଲେ ଯେଉଁ ସୁଯୋଗ ମିଳିବ, ତାହା ମନ୍ତ୍ରୀ ହେଲେ ମିଳିବ ନାହିଁ କି M.L.A. ହେଲେ ମିଳିବ ନାହିଁ ବା ସରକାରୀ କର୍ମଚାରୀ ହେଲେ ମିଳିବ ନାହିଁ । ସେ ଯେଉଁ ସୁଯୋଗ ମିଳିବ, ତାହା ଲୋଭନୀୟ ବୋଲି ମନେହେଉଛି । ମୁଁ ବ୍ୟକ୍ତିଗତ ଭାବରେ ଭାବୁଛି ଯେ ୫ବର୍ଷ ମୁଖ୍ୟମନ୍ତ୍ରୀ ହେବାପରେ ଆଉ କି ପଦ ରହିଲା ଯେ ଜଣେ Ambition କରିବ ? ଯଦି କୌଣସି ପଦ ଲାଭ କରିବାକୁ ଇଚ୍ଛା ହୁଏ, ସେ ପଦ ହେଉଛି ଅଞ୍ଚଳ ସଭାର ଜଣେ Chairman ହୋଇପାରନ୍ତି, ତାହାହେଲେ ଜୀବନରେ ଗୋଟିଏ ବଡ଼ କାମ ହେବ । ବହୁତ ରକମ ଆଇନ କରାଗଲାଣି, ଟଙ୍କାପଇସାର ଅଭାବ ନାହିଁ, ଚାରିଆଡୁ ଅଭିଯୋଗ ଆସୁଛି ଯେ ଟଙ୍କା କାହିଁକି Surrender କରାଯାଉଛି, କଟକ ଜିଲ୍ଲାରେ

Development କାମ ପାଇଁ ଯେଉଁ ୫/୬ ଲକ୍ଷ ଟଙ୍କା ଦିଆଯାଇଥିଲା, ତାହା ଖର୍ଚ୍ଚ ହୋଇନପାରି Surrender କରାଯାଉଛି । ଅନେକ କହୁଛନ୍ତି ଯେ କର୍ମଚାରୀମାନଙ୍କ ଅଭାବ ହେତୁ ଟଙ୍କା ଖର୍ଚ୍ଚ ହୋଇପାରୁନାହିଁ । କିନ୍ତୁ ମୋ'ର ବିଶ୍ୱାସ ତାହା ନୁହେଁ । ମୁଁ ଭାବୁଛି, ନିକଟରେ ତତ୍ତ୍ୱାବଧାନ କରିବାକୁ କେହି ନଥିବାରୁ ଯେତେ କାମ ହୋଇପାରନ୍ତା, ସେତେ ହୋଇପାରୁ ନାହିଁ । କେନ୍ଦ୍ରୀଭୂତ ଶାସନରେ ଯେଉଁ ବ୍ୟବସ୍ଥା ରହିଛି, ସେଥିରେ ଅଯଥା ଏପାଖ ସେପାଖ ଦୌଡାଦୌଡିରେ ସମୟ ନଷ୍ଟ ହେଉଛି । କିନ୍ତୁ ଅଞ୍ଚଳ ଶାସନରେ ଯେଉଁ କର୍ମଚାରୀ ରହିବେ, ଜଣେ ସରକାରୀ କର୍ମଚାରୀ ହାରାହାରି ଯେତେ କାମ କରିପାରୁଛି, ସେ ତାଙ୍କଠାରୁ ଢେର୍ ବେଶି କାମ କରିପାରିବେ ବୋଲି ମୋ'ର ବିଶ୍ୱାସ । କାହିଁକିନା, ତାଙ୍କ ଉପରେ ନିକଟ ତତ୍ତ୍ୱାବଧାନ ରହିବ, କାମ ହୋଇପାରୁନାହିଁ ବୋଲି ଯେଉଁ ଅଭିଯୋଗ ହେଉଛି, ସେପରି ଅଭିଯୋଗ ବନ୍ଦ ହେବ ବୋଲି ମୋ'ର ବିଶ୍ୱାସ ।'...

ଏହି ଆଇନ କାର୍ଯ୍ୟକାରୀ ହେବା ପୂର୍ବରୁ ନବକୃଷ୍ଣ ଚୌଧୁରୀ ଇସ୍ତଫା ଦେଇ ଚାଲିଗଲେ । ଏହାଫଳରେ ଅମଲାତନ୍ତ୍ରର କ୍ଷମତା କ୍ଷୟପ୍ରାପ୍ତ ହୋଇଥାନ୍ତା ଓ ଶାସନ ଉପରେ ଲୋକଙ୍କର ପ୍ରଭାବ ଅଧିକ ପ୍ରତିଷ୍ଠିତ ହୋଇଥାନ୍ତା । ହରେକୃଷ୍ଣ ମହତାବ ପୁନର୍ବାର ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାପରେ ନବକୃଷ୍ଣ ଚୌଧୁରୀ ପ୍ରବର୍ତ୍ତନ କରିଥିବା ସବୁ କାର୍ଯ୍ୟକ୍ରମକୁ ସମାଲୋଚନା କରିବାକୁ ଓ ଭଣ୍ଡୁର କରିବାକୁ ଲାଗିଲେ । ତାଙ୍କର ଏହି ମନୋଭାବକୁ ଲକ୍ଷ୍ୟ କରି ଉଚ୍ଚ ସରକାରୀ କର୍ମଚାରୀମାନେ ଅଞ୍ଚଳ ଶାସନ ଆଇନକୁ ଅକାମୀ କରିଦେଲେ ।

ପରବର୍ତ୍ତୀ କାଳର ପଞ୍ଚାୟତ ସମିତି ଓ ଜିଲ୍ଲାପରିଷଦ ଆଇନର ବହୁ ପୂର୍ବରୁ ଏହି ଆଇନ ହୋଇଥିଲା ଏବଂ ଏହାର ପରିସର ଥିଲା ଅଧିକ ବ୍ୟାପକ । ଆଜି ବି ଏହି ଆଇନ ଶାସନ ବିକେନ୍ଦ୍ରୀକରଣ ଦିଗରେ ମଡେଲ୍ ହୋଇ ରହିଛି ।

**ଦଳେଇଘାଇ :**

କଟକଠାରୁ ଜଗତସିଂହପୁର ରାସ୍ତାରେ, ପ୍ରାୟ ୨୨ କିଲୋମିଟର ଦୂରରେ, ବଗୁଲା ବୋଲି ଗାଁଟିଏ ପଡ଼େ । ସେ ଗାଁରେ ବହୁ ପୂର୍ବରୁ ଏକ ବିରାଟ କେଉଟ ବସ୍ତି ଥିଲା; କେଉଟମାନଙ୍କର ସଂଜ୍ଞା ଥିଲା ଦଳେଇ । ବହୁ ବର୍ଷ ପୂର୍ବରୁ ସେହି ଦଳେଇ ସାହି ପାଖରେ ବିଲୁଆଖାଇ ନଦୀର ବନ୍ଧ ଭାଙ୍ଗି ସାଙ୍ଘାତିକ କ୍ଷୟକ୍ଷତି ହୋଇଥିଲା । ପରବର୍ତ୍ତୀ କାଳରେ ମାଛଗାଁ କେନାଲ ନିର୍ମାଣ ବେଳେ ସେହି ଘାଇରେ ବନ୍ଧ ହୋଇ ନିବୁଜ ହୋଇଯାଇଥିଲା । ହେଲେ, ସେହି ସ୍ଥାନର ନାମ 'ଦଳେଇ ଘାଇ' ବୋଲି ଲୋକମୁଖରେ ରହିଗଲା, ଯଦିଓ କେଉଟମାନେ ଅନ୍ୟ ଆଡକୁ ଚାଲିଯାଇଥିଲେ । ଆଗତ ଭବିଷ୍ୟ ମାଳିକାରେ କଳିଯୁଗ ଶେଷ ହେବା ବର୍ଣ୍ଣନାରେ ରହିଛି, ''ପ୍ରଳୟ କାଳ ଆସିଲେ ଦଳେଇଘାଇ ଭାଙ୍ଗିବ, ଆଉ ସେଠାରୁ ବଉଳା କୁମ୍ଭୀର ଯାଇ ଝଙ୍କଡ଼ ସାରଳା ଠାକୁରାଣୀଙ୍କୁ ଦର୍ଶନ କରିବ ।''

୧୯୫୫ ମସିହା ସେପ୍ଟେମ୍ବର ମାସ ୫ ତାରିଖ ସନ୍ଧ୍ୟା ବେଳକୁ କଟକ ସହର ଭିତରକୁ ବଢିପାଣି ପଶିବ ବୋଲି ଲୋକେ ଆତଙ୍କିତ । ରାତିସାରା ସରକାରୀ ଲୋକେ ତଥା ଜନସାଧାରଣ ନଦୀବନ୍ଧର ସୁରକ୍ଷା ଦିଗରେ ଲାଗିଥାନ୍ତି । ସହରବାସୀ ସମସ୍ତେ ଉଜାଗର । ରାତିପାହାନ୍ତାକୁ ଖବର ଆସିଲା ଯେ ଦଳେଇଘାଇଠାରେ ମାଛଗାଁ କେନାଲ ଭାଙ୍ଗିଛି । କିଛି ଲୋକ ପ୍ରଚାର ବି କଲେ, ସରକାର କଟକ ସହରକୁ ରକ୍ଷା କରିବାପାଇଁ କଟକର ତଳପଟେ ନଦୀବନ୍ଧ ରାତାରାତ୍ କାଟି ଦେଇଛନ୍ତି । ରାତି ନପାହୁଣୁ କଟକରୁ ଶହ ଶହ ଲୋକ ସେ ଆଡେ ଚାଲିଲେ । କିନ୍ତୁ ବେଶି ବାଟ ଆଗେଇପାରିଲେ ନାହିଁ । ମାଛଗାଁ କେନାଲ ବନ୍ଧ ଖାଲି ଦଳେଇଘାଇଠାରେ ଭାଙ୍ଗି ନଥିଲା, ବରଡାଠାରୁ ବହୁ ସ୍ଥାନରେ କେନାଲ ଭାଙ୍ଗିଥିଲା । ମହାନଦୀ ଶାଖା ନଦୀ କାଠଯୋଡି ଛଡା ବ୍ରାହ୍ମଣୀ ଓ ବୈତରଣୀରେ ବି ବଡ଼ ଧରଣର ବନ୍ୟା ଆସି ବହୁ କ୍ଷୟକ୍ଷତି କରିଥିଲା । ୧୯୫୫ ମସିହା ପୂର୍ବର ବନ୍ୟାରେ ଖଣ୍ଡେଇତା ଘାଇ ସମଗ୍ର ପୁରୀ ସବ୍‌ଡିଭିଜନକୁ ନାରଖାର କରିଥିଲା । ତେବେ ଦଳେଇଘାଇଜନିତ ବନ୍ୟା ଜଗତସିଂହପୁର, ତିର୍ତ୍ତୋଲ ଓ ଏରସମା ଭଳି, ନାନା ଦିଗରୁ ସୁରକ୍ଷିତ ଅଞ୍ଚଳ ଲାଗି ଥିଲା ଅତ୍ୟନ୍ତ ଆକସ୍ମିକ ଓ ଅଚିନ୍ତନୀୟ । କିନ୍ତୁ ଏହା ଯେତେ ଭୟାବହ ନଥିଲା, ମାଳିକାର ଭବିଷ୍ୟବାଣୀ ତାକୁ ଜନମାନସରେ ଆହୁରି ଭୟାବହ କରିଦେଇଥିଲା । ବନ୍ୟାଘେରର ଭିତର ଗାଁ ସହିତ ହଠାତ୍ ଯୋଗାଯୋଗ ନ ହୋଇପାରିବାରୁ କିଛି ଲୋକ କେବଳ ଅତିରଞ୍ଜିତ ଖବର ଦେଲେନାହିଁ, ସେତେବେଳର ମୁଖ୍ୟ ସମ୍ବାଦପତ୍ରରେ ଏଇ ଅତିରଞ୍ଜିତ ଖବର ଛାପିବାକୁ ବାଧ କରିଥିଲେ ।

'ସମାଜ'ର ସେହି ସମୟର ବାର୍ତ୍ତାସମ୍ପାଦକ ଉଦୟନାଥ ଷଡଙ୍ଗୀ ଏଭଳି ଏକ ଚାପରେ ପଡି ଏକ ସମ୍ବାଦ ପ୍ରକାଶ କରିଥିଲେ, ''ଜନରବ ଯେ, ଜଗତସିଂହପୁର ଥାନା ଟାଙ୍ଗିଆରେ ବେକେ ପାଣି ।'' ଏଥିଲାଗି ସେ ବହୁଦିନ ପର୍ଯ୍ୟନ୍ତ ମନସ୍ତାପ କରିଛନ୍ତି ବୋଲି ତାଙ୍କ ଆତ୍ମଜୀବନୀରେ ପ୍ରକାଶ କରିଛନ୍ତି । ଯେଉଁମାନେ କଲିକତା ଭଳି ଦୂର ସ୍ଥାନରେ ଥିଲେ, ସେମାନେ ଏହା ପଢି ଧରିନେଲେ, ମାଳିକାରେ ଯାହା ଲେଖା ଅଛି ଯେ କଳିଯୁଗ ଶେଷରେ ପ୍ରଳୟ ଆସିବ ଓ ଦଳେଇଘାଇ ଭାଙ୍ଗିବ, ତାହା ହିଁ ଘଟିଛି । ଏହି ବନ୍ୟାରେ ଛତିଶ ଜଣ ଲୋକ ପ୍ରାଣ ହରାଇଥିଲେ । ଅବଶ୍ୟ ୧ ଲକ୍ଷ ୮୧ ହଜାର ଏକର ଜମିର ଧାନ ଫସଲ ନଷ୍ଟ ହୋଇଥିଲା, ଦୁଇହଜାର ୮୬୬ ଏକର ଜମିରେ ବାଲି ଚରିଯାଇ ଅକାମୀ ହୋଇପଡିଥିଲା, ୧୫୬୧ଟି ଘର ସମ୍ପୂର୍ଣ୍ଣ ନିଶ୍ଚିହ୍ନ ହୋଇଯାଇଥିଲା, ୧୬,୫୯୩ଟି ଘର ଭାଙ୍ଗିପଡିଥିଲା ଏବଂ ୨୪ ହଜାର ୨୬୦ ବଖରା ଘରର ଆଂଶିକ କ୍ଷତି ଘଟିଥିଲା ବୋଲି ଯେଉଁ ସରକାରୀ ରିପୋର୍ଟ ବାହାରିଥିଲା, କ୍ଷତି ତାହାଠାରୁ ଅଧିକ ହୋଇଥିଲା । କିନ୍ତୁ ରାଜନୈତିକ ନେତା, କର୍ମୀ ଓ ସାଧାରଣ ଲୋକେ ବି ଏହାକୁ ବହୁଗୁଣ ଅଧିକ ବୋଲି ଦର୍ଶାଇ ଅଧିକ ସରକାରୀ

ସାହାଯ୍ୟ ନେବାପାଇଁ ଉଦ୍ୟମ କରିଥିଲେ । ନବକୃଷ୍ଣ ଚୌଧୁରୀ ଦିଲ୍ଲୀରୁ ଏ ଖବର ପାଇ ଫେରିଆସି ନିଜେ ରିଲିଫ୍ ପରିଚାଳନା ଓ ତଦାରଖ କରିଥିଲେ ।

ଏହି ସମୟକୁ ହରେକୃଷ୍ଣ ମହତାବ ବମ୍ବେର ଗଭର୍ଣ୍ଣର ଥାଆନ୍ତି । ନବବାବୁଙ୍କୁ ତଡି ତାଙ୍କୁ ମୁଖ୍ୟମନ୍ତ୍ରୀ କରିବା ଲାଗି ସେତେବେଳେ ଉଦ୍ୟମ ଆରମ୍ଭ ହୋଇଥାଏ । ଏଣୁ ତାଙ୍କ ସମ୍ବାଦପତ୍ର 'ପ୍ରଜାତନ୍ତ୍ର' ବନ୍ୟା ସାହାଯ୍ୟରେ ବିଭ୍ରାଟ ଓ ତୋଷରପାତ କଥା ମନଇଚ୍ଛା ବଢ଼ାଇକରି ଲେଖୁଥାଏ । ବାସ୍ତବରେ ସରକାର ଉଡାଜାହାଜରେ ଖାଦ୍ୟପୁଡିଆ, ଚାଉଳବସ୍ତା, ଲୁଣ, ଦିଆସିଲି ଆଦି ଅବୁଡା ଉଚ୍ଚ ସ୍ଥାନମାନଙ୍କରେ ପକାଇଥିଲେ । ଘାଇ ଭାଙ୍ଗିବାର ତିଦିଦିନ ପରେ ଆଇ.ଏ.ଏସ୍. ଅଫିସର ଅନିରୁଦ୍ଧ ଦାସ ସ୍ୱତନ୍ତ୍ର କ୍ଷମତା ପାଇ ସ୍ପେଶାଲ ଅଫିସର ରୂପେ ଜଗତସିଂହପୁର ଗଲେ ଓ ସଦର ସବ୍‌ଡିଭିଜନର ନଈ, ନାଳ ବାଟ ଏବଂ ରାସ୍ତାବାଟ ସମ୍ପର୍କରେ ପରିଚିତ ପୂର୍ବତନ ଏସ୍.ଡି.ଓ. ପଦ୍ମନାଭ ମିଶ୍ରଙ୍କୁ ଏ କାମ ପାଇଁ ଅଣାଗଲା । ଏମ୍.ଏଲ୍.ଏ. ମାନଙ୍କ ଛଡା ଅନ୍ୟ ବିଶିଷ୍ଟ ଲୋକପ୍ରତିନିଧିମାନଙ୍କ ଜରିଆରେ ବି ରିଲିଫ୍ ଦିଆଗଲା । ଏସବୁ ସତ୍ତ୍ୱେ 'ଦେଶର ଦୁର୍ଗତି ଦେଶର ରାଜା ମୁଣ୍ଡରେ' ବୋଲି ପୁରୁଣା କଥା ରହିଛି । ଏଣୁ ଏହି ଦଳେଇଘାଇ ବନ୍ୟା ନବବାବୁଙ୍କ ପାଇଁ କିଛି ଅପ୍ରିୟତା ସୃଷ୍ଟି କରିଥିଲା ।

**ସୀମା ଆନ୍ଦୋଳନ :**

ସ୍ୱାଧୀନତା ଆନ୍ଦୋଳନ କାଳରେ ଭାଷାଭିତ୍ତିକ ପ୍ରଦେଶ ଗଠନ କଥା କଂଗ୍ରେସ ଦଳ ଗ୍ରହଣ କରିଥିଲା । ମାନ୍ଦ୍ରାଜ ପ୍ରଦେଶରେ ତେଲୁଗୁ ଭାଷାଭାଷୀଙ୍କ ସଂଖ୍ୟା ଅଧିକ । କିନ୍ତୁ ସ୍ୱାଧୀନତା ମିଳିବାର ପାଞ୍ଚବର୍ଷ ପୂରିଯାଇଥିଲେ ବି ତେଲୁଗୁ ଭାଷାଭାଷୀଙ୍କ ଲାଗି ସ୍ୱତନ୍ତ୍ର ପ୍ରଦେଶ କଥା ଉଠୁନଥାଏ । ଠିକ୍ ସେହିଭଳି ଏକ ବିରାଟ ପ୍ରଦେଶ ଥିଲା ବମ୍ବେ । ସେଥିରେ ଗୁଜରାଟି ଲୋକେ ସଂଖ୍ୟାଧିକ ନଥିଲେ ବି ବମ୍ବେ ନଗରରେ ସେମାନେ ଶିଳ୍ପବାଣିଜ୍ୟ ଦିଗରେ ଆଧିପତ୍ୟ ବିସ୍ତାର କରି ବସିଥାନ୍ତି । ମରହଟ୍ଟାମାନେ ଲୋକସଂଖ୍ୟା ଦୃଷ୍ଟିରୁ ଅଧିକ ହେଲେ ବି ସେମାନେ ପଛରେ ପଡିଥିଲେ । ଏଣୁ ମରହଟ୍ଟାମାନେ ଏକ ସ୍ୱତନ୍ତ୍ର ପ୍ରଦେଶ ଦାବି କରିଥିଲେ । ଏହାଛଡା ବିଭିନ୍ନ ପ୍ରଦେଶର ସୀମା ବାହାରେ ପଡୋଶୀ ରାଜ୍ୟରେ କିଛି କିଛି ଅଞ୍ଚଳରେ ଲୋକ ରହିଯାଇଥିଲେ, ଯେଉଁମାନେ ନିଜ ଭାଷାଭାଷୀ ଲୋକଙ୍କ ରାଜ୍ୟ ସହିତ ମିଶିବା ପାଇଁ ଚାହୁଁଥିଲେ । ଏ ସମ୍ପର୍କୀୟ ଅସନ୍ତୋଷ କ୍ରମେ ତୀବ୍ର ଆକାର ଧାରଣ କଲା । ମାନ୍ଦ୍ରାଜ ପ୍ରଦେଶର ଜଣେ ବିଶିଷ୍ଟ ନେତା ପୋଟି ଶ୍ରୀରାମୁଲୁ ସ୍ୱତନ୍ତ୍ର ଆନ୍ଧ୍ରପ୍ରଦେଶ ଦାବି ଉପରେ ଅନଶନ କରି ଜୀବନ ହରାଇବା ପରେ ଅବସ୍ଥା ଏଡ଼େ ଅସମ୍ଭାଳ ହେଲା ଯେ କେନ୍ଦ୍ର ସରକାର ୧୯୫୩ ମସିହାରେ ରାଜ୍ୟ ପୁନର୍ଗଠନ କମିଶନ ଗଠନ କଲେ । ତହିଁରେ ବିଚାରପତି

ଫଜଲ ଅଲ୍ଲୀ, ହୃଦୟନାଥ କୁଞ୍ଜରୁ ଏବଂ କେ. ଏମ୍. ପାନିକର ସଦସ୍ୟ ରହିଲେ । ଭାଷାକୁ ଭିତ୍ତି କରି ନିଜ ରାଜ୍ୟ ବାହାରେ ଓ ପଡୋଶୀ ରାଜ୍ୟମାନଙ୍କରେ ରହିଯାଇଥିବା ଅଞ୍ଚଳ ସମ୍ପର୍କରେ ବିଭିନ୍ନ ରାଜ୍ୟ ନିଜନିଜର ଦାବି ପେଶ୍ କଲେ ।

୧୯୩୬ ମସିହା ଏପ୍ରିଲ ପହିଲାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲାବେଳେ ମଧ୍ୟପ୍ରଦେଶରେ ଫୁଲଝର, ବିନ୍ଦ୍ରା ନୂଆଗଡ଼, ବସ୍ତର ଓ ବିହାରରେ ସିଂହଭୂମି ସଦର, ଧଳଭୂମି ଏବଂ ମାନ୍ଦ୍ରାଜରେ ଟିକାଲି, ମଞ୍ଜୁଷା, ଜଳନ୍ତର ଆଦି ଓଡ଼ିଆବହୁଳ ଅଞ୍ଚଳ ରହିଯାଇଥିଲା । ପୁଣି ଗଡ଼ଜାତ ମିଶ୍ରଣ ବେଳେ ଓଡ଼ିଶା ସହ ଅନ୍ୟାନ୍ୟ ଗଡ଼ଜାତ ମିଶିବାର ବର୍ଷକ ପରେ ମୟୂରଭଞ୍ଜ ମିଶିବାରୁ ଓ ଷଢ଼େଇକଳା-ଖରସୁଆଁ ରାଜାମାନଙ୍କର ଅନିଚ୍ଛା ଯୋଗୁଁ ସେ ଦୁଇ ପୂର୍ବତନ ଗଡ଼ଜାତ ବିହାର ସହିତ ରହିଯାଇଥିଲା ।

ସୀମା କମିଶନ ଓଡ଼ିଶା ସୀମାର କିଛି ଅଦଳବଦଳ କଲେ ନାହିଁ । ଏହାଫଳରେ ଓଡ଼ିଶାବାସୀଙ୍କ ମଧ୍ୟରେ ଘୋର ଅସନ୍ତୋଷ ଦେଖାଦେଲା । କମିଶନ୍‌ଙ୍କ ଉକ୍ତ ସୁପାରିଶକୁ କେନ୍ଦ୍ର ସରକାର ଗ୍ରହଣ କରିନେବାରୁ, ଓଡ଼ିଶାବାସୀଙ୍କର ହତାଶା ଆନ୍ଦୋଳନମୁଖୀ ହେଲା । ବିଶେଷକରି ପୋଟି ଶ୍ରୀରାମୁଲୁଙ୍କର ଆତ୍ମୋତ୍ସର୍ଗ ଫଳରେ ଆନ୍ଧ୍ରପ୍ରଦେଶ ଗଠିତ ହେବାରୁ ଓଡ଼ିଶାର କଂଗ୍ରେସ ଦଳ ବି ଏହି ଆନ୍ଦୋଳନରେ ନେତୃତ୍ୱ ନେଲା । ଓଡ଼ିଶା ବିଧାନସଭାରେ ମୁଖ୍ୟମନ୍ତ୍ରୀ ପ୍ରାଦେଶିକ କଂଗ୍ରେସ ଦଳର ତୀବ୍ର ଅସନ୍ତୋଷ ପ୍ରକାଶ କରି ଏହା ଓଡ଼ିଶା ପକ୍ଷରେ ଗ୍ରହଣୀୟ ନୁହେଁ ବୋଲି ଘୋଷଣା କଲେ । ଓଡ଼ିଶାର କଂଗ୍ରେସ ବିଧାୟକମାନେ ଏହି ନିଷ୍ପତ୍ତି ଉପରେ ଇସ୍ତଫା ଦେବେ ବୋଲି କେନ୍ଦ୍ର ନେତୃତ୍ୱକୁ ଜଣାଇଲେ ।

ଓଡ଼ିଶାର କଂଗ୍ରେସ ସରକାର ଏହି ଆନ୍ଦୋଳନକୁ ଆବଶ୍ୟକ ନେତୃତ୍ୱ ଦେବା ଲାଗି ଏକ ଗୁପ୍ତ କମିଟି ଗଢି ତା' ହାତରେ ପ୍ରଚାର ଓ ପ୍ରଭାବ ବିସ୍ତାର ପାଇଁ କିଛି ଟଙ୍କାର ବ୍ୟବସ୍ଥା କରିଥିଲେ ଏବଂ ଜଣେ ଆଇ.ଏ.ଏସ୍. ଅଫିସରଙ୍କୁ ସେ ଦିଗରେ ନିଯୁକ୍ତ କରିଥିଲେ । ସେ ସମୟରେ ବମ୍ବେରେ ଥିବା ରାଜ୍ୟପାଳ ହରେକୃଷ୍ଣ ମହତାବ ନେହେରୁଙ୍କୁ ରାଜ୍ୟ ସରକାରଙ୍କର ଏସବୁ କାର୍ଯ୍ୟ ସମ୍ପର୍କରେ ଜଣାଇବା ଫଳରେ ନେହେରୁ ଓଡ଼ିଶା କଂଗ୍ରେସ ପ୍ରତି ଟିକିଏ ବିରକ୍ତ ହୋଇଯାଇଥିଲେ । ସେତେବେଳକୁ ମହତାବ ଓଡ଼ିଶାର ନବକୃଷ୍ଣ ଚୌଧୁରୀ ସରକାରଙ୍କୁ ବଦନାମ କରିବାକୁ ସବୁ ପ୍ରକାର ବାଟ ଧରିଥାନ୍ତି । କେନ୍ଦ୍ର ସରକାର ଓଡ଼ିଶା ପ୍ରତି କିଛି ସୁବିଚାର ନ କରିବାରୁ କଂଗ୍ରେସ ଦଳ ରାଜ୍ୟବାସୀଙ୍କ ଦ୍ୱାରା ନିନ୍ଦିତ ହେଲା । ଫଳରେ ଏହି ଆନ୍ଦୋଳନ ବିରୋଧୀ ଦଳମାନଙ୍କ ହାତକୁ ଚାଲିଯାଇଥିଲା । ସେମାନେ ଓଡ଼ିଶାକୁ ଭାରତବର୍ଷରୁ ଅଲଗା ହେବା ଧ୍ୱନି ବି ଦେଲେ ।

ଓଡ଼ିଶାରେ ସୀମା ଆନ୍ଦୋଳନ ବହୁଦିନ ଧରି ଚାଲିଲା ଓ କେତେକ ଦିନ ଧରି ରେଳ ଏବଂ ଡାକ ଯୋଗାଯୋଗ ବି ବନ୍ଦ ରହିଲା । ତାହା ସତ୍ତ୍ୱେ କେନ୍ଦ୍ର ସରକାର ଏ ଦିଗକୁ ଭ୍ରୂକ୍ଷେପ

କଲେ ନାହିଁ । ଆନ୍ଦୋଳନର ନେତାମାନେ ଦେଖିଲେ, ସବୁ ବନ୍ଦ ହେଲା, କିନ୍ତୁ ଆକାଶବାଣୀର କଟକ କେନ୍ଦ୍ର ଚାଲିଚି । ସେହି କେନ୍ଦ୍ରକୁ ପୂରା ଅଚଳ କରିବା ଲାଗି ଯେଉଁ ଉଦ୍ୟମ ହେଲା, ତାହାକୁ ପ୍ରତିହତ କରିବାକୁ ଯାଇ ପୋଲିସ୍ ଗୁଳି ଚଳାଇଲା ଓ ସୁନୀଲ ଦେ ନାମକ ଜଣେ ଯୁବକ ପ୍ରାଣ ହରାଇଲେ । ପୁରୀରେ ଉତ୍ତ୍ୟକ୍ତ ଜନତା ପୁରୀ ରେଳ ଷ୍ଟେସନର କେତେକ ଅଂଶ ପୋଡିବାକୁ ଉଦ୍ୟମ କରିବାରୁ ସେଠାରେ ଗୁଳି ଚାଲିଲା ଏବଂ ବେଙ୍ଗପାଣିଆ ନାମକ ବାଳକର ମୃତ୍ୟୁ ଘଟିଲା ।

କାନ୍ଥମାନଙ୍କରେ ଲେଖାହେଲା 'ନବକୃଷ୍ଣ ଚୌଧୁରୀ ! ବରଗଛ ଦେଖି ଦଉଡିଦିଅ ।' କଂଗ୍ରେସ ଦଳ ଏହାଫଳରେ ପୂରାପୂରି ଅପ୍ରିୟ ହୋଇଗଲା । ମନ୍ତ୍ରୀମାନଙ୍କୁ ଓ ବିଶେଷକରି ନବକୃଷ୍ଣ ଚୌଧରୀଙ୍କୁ ସଭାସମିତି କରାଇ ଦିଆହେଲା ନାହିଁ ଏବଂ ରେଭେନ୍‌ସା କଲିଜିଏଟ୍ ସ୍କୁଲ ପୁରସ୍କାର ବିତରଣ ସଭାରେ ତାଙ୍କ ଉପରକୁ ଟେକା ପଡିଥିଲା ।

ସୀମା ଆନ୍ଦୋଳନର ପ୍ରାରମ୍ଭରେ ଓଡ଼ିଶାରେ ସବୁ ଦଳ ମଧ୍ୟରେ ଯୋଗାଯୋଗ ଥାଇ କାର୍ଯ୍ୟ ଚାଲିଥିଲା । ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଷଢେଇକଳା ରାଜ୍ୟରୁ ପୁତ୍ରହୀନ ପାଟଣା ରାଜାଙ୍କର ପୁଅ ହୋଇ ଆସିଥିବାରୁ, ଷଢେଇକଳା ଓଡ଼ିଶାରେ ମିଶିବା ଲାଗି ତାଙ୍କର ବିଶେଷ ଆଗ୍ରହ ଥିଲା । ଏଣୁ ତାଙ୍କୁ ସେ ଦିଗରେ କେତେକ ଉଦ୍ୟମ କରିବାକୁ ପଡିଥିଲା । ରେଭେନ୍‌ସା କଲେଜର ଛାତ୍ରନେତାମାନେ ବିଭିନ୍ନ ତଥ୍ୟ ଯୋଗାଇବାଠାରୁ ଆରମ୍ଭ କରି ଜନମତକୁ ତେଜେଇବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ସୀମା କମିଶନ ନିକଟରେ ଚିଠା ଦାବି କରିବା ଓ ତାକୁ ଉପସ୍ଥାପନ କରିବା ଦାୟିତ୍ୱରେ ଥିଲେ ତତ୍କାଳୀନ ଅର୍ଥମନ୍ତ୍ରୀ ରାଧାନାଥ ରଥ । ଏହି ସମୟର ପାର୍ଲାମେଣ୍ଟ ସଦସ୍ୟ ରାଜେନ୍ଦ୍ରନାରାୟଣ ସିଂହଦେଓଙ୍କର ନବବାବୁଙ୍କୁ ଲେଖା ଏକ ପତ୍ର ଏବଂ ନବବାବୁଙ୍କର ତାଙ୍କୁ ଦିଆଯାଇଥିବା ଉତ୍ତର ନବବାବୁଙ୍କ ଚିଠିପତ୍ରରୁ ମିଳେ । ଏଥିରୁ ନବବାବୁଙ୍କର ଷଢେଇକଳା-ଖରସୁଆଁ ମିଶ୍ରଣ ସମ୍ପର୍କୀୟ ଆଭିମୁଖ୍ୟ ଜାଣିହୁଏ । ନବବାବୁଙ୍କର ସେହି ସମୟର ଏକ ତାରିଖ ନ ଥିବା ହାତଲେଖା ଚିଠିରୁ ଜଣାପଡେ ଯେ ସେ ସୀମା କମିଶନର ଦୁଇ ସଦସ୍ୟଙ୍କ ସହିତ ଆଲୋଚନା କାଳରେ ଖାଲି ଷଢେଇକଳା-ଖରସୁଆଁ ନୁହେଁ, ସିଂହଭୂମି ସଦର ସବ୍‌ଡିଭିଜନ ଓଡ଼ିଶାରେ ମିଶିବା ପାଇଁ ଯୁକ୍ତି ଦେଖାଇଛନ୍ତି । ନବବାବୁଙ୍କର ଯୁକ୍ତି ଥିଲା ଯେ ଯେହେତୁ କମିଶନ ସ୍ୱତନ୍ତ୍ର ଝାଡଖଣ୍ଡ ପ୍ରଦେଶ ପାଇଁ ରାଜି ନୁହନ୍ତି, ତେଣୁ ''ହୋ'' ସମ୍ପ୍ରଦାୟର ଆଦିବାସୀ ଓଡ଼ିଶାରେ ଅଧିକ ସଂଖ୍ୟାରେ ଥିବାରୁ ଓ ସିଂହଭୂମି ଏବଂ ଷଢେଇକଳା-ଖରସୁଆଁରେ 'ହୋ' ସଂଖ୍ୟାଧିକ ଥିବା ଯୋଗୁଁ ସେହି ସବୁ ଅଞ୍ଚଳ ଓଡ଼ିଶାରେ ମିଶିବା ଉଚିତ । ଏହି କଥାକୁ ବି ସେ ରାଜେନ୍ଦ୍ରନାରାୟଣ ସିଂହଦେଓଙ୍କୁ ଜଣାଇଥିଲେ ।

ଏହାସତ୍ତ୍ୱେ ଷଢ଼େଇକଳା ଓ ଖରସୁଆଁ ରାଜା ଓଡ଼ିଶାରେ ମିଶିବାକୁ ଅନାଗ୍ରହ ପ୍ରକାଶ କରିବା ଫଳରେ ଏବଂ ବିହାର ସରକାର 'ହୋ'ମାନଙ୍କୁ ମତାଇବା ଯୋଗୁଁ ଓଡ଼ିଶାର ଦାବି କେନ୍ଦ୍ର ସରକାର ଗ୍ରହଣ କରିପାରିନଥିଲେ ।

ସୀମା ଆନ୍ଦୋଳନ ପରେ ବିଧାନସଭାରେ ବିରୋଧୀ ଦଳମାନେ ତୀବ୍ର ସମାଲୋଚନା କରିଥିଲେ । କିନ୍ତୁ ନବକୃଷ୍ଣ ଚୌଧୁରୀଙ୍କ ଜବାବ ଏଭଳି ହୋଇଥିଲା ଯେ ସେ ସବୁ ଦୋଷ ବିରୋଧୀ ଦଳ ଉପରକୁ ଗଡ଼ାଇଦେଇଥିଲେ ବୋଲି ସେ ସମୟର ବିଧାୟକ ପ୍ରସନ୍ନ କୁମାର ଦାସ କହନ୍ତି । କାରଣ, ଯେଉଁ ଗଣତନ୍ତ୍ର ପରିଷଦ ଏହି ବିବାଦରେ ତୀବ୍ର ସମାଲୋଚନା କରିଥିଲା, ସେହି ଦଳର ରାଜାରାଜୁଡ଼ାମାନେ ପ୍ରଥମରୁ ଓଡ଼ିଶାରେ ମିଶିବାକୁ ବିରୋଧ କରୁଥିଲେ ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ପରେ ମିଶ୍ରଣ ପ୍ରସ୍ତାବରେ ରାଜି ହୋଇଯାଇଥିଲେ ବି ଷଢ଼େଇକଳା ଓ ଖରସୁଆଁ ରାଜା ଓଡ଼ିଶାରେ ମିଶିବାକୁ ଚାହୁଁ ନଥିଲେ । ସେଠାକାର ରାଜା ଆଦିବାସୀଙ୍କୁ ମତାଇ ବିହାରରେ ମିଶିବା ଲାଗି ଉଦ୍ୟମ କରୁଥିବାର ପ୍ରମାଣ ବି ମିଳିଥିଲା । ଏହାଛଡ଼ା ଏକ ଆନ୍ଦୋଳନକୁ ଗୋଟିଏ ସୀମା ପର୍ଯ୍ୟନ୍ତ ନେଲାପରେ ସେଥିରୁ ବିରତ ରହିବା କଥା । ମହାରାଷ୍ଟ୍ର ଓ ପଶ୍ଚିମବଙ୍ଗରେ ସେହିପରି ହେଲା । କିନ୍ତୁ ଓଡ଼ିଶାର ବିରୋଧୀ ଦଳମାନେ ଓଡ଼ିଶାକୁ ଭାରତବର୍ଷରୁ ଅଲଗା ହେବା ଧ୍ୱନି ବି ଦେଲେ ଏବଂ ନାନା ପ୍ରକାର ମିଛ ଗୁଜବ ପ୍ରଚାର କରି ଆନ୍ଦୋଳନକୁ ତେଜେଇରଖିବାକୁ ଚେଷ୍ଟା କରିଥିଲେ । ଏହାଫଳରେ ଓଡ଼ିଶା ପ୍ରତି କେନ୍ଦ୍ରର ମନୋଭାବ ଆହୁରି କଠିନ ହେଲା ।

ସରକାରଙ୍କର ସମସ୍ତ ସଫେଇ ସତ୍ତ୍ୱେ କଂଗ୍ରେସ ସରକାର ଓ ବିଶେଷକରି ନବକୃଷ୍ଣ ଚୌଧୁରୀ ଓଡ଼ିଶାବାସୀଙ୍କୁ ଧୋକା ଦେଲେ ବୋଲି ଧାରଣା ବଦ୍ଧମୂଳ ହୋଇଗଲା । ଏଭଳି ପରିସ୍ଥିତିରେ ନବବାବୁ ଇସ୍ତଫା ଦେଇଥିଲେ 'ହୀରୋ' ହୋଇଯାଇଥାନ୍ତେ ବୋଲି ତାଙ୍କର ଜଣେ ସହକର୍ମୀ ଓ ଶୁଭେଚ୍ଛୁ ଜୟକୃଷ୍ଣ ବିଶ୍ୱାଳଙ୍କ ମତ । କିଛିମାସ ପରେ ସେ ତ ଇସ୍ତଫା ଦେଲେ, ତେବେ ଏହି ମୌକାରେ ଇସ୍ତଫା ଦେଲେ ନାହିଁ କାହିଁକି ବୋଲି କେତେକ ସିଆଣିଆ ଲୋକ କହନ୍ତି । କିନ୍ତୁ ନବକୃଷ୍ଣ ଚୌଧୁରୀ ତାତ୍କାଳିକତାକୁ ବିଶ୍ୱାସ କରନ୍ତି ନାହିଁ । ନବବାବୁ ସବୁବେଳେ ବହୁ ଦୂରକୁ ଏବଂ ବ୍ୟାପକ ତଥା ମୌଳିକ ସ୍ୱାର୍ଥକୁ ଆଖିଆଗରେ ରଖି ନିଷ୍ପତ୍ତି ନିଅନ୍ତି । କୌଣସି ତାତ୍କାଳିକ ଜନପ୍ରିୟତା ଉପରେ ଭାସିଯାଇ କିଛି କରିବା ତାଙ୍କ ପ୍ରକୃତିବିରୋଧୀ । ସେ ଭାଗଚାଷୀ ଆଇନ ପାଇଁ ଇସ୍ତଫା ଦେବାକୁ ଧମକ ଦେଇଥିଲେ, ଅଥଚ ଷଢ଼େଇକଳା-ଖରସୁଆଁ ମିଶିବା ଲାଗି କାହିଁକି ଇସ୍ତଫା ଦେଲେ ନାହିଁ, ତାହା ଅନେକଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ଏଇଥିଲାଗି ସେ ଇସ୍ତଫା ଦେଇ ଚାଲିଗଲା ବେଳେ ଓଡ଼ିଶାର ଜନସାଧାରଣ ତାଙ୍କ ଭଳି ସଚ୍ଚୋଟ ଓ କର୍ମଠ ମୁଖ୍ୟମନ୍ତ୍ରୀଙ୍କ ଲାଗି ଶୋଚନା ପ୍ରକାଶ କରି

ନଥିଲେ, ବରଂ ଆନନ୍ଦିତ ହୋଇଥିଲେ । ନବକୃଷ୍ଣ ଚୌଧୁରୀ ଏ ବାବଦରେ ଯାହା କରିଥିଲେ, ସେସବୁ ଥିଲା ରାଜ୍ୟ କଂଗ୍ରେସ ଦଳର ନିଷ୍ପତ୍ତି । ତଥାପି ତାଙ୍କୁ ସବୁ ଦୋଷ ମୁଣ୍ଡେଇବାକୁ ହୋଇଥିଲା ।

## ଚାଷ ନ କରିଲେ ଜମି ରହିବ ନାହିଁ :

ରାଜା ମହାରାଜା ଓ ଜମିଦାରଙ୍କ ଉଚ୍ଛେଦ ପରେ ବି ସାମନ୍ତବାଦୀ ଶୋଷଣର ମଞ୍ଜି ଏ ପର୍ଯ୍ୟନ୍ତ ଆମ ସମାଜରେ ଗଭୀର ଭାବରେ ରହିଯାଇଛି । ପୁରାଣ ଯୁଗରୁ ବି ରାଜା ପ୍ରଜାଠାରୁ ଉତ୍ପନ୍ନ ଫସଲର ଏକ-ଷଷ୍ଠାଂଶ ପାଉଥିଲା । କିନ୍ତୁ ପରବର୍ତ୍ତୀ କାଳରେ ନାନା କାରଣରୁ ଚାଷୀ ଉପରେ କରଭାର ବଢ଼ିଯାଇଥିଲା । ଏପରିକି ଚାଷୀକୁ ତା'ର ଉତ୍ପନ୍ନ ଫସଲରୁ ଅଧେରୁ ଅଧିକ କର ଆଦି ବାବଦରେ ଦେବାକୁ ପଡ଼ିଲା । ପୂର୍ବେ ଛୋଟିଆ ଛୋଟିଆ ରାଜ୍ୟ ଥିଲା ଓ ରାଜା-ପ୍ରଜା ସମ୍ପର୍କ ଅନେକ ପରିମାଣରେ ପ୍ରତ୍ୟକ୍ଷ ଥିଲା ଏବଂ ରାଜାମାନଙ୍କର ବିଳାସବ୍ୟସନ ଏତେ ନଥିଲା । ରାଜା ନିଜେ ହଳ କରୁଥିବା କଥା ବି ଆମେ ଜନକ ମହାରାଜାଙ୍କ କଥାରୁ ଜାଣୁ । କିନ୍ତୁ ଇଂରେଜମାନେ ଭାରତବର୍ଷ ଛାଡ଼ିବା ବେଳକୁ ପ୍ରଜା ଉପରେ ତିନି ଚାରି ସ୍ତରର କର୍ତ୍ତା ରହିଯାଇଥିଲେ–ରାଜା, ଜମିଦାର, ମହାରାଜା ବା ନବାବ୍ ଉପରେ ଥିଲେ ସମ୍ରାଟ । ପୁଣି ରାଜାଙ୍କ ତଳେ ବି ଖଜଣା ଆଦାୟକାରୀ କର୍ମଚାରୀ ଗୋଟିଏ ବା ଦୁଇଟି ସ୍ତରରେ ରହୁଥିଲେ । ଏ ସମସ୍ତଙ୍କ ଭୋଗବିଳାସ ଏବଂ ରାଜ୍ୟର କର୍ମଚାରୀଙ୍କ ବାବଦ ବ୍ୟୟ ତଥା ଯୁଦ୍ଧ ଆଦି ବାବଦ ଖର୍ଚ୍ଚ, ଏହି ଚାଷୀଙ୍କଠାରୁ ହିଁ ମୁଖ୍ୟତଃ ଆଦାୟ ହେଉଥିଲା । ଭାରତ ବୋଇଲେ ଗାଁ ଓ ଗାଁ କହିଲେ ଚାଷୀ ବୋଲି ବିଚାର କରି ସ୍ୱାଧୀନତା ପୂର୍ବରୁ ବି ଉତ୍ପନ୍ନ ଫସଲର ଛଅ ଭାଗରୁ ଏକ ଭାଗ ରାଜସ୍ୱ ଦେବା କଥାକୁ ନୀତିଗତ ଭାବରେ କଂଗ୍ରେସ ଦଳ ଘୋଷଣା କରିଥିଲା ।

ଏଣୁ ରାଜା, ମହାରାଜା ଓ ଜମିଦାର ଗଲା ପରେ ଚାଷୀର ଜମିଜମା ବିଷୟରେ ନିଷ୍ପତ୍ତି ନେବାର ବେଳ ଆସିଥିଲା । ନବକୃଷ୍ଣ ଚୌଧୁରୀ ଏ ଦିଗରେ ଜଣେ ଧୁରନ୍ଧର ଲୋକ । ଚାଷୀଙ୍କ ପାଇଁ ଏଣିକି କ'ଣ କରାଯିବ ଓ ସେମାନଙ୍କୁ କେତେ ରାଜସ୍ୱ ଦେବାକୁ ହେବ, ସେ ବିଷୟରେ ଏକ ଚିଠା ଆଇନ କରିବାକୁ ସେ ବିଧାୟକ ଜୟକୃଷ୍ଣ ମହାନ୍ତି ଓ ତତ୍କାଳୀନ ରେଭିନିଉ ସେକ୍ରେଟେରୀଙ୍କୁ କହିଥିଲେ । ଏ ସମ୍ପର୍କରେ କଂଗ୍ରେସ ଦଳର ନିର୍ଦ୍ଧାରଣକୁ ଧ୍ୟାନରେ ରଖି, ଏକ ଚିଠା ଆଇନ ପ୍ରସ୍ତୁତ କରି, ସେମାନେ ନବବାବୁଙ୍କୁ ଦେଖାଇଥିଲେ । ନବବାବୁ ତାହାକୁ ରାଜସ୍ୱମନ୍ତ୍ରୀ ସଦାଶିବ ତ୍ରିପାଠୀଙ୍କୁ ଦେଖାଇବାକୁ କହିଥିଲେ । ସଦାଶିବବାବୁ ଏଭଳି ଏକ ଚିଠା ଆଇନ ଦେଖି ଟିକିଏ ଭାବିଲେ ଏବଂ କହିଲେ, ''ଆଇନ ତ ଠିକ୍ ହୋଇଛି ; ଦଳ ଗ୍ରହଣ କଲେ ହେଲା ।'' କାରଣ, ଜମିମାଲିକର ଭାଗ ଶତକଡ଼ା ୫୦ରୁ କମି ଶତକଡ଼ା

୧୭ ପାଇବା କଥାଟା ସେତେବେଳେ ଭାରତବର୍ଷରେ କୌଣସି ସ୍ଥାନରେ ନଥିଲା । ବଙ୍ଗ ପ୍ରଦେଶରେ ଖୁବ୍ ଚାଷୀ ଆନ୍ଦୋଳନ ହୋଇ ବି ସେତେବେଳେ 'ତେଭାଗା' ଆଇନ ଚାଲୁ ହୋଇ ବି ସବୁ ସ୍ଥାନରେ କାର୍ଯ୍ୟକାରୀ ହୋଇନଥାଏ । ଓଡ଼ିଶାରେ ଜମିମାଲିକ ୨/୫ ଅଂଶ ପର୍ଯ୍ୟନ୍ତ ପାଇବ ବୋଲି ଆଇନରେ ଥାଏ, ଯଦିଓ କାର୍ଯ୍ୟତଃ ଖୁବ୍ କ୍ବଚିତ୍ ସ୍ଥଳରେ ତାହା କାର୍ଯ୍ୟକାରୀ ହେଉଥାଏ । ନବବାବୁ ବି ଜାଣିଥିଲେ, କଂଗ୍ରେସ ଦଳର ନୀତି ଯାହା ଥାଉ ପଛେ କଂଗ୍ରେସର ବିଧାୟକ ଦଳ କେଉଁ ଏକ-ଷଷ୍ଠାଂଶ ରାଜସ୍ୱ କଥାରେ ରାଜି ହେବେ ନାହିଁ । ଏ ବିଷୟରେ ଆଲୋଚନା ହେଲେ ଟଣାଓଟରା ହେବ ଏବଂ ଏକଷଷ୍ଠାଂଶ ରାଜସ୍ୱ ବଦଳରେ ଏକଚତୁର୍ଥାଂଶ ରାଜସ୍ୱ କଥାରେ ଦଳ ରାଜି ହୋଇପାରେ ବୋଲି ନବବାବୁ ଅନୁମାନ କରିଥିଲେ । ଏଣୁ ଚିଠା ସ୍ତରରେ ସେଇଆ ଥାଉ ବୋଲି ସେ ସଦାଶିବବାବୁଙ୍କୁ କହିଥିଲେ ।

ଏ ଚିଠା ଆଇନ ଯେଉଁଦିନ ବିଧାନସଭାରେ ଆସିଲା, ସେଦିନ ଏକପ୍ରକାର ହୁଲସ୍ଥୁଲ ପଡ଼ିଗଲା । ଏ ବାବଦରେ ସବୁଠାରୁ ପ୍ରଗତିଶୀଳ ଦଳ ବୋଲି କଥିତ କମ୍ୟୁନିଷ୍ଟ ଦଳର ନେତା ଗୋବିନ୍ଦ ପ୍ରଧାନ କହିଲେ, "ବହୁତ ବେଶି ହୋଇଗଲା ।" ସେ ନିଜେ ଜଣେ ଧନୀ ଚାଷୀ । ତାଙ୍କ ଜମିରେ ଚାଷୀ ତାଙ୍କୁ ୨/୫ ଅଂଶ ଦିଏ । ସୋସାଲିଷ୍ଟ ଦଳର ନେତା ନିଶାମଣି ଖୁଣ୍ଟିଆ ବି ବିଚଳିତ ହେଲାଭଳି କହିଲେ । କଂଗ୍ରେସ ବିଧାନସଭା ଦଳର ଜରୁରୀ ବୈଠକ ବସିଲା । ଦଳର ଜଣେ ଟାଣୁଆ ସଭ୍ୟ ସୁରେନ୍ଦ୍ରନାଥ ପଟ୍ଟନାୟକ କହିଲେ, "ଏଭଳି ଆଇନ ପାସ୍ ହେଲେ ଗାଁକୁ ଗଲେ ଲୋକେ ଆମକୁ ପିଣ୍ଡାରେ ବସାଇଦେବେ ନାହିଁ ।" କଂଗ୍ରେସ ଦଳରେ ଏଭଳି ବୈପ୍ଲବିକ ଆଇନକୁ ସମର୍ଥନ କରିବା ଲୋକ ଥିଲେ ଖୁବ୍ କମ୍ । ଅନେକେ ନୀରବ ରହିଲେ । ନବବାବୁ କହିଲେ, କଂଗ୍ରେସ ଦଳ ଯାହାକୁ ନୀତିଗତ ଭାବେ ଗ୍ରହଣ କରିଛି, ତାକୁ ଯଦି ବିଧାୟକମାନେ ଗ୍ରହଣ ନ କରନ୍ତି, ସେ ଏବଂ ରାଜସ୍ୱମନ୍ତ୍ରୀ ଇସ୍ତଫା ଦେଇଦେବେ । ଏହା ଖବରକାଗଜରେ, ଦିଲ୍ଲୀରେ ବି ପ୍ରକାଶିତ ହୋଇଗଲା । ନେହେରୁ ଏ ଖବର ପାଇ ନବବାବୁଙ୍କୁ ଟେଲିଫୋନ୍ କରି ପଚାରିବା ସଙ୍ଗେସଙ୍ଗେ ଏକ ଚିଠିରେ ବାସ୍ତବ ପରିସ୍ଥିତି ଜାଣିବା ପାଇଁ ଚାହିଁଥିଲେ । ଦଳର ବିଧାୟକମାନେ ପ୍ରଥମ ବୈଠକରେ କିଛି ସ୍ଥିର କରିପାରିଲେ ନାହିଁ । ବହୁ ଆଲୋଚନା ପରେ ସ୍ଥିର ହେଲା ଯେ ଚାଷୀ ଉତ୍ପନ୍ନ ଫସଲର ୧/୪ ଅଂଶ ରାଜଭାଗ ଦେବ ।

ନବକୃଷ୍ଣ ଚୌଧୁରୀ ଭୋଟ୍‌କୁ ଆଖିଆଗରେ ରଖି କିଛି କରୁନଥିଲେ ବା କହୁନଥିଲେ । ଏହି "ଟେନାନ୍‌ସ ରିଲିଫ୍ ଆକ୍ଟ" ପାସ୍ ହେବା ଦିନ (୧୯୫୬ ମସିହାରେ ଏପ୍ରିଲ ୩ ତାରିଖ) ସେ ଖୋଲାଖୋଲି ଘୋଷଣା କଲେ ଯେ ନିଜେ ଚାଷ ନ କଲେ କେହି ଜମି ରଖିପାରିବେ ନାହିଁ । ବିଧାନସଭାରେ ତାଙ୍କର ସେଦିନର ଭାଷଣ ଅତି ତାତ୍ପର୍ଯ୍ୟପୂର୍ଣ୍ଣ ।

ସେହି ଆଇନ୍ ପାସ୍ ହେବାର ପ୍ରାୟ ୫୦ ବର୍ଷ ପୂରିବ । ଅଧିକାଂଶ ସ୍ଥାନରେ ଏବେ ଚାଷୀ ଉତ୍ପନ୍ନ ଫସଲର ଅଧେ, ରାଜଭାଗ ଭାବରେ, ଦେଉଛି । ଏହି ଆଇନ ଆଲୋଚନା କାଳରେ ସେଦିନ ଅନ୍ୟାନ୍ୟ ସଦସ୍ୟଙ୍କ ଆଲୋଚନା ସହିତ ଏକମତ ହୋଇ ନବକୃଷ୍ଣ ଚୌଧୁରୀ କହିଥିଲେ ଯେ ''ଆଇନ ଅଦାଲତରେ ଗରିବ ଲୋକ ନ୍ୟାୟ ପାଉନାହିଁ ।''

ଗରିବ ଲୋକେ ଏବେ ବି ନ୍ୟାୟ ପାଉନାହାନ୍ତି ଓ ନିକଟ ଭବିଷ୍ୟତରେ ସେମାନଙ୍କ ଅବସ୍ଥାର ପରିବର୍ତ୍ତନର ସୂଚନା ନାହିଁ । ସରକାରୀ କଳକୁ ଏ ଦିଗରେ ଲଗାଇବା ପାଇଁ କୌଣସି ଦଳର ଆନ୍ତରିକତା ନାହିଁ । ଦଳମାନଙ୍କୁ ଚଳାଇବା ପାଇଁ ଏବେ ବହୁତ ଟଙ୍କା ଦରକାର ହେଉଛି । ସେ ଟଙ୍କା ଗରିବ ଲୋକେ ଦେଇପାରିବେ ନାହିଁ । ଏଣୁ ଗରିବଙ୍କ ଦଳ ବୋଲି କହୁଥିବା ଦଳମାନେ ବି ସଙ୍ଗଠିତ ଶ୍ରମିକମାନଙ୍କ ସ୍ୱାର୍ଥରକ୍ଷା ପାଇଁ ହିଁ ଲାଗିଛନ୍ତି, ନିରିମାଖି ଚାଷୀଙ୍କ ପାଇଁ ଲାଗିବାକୁ ସେସବୁ ଦଳର ଦୃଷ୍ଟି ନାହିଁ ଓ ରାଜନୀତିକ ଦଳ ଛଡ଼ା ଅନ୍ୟ ସଙ୍ଗଠନ ଏ ଦିଗରେ ଆନ୍ତରିକତାର ସହ କିଛି କରୁନାହାନ୍ତି ।

ନବକୃଷ୍ଣ ଚୌଧୁରୀ ସବୁବେଳେ ସମୟଠାରୁ ପଚାଶ, ଶହେ ବର୍ଷ ଆଗୁଆ ଚିନ୍ତାରେ କଥା କହୁଥିଲେ ଓ କାମ କରୁଥିଲେ । ଏଭଳି ମୌଳିକ ପରିବର୍ତ୍ତନ ପାଇଁ ଦେଶ ସେତେବେଳେ ପ୍ରସ୍ତୁତ ନଥିଲା । ରାଜା, ଜମିଦାର ଓ ବ୍ରିଟିଶ ସରକାରଙ୍କୁ ହଟାଇବା ସହଜ ଥିଲା ; କିନ୍ତୁ ହଜାରହଜାର ଧନୀ ଚାଷୀଙ୍କ ବ୍ୟୂହ ଭେଦକରିବା ଏପର୍ଯ୍ୟନ୍ତ ବି ସମ୍ଭବପର ହୋଇନାହିଁ ।

ଯେତେବେଳେ ସେ ଲକ୍ଷ୍ୟ କଲେ ଯେ ଆଇନ ପାସ୍ କଲେ ବି କାର୍ଯ୍ୟ ହେଉନାହିଁ, ସେତେବେଳେ ତା'ର କାରଣ ସମ୍ପର୍କରେ ସେ ଅନୁଧ୍ୟାନ କରିଛନ୍ତି । ଜମିର ମାଲିକାନା ସମ୍ପର୍କରେ ବିନୋବାଙ୍କ ମୌଳିକ ଦୃଷ୍ଟିଭଙ୍ଗୀ ତାଙ୍କୁ ଭଲ ଏବଂ ଯୁକ୍ତିଯୁକ୍ତ ଲାଗିଲା । ଏଣୁ ବିଭିନ୍ନ ଦଳର ଚାଷୀସଙ୍ଗଠନକୁ ସାହାଯ୍ୟ କରିବା ସଙ୍ଗେସଙ୍ଗେ ସେ ଚାହୁଁଥିଲେ, ଜମିର ମାଲିକାନା ସମ୍ପର୍କରେ ଚାଷୀ ଭଲ ଭାବରେ ବୁଝୁ । ସେପର୍ଯ୍ୟନ୍ତ କାହିଁକି, ଆଜି ପର୍ଯ୍ୟନ୍ତ ବି ଗରିବ ଚାଷୀ, ଯେଉଁମାନେ ବଡ଼ ବଡ଼ ଧନୀ ଚାଷୀଙ୍କ ଜମି ଚାଷ କରୁଛନ୍ତି, ସେମାନଙ୍କର ନିଜର ମନୋବଳ ଆସୁନାହିଁ ଯେ ଜମି ଧନୀଚାଷୀର ନୁହେଁ, ତାହା ସମାଜର । କେବଳ ମାଲିକାନା କଥାଟା ଖୁବ୍ ଗଭୀରକୁ ଯାଇନଥିବା କୋରାପୁଟ ଭଳି ଆଦିବାସୀ ଅଞ୍ଚଳରେ ଭୂ-ଦାନ ଆନ୍ଦୋଳନ କାଳରେ, ବାରମ୍ବାର ଶୁଣିଲା ପରେ, ଆଦିବାସୀମାନଙ୍କର ବହୁ ପରିମାଣରେ ହୃଦ୍‌ବୋଧ ହୋଇଛି ଯେ ଜମି ସାହୁକାରର ନୁହେଁ । ସେ ଜଙ୍ଗଲ କାଟି ନାହିଁ, ମାଟିକୁ ସମତଳ କରିନାହିଁ କି ହିଡ଼ ଦେଇ ଜମିକୁ ଦୋରସ୍ତ କରିନାହିଁ । ଜମିକୁ ସେ ଠକିକରି ନେଇଛି ।

ଏହି ଆଇନ ପାସ୍ ହେବାର ପଚାଶ ବର୍ଷ ପୂରିଯାଇଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ତାହା କାର୍ଯ୍ୟକାରୀ ହୋଇପାରିନାହିଁ ସତ, କିନ୍ତୁ ଏଥିରୁ ନବକୃଷ୍ଣ ଚୌଧୁରୀଙ୍କର ଚାଷୀ ପାଇଁ ପ୍ରକୃତ ଆନ୍ତରିକତା ଜଣାପଡ଼େ ।

## ସମ୍ପୂର୍ଣ୍ଣ ନିଶା ନିବାରଣ ଆଇନ :

ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ନିଶାନିବାରଣ କାର୍ଯ୍ୟ ଅନେକ ଦୂର ଆଗେଇଥିଲା । ଏଣୁ ସେ ମୁଖ୍ୟମନ୍ତ୍ରିତ୍ୱ ତ୍ୟାଗ କରିବା ପୂର୍ବରୁ ସମ୍ପୂର୍ଣ୍ଣ ନିଶା ନିବାରଣ ଆଇନ ପାସ୍ ହୋଇଥିଲା । କିନ୍ତୁ ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ହୋଇ ଆସିବା ପରେ ଏହାକୁ କାର୍ଯ୍ୟକାରୀ କରାଇଦେଇନଥିଲେ । ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଗୋତି ପ୍ରଥା ବିଲୋପ ଆଇନ୍ ହେଉଛି ଅନ୍ୟତମ ଯୁଗାନ୍ତକାରୀ ଆଇନ । ଏହାଫଳରେ ଶହଶହ ବର୍ଷ ଧରି ଚଳିଆସିଥିବା ଗୋତି ପ୍ରଥା ଲୋପ ହେବା ଲାଗି ବାଟ ଫିଟିଯାଇଥିଲା ।

ଏହି ସମୟର ଅନ୍ୟାନ୍ୟ ପ୍ରଗତିଶୀଳ ଆଇନ ମଧ୍ୟରେ ଅଦାଲତ ପଞ୍ଚ ଆଇନ ଉଲ୍ଲେଖଯୋଗ୍ୟ । ଏହା ପ୍ରଚଳନ ହୋଇଥିଲେ ଗ୍ରାମସ୍ତରର ଛୋଟଛୋଟ ମକଦ୍ଦମା ଗାଁ ସ୍ତରରେ ମେଣ୍ଟିଯାଇଥାନ୍ତା ଏବଂ ସାଧାରଣ ଲୋକଙ୍କୁ କୋର୍ଟ କଚେରିକୁ ଦୌଡ଼ି ଖର୍ଚ୍ଚାନ୍ତ ହେବାକୁ ପଡ଼ିନଥାନ୍ତା ।

## ଗୃହର ନେତା ଭାବରେ :

ନବବାବୁ ୧୯୫୦ ଏପ୍ରିଲରେ ମୁଖ୍ୟମନ୍ତ୍ରୀ ହୋଇ ଆସିଲା ବେଳକୁ ବିଧାନସଭାରେ କଂଗ୍ରେସର ବିରାଟ ସାଖ୍ୟାଗରିଷ୍ଠତା ଥିଲା । ପୁଣି ଦେଶକୁ ସ୍ୱାଧୀନତା ଆଣିଦେବାର ଗୌରବ ସହିତ ଗଡ଼ଜାତ ମିଶ୍ରଣ ଫଳରେ କଂଗ୍ରେସ ଦଳ ଅପ୍ରତିହତ ଅବସ୍ଥାରେ ଥାଏ । ସେହି ସୁଯୋଗରେ ଜମିଦାରି ଉଚ୍ଛେଦ କରି କଂଗ୍ରେସ ଆହୁରି କିଛି ପାଦ ଆଗେଇ ଚାଲିଥାଏ । କିନ୍ତୁ ୧୯୫୨ ନିର୍ବାଚନ ପରେ କଂଗ୍ରେସ ସଂଖ୍ୟାଗରିଷ୍ଠତା ହରାଇବା ଫଳରେ ପରବର୍ତ୍ତୀ ମନ୍ତ୍ରିମଣ୍ଡଳରେ ତା'ର କର୍ତ୍ତୃତ୍ୱ ଅନେକ ହ୍ରାସ ପାଇଥାଏ । ଅବଶ୍ୟ ବିରୋଧୀ ଦଳ ଭାବରେ ଗଣତନ୍ତ୍ର ପରିଷଦ ସହିତ ସମାଜବାଦୀ ଦଳ ଓ ସାମ୍ୟବାଦୀ ଦଳ ଏକା ତାଳରେ ଚାଲିବା ସମ୍ଭବପର ହେଉନଥାଏ । ତାହା ଫଳରେ ବିରୋଧୀ ଦଳ ଶାସକ ଦଳକୁ ପରାସ୍ତ କରିବା ଅସମ୍ଭବ ହୋଇଥାଏ ।

୧୯୫୩ ମସିହା ବେଳକୁ କଂଗ୍ରେସ ଦଳ ଚାରୋଟି ଉପନିର୍ବାଚନରେ ହାରିଯିବାରେ ଉତ୍ସାହିତ ହୋଇ ବିରୋଧୀ ଦଳ ୨୨-୪-୧୯୫୩ ତାରିଖରେ ଓଡ଼ିଶା ବିଧାନସଭାରେ ସରକାର ବିରୋଧରେ ଅନାସ୍ଥା ପ୍ରସ୍ତାବ ଆଣିଥିଲେ । ତାହା ଥିଲା ଓଡ଼ିଶା ବିଧାନସଭାରେ ପ୍ରଥମ ଅନାସ୍ଥା ପ୍ରସ୍ତାବ । ଏହି ସମ୍ପର୍କୀୟ ବିତର୍କ ସାତଦିନ ଧରି ଚାଲିଲା । ପ୍ରାୟ ପ୍ରତ୍ୟେକ ସଦସ୍ୟ କିଛିନାକିଛି କହିଲେ । ଅନାସ୍ଥା ପ୍ରସ୍ତାବ ଉପରେ କିଭଳି ବିତର୍କ ହୁଏ, ତାହା ଅଧିକାଂଶଙ୍କୁ

ଜଣାନଥିଲା । ଗୃହର ନେତା ଏହା ଉପଲବ୍ଧି କରି କହିଥିଲେ ଯେ ଗୃହରେ ବହୁଦିନ ଅଯଥା ବିତର୍କ ହେଲା, ଯାହା ଦିନେ ବା ଦୁଇ ଦିନରେ ସରିଥାନ୍ତା । ଏହି ଦୀର୍ଘ ବିତର୍କର ଉତ୍ତରରେ ନବବାବୁ ଯେଉଁ ଭାଷଣ ଦେଇଥିଲେ, ତାହା ବିରୋଧୀ ଦଳଙ୍କୁ ଖୁବ୍ ବେକାଇଦାରେ ପକାଇଥିଲା । କାରଣ, ସେମାନଙ୍କ ମଧ୍ୟରେ ବିକଳ୍ପ ଶାସନ ଚଳାଇବା ଲାଗି ଆଗ୍ରହ ବା କାର୍ଯ୍ୟକ୍ରମ ନଥିଲା ।

ନବକୃଷ୍ଣ ଚୌଧୁରୀ ସଚ୍ଚୋଟ ଗଣତନ୍ତ୍ରବାଦୀ ଥିଲେ ଓ ଗଣତନ୍ତ୍ରର ଏକ ବିଶେଷ ଦିଗ କ୍ଷମତାର ବିକେନ୍ଦ୍ରୀକରଣ ଉପରେ ବିଶ୍ୱାସ କରୁଥିଲେ । ତାଙ୍କରି ସମୟରେ ବିଧାନସଭାରେ ଏଷ୍ଟିମେଟ୍ କମିଟି ଛଡ଼ା ବିଭିନ୍ନ ବିଭାଗ ପାଇଁ କମିଟିମାନ ଗଢ଼ାଯାଇଥିଲା ; ଯହିଁରେ ଉଭୟ ଶାସକ ତଥା ବିରୋଧୀ ଦଳର ସଦସ୍ୟମାନେ ରହୁଥିଲେ ଓ ସେମାନେ ସରକାରଙ୍କର ବିଭିନ୍ନ ବିଭାଗର କାର୍ଯ୍ୟକୁ ତଦାରଖ କରୁଥିଲେ ଏବଂ ମନ୍ତବ୍ୟ ଦେଉଥିଲେ ତଥା ସେମାନଙ୍କର ମନ୍ତବ୍ୟ କାର୍ଯ୍ୟକାରୀ ହେଉଛି କି ନାହିଁ, ତାହା ଦେଖୁଥିଲେ ।

ପୂର୍ବ ମନ୍ତ୍ରିମଣ୍ଡଳ ତୁଳନାରେ ନବକୃଷ୍ଣ ଚୌଧୁରୀଙ୍କ ଅମଳରେ ବର୍ଷରେ ଅଧିକ ସମୟ ବିଧାନସଭା ବସୁଥିଲା । ନିଜ ଦଳର ଓ ଅନ୍ୟ ଦଳର ସଦସ୍ୟମାନେ ସରକାରଙ୍କ କାର୍ଯ୍ୟକଳାପ ସମ୍ପର୍କରେ ଓ ବିଧିବିଧାନ ଉପରେ ଭଲ ଭାବରେ ମତ ଦିଅନ୍ତୁ ବୋଲି ସେ ଚାହୁଁଥିଲେ । ଏବେ ବିଧାନସଭାମାନଙ୍କରେ, ଏପରିକି ସଂସଦରେ, ଯେଉଁ ହଟ୍ଟଗୋଳ ହେଉଛି ଓ ମାଡ଼ ମରାମରି ପର୍ଯ୍ୟନ୍ତ ଅବସ୍ଥା ଯାଉଛି, ତାହା ସେତେବେଳେ ଅଚିନ୍ତନୀୟ ଥିଲା । ଏଭଳି ଅଶୋଭନୀୟ କାର୍ଯ୍ୟର ତ ବହୁ କାରଣ ଅଛି, ତେବେ ଏ ଦିଗରେ ଏକ ବଡ଼ କାରଣ ହେଲା, ଏବର ସରକାରର ଅନୁଚିତ କାର୍ଯ୍ୟ ସମ୍ପର୍କରେ, ବିରୋଧୀ ଦଳ ଜାଣିବାକୁ ଚାହିଁଲେ, ସରକାର ମିଛ କହୁଛନ୍ତି ବା ବାଆଁରେଇ ଦେଉଛନ୍ତି । ନବକୃଷ୍ଣ ଚୌଧୁରୀଙ୍କ ସରକାର କୌଣସି କଥା ଲୁଚାଇ ରଖୁନଥିଲେ ବା ବାଆଁରେଇ ଦେଉନଥିଲେ । ସରକାରୀ କର୍ମଚାରୀ ବା ମନ୍ତ୍ରୀ କିଛି ଗର୍ହିତ କାର୍ଯ୍ୟ କରିଥିଲେ, ତାହା ସ୍ୱୀକାର କରିବା ଦିଗରେ ଓ କ୍ଷେତ୍ର ବିଶେଷରେ ଦୁଃଖ ପ୍ରକାଶ କରିବା ବା କ୍ଷମା ମାଗିବାରେ ନବବାବୁଙ୍କର କୁଣ୍ଠା ନଥିଲା ।

**ଅଶାସକ :**

ପ୍ରଶାସକ କହିଲେ ଆମେ ଯାହା ସାଧାରଣ ଭାବରେ ବୁଝୁ, ସେ ଦୃଷ୍ଟିରୁ ନବକୃଷ୍ଣ ଚୌଧୁରୀଙ୍କର ଖୁବ୍ ଖ୍ୟାତି ନାହିଁ । ତାଙ୍କ ସମୟର କେତେକ ଅଫିସରଙ୍କଠାରୁ ସେ ସମୟର ପ୍ରଶାସନ ସମ୍ପର୍କରେ କିଛି କିଛି ଜାଣିବାକୁ ମିଳେ । ସେହି ସମୟର ତିନିଜଣ ବରିଷ୍ଠ କର୍ମଚାରୀ ସେମାନଙ୍କ ସ୍ମୃତିକଥାରେ ନବବାବୁଙ୍କ ବେଳର ପ୍ରଶାସନ ସମ୍ପର୍କରେ କେତେକ କଥା ଉଲ୍ଲେଖ କରିଛନ୍ତି ।

ସେ ସମୟର ଆଇ.ସି.ଏସ୍. ଅଫିସର ଶିବରମଣ, ନିଜର ଦକ୍ଷତା ଯୋଗୁଁ, ନବକୃଷ୍ଣ ଚୌଧୁରୀଙ୍କ ପ୍ରିୟପାତ୍ର ହୋଇପାରିଥିଲେ ବି ତାଙ୍କର କିଛି କାର୍ଯ୍ୟକୁ ନବବାବୁ ପସନ୍ଦ କରୁନଥିଲେ ବୋଲି ଜଣାଯାଏ । ନବବାବୁ ୧୯୫୩ ମସିହାରୁ ତାଙ୍କ ଗୁପ୍ତ ଚରିତ୍ର ରିପୋର୍ଟରେ ସେଭଳି କିଛି ଲେଖିଥିବା କଥା ଶିବରମଣ ବହୁ ପରେ ଜାଣିବାକୁ ପାଇଥିଲେ । ଏହାସତ୍ତ୍ୱେ ସେ ନବକୃଷ୍ଣ ଚୌଧୁରୀଙ୍କ ବିଚାରବତ୍ତା ତଥା ଉଦାରତା କଥା ସ୍ୱୀକାର କରିଛନ୍ତି । ଯଦି କେହି କିଛି ମତଲବ ନ ରଖି ଭଲ ଉଦ୍ଦେଶ୍ୟରେ କାମ କରୁକରୁ କିଛି ଭୁଲ୍ କରିଛି, ତାହା ନବବାବୁଙ୍କ ଦୃଷ୍ଟିକୁ ଆସିଲେ, ସେ ସେଗୁଡ଼ିକୁ ମାର୍ଜନା କରୁଥିଲେ ବୋଲି ଶିବରମଣଙ୍କ ସମେତ ବହୁ ଅଫିସର୍ ପ୍ରକାଶ କରିଛନ୍ତି । କର୍ମଚାରୀଙ୍କ ସ୍ମୃତିକଥାରେ ମନ୍ତ୍ରୀମାନଙ୍କ କଥା ବିଶେଷ ଉଲ୍ଲେଖ ନଥାଏ ; ଥାଏ ସହକର୍ମୀମାନଙ୍କ କଥା ଓ ବିଶେଷ ଭାବରେ ନିଜ କୃତିତ୍ୱର ବଡ଼ିମା । ସେ ସମୟର ଅନ୍ୟଜଣେ ବରିଷ୍ଠ କର୍ମଚାରୀ ରାମକ୍ରିଷ୍ଣୟା ନିଜ ସ୍ମୃତିକଥାରେ କେବଳ ପ୍ରଥମ ସାଧାରଣ ନିର୍ବାଚନ କାଳର ବଲାଙ୍ଗୀରଠାରେ ନେହେରୁଙ୍କ ସଭାପ୍ରସଙ୍ଗ ଉଲ୍ଲେଖ କରିଛନ୍ତି । ଉକ୍ତ ସଭାରେ ସରକାରୀ କର୍ମଚାରୀମାନେ ଯୋଗ ନ ଦେବା ଲାଗି ସେ ଏକ ନିର୍ଦ୍ଦେଶନାମା ଦେଇଥିଲେ । ସେକଥା ଶୁଣି ନବବାବୁ ଏକ କଡ଼ା ମନ୍ତବ୍ୟ ଦେଇଥିଲେ । ଏହା ଉପରେ ଆଇ.ଏ.ଏସ୍. ଅଫିସରମାନେ ପ୍ରତିବାଦ କରିବାରୁ ନବବାବୁ ଅନୁସନ୍ଧାନ କରି ଜାଣିପାରିଲେ ଯେ ତତ୍କାଳୀନ ଚିଫ୍ ସେକ୍ରେଟେରୀ ବି. ମୁଖାର୍ଜୀଙ୍କ ଭୁଲ୍ ନିର୍ଦ୍ଦେଶନାମା ଯୋଗୁଁ କଲେକ୍ଟର ଏଭଳି ନିର୍ଦ୍ଦେଶନାମା ଦେଇଥିଲେ । ଏଥିରେ ରାମକ୍ରିଷ୍ଣୟାଙ୍କର କିଛି ଦୋଷ ନଥିଲା । ନିଜେ ଏଭଳି ଏକ ଅନୁଚିତ ମନ୍ତବ୍ୟ ଦେଇଥିବାରୁ ନବବାବୁ ଦୁଃଖ ପ୍ରକାଶ କରିଥିଲେ । ଏହି ପ୍ରସଙ୍ଗ ଛଡ଼ା ନବକୃଷ୍ଣ ଚୌଧୁରୀ ପ୍ରଶାସନକୁ ଯେଉଁ ନୂତନ ଆଭିମୁଖ୍ୟ ଦେଇଥିଲେ ବା ଅଞ୍ଚଳ ଶାସନ ଭଳି ଯୁଗାନ୍ତକାରୀ ଆଇନ୍ ପ୍ରଣୟନ କରିଥିଲେ, ସେ ସମ୍ପର୍କରେ ରାମକ୍ରିଷ୍ଣୟାଙ୍କ ସ୍ମୃତିକଥାରେ କିଛି ଉଲ୍ଲେଖ ନାହିଁ । ନବବାବୁଙ୍କ ବିଚାରବତ୍ତା, ଉଦାରତା ତଥା ଦକ୍ଷତା ସମ୍ପର୍କରେ କେବଳ ଚିନ୍ତାମଣି ମିଶ୍ରଙ୍କ ଛଡ଼ା ପ୍ରାୟ ସମସ୍ତେ ଏକମତ । ତାଙ୍କ ଭଳି ଜଣେ ବ୍ୟକ୍ତି ରାଜନୀତିରେ ରହିପାରିଲେ ନାହିଁ ବୋଲି ଶିବରମଣ ବି ଦୁଃଖ ପ୍ରକାଶ କରିଛନ୍ତି ।

ଏହି ସମୟରେ ଅନ୍ୟଜଣେ ବରିଷ୍ଠ ଅଫିସର ହେଉଛନ୍ତି ଚିନ୍ତାମଣି ମିଶ୍ର, ଯେ କି ତାଙ୍କ ସ୍ମୃତିକଥା ''ଅର୍ଦ୍ଧଶତାବ୍ଦୀର ଅନୁଭୂତି''ରେ ନବବାବୁଙ୍କ ସମ୍ପର୍କରେ ଅନେକ ସ୍ଥାନରେ ଉଲ୍ଲେଖ କରିଛନ୍ତି । ନବବାବୁଙ୍କ ସମୟରେ ଚିନ୍ତାମଣି ମିଶ୍ର ଲୋକସମ୍ପର୍କ ଓ ଆଦିବାସୀ ବିଭାଗର ଡିରେକ୍ଟର ତଥା ସେକ୍ରେଟେରୀ ହୋଇପାରିବେ ନାହିଁ ବୋଲି ନିଷ୍ପତ୍ତି ହେବାରୁ ସେ ଇସ୍ତଫା ଦେଇ ଚାଲିଯାଇଥିଲେ । ସେଥିଲାଗି ତାଙ୍କର ନବବାବୁଙ୍କ ଉପରେ ଅତ୍ୟନ୍ତ କ୍ଷୋଭ । ଚିନ୍ତାମଣି ମିଶ୍ର ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ କିଛିକାଳ ରାଜନୀତିରେ ରହିବା ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ସରକାରଙ୍କର ପ୍ରଚାର ବିଭାଗରେ ଯୋଗ ଦେଇଥିଲେ ।

ରାଜନୀତିରେ ଥିଲାବେଳେ ସେ ନୀଳକଣ୍ଠ ଦାସଙ୍କର ଜଣେ ବିଶ୍ୱସ୍ତ ସହଯୋଗୀ ଭାବରେ କାର୍ଯ୍ୟ କରିଥିଲେ ଓ କିଛିକାଳ ଖୋର୍ଦ୍ଧା ଲୋକାଲ ବୋର୍ଡ଼ ଚେୟାରମ୍ୟାନ ଥିଲେ । ଅଳ୍ପଦିନ ଚାକିରି ଭିତରେ ସେ ସେକ୍ରେଟେରୀ ପଦ ପର୍ଯ୍ୟନ୍ତ ଉଠିପାରିଥିଲେ । ମୂଳରୁ ଚାକିରି ନ କରି ତାଙ୍କର ଏତେ ଉଚ୍ଚସ୍ତରକୁ ଉଠିବାଟା ଅନ୍ୟ ବରିଷ୍ଠ ଅଫିସରମାନଙ୍କ ପକ୍ଷରେ ଅସହ୍ୟ ହୋଇଥିଲା । ନବବାବୁଙ୍କ ମନ୍ତ୍ରିମଣ୍ଡଳରେ ଜଣେ ପ୍ରଭାବଶାଳୀ ମନ୍ତ୍ରୀ ଥିଲେ, ଯିଏ କି ଚିନ୍ତାମଣିବାବୁଙ୍କର ଏଭଳି ଏକ ସମ୍ମାନଜନକ ସ୍ଥାନରେ ରହିବାକୁ ସହ୍ୟ କରିପାରୁ ନଥିଲେ । ''ଅର୍ଦ୍ଧଶତାବ୍ଦୀର ଅନୁଭୂତି''ର ଗୋଟିଏ ସ୍ଥାନରେ ଉଲ୍ଲେଖ ଅଛି ଯେ, ଚିନ୍ତାମଣି ମିଶ୍ର ଏକ ସମୟରେ ତାଙ୍କ ସମ୍ବାଦପତ୍ରରେ କାର୍ଯ୍ୟ କରିବାକୁ ଯାଇଥିଲେ । ଉକ୍ତ ସମ୍ବାଦପତ୍ରର ସମ୍ପାଦକ ମହାଶୟ ଚିନ୍ତାମଣିବାବୁଙ୍କୁ ଡିକ୍ଟେସନ୍ ନେବାକୁ କହିବାରୁ ଚିନ୍ତାମଣିବାବୁ ଓଲଟି ତାଙ୍କୁ ଡିକ୍ଟେସନ୍ ନେବାକୁ କହି ତାଙ୍କ ପାଖରୁ ଚାଲିଆସିଥିଲେ । ଚିନ୍ତାମଣି ମିଶ୍ର ସେକ୍ରେଟେରୀ ପଦ ହରାଇବା ଦିଗରେ ଅନ୍ୟ ବରିଷ୍ଠ ଅଫିସରମାନଙ୍କ ଛଡ଼ା ଉକ୍ତ ମନ୍ତ୍ରୀଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିବାଭଳି ମନେହୁଏ । କିନ୍ତୁ ନବବାବୁ ତ ମୁଖ୍ୟମନ୍ତ୍ରୀ, ସେ କାହିଁକି ତାଙ୍କୁ ସହାୟତା ଦେଇପାରିଲେ ନାହିଁ ? ଏହାହିଁ ପ୍ରାୟ ଚିନ୍ତାମଣି ମିଶ୍ରଙ୍କର ଅଭିଯୋଗ । କିନ୍ତୁ ନବକୃଷ୍ଣ ଚୌଧୁରୀଙ୍କ କାର୍ଯ୍ୟର ଏକ ଧାରା ଥିଲା ଯେ ସହକର୍ମୀ ମନ୍ତ୍ରୀ ବା ଅଧିକସଂଖ୍ୟକ ବରିଷ୍ଠ ଅଫିସର ବା ଚିଫ୍ ସେକ୍ରେଟେରୀ ଅଥବା ବିଭାଗୀୟ ସେକ୍ରେଟେରୀଙ୍କ ମତରେ ସେ ସାଧାରଣତଃ ସମ୍ମତ ହୋଇଯାଉଥିଲେ । କୌଣସି ସ୍ଥାନରେ ତାଙ୍କ ପକ୍ଷରେ ସଂଖ୍ୟାଧିକ ମତ ନଥିଲେ ସେ ସଂଖ୍ୟାଧିକ ମତ ସୃଷ୍ଟି କରିବା ଲାଗି ଉଦ୍ୟମ କରୁଥିଲେ ; କିନ୍ତୁ ନିଜର ଇଚ୍ଛା ପୂରଣ ଲାଗି ପ୍ରତିବନ୍ଧକ ସୃଷ୍ଟି କରୁଥିବା ଅଫିସରଙ୍କୁ କାଏରନ୍ ବା ବିଜୁ ପଟ୍ଟନାୟକଙ୍କ ଭଳି ତତ୍କ୍ଷଣାତ୍ ବଦଳି କରୁନଥିଲେ ।

ଏଭଳି ଏକ ଛୋଟ ଘଟଣା କହନ୍ତି ବିଶିଷ୍ଟ ନୃତତ୍ତ୍ୱବିତ୍ ଲକ୍ଷ୍ମଣ ମହାପାତ୍ର । ସେ ଜଣେ ମେଧାବୀ ଛାତ୍ର ଥିବାରୁ ଏବଂ ନୃତତ୍ତ୍ୱ ସମ୍ପର୍କରେ ନବବାବୁଙ୍କର ବିଶେଷ ଆଗ୍ରହ ଥିବାରୁ, ଲକ୍ଷ୍ମଣ ମହାପାତ୍ରଙ୍କ କଲିକତା ବିଶ୍ୱବିଦ୍ୟାଳୟରେ ପଢ଼ିବା ବେଳେ ନବକୃଷ୍ଣ ଚୌଧୁରୀ ତାଙ୍କୁ ସାହାଯ୍ୟ କରିଥିଲେ । ଉଚ୍ଚଶିକ୍ଷା ପ୍ରାପ୍ତି ପରେ ଓଡ଼ିଶାର ଆଦିବାସୀଙ୍କ ସମ୍ପର୍କରେ ଗବେଷଣା କରିବା ଲାଗି ନବବାବୁ ଲକ୍ଷ୍ମଣ ମହାପାତ୍ରଙ୍କୁ ପ୍ରବର୍ତ୍ତାଇଲେ । ଲକ୍ଷ୍ମଣବାବୁ ଆଦିବାସୀ ଗବେଷଣା ବ୍ୟୁରୋରେ ଗବେଷକ ଭାବରେ ଯୋଗଦେଲେ ଏବଂ ନବବାବୁଙ୍କ ଘରେ ରହିଲେ । ସେତେବେଳକୁ ଚିନ୍ତାମଣି ମିଶ୍ରଙ୍କର ସେକ୍ରେଟାରୀ ପଦବୀରୁ କେବଳ ଡିରେକ୍ଟର ରହିବା ସମ୍ପର୍କରେ ଜୋର୍‌ସୋର୍ କଥା ଚାଲିଥାଏ ଓ ମୁଖ୍ୟମନ୍ତ୍ରୀ ତାଙ୍କ ପ୍ରତି ଅପ୍ରସନ୍ନ ବୋଲି ତାଙ୍କର ସମ୍ପୂର୍ଣ୍ଣ ଧାରଣା ହୋଇଥାଏ । ଲକ୍ଷ୍ମଣ ମହାପାତ୍ର ତାଙ୍କରି ଘରେ ରହିବା, ଚିନ୍ତାମଣି ବାବୁଙ୍କ ଅସହ୍ୟ ଲାଗୁଥିଲା । ଏହି ସମୟରେ ସେହି ବିଭାଗରେ ଏକ ଜଏଣ୍ଟ୍ ସେକ୍ରେଟେରୀ

ପୋଷ୍ଟ ସୃଷ୍ଟି ହେଲା । ଲକ୍ଷ୍ମଣ ମହାପାତ୍ର ସେ ପୋଷ୍ଟ୍ ଲାଗି ଉପଯୁକ୍ତ; କିନ୍ତୁ ଚିନ୍ତାମଣିବାବୁଙ୍କ ପାଖରେ ତାଙ୍କ ନାମ ଅଟକିଗଲା । ନବବାବୁଙ୍କ ଉପରେ ରାଗକୁ ଚିନ୍ତାମଣିବାବୁ ଲକ୍ଷ୍ମଣ ମହାପାତ୍ରଙ୍କ ଉପରେ ଶୁଝାଇଲେ । ଲକ୍ଷ୍ମଣବାବୁ ତାଙ୍କ ପଦୋନ୍ନତି କଥା ନବବାବୁଙ୍କୁ କହିବାରେ ନବବାବୁ କହିଥିଲେ, ''ସେକ୍ରେଟେରୀ ତ ଫାଇଲ ପଠାଉ ନାହାନ୍ତି, ମୁଁ କ'ଣ କରିବି ?'' ଲକ୍ଷ୍ମଣ ମହାପାତ୍ର ଏହି ଚାକିରିରୁ ବଞ୍ଚିତ ହେଲେ, କିନ୍ତୁ ନବବାବୁ ସେଥିଲାଗି ଚିନ୍ତାମଣି ମିଶ୍ରଙ୍କୁ ପଦେ ବି କହିଲେ ନାହିଁ । ଲକ୍ଷ୍ମଣବାବୁ ଅବଶ୍ୟ ଅନ୍ୟତ୍ର ଆକର୍ଷଣୀୟ ଚାକିରି ପାଇ ପରେ ବେଶ୍ ସୁନାମ ଅର୍ଜନ କଲେ, ଯାହା କି ଓଡ଼ିଶାରେ ରହିଥିଲେ କରିପାରି ନଥାନ୍ତେ ।

କ୍ଷୁବ୍ଧ ଚିନ୍ତାମଣି ମିଶ୍ରଙ୍କ ''ଅର୍ଦ୍ଧଶତାବ୍ଦୀର ଅନୁଭୂତି''ର ୧୮୭ ପୃଷ୍ଠାରେ ଲେଖାଅଛି, ''ମୋ ଦୁର୍ଭାଗ୍ୟକୁ, ଦୁର୍ଯୋଗକୁ ମହତାବବାବୁ ୧୯୫୦ରେ ପ୍ରଲୋଭନରେ ପଡ଼ିଗଲେ ଓ ନବବାବୁଙ୍କ ଭଳି ଜଣେ ଅଯୋଗ୍ୟ ବ୍ୟକ୍ତି ଆସି ମୁଖ୍ୟମନ୍ତ୍ରୀ ହୋଇଗଲେ । ତାଙ୍କ ସାଙ୍ଗକୁ ବି. ମୁଖାର୍ଜୀଙ୍କ ପରି ଅଯୋଗ୍ୟ ଚିଫ୍-ସେକ୍ରେଟେରୀ, ଠିକ୍ ଅବୁଝା ରାଜାକୁ ପାଳଚୁଣ୍ଟା ମନ୍ତ୍ରୀ... ।''

ନବବାବୁଙ୍କ ସମୟର ଜଣେ ଉଦୀୟମାନ ଆଇ.ଏ.ଏସ୍. ଅଫିସର କେ. ରାମମୂର୍ତ୍ତିଙ୍କ ମତରେ ନବକୃଷ୍ଣ ଚୌଧୁରୀ ଥିଲେ ଦେଶର ସେ ସମୟର ସବୁଠାରୁ ଭଲ ମୁଖ୍ୟମନ୍ତ୍ରୀଙ୍କ ମଧ୍ୟରୁ ଜଣେ । ତାଙ୍କର ସାଧୁତା ଥିଲା ଅତୁଳନୀୟ । ସମାଜର ତଳିଆ ଲୋକଙ୍କ ପ୍ରତି ନବବାବୁଙ୍କ ଆନ୍ତରିକତା ସମ୍ପର୍କରେ ରାମମୂର୍ତ୍ତିଙ୍କର ପ୍ରତ୍ୟକ୍ଷ ଅନୁଭୂତି ଥିଲା । ନବବାବୁଙ୍କ ମହାନୁଭବତାରେ ଅଫିସରମାନେ ମୁଗ୍ଧ ହୋଇଯାଉଥିଲେ ଓ ଅନିଚ୍ଛାକୃତ ଦୋଷ ପ୍ରତି ସେ ମୋଟେ ଭ୍ରୂକ୍ଷେପ କରୁନଥିଲେ । ଠିକଣା ଦିଗ୍‌ଦର୍ଶନ ପାଇଲେ ଲୋକ ନିଜର ଦୋଷକୁ ସୁଧାରିନେଇପାରିବ ବୋଲି ନବବାବୁଙ୍କର ଦୃଢ଼ ବିଶ୍ୱାସ ଥିବାରୁ ସେ ଛୋଟଛୋଟ ଦୋଷକୁ ମୋଟେ ଦୃଷ୍ଟି ଦେଉନଥିଲେ ଏବଂ କର୍ମଚାରୀମାନଙ୍କର ବ୍ୟକ୍ତିଗତ ଅସୁବିଧା ଉପଲବ୍ଧି କରୁଥିଲେ ।

ମହଲାନବିଶ୍‌ଙ୍କ ଚିଠା ଉପରେ ପ୍ରସ୍ତୁତ ପଞ୍ଚବାର୍ଷିକ ପରିକଳ୍ପନାରେ ଗ୍ରାମ୍ୟ ଶିଳ୍ପ ଓ ତଳ ଆଡୁ ଯୋଜନା କଥା ଦେଖି ନବବାବୁ ଖୁବ୍ ଉତ୍ସାହିତ ହୋଇ ଏହାକୁ କାର୍ଯ୍ୟକାରୀ କରିବାଲାଗି ଅଫିସର୍‌ମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ରାମମୂର୍ତ୍ତି ଏହି ଯୋଜନା ସମ୍ପର୍କରେ ତଳ ସ୍ତରରୁ ଆଲୋଚନା କରି ଅଧସ୍ତନ କର୍ମଚାରୀମାନଙ୍କୁ ପଞ୍ଚବାର୍ଷିକ ପରିକଳ୍ପନାର କାର୍ଯ୍ୟକ୍ରମ ବିଷୟରେ ଅବହିତ କରିବା କଥା ଶୁଣି ନବବାବୁ ଖୁବ୍ ଖୁସି ହୋଇଥିଲେ ।

ସେ ସମୟର ଅନ୍ୟ ଜଣେ ଅଫିସର ବାଞ୍ଛାନିଧି ଦାସ, ଯେ କି ପରବର୍ତ୍ତୀ କାଳରେ ସେକ୍ରେଟେରୀ ହୋଇପାରିଥିଲେ, ତାଙ୍କ ମତରେ ନବକୃଷ୍ଣ ଚୌଧୁରୀ ହେଉଛନ୍ତି ଓଡ଼ିଶାର

ସବୁଠାରୁ ଭଲ ମୁଖ୍ୟମନ୍ତ୍ରୀ । ସବୁ ଫାଇଲ୍ ସେ ବେଶ୍ ଅଧ୍ୟୟନ କରୁଥିଲେ ଏବଂ ସରକାରଙ୍କ ନୀତି ସେଥିରେ ଠିକ୍ ଭାବରେ ପ୍ରତିଫଳିତ ହୋଇଛି କି ନାହିଁ ଦେଖୁଥିଲେ । ସେ କାଳର ଆଉଜଣେ ଅଫିସର ଜଗନ୍ନାଥ ଦାସ, ଯେ କି ସେକ୍ରେଟେରୀ ହେବାପରେ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ସେ ନବବାବୁଙ୍କର ବିଚାରବତ୍ତା ସମ୍ପର୍କରେ ଉଚ୍ଚପ୍ରଶଂସା କରନ୍ତି ଓ ନବବାବୁ କୌଣସି ଅଭିଯୋଗ ଶୁଣିଲେ ତାକୁ ହୃଦ୍‌ବୋଧ ହେବା ପର୍ଯ୍ୟନ୍ତ ଅନୁଧ୍ୟାନ କରୁଥିଲେ ବୋଲି କହନ୍ତି ।

ଯେଉଁ ନବବାବୁ ନିଜର ପ୍ରିୟ ଯୁବକ ଲକ୍ଷ୍ମଣ ମହାପାତ୍ରଙ୍କ ପଦୋନ୍ନତି ସମ୍ପର୍କରେ ସେକ୍ରେଟେରୀଙ୍କୁ ପଦେ ବି କହିଲେ ନାହିଁ, ସେହି ନବକୃଷ୍ଣ ଚୌଧୁରୀ ପ୍ରଫୁଲ୍ଲ ପଟ୍ଟନାୟକଙ୍କ କ୍ଷେତ୍ରରେ ପବ୍ଲିକ୍ ସର୍ଭିସ୍ କମିସନ୍‌ର ସୁପାରିଶକୁ ବି ବଦଳାଇଛନ୍ତି ଶୁଣି ଆଶ୍ଚର୍ଯ୍ୟ ଲାଗେ ।

ଏହି ପ୍ରଫୁଲ୍ଲ ପଟ୍ଟନାୟକ ଦ୍ୱିତୀୟ ମହାସମରରୁ ଫେରି ସବ୍-ଡେପୁଟି ମାଜିଷ୍ଟ୍ରେଟ୍ ଭାବରେ କଟକ ମ୍ୟୁନିସିପାଲିଟିର ଆସେସ୍‌ମେଣ୍ଟ ଅଫିସର ଭାବରେ ଯୋଗ ଦେଇଥିଲେ । ତାଙ୍କୁ 'ଲଢ଼େଇ ଦୋପଟି' ବୋଲି କୁହାଯାଉଥିଲା । ସେ ଖୁବ୍ କଡ଼ା ଅଫିସର ଓ ସହରର ଘର ଟିକସ ବଢାଇଦେବେ ବୋଲି ଆଶଙ୍କା ଥାଏ । ଘର ବାବଦ ମ୍ୟୁନିସିପାଲିଟି ଟିକସ ନିର୍ଦ୍ଧାରଣ କାଳରେ କାନ୍ଥ ତାଡ଼ି ଦେଉଛନ୍ତି ବୋଲି ତାଙ୍କ ବିରୋଧରେ ଅଭିଯୋଗ ହୋଇଥିଲା । ନବବାବୁ ତ କଟକ ସହରର ବାସିନ୍ଦା । ସେ ଏହି ଅଭିଯୋଗ ଶୁଣି ବିନୋଦ କାନୁନ୍‌ଗୋଙ୍କ ଦ୍ୱାରା ଏହାର ତଦନ୍ତ କରାଇଥିଲେ । ଘରଟିର ଇଟା କାନ୍ଥ ମାଟିରେ ଯୋଡ଼ାଇ ବା ଚୂନ ବାଲିରେ ଯୋଡ଼େଇ ହୋଇଥିଲା (ସେତେବେଳକୁ ସିମେଣ୍ଟର ପ୍ରଚଳନ ଆରମ୍ଭ ମାତ୍ର), ତାହା ଜାଣିବା ଲାଗି ଆସେସ୍‌ମେଣ୍ଟ ଅଫିସର କାନ୍ଥର ସାମାନ୍ୟ ଅଂଶ ଖୋଲି ଦେଖୁଥିଲେ । ଏଣୁ ଅଭିଯୋଗ ଭିତ୍ତିହୀନ ଥିଲା ବୋଲି ନବବାବୁ ବିନୋଦ କାନୁନ୍‌ଗୋଙ୍କଠାରୁ ଜାଣିପାରିଥିଲେ । ଅସଲ ଡର ଥିଲା, ଲଢ଼େଇ ଦୋପଟି କାହା କଥା କିଛି ନଶୁଣି ନିଶ୍ଚୟ ଅଧିକ ଟିକସ ଧାର୍ଯ୍ୟ କରିଦେବେ । ଏଣୁ ତାଙ୍କ ବିରୋଧରେ ଅଭିଯୋଗ କଲେ ସେ ଏଠାରୁ ବଦଳି ହୋଇଯିବେ । ସତକୁ ସତ ସେ, କଟକବାସିନ୍ଦା ଜଣେ ବଡ଼ ଅଫିସରଙ୍କ ବାର୍ଷିକ ମ୍ୟୁନିସିପାଲିଟି ଟ୍ୟାକ୍‌ସକୁ, ଆଠଟଙ୍କାରୁ ଚାଳିଶଟଙ୍କାକୁ ବଢ଼ାଇଦେଇଥିଲେ । ଏହାଫଳରେ ଅବଶ୍ୟ ପରବର୍ତ୍ତୀ କାଳରେ ପ୍ରଫୁଲ୍ଲ ପଟ୍ଟନାୟକ ଉକ୍ତ ଅଫିସରଙ୍କ ବିଷଦୃଷ୍ଟିରେ ପଡ଼ିଥିଲେ ।

ପ୍ରଫୁଲ୍ଲ ପଟ୍ଟନାୟକ ପୁରୀରେ ମାଜିଷ୍ଟ୍ରେଟ୍ ଥିଲାବେଳେ ନିମାପଡ଼ା ଅଞ୍ଚଳର ରେସିଙ୍ଗା ମଠ ମହନ୍ତଙ୍କ ଭାଗଚାଷୀଙ୍କ ମକଦ୍ଦମା ତାଙ୍କ କୋର୍ଟରେ ପଡ଼ିଥିଲା । ସେହି ଚାଷୀମାନେ ପୂର୍ବରୁ ମଠ ମହନ୍ତଙ୍କ ବିରୋଧରେ ମକଦ୍ଦମା କରି ହାରିଯାଇଥିଲେ । ବିଧାୟକ ଜୟକୃଷ୍ଣ ମହାନ୍ତି ଓ ପଦ୍ମଚରଣ ସାମନ୍ତସିଂହାରଙ୍କ ପ୍ରେରଣା ପାଇ ଚାଷୀମାନେ ପୁଣି ମକଦ୍ଦମା

କରିଥିଲେ । ଚାଷୀମାନେ ମକଦ୍ଦମାରେ ହାରିଯିବା ପରେ ଏହି ଦୁଇ ନେତା ନବବାବୁଙ୍କୁ ଏ ବିଷୟ ଜଣାଇଲେ । ନବବାବୁ ତତ୍କାଳୀନ କଲେକ୍ଟର ବ୍ୟାରେନ୍‌ଙ୍କୁ ଏ ସମ୍ପର୍କରେ କାର୍ଯ୍ୟାନୁଷ୍ଠାନ ପାଇଁ କହିଥିଲେ । ପ୍ରଫୁଲ୍ଲ ପଟ୍ଟନାୟକ ରେସିଙ୍ଗା ମଠ ନିକଟରେ କ୍ୟାମ୍ପ କୋର୍ଟ ପକାଇ ମକଦ୍ଦମା ବୁଝିଲେ । ସମ୍ପୃକ୍ତ ମଠ ମହନ୍ତ ନିଜ ବଳଦ ଓ ହଳିଆଙ୍କ ସାହାଯ୍ୟରେ ଚାଷ କରନ୍ତି ବୋଲି ଦେଖାଇବା ଲାଗି ପାଖ ଗାଁରୁ କେତେକ ଲୋକଙ୍କ ବଳଦ ଆଣି ମଠ ନିକଟରେ ବାନ୍ଧିଥିଲେ । ଅନ୍ୟାନ୍ୟ ସାକ୍ଷ୍ୟ ଗ୍ରହଣ ପରେ ପ୍ରଫୁଲ୍ଲ ପଟ୍ଟନାୟକ ନିଜ ପିଅନ ସାହାଯ୍ୟରେ ବଳଦଗୁଡ଼ିକୁ ଫିଟାଇଦେବାକୁ ଆଦେଶ ଦେଲେ । ପଘାରୁ ଫିଟିଲା ପରେ ସେମାନେ ନିଜ ନିଜ ମାଲିକମାନଙ୍କ ଘରକୁ ଦୌଡ଼ି ପଳେଇଲେ । ପ୍ରଫୁଲ୍ଲବାବୁ ତାଙ୍କ ରାୟ ରିପୋର୍ଟରେ ଲେଖିଥିଲେ, ''ମଣିଷ ମିଛ କହିପାରେ, କିନ୍ତୁ ବଳଦ ଭୁଲ୍ କରିବ ନାହିଁ ।'' ଚାଷୀମାନେ ଏହି ମକଦ୍ଦମାରେ ଜିଣିବା ଖବର ନବକୃଷ୍ଣ ଚୌଧୁରୀଙ୍କ ନିକଟରେ ପହଞ୍ଚିଲା । ଜୟକୃଷ୍ଣ ମହାନ୍ତି ଓ ପଦ୍ମଚରଣ ସାମନ୍ତସିଂହାର ବଳଦଙ୍କ ସାକ୍ଷ୍ୟ କଥା ବର୍ଣ୍ଣନା କରି ପ୍ରଫୁଲ୍ଲ ପଟ୍ଟନାୟକଙ୍କ ବାହାଦୁରିର ପ୍ରଶଂସା କରିଥିଲେ । ସେକଥା ଶୁଣି ନବବାବୁ ଖୁବ୍ ହସିଥିଲେ ।

ଏହାପରେ ପ୍ରଫୁଲ୍ଲ ପଟ୍ଟନାୟକ ସବ୍-ଡେପୁଟିରୁ ଡେପୁଟି ହେବାର ସମୟ ଆସିଲା । ସରକାରଙ୍କର ସର୍ବୋଚ୍ଚ କମିଟି ତାଙ୍କ ନାମ ସୁପାରିଶ କରିଥିଲେ ହେଁ ପବ୍ଲିକ୍ ସର୍ଭିସ୍ କମିଶନରୁ ତାଙ୍କ ନାମ ସୁପାରିଶ ପାଇପାରିଲା ନାହିଁ । ଯେଉଁ ବଡ଼ ଅଫିସରଙ୍କ ଘରର ମ୍ୟୁନିସିପାଲିଟି ଟ୍ୟାକ୍ସ ସେ ୮ ଟଙ୍କାରୁ ୪୦ ଟଙ୍କାକୁ ବଢ଼ାଇଥିଲେ, ସେ ସେତେବେଳକୁ ପବ୍ଲିକ୍ କମିଶନର ଚେୟାରମ୍ୟାନ୍ । ପ୍ରଫୁଲ୍ଲବାବୁ ଅନ୍ୟ ଉପାୟ ନ ଦେଖି ନବକୃଷ୍ଣ ଚୌଧୁରୀଙ୍କୁ ଦେଖାକଲେ । ସେତେବେଳକୁ ନବବାବୁ ନିଜ ନିର୍ବାଚନ ଲାଗି ବଡ଼ଚଣାରେ ଅନେକ ସମୟ ରହୁଥିଲେ । ପ୍ରଫୁଲ୍ଲବାବୁ ସେଠାରେ ତାଙ୍କୁ ଦେଖାକରି ନିଜ ପଦୋନ୍ନତିର ପ୍ରତିବନ୍ଧକର କାରଣ ବୁଝାଇବା ସଙ୍ଗେ ସଙ୍ଗେ, ତାଙ୍କ ପ୍ରତି ସୁବିଚାର ନ ହେଲେ ସେ ଓଡ଼ିଶା ସରକାରଙ୍କ ଚାକିରି ଛାଡ଼ିଦେଇ ମାଲୟେସିଆ ଚାଲିଯିବେ ବୋଲି କହିଲେ । ଦ୍ୱିତୀୟ ମହାସମର କାଳରେ ଜଣେ ବ୍ରିଟିଶ ସାମରିକ ଅଫିସରଙ୍କ ସହିତ ତାଙ୍କର ଖୁବ୍ ଭଲ ପରିଚୟ ଥିଲା । ସେ ପ୍ରଫୁଲ୍ଲବାବୁଙ୍କୁ ମାଲୟେସିଆରେ ଅଧିକ ଦରମା ଓ ଉଚ୍ଚ ପଦବୀରେ ଚାକିରି ଦେବାକୁ ଚିଠି ଲେଖିଥିଲେ । ଏ କଥା ସେ ନବାବାବୁଙ୍କୁ କହିବାରୁ ନବବାବୁ କହିଥିଲେ, ''ଆମେ ଇଂରେଜମାନଙ୍କୁ ଆମ ଦେଶରୁ ତଡ଼ିଲୁ । ସେମାନେ ଏବେ ମାଲୟେସିଆରେ । ସେମାନେ ସେଠାରୁ ତଡ଼ାଖାଇ ହୁଏତ ଆଫ୍ରିକା ଯିବେ । ତୁମେ କ'ଣ ତାଙ୍କରି ସାଙ୍ଗରେ ମାଲୟେସିଆରୁ ଦେଶଦେଶ ବୁଲୁଥିବ ?'' ପ୍ରଫୁଲ୍ଲ ପଟ୍ଟନାୟକଙ୍କର ନବବାବୁଙ୍କ ସହିତ ଖୁବ୍ ଜଣାଶୁଣା ନଥିଲା । ତାଙ୍କର ସିଧାସଳଖ ମୁଖ୍ୟମନ୍ତ୍ରୀଙ୍କ ପାଖରେ ଅଭିଯୋଗ କରିବା ଏକ ଗୁରୁତର ଅପରାଧ । ତଥାପି ନବବାବୁ ତାଙ୍କ ଫାଇଲ୍ ମଗାଇ ସେହି ବଡ଼ଚଣାଠାରୁ ହିଁ ପବ୍ଲିକ୍ ସର୍ଭିସ୍ କମିଶନର ସୁପାରିଶକୁ ବଦଳାଇ ପ୍ରଫୁଲ୍ଲ ପଟ୍ଟନାୟକଙ୍କୁ ଡେପୁଟି କରାଇଥିଲେ ।

ଏହି ପ୍ରଫୁଲ୍ଲ ପଟ୍ଟନାୟକଙ୍କ ସହିତ ନବବାବୁଙ୍କର ଭେଟ ହୁଏ ବହୁ ବର୍ଷ ପରେ ନାଗାଲାଣ୍ଡରେ । ନାଗାଲାଣ୍ଡ କୌଣସି କାଳରେ ରାଜନୈତିକ ଭାବରେ ଭାରତବର୍ଷ ସହିତ ନଥିଲା । ଇଂରେଜମାନେ ଭାରତବର୍ଷକୁ ଲାଗିଥିବା ଏହି ଭଳି ବହୁ ଛୋଟ ବଡ଼ ଦେଶୀୟ ରାଜ୍ୟକୁ ଶାସନର ସୁବିଧା ଦୃଷ୍ଟିରୁ ଭାରତବର୍ଷର ବଡ଼ଲାଟଙ୍କ ଶାସନାଧୀନରେ ରଖିଥିଲେ । ଇଂରେଜମାନେ ଚାଲିଯିବା ପରେ ନାଗାମାନେ ସ୍ୱାଧୀନ ହେବାକୁ ଚାହିଁଲେ । ସେଥିପାଇଁ କିଛି ବିଦେଶୀ ଶକ୍ତି ଖାଲି ଅର୍ଥ ଦେଇ ସାହାଯ୍ୟ କଲେନାହିଁ, ଅସ୍ତ୍ରଶସ୍ତ୍ର ଯୋଗାଇଲେ ଏବଂ ସେମାନଙ୍କୁ ତାଲିମ ଦେଲେ । ଦିଲ୍ଲୀ ସରକାର ବହୁ ବର୍ଷ ପର୍ଯ୍ୟନ୍ତ ଏହି ନାଗା ଓ ମିଜୋମାନଙ୍କ ସମସ୍ୟାକୁ ଠିକ୍ ଭାବରେ ନବୁଝି ସେମାନଙ୍କୁ ପୋଲିସ ଓ ସୈନ୍ୟମାନଙ୍କ ସାହାଯ୍ୟରେ ଦମନ କରିବାକୁ ଲାଗିଲେ । ଭାରତ ସରକାରଙ୍କ ବିପୁଳ ଅସ୍ତ୍ରଶସ୍ତ୍ର ସହିତ ସୈନ୍ୟମାନେ ବି ନାଗା ବିଦ୍ରୋହ ଦମନ କରିପାରୁନଥାନ୍ତି । ନାଗାମାନେ ଭାରତୀୟ ଅଫିସରମାନଙ୍କୁ ଅପହରଣ କରିନେଇ ଏଭଳି ବୀଭତ୍ସ ଭାବରେ ହତ୍ୟା କରୁଥିଲେ ଯେ ବେସାମରିକ ଅଫିସରମାନେ ସେଠାକୁ ଶାସକ ଭାବରେ ଯିବାକୁ ଚାହୁଁ ନଥିଲେ । ଏଣୁ କେନ୍ଦ୍ର ସରକାର ଦ୍ୱିତୀୟ ମହାସମରରେ ଅଂଶ ଗ୍ରହଣ କରିଥିବା ପ୍ରଶାସକଙ୍କୁ ସେଠାକୁ ପଠାଇବା ଲାଗି ସ୍ଥିର କଲେ । ଓଡ଼ିଶାରେ ସେହି କାଟର ଜଣେ ଅଫିସର ଥିଲେ ପ୍ରଫୁଲ୍ଲ ପଟ୍ଟନାୟକ । ଅବଶ୍ୟ ବ୍ୟାରେନ୍‌ଙ୍କ ଭଳି ପଦୋନ୍ନତି ପାଇ ଆଇ.ଏ.ଏସ୍. ଅଫିସର ବି ଥିଲେ, କିନ୍ତୁ ଭାରତ ସରକାର ଏତେ ଉଚ୍ଚ ପାହ୍ୟାର ଅଫିସରଙ୍କୁ ସେଠାକୁ ପଠାଇବାକୁ ଚାହୁଁ ନଥିଲେ । ପ୍ରଫୁଲ୍ଲ ବାବୁ ସେଠାକୁ ଡେପୁଟି କମିଶନର ପଦବୀରେ ଗଲେ । ସେ ସାମରିକ ଢାଞ୍ଚାରେ ନାଗାମାନଙ୍କ ସନ୍ତ୍ରାସକୁ ସାମ୍ନା କଲେ । ଏହାଫଳରେ ନାଗାମାନଙ୍କ ପ୍ରତି ସହାନୁଭୂତିଶୀଳ ନେତା ଓ ସାମ୍ବାଦିକମାନେ ନାଗାଲାଣ୍ଡରେ ମାନବିକ ଅଧିକାର ଲଂଘନ ହେବାର ଅଭିଯୋଗ କଲେ । ଜୟପ୍ରକାଶ ସେଠାକୁ ଯାଇ ସେଇଆ ଅନୁଭବ କଲେ ଓ ସେହି ମର୍ମରେ ବିବୃତି ଦେଲେ । ତାଙ୍କ ସହିତ ନବକୃଷ୍ଣ ଚୌଧୁରୀ ବି ସେଠାରେ ବହୁ ବର୍ଷ ରହିଥିଲେ । ପ୍ରଫୁଲ୍ଲବାବୁ ନବବାବୁଙ୍କୁ ଭେଟି ସେଠାକାର ଅବସ୍ଥା କହିବା ସଙ୍ଗେସଙ୍ଗେ ପରିସ୍ଥିତି ଦୃଷ୍ଟିରୁ କଠୋର ପନ୍ଥା ନିଆଯାଇଥିବା ସପକ୍ଷରେ ଯୁକ୍ତି ଦେଖାଇଲେ । ନବବାବୁ ନାଗାମାନଙ୍କ ପ୍ରତି ସହାନୁଭୂତିଶୀଳ ଥିଲେ ବି ପ୍ରଫୁଲ୍ଲ ପଟ୍ଟନାୟକ ତଥା ଅନ୍ୟ ପ୍ରଶାସକମାନେ ତାଙ୍କ ବାଟରେ ଠିକ୍ ଅଛନ୍ତି ବୋଲି କହିଥିଲେ ।

ଅନ୍ୟ ଦିଗରେ ନାଗାମାନଙ୍କୁ ନବବାବୁ ବୁଝାଇଥିଲେ ଯେ ଏ ଯୁଗରେ ନାଗାଲାଣ୍ଡ ଏକ ଅଲଗା ଦେଶ ହୋଇ ରହିପାରିବ ନାହିଁ । ଭାରତବର୍ଷ ନାଗାଲାଣ୍ଡକୁ ଛାଡ଼ିଦେଲେ, ଚୀନ୍ ତିବ୍‌ବତକୁ ନିଜ ଦେଶରେ ମିଶାଇଦେଲା ଭଳି ନାଗାଲାଣ୍ଡକୁ ଦଖଲ କରିନେବ ବୋଲି ନବବାବୁ ସେମାନଙ୍କୁ ଚେତେଇଦେଇଥିଲେ । ନାଗାମାନେ ସଶସ୍ତ୍ର ବିଦ୍ରୋହ ବନ୍ଦ କଲେ

ନାଗାଲାଣ୍ଡକୁ ଅଲଗା ରାଜ୍ୟ କରିହେବ ଓ ତାକୁ ଯଥେଷ୍ଟ ସ୍ୱାୟତ୍ତ ଶାସନ କ୍ଷମତା ଦିଆଯାଇପାରିବ ବୋଲି ନବବାବୁ ସେମାନଙ୍କୁ ବୁଝାଇଥିଲେ । ସଶସ୍ତ୍ର ବିଦ୍ରୋହର ପରିଣାମ ନାଗାମାନଙ୍କ ପାଇଁ ମଙ୍ଗଳକର ହେବ ନାହିଁ ବୋଲି ସେ ସେମାନଙ୍କୁ କହିଥିଲେ । ଏହି ଲଢ଼େଇ, ପ୍ରତିଲଢ଼େଇ ଓ ବୁଝାମଣା ଉଦ୍ୟମ ବହୁ ବର୍ଷ ଚାଲିବା ପରେ ନାଗାଲାଣ୍ଡ ସମସ୍ୟାର ସମାଧାନ ବାଟ ଖୋଲିଯାଇଥିଲା । ଏହି କ୍ଷେତ୍ରରେ ଭାରତ ସରକାରଙ୍କର, ଜୟପ୍ରକାଶ ନାରାୟଣଙ୍କର ଏବଂ ନବକୃଷ୍ଣ ଚୌଧୁରୀଙ୍କର ଭିନ୍ନ ଭିନ୍ନ ଭୂମିକା ଓ ଦୃଷ୍ଟିଭଙ୍ଗୀ ଉଲ୍ଲେଖନୀୟ । ଖାଲି ଭୟ ସଞ୍ଚାର କରି ପ୍ରଶାସନିକ ସମସ୍ୟାର ସମାଧାନ କରିହେବ ନାହିଁ । ଅନେକ ସମୟରେ ପରିସ୍ଥିତି ବିଚାରରୁ ଅଭିଯୋଗକାରୀ ପକ୍ଷର ଯୁକ୍ତି ପ୍ରତି କାନ ଦେବାକୁ ହେବ; ଏହା ଥିଲା ନବବାବୁଙ୍କର ବିଚାର ।

ନବକୃଷ୍ଣ ଚୌଧୁରୀଙ୍କ ସମୟର ଅନ୍ୟଜଣେ ଉଚ୍ଚପଦସ୍ଥ କର୍ମଚାରୀ ଗୋପାଳଚନ୍ଦ୍ର ଦାସଙ୍କ ମତରେ ନବବାବୁ ଏତେ ଭଲ ମଣିଷ ଯେ କାହାକୁ ଦଣ୍ଡ ଦେବା ତାଙ୍କ ପକ୍ଷରେ ଅଚିନ୍ତନୀୟ ଥିଲା । ଶାସନରେ ଦାନ, ଦଣ୍ଡ ଭେଦ ନୀତି ରହିବା ଆବଶ୍ୟକ ବୋଲି ତାଙ୍କର ମତ । ସେହି ଦୃଷ୍ଟିରୁ ଦଣ୍ଡର ଭୟ ରହିଲେ କର୍ମଚାରୀମାନେ ଠିକ୍ ବାଟରେ ରହିବେ ବୋଲି ତାଙ୍କର ବିଚାର । ଦିବାକର ଶତପଥୀ, ଯେ ବି ନବବାବୁଙ୍କ ଅମଳରେ ଚାକିରି ଆରମ୍ଭ କରିଥିଲେ, ତାଙ୍କ ମତରେ ନବବାବୁ ଭଲ ଲୋକ, କିନ୍ତୁ ଶାସନରେ ଟିକିଏ ଫଁ ଦରକାର, ଯାହା କି ନବବାବୁଙ୍କର ନଥିଲା । ଏଣୁ ତାଙ୍କ ମତରେ ନବବାବୁ ସେହି ଦୃଷ୍ଟିରୁ ଆଦର୍ଶ ପ୍ରଶାସକ ନଥିଲେ ।

ଶିବରମଣ ନିଜ ସ୍ମୃତିକଥାରେ ଲେଖିଛନ୍ତି ଯେ ନବବାବୁ ଫରାସୀ ବିପ୍ଳବ ପରବର୍ତ୍ତୀ କାଳର କମ୍ୟୁନ୍ ଶାସନ ପଦ୍ଧତିକୁ ପସନ୍ଦ କରୁଥିଲେ, ଯେଉଁଥିରେ କର୍ମଚାରୀମାନେ ବି ନିର୍ବାଚିତ ହେଉଥିଲେ । ଶାସନର ଅଭିନବ ଦିଗ ଓ ଦର୍ଶନ ସମ୍ପର୍କରେ ଅବହିତ ଥିଲେ ବି ରାଜ୍ୟର ପରିସ୍ଥିତିକୁ ବିଚାରକୁ ନେଇ ନବବାବୁ କାର୍ଯ୍ୟ କରୁଥିଲେ । ଅଞ୍ଚଳ ଶାସନ ଆଇନ ପ୍ରଣୟନ ସମୟରେ ବହୁ ସଦସ୍ୟ ଚାହୁଁଥିଲେ ଯେ ଅଞ୍ଚଳ ଅଧିକାରୀଙ୍କ ଚାକିରି ପୂରାପୂରି ଅଞ୍ଚଳ ଶାସନ ଅଧୀନରେ ରହୁ । ଜିଲ୍ଲା ବୋର୍ଡ଼ ଚାଲିଥିଲା ବେଳର ଅଭିଜ୍ଞତାକୁ ଦର୍ଶାଇ ନବବାବୁ ଏଥିରେ ସହମତ ହୋଇନଥିଲେ । ଏହା ବଦଳରେ ସମ୍ପୃକ୍ତ ଅଫିସରଙ୍କ ଦକ୍ଷତା ସମ୍ପର୍କରେ ମତାମତ ଲିପିବଦ୍ଧ କରିବାପାଇଁ ଏବଂ ଆବଶ୍ୟକ ହେଲେ କଲେକ୍ଟରଙ୍କୁ ତାଙ୍କ ବିରୋଧରେ ଜଣାଇବା ଲାଗି ଉକ୍ତ ଆଇନରେ ବ୍ୟବସ୍ଥା ରହିଥିଲା । ଠିକ୍ ସେହିଭଳି ସମବାୟ ଆଇନ ପ୍ରଣୟନ ବେଳେ ସରଳବିଶ୍ୱାସୀ ଆଦିବାସୀମାନେ ଯେଭଳି ପ୍ରତାରିତ ନ ହୁଅନ୍ତି, ସେଥିପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରିବା ଲାଗି ସେ ତତ୍କାଳୀନ ସମବାୟ ରେଜିଷ୍ଟ୍ରାର ବିଘ୍ନରାଜ

ପଟେଲଙ୍କୁ ପରାମର୍ଶ ଦେଇଥିଲେ । ବିଧାନସଭାରେ ବହୁ ସଦସ୍ୟ ସରକାରୀ କର୍ମଚାରୀମାନଙ୍କୁ ଅଯଥା ସବୁ କଥାରେ ଦୋଷ ଦେଉଥିବାରୁ ସେ ବହୁ ସମୟରେ ଅସନ୍ତୋଷ ପ୍ରକାଶ କରିଛନ୍ତି ଏବଂ ବ୍ରିଟିଶ ଶାସନ କାଳରେ ତାଲିମ ପାଇଥିବା ବହୁ କର୍ମଚାରୀଙ୍କ ମଧ୍ୟରେ ସାଧୁତା ଓ ଲୋକଙ୍କ ପାଇଁ କାମ କରିବାର ନିଷ୍ଠାଥିବା ବିଷୟ ସେ ବିଧାନସଭାରେ ବହୁବାର ଉଲ୍ଲେଖ କରିଥିବାର ଜଣାଯାଏ । ଧମକଚମକ ବା ଫଁ ନଦେଖାଇ କିପରି ସର୍ବୋଚ୍ଚ ଅଫିସରମାନଙ୍କୁ ଠିକଣା ବାଟରେ ପକାଯାଇପାରେ, ତାହାର ଏକ ଦୃଷ୍ଟାନ୍ତ ପାରଳାଖେମୁଣ୍ଡିର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଯୁଗଳକିଶୋର ପାଣିଗ୍ରାହୀଙ୍କଠାରୁ ଜାଣିବାକୁ ମିଳେ । ନବବାବୁଙ୍କ ମୃତ୍ୟୁ ପରେ ସର୍ବୋଦୟ ପତ୍ରିକାର ଏକ ବିଶେଷାଙ୍କରେ ''ହେବ ତ ଏହାଙ୍କ ଭଳି ମନ୍ତ୍ରୀ ହେବ'' ଶୀର୍ଷକ ଲେଖାରେ ସେ ତାଙ୍କର ଏକ ଅଭିଜ୍ଞତା ବର୍ଣ୍ଣନା କରିଛନ୍ତି । ଏହି ଯୁଗଳକିଶୋର ପାଣିଗ୍ରାହୀ କାର୍ଯ୍ୟ ଉପଲକ୍ଷେ ନବକୃଷ୍ଣ ଚୌଧୁରୀଙ୍କ ପାଖକୁ ଭୁବନେଶ୍ୱର ଆସିଥାନ୍ତି । ସେହି ସମୟରେ ଦୁଇଜଣ ଆଇ.ସି.ଏସ୍. ଅଫିସର ନବବାବୁଙ୍କ ପାଖରେ ଆସି ପହଞ୍ଚିଲେ । ଜଣେ ଇଲେକ୍‌ଟ୍ରିକାଲ୍ ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟରଙ୍କ ବିରୋଧରେ ପ୍ରୋସିଡ଼ିଂ କରିବାକୁ ସେମାନେ ଏକ ଫାଇଲ ଧରି ଆସିଥିଲେ ।

ପ୍ରୋସିଡ଼ିଂର କାରଣ ହେଲା ଯେ ମୁରଲୀ ଆଚାର୍ଯ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ସମ୍ବଲପୁର ଇଲେକ୍‌ଟ୍ରିକ୍ ସପ୍ଲାଇ କମ୍ପାନୀକୁ ସରକାର ହାତକୁ ନେବାପାଇଁ ଉତ୍ତରାଞ୍ଚଳ ରେଭିନ୍ୟୁ କମିଶନର ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟରଙ୍କୁ ପ୍ରସ୍ତାବ ଦେବାଲାଗି କହିଥିଲେ । ଓଡ଼ିଆ ଶିଳ୍ପାନୁଷ୍ଠାନକୁ ବଞ୍ଚାଇରଖିବା ଉଦ୍ଦେଶ୍ୟରେ ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର ସେ ପ୍ରସ୍ତାବରେ ଅସମ୍ମତ ହୋଇଥିଲେ । କିନ୍ତୁ ଉତ୍ତରାଞ୍ଚଳ ରାଜସ୍ୱ କମିଶନର, ସମ୍ବଲପୁର ଇଲେକ୍‌ଟ୍ରିକ୍ ସପ୍ଲାଇ କମ୍ପାନୀକୁ ସରକାର ହାତକୁ ନେବା ଉଚିତ ବୋଲି ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟରଙ୍କ ମତାମତ ଫାଇଲ୍‌ରେ ନୋଟ୍ ଦେଇ, ଫାଇଲ୍‌ଟି ଧରି ଭୁବନେଶ୍ୱର ଆସି ପୂର୍ତ୍ତବିଭାଗ ସଚିବଙ୍କୁ ଦେଲେ । ସେ ଫାଇଲ୍ ପାଇ ପୂର୍ତ୍ତବିଭାଗ ସଚିବ, ରାଜସ୍ୱ କମିଶନଙ୍କ ଉପସ୍ଥିତିରେ, ଉକ୍ତ ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟରଙ୍କୁ ଫୋନ୍ ଯୋଗେ ରାଜସ୍ୱ କମିଶନର ଦେଇଥିବା ଅଭିମତର ସତ୍ୟାସତ୍ୟ ବିଷୟରେ ପଚାରିଲେ । ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର ଫୋନ୍‌ରେ ଜବାବ ଦେଲେ ଯେ, ''ରାଜସ୍ୱ କମିଶନର ମିଥ୍ୟାବାଦୀ, ସମ୍ବଲପୁର ଇଲେକ୍‌ଟ୍ରିକ୍ ସପ୍ଲାଇ କମ୍ପାନୀକୁ ସରକାର ହାତକୁ ନେବା ବିଷୟରେ ମୁଁ ଆଦୌ କହି ନାହିଁ ।'' ତା'ପରେ ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟରଙ୍କ ସହିତ କଥାବାର୍ତ୍ତା ହେବାକୁ ପୂର୍ତ୍ତବିଭାଗ ସଚିବ ରାଜସ୍ୱ କମିଶନରଙ୍କୁ ଫୋନ୍ ବଢ଼ାଇଦେଲେ । ରାଜସ୍ୱ କମିଶନର୍ ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟରଙ୍କୁ କହିଲେ, ''ଆପଣ ତ ସମ୍ବଲପୁର ଇଲେକ୍‌ଟ୍ରିକ୍ ସପ୍ଲାଇ କମ୍ପାନୀକୁ ସରକାର ହାତକୁ ନେବା ଉଚିତ ବୋଲି ସେଦିନ ମୋତେ କହିଥିଲେ ।'' ଏହା ଶୁଣିବାମାତ୍ରେ ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର କ୍ରୋଧରେ ରାଜସ୍ୱ କମିଶନରଙ୍କୁ ''ଆପଣ ମିଥ୍ୟାବାଦୀ'' କହି ଫୋନ୍ ରଖିଦେଲେ ।

ଏହି ଘଟଣାକୁ ସବିଶେଷ ବର୍ଣ୍ଣନା କରି ତାଙ୍କ ବିରୋଧରେ ପ୍ରୋସିଡିଂ କରିବା ପାଇଁ ଫାଇଲ୍‌ଟି ଧରି ଦୁଇଜଣଯାକ ସିନିଅର ଆଇ.ସି.ଏସ୍. ଅଫିସର ମୁଖ୍ୟମନ୍ତ୍ରୀଙ୍କ ନିକଟକୁ, ଅର୍ଡ଼ର ଆଣିବା ଉଦ୍ଦେଶ୍ୟରେ, ଯାଇଥିଲେ ।

କିନ୍ତୁ ମୁଖ୍ୟମନ୍ତ୍ରୀ ନବବାବୁ ଫାଇଲ୍‌ଟି କିଛିକ୍ଷଣ ପଢ଼ିବା ପରେ ପ୍ରଶ୍ନ କଲେ, ‘‘ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର ଅସାଧୁ ବ୍ୟକ୍ତି କି ?’’

ଉଭୟ ଏକସ୍ୱରରେ ଉତ୍ତର ଦେଲେ, ‘‘ନା, ସେ ନିତାନ୍ତ ସାଧୁ ଓ ସଚ୍ଚୋଟ ବ୍ୟକ୍ତି ।’’

‘‘ତେବେ କ’ଣ ସେ କର୍ମଠ ନୁହନ୍ତି କି ?’’

ସେହିପରି ଉଭୟେ ଏକସ୍ୱରରେ କହିଲେ, ‘‘ସେ ଅତ୍ୟନ୍ତ କର୍ମଠ ଏବଂ ଆନ୍ତରିକତାର ସହ ଦାୟିତ୍ୱ ତୁଲାଇବା ତାଙ୍କର ସ୍ୱଭାବ ।’’

ତା’ପରେ ମୁଖ୍ୟମନ୍ତ୍ରୀ ନବବାବୁ ଫାଇଲ୍‌ଟି ତାଙ୍କ ହାତକୁ ବଢ଼େଇଦେଇ କହିଲେ, ‘‘ସେ ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର ଯେବେ ସାଧୁ, ସଚ୍ଚୋଟ ଓ କର୍ମଠ ବ୍ୟକ୍ତି ବୋଲି ଆପଣମାନେ କହୁଛନ୍ତି, ତେବେ ତାଙ୍କ ବିରୋଧରେ ପ୍ରୋସିଡିଂ କାହିଁକି କରିବେ ? ଆମର ତ ସାଧୁ, ସଚ୍ଚୋଟ, କର୍ମଠ ଅଫିସରଙ୍କ ଅଭାବ ବେଶି । ତାଙ୍କୁ କହିଦିଅନ୍ତୁ, ଏଣିକି ସେ ଏପରି ମୁଖର ଭାବରେ କଥା କହିବେ ନାହିଁ ।’’

ଏତିକିରେ ସେ ଦୁଇ ସିନିୟର ଆଇ.ସି.ଏସ୍. ଅଫିସର ଫାଇଲ୍ ଧରି ନିରାଶ ହୋଇ ଫେରିଗଲେ ।

ସେ ସିନିୟର ଆଇ.ସି.ଏସ୍. ଅଫିସରଦ୍ୱୟ ହେଉଛନ୍ତି ମିଷ୍ଟର ଶିବରମଣ ଓ ମିଷ୍ଟର ଯୋନେକା ଏବଂ ଇଲେକ୍‌ଟ୍ରିକ ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର୍ ହେଉଛନ୍ତି ସଦାନନ୍ଦ ପାଢ଼ୀ (ସର୍ବୋଦୟ ପତ୍ରିକା ବିଶେଷାଙ୍କ, ପୃଷ୍ଠା–୧୪୩) ।

ନବବାବୁଙ୍କୁ ଖୁବ୍ ନିକଟରୁ ଦେଖିଥିବା ଏବଂ ସ୍ୱାଧୀନତା ଆନ୍ଦୋଳନରେ ତାଙ୍କର ଜଣେ ସହକର୍ମୀ ଭାବରେ କାର୍ଯ୍ୟ କରିଥିବା ପୂର୍ବତନ ବିଧାୟକ ବିରଜା ରାୟଙ୍କ ମତରେ ପ୍ରଶାସକ ଭାବରେ ପୂର୍ବତନ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ଥିଲେ ନବକୃଷ୍ଣ ଚୌଧୁରୀଙ୍କଠାରୁ ଅଧିକ ଦକ୍ଷ ପ୍ରଶାସକ । ପରାଧୀନ ଭାରତବର୍ଷରେ ଇଂରେଜ ଅଫିସର୍‌ମାନଙ୍କୁ, ଏପରିକି ଗଭର୍ଣ୍ଣରଙ୍କୁ, ବିଶ୍ୱନାଥ ଦାସ ଏପରି ରୋକ୍‌ଠୋକ୍ କଥା କହୁଥିଲେ ଯେ ତାହା ଏବେ ବି କିଛି ଲୋକଙ୍କ ଲାଗି କାହାଣୀ ହୋଇ ରହିଛି ।

ଶାସନକୁ ଆଇନ୍‌ର ଶାସନ ବୋଲି କୁହାଯାଇଥାଏ । କିନ୍ତୁ ଏକଥା କହିଲାବେଳେ ସେ ଆଇନ୍ କାହାର ସ୍ୱାର୍ଥ ଲାଗି ହୋଇଛି ଓ ତାକୁ କିଏ କରିଛି ଏବଂ କେଉଁଭଳି ତାହା କାର୍ଯ୍ୟକାରୀ ହେଉଛି, ସେସବୁ ବିଚାରକୁ ନେବାର କଥା । ସରକାର ବ୍ୟାପକ ଅର୍ଥରେ

ଗୋଟିଏ ଶ୍ରେଣୀର ସରକାର ଏବଂ ସେହି ସରକାର ନିଜ ଶ୍ରେଣୀର ସୁରକ୍ଷା ଓ ଅଭିବୃଦ୍ଧି ଲାଗି ହିଁ ମୁଖ୍ୟତଃ ସେସବୁ ଆଇନ୍ କରିଥାଏ । ଓଡ଼ିଶାରେ ନବକୃଷ୍ଣ ଚୌଧୁରୀଙ୍କ ପୂର୍ବରୁ ଯେଉଁ ବିଶ୍ୱନାଥ ଦାସ ଏବଂ ହରେକୃଷ୍ଣ ମହତାବଙ୍କର ପ୍ରଶାସକ ଭାବରେ ଖ୍ୟାତି ଅଛି, ସେମାନେ ଆସିଥିଲେ ସାମନ୍ତବାଦୀ ଶ୍ରେଣୀରୁ ଏବଂ ଶେଷ ପର୍ଯ୍ୟନ୍ତ ସେହି ଶ୍ରେଣୀ ପ୍ରତି ସହାନୁଭୂତିଶୀଳ ଥିଲେ । ନବକୃଷ୍ଣ ଚୌଧୁରୀ ମଧ୍ୟବିତ୍ତ ଶ୍ରେଣୀରୁ ଆସିଥିଲେ ବି, ଇଂରେଜୀରେ ଯାହାକୁ Declassed କହନ୍ତି, ସେ ସେହି ସ୍ତର ପର୍ଯ୍ୟନ୍ତ ନିଜକୁ ପୂରାପୂରି କିଭଳି ମିଶାଇଦେଇଥିଲେ, ସେ ସମ୍ପର୍କରେ ନାନା କାହାଣୀ ଶୁଣିବାକୁ ମିଳେ ।

ଶାସନ ଦାୟିତ୍ୱ ନେଲାପରେ ନବକୃଷ୍ଣ ଚୌଧୁରୀ ରାଜାମହାରାଜାଙ୍କୁ ଲୋପ କରିବା ଓ ଧନୀ ଚାଷୀ, ମହନ୍ତ ଓ ସାହୁକାରମାନଙ୍କ ଶୋଷଣ, ଅତ୍ୟାଚାର ଲୋପ ପାଇଁ କାର୍ଯ୍ୟକ୍ରମ ଗ୍ରହଣ କରିଥିଲେ । କିନ୍ତୁ ଜମିଦାରି ଉଚ୍ଛେଦ କଥା ଉଠିଲା ବେଳେ ହରେକୃଷ୍ଣ ମହତାବ କିଭଳି ଇତସ୍ତତଃ ହୋଇଛନ୍ତି, ତାହା The Land Revenue and Land Tenure Committee ରିପୋର୍ଟ ଉପରେ ମହତାବବାବୁଙ୍କ Note of Dissentରୁ ପରିଷ୍କାର ଜଣାପଡ଼େ । ଗଡ଼ଜାତ ରାଜାମହାରାଜାଙ୍କୁ ଲୋପ କରିବା କଂଗ୍ରେସର କାର୍ଯ୍ୟକ୍ରମରେ ତ ନଥିଲା । ମହତାବବାବୁ ମଧ୍ୟ ପରିସ୍ଥିତିରେ ପଡ଼ି ସେଥିରେ ସଂଶ୍ଳିଷ୍ଟ ହୋଇଛନ୍ତି । ସେହି ଆନ୍ଦୋଳନରେ ସେ ସାରଥି ନଥିଲେ, ଥିଲେ ସମର୍ଥକ । ଧନୀ ଚାଷୀମାନଙ୍କ ଶୋଷଣରୁ ସାଧାରଣ ଚାଷୀ ଓ ଗରିବ ଚାଷୀଙ୍କୁ ରକ୍ଷା କରିବା ଏବଂ ସେମାନଙ୍କ ସ୍ୱାର୍ଥରକ୍ଷା କରିବା ବିଶ୍ୱନାଥ ଦାସଙ୍କ ଚିନ୍ତାରେ ନଥିଲା । ସାମନ୍ତବାଦ ବିରୋଧରେ ନବକୃଷ୍ଣ ଚୌଧୁରୀଙ୍କ ଚିନ୍ତା ଓ କାର୍ଯ୍ୟର ପରିଧି ପର୍ଯ୍ୟନ୍ତ ବିଶ୍ୱନାଥ ଦାସ ଓ ହରେକୃଷ୍ଣ ମହତାବ ଯାଇପାରିନଥିଲେ । ନବକୃଷ୍ଣ ଚୌଧୁରୀ ଖାଲି ମୌଳିକ ଆଇନମାନ ପ୍ରଣୟନ କରି ନଥିଲେ, ଉନ୍ନୟନ କାର୍ଯ୍ୟ ଲାଗି; ଅପ୍ରିୟ ହେଲେ ବି, ନୂଆ କର ଟିକସ ବସାଇବା ଦିଗରେ ଇତସ୍ତତଃ ହୋଇନାହାନ୍ତି । ଏପରିକି Betterment levy ଭଳି ଅତି ଅପ୍ରିୟ ଆଇନ୍ ପାସ୍ କରାଇବା ଦିଗରେ ସେ କିଭଳି ସମର୍ଥ ହେଲେ, ତାହା ବାସ୍ତବିକ ଆଶ୍ଚର୍ଯ୍ୟ ଲାଗେ ।

'ଯେତିକି ଚୂନା, ସେତିକି ପିଠା' ନୀତିର ସେ ପକ୍ଷପାତୀ ନଥିଲେ । ଦେଶର ଉନ୍ନୟନ କାର୍ଯ୍ୟ ଲାଗି ଋଣ କରିବାକୁ ସେ ଇତସ୍ତତଃ ହୋଇନାହାନ୍ତି । କିନ୍ତୁ ଋଣ କରି ବର୍ତ୍ତମାନ ଭଳି ଅପବ୍ୟୟ କରିବା ଓ ନିଜେ ସେଥିରୁ ପଣି ନେବା, ତାଙ୍କ ସମୟରେ କଳ୍ପନାତୀତ ଥିଲା । ଶାସନରେ ବ୍ୟୟସଙ୍କୋଚର ପକ୍ଷପାତୀ ଥିଲେ ବି, ସେ ମୁଖ୍ୟମନ୍ତ୍ରୀ ଥିଲାବେଳେ, ମୟୂରଭଞ୍ଜ ମହାରାଜାଙ୍କର ଏକ ପୁରୁଣା ଉଡ଼ାଜାହାଜକୁ ଓଡ଼ିଶା ସରକାରଙ୍କ ତରଫରୁ କିଣାଯାଇଥିଲା । ସେ ନିଜେ ବଣପାହାଡ଼ ଅଞ୍ଚଳରେ ୨୦, ୨୫ କିଲୋମିଟର ଚାଲିବାରେ ଅଭ୍ୟସ୍ତ ଥିଲେ ବି ବିଧାନସଭାରେ ଯେତେବେଳେ ଉଡ଼ାଜାହାଜ କିଣା ସମ୍ପର୍କରେ ସମାଲୋଚନା ହୋଇଛି, ତାହା ସପକ୍ଷରେ ବେଶ୍ ଦୃଢ଼ ଯୁକ୍ତି ଉପସ୍ଥାପନ କରିଛନ୍ତି ।

ଶାସନ ତ ଖାଲି ଲୋକଙ୍କ ମଙ୍ଗଳ ପାଇଁ ହେଲେ ହେବ ନାହିଁ, ତାହା ଲୋକଙ୍କ ଦ୍ୱାରା ହେଲେ ଯାଇ ଲୋକଶାସନ ପ୍ରତିଷ୍ଠିତ ହେବ । ସେଥିଲାଗି ଗ୍ରାମପଞ୍ଚାୟତ ଆଇନ୍ କାର୍ଯ୍ୟକାରୀ କରିବା ପରେ ତାଙ୍କ କଳ୍ପନାପ୍ରସୂତ ଅଞ୍ଚଳ ଶାସନ ଆଇନ ପ୍ରଣୟନ ଦିଗରେ ସେ ବହୁତ ସମୟ ଦେଇଥିଲେ । ଲୋକେ ନିଜ ଅଞ୍ଚଳ କଥା ନିଜେ ବୁଝିବେ—ଶାସନର ବିକେନ୍ଦ୍ରୀକରଣ ଲାଗି ଏହା ଥିଲା ଏକ ଆଦର୍ଶ ଆଇନ୍ । ତଦ୍ୱାରା ଲୋକଙ୍କୁ କଲେକ୍ଟରଙ୍କ ଅଫିସ୍‌କୁ ଦୌଡ଼ିବାକୁ ପଡ଼ିନଥାନ୍ତା ଓ ଅଧିକ ଖର୍ଚ୍ଚାନ୍ତ ହେବାରୁ ସେମାନେ ରକ୍ଷା ପାଇଥାନ୍ତେ । ଭାରତବର୍ଷର କୌଣସି ରାଜ୍ୟରେ ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ ପ୍ରତିଷ୍ଠିତ ହେବାର ବହୁ ପୂର୍ବରୁ ନବକୃଷ୍ଣ ଚୌଧୁରୀ ଶାସନର ସୁଫଳ ଲୋକଙ୍କ ପାଖରେ ଶୀଘ୍ର ପହଞ୍ଚେଇବା ଉଦ୍ଦେଶ୍ୟରେ ଏହି ଆଇନ୍ କରାଇଥିଲେ । ଏବର ତହସିଲଦାର ଓ ଗୋଷ୍ଠୀ ଉନ୍ନୟନ ଅଧିକାରୀ ଏ ଦୁହିଁଙ୍କ କାମ ଜଣେ ଅଞ୍ଚଳ ଅଧିକାରୀ କରିଥାନ୍ତେ, ପ୍ରଶାସନିକ ଖର୍ଚ୍ଚ କମ୍ ହୋଇଥାନ୍ତା ।

ନୀତିଗତ ଦୃଷ୍ଟିରୁ ଆବଶ୍ୟକ ପଡ଼ିଥିଲା ବେଳେ ନବବାବୁ ତାଙ୍କର ଅତି ନିକଟ-ସମ୍ପର୍କୀୟ ନିତ୍ୟାନନ୍ଦ କାନୁନ୍‌ଗୋଙ୍କଠାରୁ ଘରୋଇ ବିଭାଗ କାଢ଼ିନେବା ଦିଗରେ ମୋଟେ ଇତସ୍ତତଃ ହୋଇନାହାନ୍ତି । ସେହିପରି ଦୀନବନ୍ଧୁ ସାହୁ ସମାଜବାଦୀମାନଙ୍କ ସହିତ ପ୍ରଥମ ଅବସ୍ଥାରେ ଥିଲେ ମଧ୍ୟ କେତେକ ଅନୁଚିତ କଥା ଦେଖି ସେ ତାଙ୍କଠାରୁ ବିକାଶ ବିଭାଗ କାଢ଼ିନେବା ଲାଗି ପଛେଇନାହାନ୍ତି । ଶାସନରେ କଠୋର ପଦକ୍ଷେପ ନେବାପାଇଁ ସେ କୌଣସି କ୍ଷେତ୍ରରେ ମୋଟେ ଦୁର୍ବଳତା ଦେଖାଇନାହାନ୍ତି । ନିଜ ଲୋକଙ୍କୁ କୌଣସି ଅନୁଗ୍ରହ ଦେଖାଇବା ଦିଗରେ ସେ ସର୍ବଦା ସଙ୍କୋଚ ପ୍ରଦର୍ଶନ କରୁଥିଲେ ବି ମନମୋହନ ଚୌଧୁରୀଙ୍କ ଶ୍ୱଶୁରଙ୍କୁ ଓଡ଼ିଶାର ଚାକିରି ଦେବା ସମ୍ପର୍କରେ ତାଙ୍କୁ ସମାଲୋଚନା କରାଯାଏ । ସେ ସମୟରେ ବହୁ ବଙ୍ଗୀୟ ଲୋକ ଶାସନର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ଥିବାରୁ ତାଙ୍କର ବଙ୍ଗାଳୀପ୍ରୀତି କଥା କେତେକ ଲୋକ କହନ୍ତି । କିନ୍ତୁ ସେ ସମୟରେ ଆବଶ୍ୟକ ସଂଖ୍ୟକ ଉଚ୍ଚଶିକ୍ଷିତ ଓଡ଼ିଆ ନଥିବାରୁ ଏବଂ ଘଟଣାଚକ୍ରରେ ଶିକ୍ଷିତ ବଙ୍ଗୀୟମାନେ ଓଡ଼ିଶାରେ ବସବାସ କରି ରହିଥିବାରୁ ଏଭଳି ହେବା ସ୍ୱାଭାବିକ ଥିଲା । କିନ୍ତୁ କାହାକୁ କୌଣସି ଅହେତୁକ ଅନୁଗ୍ରହ ଦେଖାଇବା ବା କାହାର କିଛି ଅପକର୍ମକୁ ଘଣ୍ଟ ଘୋଡ଼େଇବା ନବକୃଷ୍ଣ ଚୌଧୁରୀଙ୍କ ଚରିତ୍ରବିରୋଧୀ । ବ୍ୟକ୍ତିଗତ ଲାଭ ଉଦ୍ଦେଶ୍ୟରେ ନହେଲେ ବି ନବଜୀବନ ମଣ୍ଡଳ ଓ ବାଜି ରାଉତ ଛାତ୍ରାବାସ ଲାଗି ଅଥବା କୌଣସି ସର୍ବସାଧାରଣ କାମ ଲାଗି ମାଳତୀ ଦେବୀ ଉଚ୍ଚ ସରକାରୀ କର୍ମଚାରୀମାନଙ୍କୁ ଫୋନ୍ କରୁଥିବାର ଜଣାଯାଏ । ତେବେ, ମୁଖ୍ୟମନ୍ତ୍ରୀଙ୍କ ସହଧର୍ମିଣୀ ଭାବରେ ସେ ସମୟରେ ଫୋନ୍-କଥାବାର୍ତ୍ତା ନିର୍ଦ୍ଦେଶ ଦେବା ଭଳି ହୋଇଯାଇଥିଲା । ଏହା କେତେକ କର୍ମଚାରୀଙ୍କୁ ଭଲ ଲାଗି ନଥିଲା ।

ସବୁଠାରୁ ପଛୁଆ ଅଞ୍ଚଳ ପାଇଁ ତାଙ୍କର ଯେଉଁଭଳି ଗଭୀର ଅନୁଚିନ୍ତା ଥିଲା, ସେହିଭଳି ସମାଜର ସବୁଠାରୁ ନିମ୍ନରେ ଥିବା ଲୋକଙ୍କ ପ୍ରତି ତାଙ୍କର ସମ୍ବେଦନା ଥିବାର ଏକ ଦୃଷ୍ଟାନ୍ତ ତାଙ୍କ ଅନ୍ତରଙ୍ଗ ସହକର୍ମୀ ସଦାଶିବ ତ୍ରିପାଠୀଙ୍କଠାରୁ ଶୁଣିବାକୁ ମିଳେ । ଯେଉଁ ସମୟରେ ଜମିଦାରି ଓ ମଧ୍ୟସ୍ୱତ୍ୱାଧିକାର ଉଚ୍ଛେଦ ପାଇଁ ଆଇନ ହେଲା, ସେତେବେଳେ ବ୍ରହ୍ମୋତ୍ତର ଭାବରେ ନିଷ୍କର ଜମିରେ ଖଜଣାଧାର୍ଯ୍ୟ ଏବଂ ମଧ୍ୟସ୍ୱତ୍ୱାଧିକାର ଲୋପ ପାଇଁ ବ୍ୟବସ୍ଥା ହେଲା । ନିଃସନ୍ତାନ ବିଧବା ବ୍ରାହ୍ମଣୀମାନଙ୍କ ଭରଣପୋଷଣ ଲାଗି ସେମାନଙ୍କ ସମ୍ପତ୍ତିକୁ ଏ ଆଇନର ପରିସରରୁ ବାଦ୍ ଦେବା ଲାଗି ସଦାଶିବବାବୁ ନିଜର ଇଚ୍ଛା ନବବାବୁଙ୍କ ଆଗରେ ପ୍ରକାଶ କରିଥିଲେ । ନବବାବୁଙ୍କର ଉତ୍ତର ଥିଲା ସିଧାସଳଖ, ''ସମାଜରେ ସେହି ବିଧବା ବ୍ରାହ୍ମଣୀମାନଙ୍କଠାରୁ ଆହୁରି ନିଃସ୍ୱ ଲୋକେ ତ ଅଛନ୍ତି; ସେମାନଙ୍କ ପ୍ରତି ଆମେ କଅଣ ସ୍ୱତନ୍ତ୍ର ନ୍ୟାୟ ଦେଇପାରୁଛୁ ?'' ଏହାପରେ ଆଇନ ପାସ୍ ହେବା ବେଳକୁ କିଛି ବାଛବିଚାର ରହିଲା ନାହିଁ । ନବବାବୁ ଗାଁ ଗହଳର ଉନ୍ନତି ପାଇଁ ବ୍ୟାକୁଳ ଥାଇ ବି ସହରର ଉନ୍ନତି ଦିଗରେ ଆଗ୍ରହ ପ୍ରକାଶ କରି କଟକ ଉନ୍ନୟନ ଟ୍ରଷ୍ଟ ସୃଷ୍ଟି କରାଇଥିଲେ । ଯେତେବେଳେ ଏ ସମ୍ପର୍କରେ ବିଧାନସଭାରେ ସମାଲୋଚନା ହୋଇଛି, ସେତେବେଳେ ସେ ତାକୁ ବେଶ୍ ସାମ୍ନା କରିଛନ୍ତି । ସେ କହିଛନ୍ତି ଯେ ସେପର୍ଯ୍ୟନ୍ତ ସହର ସାଧାରଣ ରାଜସ୍ୱରୁ ଅର୍ଥ ସାହାଯ୍ୟ ପାଇ ନିଜର ବିକାଶ କରୁଥିଲା; ସେ ଆଇନ ହେବାପରେ ସହର ଲୋକେ ନିଜ ଉନ୍ନୟନ ଲାଗି ନିଜେ ପାଣ୍ଠି ସୃଷ୍ଟି କରିବେ ଏବଂ ଦାୟୀ ରହିବେ । ଗ୍ରାମାଞ୍ଚଳରୁ ଆୟ ହେଉଥିବା ଖଜଣା ଟିକସ ସହରର ଉନ୍ନୟନରେ ଆଉ ଲାଗିବ ନାହିଁ । 'ଶେଷ ପାହାଚର ଲୋକଟିକୁ ଆଖିରେ ରଖି ସବୁ ସମସ୍ୟାର ସମାଧାନ କର' ବୋଲି ଗାନ୍ଧିଜୀଙ୍କର କଥାକୁ ପ୍ରୟୋଗ କରୁଥିବାରୁ ନବବାବୁ କେଉଁଠି ନୈତିକ ଦ୍ୱନ୍ଦ୍ୱର ସମ୍ମୁଖୀନ ହେଉନଥିଲେ । ବହୁ ଅନୁରୋଧ ଫଳରେ ସେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥିଲେ । ମୁଖ୍ୟମନ୍ତ୍ରିତ୍ୱ କାଳର ପ୍ରଥମାର୍ଦ୍ଧରେ ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ନ ଦିଅନ୍ତୁ ବୋଲି ହରେକୃଷ୍ଣ ମହତାବ ଏବଂ ତାଙ୍କ ଗୋଷ୍ଠୀଙ୍କର ଉଦ୍ୟମ ଥିଲା ଏବଂ ଦ୍ୱିତୀୟାର୍ଦ୍ଧରେ ବିଶ୍ୱନାଥ ଦାସଙ୍କ ଗୋଷ୍ଠୀଙ୍କର ସେହିଭଳି ଚେଷ୍ଟା ଶେଷ ପର୍ଯ୍ୟନ୍ତ ଚାଲିଥିଲା, ଯେତେବେଳେ ମହତାବ ଗୋଷ୍ଠୀ ତାଙ୍କୁ ତଡ଼ିବାକୁ ଚେଷ୍ଟା କରୁଥିଲେ ।

ଭାରତବର୍ଷର ପରବର୍ତ୍ତୀ କାଳର ରାଜନୀତିରେ ପ୍ରଧାନମନ୍ତ୍ରୀମାନେ ମୁଖ୍ୟମନ୍ତ୍ରୀମାନଙ୍କୁ ନିଜର ଚାକର ଭଳି ତଡ଼ିଦେଇପାରୁଥିଲେ । କିନ୍ତୁ ଅନ୍ୟ ପକ୍ଷରେ ନାନା ଉଦ୍ୟମ ସତ୍ତ୍ୱେ ନବବାବୁ ମୁଖ୍ୟମନ୍ତ୍ରୀ ହୋଇ ରହନ୍ତୁ ବୋଲି ନେହେରୁ ଏବଂ କଂଗ୍ରେସ ସଭାପତିଙ୍କର ଏକାନ୍ତ ଇଚ୍ଛା ଥିଲା । ଏଣୁ କ୍ଷମତାକୁ ଜାବୁଡ଼ି ରଖିବାପାଇଁ ପରବର୍ତ୍ତୀ ମୁଖ୍ୟମନ୍ତ୍ରୀମାନଙ୍କୁ ଯେଉଁ ସମୟ ଓ ଶକ୍ତି ବ୍ୟୟ କରିବାକୁ ପଡ଼ିଛି, ନବବାବୁଙ୍କ ପାଇଁ ସେଭଳି ଆବଶ୍ୟକତା ମୋଟେ ନଥିଲା । ତାଙ୍କରି ସମୟରେ ମଧ୍ୟପ୍ରଦେଶରେ ଉନ୍ନୟନ କାର୍ଯ୍ୟର

ଅଗ୍ରଗତି ହେଉନଥିବାରୁ ନେହେରୁ ଥରେ ସେଠାକାର ମୁଖ୍ୟମନ୍ତ୍ରୀ ରବିଶଙ୍କର ଶୁକ୍ଳଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଶୁକ୍ଳାଜୀ କହିଥିବାର ଜଣାଯାଏ ଯେ 'ତାଙ୍କର ଦୁଇଟିଯାକ ହାତ ତାଙ୍କ ଦଳୀୟ ବିରୋଧୀଙ୍କ ଆକ୍ରମଣକୁ ପ୍ରତିହତ କରିବାରେ ବ୍ୟସ୍ତ । ତୃତୀୟ ହସ୍ତ ତ ନାହିଁ, କେଉଁଥିରେ ବା ସେ ଆଉ ଅଧିକ କାମ କରିବେ ?'

ନବବାବୁଙ୍କର କ୍ଷମତା ପ୍ରତି ମୋଟେ ଲାଳସା ନଥିବାରୁ ଦଳ ମଧ୍ୟରେ ନିଜର ଗୋଷ୍ଠୀ ଗଢ଼ିବାରେ ତାଙ୍କର ସମୟ, ଶକ୍ତି ବିନିଯୋଗ ହେଉନଥିଲା । ଏଣୁ ରାତିଅଧିଆ ମନ୍ତ୍ରଣାରେ ସମୟ ନଷ୍ଟ କରିବାକୁ ବା ଗୋଷ୍ଠୀକୁ ପୋଷିବା ଲାଗି ତାଙ୍କୁ ଟଙ୍କା ଠୁଳ କରିବାକୁ ପଡୁ ନଥିଲା । ଠିକ୍ ଦଶଟା ସମୟରେ ସେ ମନ୍ତ୍ରଣାଳୟକୁ ଯାଉଥିଲେ ଏବଂ ତାଙ୍କ ପାଖରେ ଫାଇଲ ସାଧାରଣତଃ ପଡ଼ିରହୁନଥିଲା । ସେ ଭୂ-ଦାନ କାମରେ ଅନେକ ସମୟ ଦେଉଥିବାରୁ ଶାସନ କାର୍ଯ୍ୟରେ ହେଳା କରୁଥିଲେ ବୋଲି ମହତାବବାବୁଙ୍କ ସମେତ ଅନେକ ଲୋକ ତାଙ୍କୁ ଦୋଷ ଦେଉଥିଲେ । କିନ୍ତୁ ସେ କିପରି ବୁର୍ଲା ଇଞ୍ଜିନିୟରିଂ କଲେଜ ପ୍ରତିଷ୍ଠା ଦିଗରେ, ସେହି ସମୟରେ, ଅତି ଅଳ୍ପ କାଳ ମଧ୍ୟରେ ନିଷ୍ପତ୍ତି ନେଇପାରିଥିଲେ, ତାହା ସେ ସମୟର ଡି.ପି.ଆଇ. ବଳଭଦ୍ର ପ୍ରସାଦ "A Man of a Century" ଶୀର୍ଷକ ଏକ ଲେଖାରେ ପ୍ରକାଶ କରିଛନ୍ତି (ରାଉରକେଲାର ବସ୍ତିଆ ମେମୋରିଆଲ ଟ୍ରଷ୍ଟ ତରଫରୁ ପ୍ରକାଶିତ ''ଶ୍ରଦ୍ଧାଞ୍ଜଳି''ର ୩୦ ପୃଷ୍ଠାରୁ ଉଦ୍ଧୃତ) । ଖାଲି ଏହି ବିଷୟରେ ନୁହେଁ, ଉତ୍କଳ ବିଶ୍ୱବିଦ୍ୟାଳୟରେ ଭୂ-ତତ୍ତ୍ୱ ବିଭାଗ ଖୋଲାଯିବା ଏବଂ ଅନୁଗୋଳରେ ମୌଳିକ ତାଲିମ କଲେଜ ଖୋଲାଯିବା ବେଳେ ମଧ୍ୟ ସେ ଉଲ୍ଲେଖଯୋଗ୍ୟ ସ୍ୱଳ୍ପ ସମୟ ମଧ୍ୟରେ ସରକାରୀ ନିଷ୍ପତ୍ତି ନେଇଥିଲେ ବୋଲି ଉକ୍ତ ଲେଖାରେ ବର୍ଣ୍ଣନା ରହିଛି ।

ଶାସନରେ ସାଧୁତା, ଦକ୍ଷତା ଛଡ଼ା ଅନୁନ୍ନତ ଅଞ୍ଚଳ ଏବଂ ଅତି ଅନୁନ୍ନତ ଶ୍ରେଣୀର ଲୋକଙ୍କ ପାଇଁ ତାଙ୍କର ଉତ୍ସର୍ଗୀକୃତ କାର୍ଯ୍ୟର ବହୁ ଦୃଷ୍ଟାନ୍ତ ରହିଛି । ସେ କ୍ଷମତାରୁ ଯିବାର ବହୁ ବର୍ଷ ବିତିଗଲାଣି । ଏହି ଦୂର ପୃଷ୍ଠଭୂମିରେ ପ୍ରଶାସକ ହିସାବରେ ତାଙ୍କର ମୂଲ୍ୟାଙ୍କନ ଅଧିକ ବସ୍ତୁନିଷ୍ଠ ହୋଇପାରିବ । ସେ ତ ନିଜକୁ ପ୍ରଶାସକ ମନେନକରି ସେବକ ବୋଲି ବିଚାର କରୁଥିଲେ, ଏଣୁ ତାଙ୍କୁ ପ୍ରଶାସକ ନ କହି ସଞ୍ଚାଳକ ବା ମାର୍ଗଦର୍ଶକ ବୋଲି କହିଲେ ଅଧିକ ସମୀଚୀନ ହେବ ।

ମୁଖ୍ୟମନ୍ତ୍ରୀ ଥିଲାବେଳେ ଗସ୍ତରେ ସମ୍ବଲପୁର ଯିବା ସମୟରେ ଅସନା ମହାନଦୀ ଘାଟକୁ ଥରେ ସେ ଓ ତାଙ୍କ ଝିଅ ତିନୁ ସଫା କରିଥିଲେ ଏବଂ ନୟାଗଡ଼ ପାଖ ଏକ ଦଳପୋଖରୀ ସଫା କରିଥିଲେ । ସେଥିପାଇଁ ଆଗରୁ ଫଟୋଗ୍ରାଫର ତ ପଠାଇବା ପାଇଁ ବରାଦ ନଥିଲା, ଏପରିକି ସେଭଳି କାର୍ଯ୍ୟକ୍ରମ ସ୍ଥାନୀୟ କର୍ମକର୍ତ୍ତାମାନେ ମୋଟେ ଜାଣି ନଥିଲେ । କେବଳ ତାଙ୍କ ସାଙ୍ଗରେ ଥିବା ତାଙ୍କର ପିଲାମାନେ ବା ଅଫିସର ଏବଂ

କେତେବେଳେ ଦେଖଣାହାରି ନିଜଆଡୁ ଆଗ୍ରହ ପ୍ରକାଶ କରି ସେଥିରେ ସମ୍ପୃକ୍ତ ହେଉଥିଲେ । ଏଭଳି ପ୍ରଶାସକଙ୍କୁ ଚିନ୍ତାମଣି ମିଶ୍ରଙ୍କ ଭଳି ବା ରାୟବାହାଦୁର ଦୁର୍ଗାଚରଣ ଦାସଙ୍କ ପରି ବ୍ରିଟିଶ ଶାସନରେ ତାଲିମପ୍ରାପ୍ତ ଅଫିସରମାନେ ଅଶାସକ କହିବେ ହିଁ କହିବେ । ସେମାନେ ନିଶ୍ଚୟ କହିଥାନ୍ତେ, 'ଏଗୁଡ଼ା କଅଣ ମୁଖ୍ୟମନ୍ତ୍ରୀଙ୍କ କାମ ?'

**କଳାବାଦଲ :**

ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ାହେବାର କିଛିଦିନ ପରେ କଟକର ଜଣେ ସାଧାରଣ ଲୋକଙ୍କର ଏକ ଦୀର୍ଘ ଅଭିଯୋଗ ପତ୍ର (୧୯୫୨ ମସିହାର ଫେବୃଆରି ୨୯ ତାରିଖ) ନେହେରୁଙ୍କ ନିକଟରେ ପହଞ୍ଚିଥିଲା । ନିଜର ନାମ ପ୍ରକାଶ ନ କରିଥିଲେ ମଧ୍ୟ ଅଭିଯୋଗଗୁଡ଼ିକ ପଢ଼ିଲେ ଜାଣିହେବ ଯେ ବ୍ୟକ୍ତିଜଣକ ଓଡ଼ିଶାର ଜଣେ ଅସାଧାରଣ ରାଜନୀତିଜ୍ଞ ।

ସେ ଲେଖିଛନ୍ତି, ''ଗାନ୍ଧିଜୀ ବଞ୍ଚିଥିବା ପର୍ଯ୍ୟନ୍ତ ସେ ଓଡ଼ିଶା ବ୍ୟାପାରରେ ତୀକ୍ଷ୍ଣଦୃଷ୍ଟି ରଖିଥିଲେ, ଯାହାଫଳରେ ସବୁକଥା ଠିକ୍‌ଠାକ୍ ଚାଲିଥିଲା । କିନ୍ତୁ ଆଜି କଂଗ୍ରେସ ନାମରେ ଜଘନ୍ୟ ଦୁର୍ନୀତି ଚାଲିଥିଲେ ବି ଦୁର୍ନୀତିକାରୀଙ୍କ ଆତଙ୍କରାଜକୁ ଡରି କେହି ସେମାନଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରୁନାହାନ୍ତି ।

''ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ତାଙ୍କ ଚେଲାଚାମୁଣ୍ଡାଙ୍କ ଜରିଆରେ କଂଗ୍ରେସ ସଭାପତିଙ୍କର ଅତ୍ୟନ୍ତ ବିଶ୍ୱାସଭାଜନ ହୋଇଥିବାରୁ ତାଙ୍କର କେହି କିଛି କରିପାରିବେ ନାହିଁ । ପୁରୁଣା କଂଗ୍ରେସବାଲା ଏ ସବୁରେ ବିଶ୍ୱାସ କରନ୍ତି ନାହିଁ, କିନ୍ତୁ ସେମାନେ ବହୁ ଦିନରୁ କଂଗ୍ରେସ ଛାଡ଼ି ଦେଇଛନ୍ତି ।

''ଶ୍ରୀଯୁକ୍ତ ମହତାବ ସଂଶ୍ଳିଷ୍ଟ ଥିବା ଦୁର୍ନୀତିରୁ ମାତ୍ର କେତୋଟି ସଂଲଗ୍ନ ଚିଠାରୁ ଜାଣିପାରିବେ । ସମ୍ପୃକ୍ତ ସରକାରୀ ଫାଇଲ ଭଲ କରି ପରୀକ୍ଷା କଲେ ଏହା ପ୍ରମାଣିତ ହୋଇପାରିବ । ଅବଶ୍ୟ ପରୀକ୍ଷାକାରୀ ଶ୍ରୀଯୁକ୍ତ ମହତାବଙ୍କ ହାତପାଆନ୍ତା ଲୋକ ହୋଇନଥିବା ଆବଶ୍ୟକ । ଏସବୁର ସଂଶୋଧନ ନ ହେଲେ ସରକାର ଅଚିରେ ଅପଯଶ ଭୋଗ କରିବ । ଖଣି ଓ ଆମଦାନୀ ବ୍ୟବସାୟରେ ସମ୍ପୃକ୍ତ ଅନୁଷ୍ଠାନସବୁ ଏକଥା ଜାଣନ୍ତି । କିନ୍ତୁ ସେମାନେ ଏ ସମ୍ପର୍କରେ ପାଟି ଖୋଲିବାକୁ ଡରୁଛନ୍ତି ।''

ସେହି ଦଲିଲରେ ହରେକୃଷ୍ଣ ମହତାବ-ବିଜୁ ପଟ୍ଟନାୟକ ଯୋଡ଼ିଙ୍କ କୁକର୍ମ ସମ୍ପର୍କରେ ୧୩ ଦଫା ଅଭିଯୋଗ ଦିଆଯାଇଛି । ନେହେରୁ ସେହି ଅଭିଯୋଗ ଉପରେ ମହତାବବାବୁଙ୍କ ବକ୍ତବ୍ୟ ଜାଣିବାକୁ ଚାହିଁଛନ୍ତି ଏବଂ ମହତାବବାବୁ ସେହି ଅଭିଯୋଗପତ୍ରର ଏକ ନକଲ ନବବାବୁଙ୍କ ନିକଟକୁ ପଠାଇଛନ୍ତି ।

ସେସବୁ ଅଭିଯୋଗ ମଧ୍ୟରେ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ଲାଗି କିଭଳି ଓଡ଼ିଶା ସରକାରୀ କଳକୁ ବ୍ୟବହାର କରି ପ୍ରଚୁର ଅର୍ଥ ସଂଗ୍ରହ କରିଛନ୍ତି ଏବଂ ଶ୍ରୀଯୁକ୍ତ ବିଜୟ ପଟ୍ଟନାୟକ କିପରି ନାନା ଉପାୟରେ ଅର୍ଥ ଉପାର୍ଜ୍ଜନ କରି ଏହି ସଂସ୍ଥାକୁ ପ୍ରଚୁର ଅର୍ଥ ଦେଇଛନ୍ତି, ତାହା ଉଲ୍ଲେଖ ଅଛି । ସେଥିରେ ଲେଖାଅଛି ଯେ, ''ଏକଥା ସମସ୍ତଙ୍କୁ ଜଣା, ପ୍ରଜାତନ୍ତ୍ର ଅଫିସ୍‌ର ଠିକଣା ଲୋକଙ୍କୁ ଧରିପାରିଲେ ପର୍ଚେଜିଂ ଏଜେନ୍‌ସି, କେନ୍ଦୁପତ୍ରର ଏକଚାଟିଆ ଅଧିକାର, ଅଟକବନ୍ଦୀଙ୍କ ଖଲାସ, ମକଦ୍ଦମାରୁ ମୁକ୍ତି ଓ ଅନ୍ୟାନ୍ୟ ଦଣ୍ଡରୁ ତ୍ରାହି ମିଳିପାରିବ ।

''ରତନଲାଲ ଲୋନିଆକୁ ଛତାକପଡ଼ା ଆମଦାନି ପାଇଁ ପରମିଟ୍ ଦିଆଯାଇଛି । ତା' ସହିତ କେନ୍ଦ୍ର ଶିକ୍ଷମନ୍ତ୍ରୀ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ପି. କେ. ପଟ୍ଟନାୟକ, ମହତାବବାବୁଙ୍କର ଘରୋଇ କର୍ମଚାରୀ ମାୟାଧର ମହାନ୍ତି, ଓଡ଼ିଶା ବିଧାନସଭାର ସଦସ୍ୟ ନୀଳମଣି ରାଉତରାୟ ଏବଂ ମହତାବବାବୁଙ୍କ ଷ୍ଟେନୋ କେ.ସି. ବୋଷ ବେନାମ ଅଂଶୀଦାର ରହିଛନ୍ତି । ପୂର୍ବୋକ୍ତ ରତନଲାଲ ପ୍ରଥମେ ୧୦,୦୦୦ ଟଙ୍କା ପ୍ରଜାତନ୍ତ୍ର ପ୍ରଚାର ସମିତିକୁ ଦେଇଥିଲା ଓ ଏହି କାର୍ଯ୍ୟ ଆରମ୍ଭ ହେବାପରେ କେତେକ ଗୋଳମାଳ ସୃଷ୍ଟି ହେବାରୁ ଲୋନିଆ ଅସୁବିଧାରୁ ରକ୍ଷା ପାଇବା ଲାଗି ଆଉ ୩୦,୦୦୦ ଟଙ୍କା ଦେଇଛି ।

''ବିଜୟ ପଟ୍ଟନାୟକ ଓ ମୋତିଲାଲ ପଣ୍ଡିତ ଆଦିଙ୍କୁ ନେଇ ଉତ୍କଳ ଡିଷ୍ଟ୍ରିବ୍ୟୁଟର୍ସ ନାମକ ଏକ କମ୍ପାନୀ ଗଢ଼ାଯାଇ ତାକୁ ସମଗ୍ର ଓଡ଼ିଶା ପାଇଁ ଲୁହା ଓ ଇସ୍ପାତ ଆମଦାନି କରିବା ଲାଗି ଏକଚାଟିଆ ଅଧିକାର ଦିଆଯାଇଛି । ସେଥିରୁ ଅଧିକାଂଶ, ସେମାନେ କଳାବଜାରରେ ବିକିଥିବା କଥା ସମ୍ପୃକ୍ତ କାଗଜପତ୍ର ଦେଖିଲେ ଜଣାଯିବ । ଏତେ ସୁବିଧା ପାଇ ବି ସେମାନେ ଅର୍ଥାଭାବରୁ ଏହି କାରବାର ପୂରା କରିପାରିନାହାନ୍ତି ।

''ନାସନାଲ ଟେକ୍‌ଷ୍ଟାଇଲ ଓ ରୋଲିଂ ମିଲ୍ ନାମକ ଏକ ସଂସ୍ଥା ବିଜୁ ପଟ୍ଟନାୟକ ଆଦିଙ୍କୁ ନେଇ ଗଠିତ ହୋଇଛି । ଏହା ଓଡ଼ିଶା ସରକାର ଦ୍ୱାରା ଅନୁଗୃହୀତ । ସେହିଭଳି କଳିଙ୍ଗ ରେଫ୍ରିଜରେଟର ଓ ସିନ୍ଥେଟିକ୍ ପେଟ୍ରୋଲ୍ ଉତ୍ପାଦନ ଲାଗି ସେ ସରକାରୀ କଳକୁ ବ୍ୟବହାର କରିଛନ୍ତି । ଶ୍ରୀଯୁକ୍ତ ମହତାବ ପ୍ରଧାନମନ୍ତ୍ରୀ ଥିଲାବେଳେ ବିଜୟ ପଟ୍ଟନାୟକଙ୍କୁ ହୀରାକୁଦରେ ୫୦ ଲକ୍ଷ ଟଙ୍କାର କଣ୍ଟ୍ରାକ୍ଟ ଦେଇଥିଲେ । ଏହିଭଳି ନାନା ଧନ୍ଦା କରି ଶ୍ରୀଯୁକ୍ତ ବି. ପଟ୍ଟନାୟକ ୧୯୪୫ ମସିହାଠାରୁ ଶ୍ରୀ ମହତାବଙ୍କୁ ପ୍ରଚୁର ଅର୍ଥ ଯୋଗାଇଆସୁଛନ୍ତି । କଂଗ୍ରେସ ଭିତରେ ଓ ବାହାରେ ଯେଉଁମାନେ ଏସବୁ ଅଭିଯୋଗ ଉଠାଇଛନ୍ତି, ସେମାନଙ୍କୁ କଂଗ୍ରେସରୁ ବାହାର କରିଦେବା ସଙ୍ଗେସଙ୍ଗେ ଖତମ କରିଦେବା ଲାଗି ବ୍ୟବସ୍ଥା ହୋଇଛି ।

୧୯୪୫ ମସିହା ପୂର୍ବରୁ ହରେକୃଷ୍ଣ ମହତାବ ଏବଂ ବିଜୁ ପଟ୍ଟନାୟକଙ୍କ ବ୍ୟାଙ୍କ୍ ହିସାବ ଦେଖିଲେ, ସେମାନଙ୍କ ନାମରେ ମାତ୍ର କେଇ ଶହ ଟଙ୍କା ଥିବା ଜଣାଯିବ । ସେମାନେ ନିଜ ନାମରେ ଏବଂ ନାନା ବେନାମୀ ବ୍ୟକ୍ତିଙ୍କ ନାମରେ ଲକ୍ଷ ଲକ୍ଷ ଟଙ୍କା ଠୁଳ କରିପାରିଛନ୍ତି ।

"୧୯୪୮ ମସିହାରେ କେନ୍ଦୁଝର ଓଡ଼ିଶାରେ ମିଶିଲା । ଏହା ପୂର୍ବରୁ ସିରାଜଉଦ୍ଦିନ୍ ସମେତ କେତେ ଲୋକ କେନ୍ଦୁଝର ରାଜାଙ୍କଠାରୁ କ୍ରୋମାଇଟ୍ ଖଣି ପଟ୍ଟା ନେଇଥିଲେ ବୋଲି ପିଛିଲା କାଗଜପତ୍ର ଦେଖାନ୍ତି । ଓଡ଼ିଶା ସରକାର କେନ୍ଦ୍ର ସରକାରଙ୍କ ଚାପରେ ପଡ଼ି ସେ ଖଣିପଟା ଲିଜ୍ ବାତିଲ କରିଥିଲେ ବି ସରକାରଙ୍କ ଅବହେଳା ଯୋଗୁଁ ସେ ସମ୍ପର୍କୀୟ ମକଦ୍ଦମା ସୁପ୍ରିମ କୋର୍ଟରେ ଚାଲିଛି । ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ସହାୟତାରେ ସେମାନେ ଏ ପର୍ଯ୍ୟନ୍ତ ଖଣି ଦଖଲରେ ଅଛନ୍ତି । ମହତାବବାବୁଙ୍କୁ ଏଥିପାଇଁ ପାଞ୍ଚଲକ୍ଷ ଟଙ୍କା ଦିଆଯାଇଛି ଓ ପଟ୍ଟା ସ୍ଥାୟୀ ହେଲେ ଅଧିକ ଟଙ୍କା ଦିଆଯିବ ।"

ଏହିଭଳି ମହତାବ-ବିଜୁଙ୍କ ବିରୋଧରେ ନାନା ଅଭିଯୋଗ ଶେଷରେ କୁହାଯାଇଛି, ଶ୍ରୀଯୁକ୍ତ ମହତାବ ଶ୍ରୀଯୁକ୍ତ ପଟ୍ଟନାୟକଙ୍କ ନିକଟରେ ସମ୍ପୂର୍ଣ୍ଣ ବିକ୍ରି ହୋଇଯାଇଛନ୍ତି ଓ ଏବକାର ମୁଖ୍ୟମନ୍ତ୍ରୀ ମହତାବଙ୍କର ଏକ ସଖୀକଣ୍ଢେଇ ମାତ୍ର । ଏଣୁ ମୁଖ୍ୟମନ୍ତ୍ରୀ, ପଟ୍ଟନାୟକ ଓ ତାଙ୍କ ଗୋଷ୍ଠୀର ନିର୍ଦ୍ଦେଶରେ ଚାଲିଛନ୍ତି । ସମଗ୍ର ଶାସନକଳ କଳୁଷିତ ହୋଇଗଲାଣି ।"

ଏସବୁ ଅଭିଯୋଗ ସେତେବେଳେ ଓଡ଼ିଶା ମହଲରେ ଉଠୁଥିଲେ ବି ନେହେରୁଙ୍କ ପର୍ଯ୍ୟନ୍ତ ଯାଇନଥିଲା । ଓଡ଼ିଶାର ଯେଉଁ ଦୁଇ ବିଶିଷ୍ଟ ବ୍ୟକ୍ତି, ଉମାଚରଣ ପଟ୍ଟନାୟକ ଓ ସାରଙ୍ଗଧର ଦାସ, ଏସବୁ କାର୍ଯ୍ୟକଳାପକୁ ବିରୋଧ କରୁଥିଲେ, ସେମାନଙ୍କୁ ମହତାବବାବୁ କେନ୍ଦ୍ର ମନ୍ତ୍ରିମଣ୍ଡଳକୁ ଯିବା ପୂର୍ବରୁ କଂଗ୍ରେସରୁ ବିଦା କରିଦେଇଥିଲେ । ନବକୃଷ୍ଣ ଚୌଧୁରୀ ରାଜସ୍ୱମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଚାଲିଯିବା ପରେ ହରେକୃଷ୍ଣ ମହତାବ ଓଡ଼ିଶା କଂଗ୍ରେସର ସର୍ବମୟ କର୍ତ୍ତା ହୋଇଯାଇଥିଲେ ଏବଂ ତାଙ୍କ ପକ୍ଷରେ ପୂର୍ବୋକ୍ତ ଦୁଇ ବ୍ୟକ୍ତିଙ୍କୁ କଂଗ୍ରେସ ଦଳରୁ ଅନ୍ତର କରିବା ସହଜସାଧ ହୋଇଥିଲା ।

ଓକିଲ ଅଭିଯୋଗର ଜବାବ୍ ଯେଭଳି ଦିଅନ୍ତି, ମହତାବବାବୁ ସେହିଭଳି ନିଜକୁ ନିର୍ଦ୍ଦୋଷ ବୋଲି ସଫେଇ ଦେଇଛନ୍ତି । ସିରାଜଉଦ୍ଦିନ୍‌ଙ୍କ ଖଣି ପଟ୍ଟା ସମ୍ପର୍କୀୟ ଅଭିଯୋଗର ଉତ୍ତରରେ ସେ କହିଛନ୍ତି, "ମୋର ଯେତେଦୂର ମନେପଡୁଛି, ୧୯୪୭ ଡିସେମ୍ବର ୧୫ ତାରିଖ ପୂର୍ବରୁ ରାଜାମାନେ ଯେଉଁସବୁ ଲିଜ୍ ଦେଇଥିଲେ, ସେସବୁକୁ ବାତିଲ କରିଦିଆହୋଇଥିଲା । ମୁଁ ନିଶ୍ଚିତ ଯେ, କୌଣସି କ୍ଷେତ୍ରରେ ଏଥିରୁ ବ୍ୟତିକ୍ରମ କରାଯାଇ ନଥିଲା । ମୁଁ ବର୍ତ୍ତମାନର କଥା କହିପାରିବି ନାହିଁ । କିନ୍ତୁ ମୁଁ ନିଶ୍ଚିତ ଯେ, ଏ ଦିଗରେ ଯାହା ହୋଇଛି ବା ହେବ, ସେସବୁ ଆଇନ୍ ଅନୁସାରେ ହୋଇଛି ଓ ହେବ ।"

ଅଥଚ ଏଇ ସଫେଇର ସାତମାସ ପୂର୍ବରୁ ୧୯୫୧ ଅଗଷ୍ଟ ୧୧ ତାରିଖ ଦିନ ସେ ନବକୃଷ୍ଣ ଚୌଧୁରୀଙ୍କୁ ଖଣିପଟ୍ଟା ଖାରଜ ନ କରିବା ଲାଗି ବଳିଷ୍ଠ ଯୁକ୍ତି ଦର୍ଶାଇ ଏକ ପତ୍ର ଲେଖିଥିଲେ । ମହତାବବାବୁ ଲେଖିଥିଲେ, ''ଓଡ଼ିଶା ସରକାର ଯାହା କରୁଛନ୍ତି, ତାହା ଫଳରେ ଦୀର୍ଘକାଳ ଧରି ମକଦ୍ଦମାରେ ଟାଣିହେବେ ଓ ରାଜସ୍ୱ ହରାଇବେ । ଯେଉଁମାନେ ଲିଜ୍ ନେଇଛନ୍ତି, ସେମାନେ ଏ ଦିଗରେ ପ୍ରଚୁର ଅର୍ଥ ବିନିଯୋଗ କରିଛନ୍ତି । ସେମାନେ ଯେତେ ଖଣିଜ ଦ୍ରବ୍ୟ ଜମା କରିଛନ୍ତି, ତାହାକୁ ସେଠାରୁ ଏତେ ଶୀଘ୍ର ଅନ୍ୟତ୍ର ନେବା ସମ୍ଭବପର ହେବନାହିଁ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି, ଏଭଳି କାମ ନିଜେ ଚଳାଇବା ପାଇଁ ସରକାର ପ୍ରଚୁର ଅର୍ଥ କେଉଁଠୁ ଯୋଗାଡ଼ କରିପାରିବେ ? ତାହାଛଡ଼ା ସରକାର ସେସବୁ ଜଟିଳ କାମକୁ ନିଜ କର୍ମଚାରୀମାନଙ୍କ ଦ୍ୱାରା ଚଳାଇପାରିବେ ନାହିଁ ।

''କେନ୍ଦ୍ର ସରକାର ଯେଉଁ କୋଇଲା ଖଣି ହାତକୁ ନେଇଛନ୍ତି, ତାହା ଚଳାଇ ନ ପାରି ବହୁ କ୍ଷତି ସହୁଛନ୍ତି । ମୁଁ ଶୁଣିଲି, ଶିବରମଣ ଏ ଦିଗରେ ଦାୟିତ୍ୱ ନେଇଛନ୍ତି ଓ ତାଙ୍କରି ନିର୍ଦ୍ଦେଶରେ ଲିଜ୍ ଖାରଜ ହେବା ପାଇଁ ନୋଟିସ ଦିଆଯାଇଛି । ସରକାର ଏ କାମ ହାତକୁ ନେଲାପରେ ନାନା ଦିଗରୁ ବ୍ୟର୍ଥ ହୋଇ କ୍ଷତିଗ୍ରସ୍ତ ହେବେ । ଶିବରମଣଙ୍କର ଏ ଦିଗରେ କିଛି ଅଭିଜ୍ଞତା ନଥିବା ସତ୍ତ୍ୱେ ତାଙ୍କ ଉପରେ ଏତେ ଦାୟିତ୍ୱ ଦିଆଯାଉଛି ଓ ଭରସା ରଖାଯାଉଛି ?''

''ମୋ' ବିଚାରରେ ସରକାର ଅତି ଗୁରୁତର ରିସ୍କ ନେଉଛନ୍ତି ଏବଂ ନାନା ଆର୍ଥିକ କ୍ଷତି ଛଡ଼ା ବହୁ ବର୍ଷ ମକଦ୍ଦମାରେ ଜଡ଼ିତ ହୋଇପଡ଼ିବେ । ସରକାର ଯଦି ଖଣିକୁ ଜାତୀୟକରଣ କରନ୍ତି ତ, ସେଥିପାଇଁ ସବୁ ପ୍ରକାର ବ୍ୟବସ୍ଥା କରିବାକୁ ହେବ । କିନ୍ତୁ ସେ ଦିଗରେ ଏ ପର୍ଯ୍ୟନ୍ତ ତ କିଛି ହୋଇନାହିଁ ।''

ହରେକୃଷ୍ଣ ମହତାବଙ୍କର ଏଭଳି ଦୋମୁହାଁ କଥା ଓଡ଼ିଶା ରାଜନୀତି ସହିତ ପରିଚିତ ବ୍ୟକ୍ତିଙ୍କୁ ଭଲଭାବରେ ଜଣା । କିନ୍ତୁ ଅଭିଯୋଗକାରୀଙ୍କ ମନ୍ତବ୍ୟ–''ମହତାବବାବୁ ପୂରାପୂରି ବିଜୁ ପଟ୍ଟନାୟକଙ୍କ ନିକଟରେ ବିକ୍ରି ହୋଇଯାଇଛନ୍ତି ଓ ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ମହତାବ ବାବୁଙ୍କର ଏକ ସଖୀକଣ୍ଢେଇ । ଏଣୁ ଚୌଧୁରୀ, ବିଜୁ ପଟ୍ଟନାୟକ ଏବଂ ତାଙ୍କ ଗୋଷ୍ଠୀର ବରାଦ ଅନୁସାରେ ହିଁ କାମ କରୁଛନ୍ତି ।'' ଏକଥା ସତ୍ୟଠାରୁ ବହୁ ଦୂରରେ ।

ଓଡ଼ିଶା ଶାସନ ଦାୟିତ୍ୱ ଛାଡ଼ି କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଯୋଗ ଦେଲାବେଳେ ହରେକୃଷ୍ଣ ମହତାବ ଭାବିଥିଲେ ଯେ ସେ ମୁଖ୍ୟମନ୍ତ୍ରୀ ଗାଦିରେ ଏକ କା' ରଖିଦେଇ ଗଲେ ଓ ଦିଲ୍ଲୀରେ ରହିଲେ ବି ଓଡ଼ିଶାର ରାଜନୀତି ତାଙ୍କ ଇଙ୍ଗିତରେ ଚାଲିବ । ଦିଲ୍ଲୀ ଗଲା ପରେ ବି ନବକୃଷ୍ଣ ଚୌଧୁରୀଙ୍କୁ ନିୟମିତ ପତ୍ର ଲେଖି ତାଙ୍କ ଲୋକମାନଙ୍କ ନିଯୁକ୍ତି, ପଦୋନ୍ନତି ଆଦି କରାଇବାକୁ

ବରାଦ ଦେଇଛନ୍ତି ଏବଂ ଓଡ଼ିଶା ରାଜନୀତି ଦିଗରେ ଆବଶ୍ୟକ ପଦକ୍ଷେପ ନେବାକୁ ପରାମର୍ଶ ଦେଇଛନ୍ତି । ନବବାବୁ ତାଙ୍କ ବରାଦ ଅନୁସାରେ ଅନେକ କାମ ବି କରିଛନ୍ତି ।

ମହତାବବାବୁ ୧୯୫୦ ମସିହାର ଜୁଲାଇ ୮ ତାରିଖରେ ଚିଠିରେ ନବବାବୁଙ୍କୁ ଲେଖିଥିବା ଚିଠିରେ, ବୀରେନ୍ ମିତ୍ର ପ୍ରାଦେଶିକ କମିଟିକୁ ନିର୍ବାଚିତ ନ ହେବାରେ କ୍ଷୋଭ ପ୍ରକାଶ କରିଛନ୍ତି । ସେ ଲେଖିଛନ୍ତି, ''ପ୍ରାଦେଶିକ କମିଟିରେ ଯେଭଳି ପେଞ୍ଚପାଞ୍ଚ ଚାଲିଛି, ଓଡ଼ିଶାର ସର୍ବତ୍ର ସେଭଳି ଚାଲିଥିଲେ, ଭବିଷ୍ୟତ ଜଳଜଳ ହୋଇ ଦେଖାଯାଉଛି । କେବଳ ଏତିକି ସାନ୍ତ୍ୱନାର କଥା ଯେ, ଓଡ଼ିଶା ଅପେକ୍ଷା ଅନ୍ୟ ରାଜ୍ୟରେ କଂଗ୍ରେସର ଅବସ୍ଥା ଆହୁରି ଖରାପ । ମୁଁ ନିଃସନ୍ଦେହ ଯେ, କଂଗ୍ରେସ ଭାଙ୍ଗି ଟିକିନିକି ହେବାକୁ ଯାଉଛି ଓ ତାକୁ ସୁଧାରିବା ଅସମ୍ଭବ । ପରବର୍ତ୍ତୀ ପର୍ଯ୍ୟାୟ ହେଉଛି ଯେ, ଦେଶର ଆବଶ୍ୟକତା ପୂରଣ କରିବା ଲାଗି ଦଳେ ଯୁବକଙ୍କୁ ତାଲିମ କରିବା ଓ ସେହିମାନଙ୍କ ସହିତ ଘନିଷ୍ଠ ସମ୍ପର୍କ ରକ୍ଷା କରିବା ଓ ଉତ୍ସାହିତ କରିବା ଆମର କର୍ତ୍ତବ୍ୟ । ପ୍ରଜାତନ୍ତ୍ର ଅଫିସକୁ ଯେଉଁ ଯୁବକମାନେ ଆସୁଛନ୍ତି, ଆପଣ ସେମାନଙ୍କ ସହିତ ସମ୍ପର୍କ ରଖନ୍ତୁ ଓ ଦେଖିବେ, ଆପଣଙ୍କ ସମୟ ବୃଥା ଯାଇନାହିଁ । ଏତକ ଆପଣଙ୍କୁ ତତ୍କ୍ଷଣାତ୍ ଲାଭ ନ ଦେଖାଇଲେ ହେଁ ପାଞ୍ଚବର୍ଷ ପରେ ବେଶ୍ ଲାଭ ଦେଖାଇବ ।''

ନାନା କାରଣରୁ ନବବାବୁ ବି ଏହି ପ୍ରଜାତନ୍ତ୍ର-ସମ୍ପୃକ୍ତ ଯୁବଗୋଷ୍ଠୀ ସହିତ କିଛି କାଳ ସମ୍ପର୍କ ରଖିଥିଲେ । ଏହି ଗୋଷ୍ଠୀ ପରବର୍ତ୍ତୀ କାଳରେ ନବବାବୁଙ୍କ ପାଇଁ ସହାୟକ ନ ହୋଇ ବରଂ ତାଙ୍କୁ ମୁଖ୍ୟମନ୍ତ୍ରିତ୍ୱରୁ ତଡ଼ି ମହତାବଙ୍କୁ ବମ୍ବେ ରାଜ୍ୟପାଳ ପଦ ଛାଡ଼ି ଓଡ଼ିଶା ଗାଦିରେ ବସାଇବାକୁ ଅଣ୍ଟା ଭିଡ଼ିଥିଲେ । ସମୟର ଉପହାସ ଯେ ମହତାବବାବୁଙ୍କର ଏହି ପ୍ରଜାତନ୍ତ୍ର ଗୋଷ୍ଠୀ ଏ ଚିଠିର ଏଗାର ବର୍ଷ ପରେ ତାଙ୍କୁ ବି ତଡ଼ି ନିଜେ ଗାଦି ଦଖଲ କଲେ ଏବଂ ଅନ୍ତିମ ବେଳକୁ ତାଙ୍କର ପରମ ଶତ୍ରୁ ଭାବରେ ପରିଚିତ ହେଲେ ।

ନବକୃଷ୍ଣ ଚୌଧୁରୀ ଦୁଇବର୍ଷ ମୁଖ୍ୟମନ୍ତ୍ରୀ ରହିବା ପରେ ଅସ୍ୱସ୍ତିକର ବୋଧ କରି ମୁଖ୍ୟମନ୍ତ୍ରିତ୍ୱ ଛାଡ଼ି ସାଙ୍ଗଠନିକ କାମରେ ଲାଗିବା କଥା ମହତାବବାବୁଙ୍କୁ ଲେଖିଛନ୍ତି ଓ ମହତାବବାବୁ ତାଙ୍କୁ ତହିଁରୁ ନିବର୍ତ୍ତାଇଥିବା କଥା ମହତାବବାବୁଙ୍କ ୧୯୫୧ ମସିହା ମଇ ୭ ତାରିଖ ଚିଠିରୁ ଜଣାଯାଏ । ୧୯୫୨ ନିର୍ବାଚନରେ ବିଶ୍ୱନାଥ ଦାସ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନହୋଇ ନବବାବୁ ମୁଖ୍ୟମନ୍ତ୍ରୀ ରହନ୍ତୁ ବୋଲି ବି ମହତାବବାବୁ ଦୃଢ଼ ଉଦ୍ୟମ କରିଛନ୍ତି ।

ଏ ସବୁ ସତ୍ତ୍ୱେ ମହତାବବାବୁଙ୍କର ଅନେକ କଥାକୁ ନବବାବୁ ଉପେକ୍ଷା କରିଛନ୍ତି । ସିରାଜଉଦ୍ଦିନ୍ ଆଦିଙ୍କ ଖଣିପଟ୍ଟା ରଦ୍ଦ ନ କରିବା ପାଇଁ ମହତାବବାବୁ ପରାମର୍ଶ ଦେଇଥିଲେ ମଧ୍ୟ ନବବାବୁ ତାକୁ ରକ୍ଷା କରିନାହାନ୍ତି । ସ୍ୱାମୀ ବିଚିତ୍ରାନନ୍ଦ ଦାସ ଆଡ୍‌ଭୋକେଟ୍-ଜେନେରାଲ ପଦରୁ ଇସ୍ତଫା ଦେବାପରେ ମହତାବବାବୁ ଚିନ୍ତାମଣି ଆଚାର୍ଯ୍ୟଙ୍କୁ ସେ

ପଦବୀରେ ରଖିବା ଲାଗି ନବବାବୁଙ୍କୁ ପରାମର୍ଶ ଦେଇଥିଲେ ବି ନବବାବୁ ବୋଧରାମ ଦୁବେଙ୍କୁ ଆଡ୍‌ଭୋକେଟ୍-ଜେନେରାଲ କରିଛନ୍ତି । ମହତାବବାବୁ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ି ଦିଲ୍ଲୀ ଯିବା ପୂର୍ବରୁ ଅଧ୍ୟାପକ ଶ୍ରୀରାମଚନ୍ଦ୍ର ଦାଶଙ୍କ ଉପରେ ତାଙ୍କର ବିଷଦୃଷ୍ଟି ପଡ଼ିଥିଲା ଓ ସେ ତାଙ୍କ ବିରୋଧରେ କିଛି ପ୍ରଶାସନିକ କାର୍ଯ୍ୟାନୁଷ୍ଠାନ ନେବାଲାଗି ବ୍ୟବସ୍ଥା କରିଥିଲେ । ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବାର ତେରଦିନ ପରେ ସେ ସମ୍ପର୍କୀୟ ଫାଇଲ ନବବାବୁଙ୍କ ପାଖକୁ ଆସିଥିଲା । ନବବାବୁ ଦଣ୍ଡାଦେଶ ବଦଳରେ ତାଙ୍କୁ ରେଭେନ୍ସା କଲେଜକୁ ବଦଳି କରାଇ ଆଣିଛନ୍ତି । ଏଣୁ ଏସବୁ କାର୍ଯ୍ୟରୁ ଜାଣିହୁଏ ଯେ ନବକୃଷ୍ଣ ଚୌଧୁରୀ ହରେକୃଷ୍ଣ ମହତାବଙ୍କ ସଖୀକଣ୍ଢେଇ ନଥିଲେ ।

ନେହେରୁଙ୍କ ନିକଟକୁ ଯାଇଥିବା ନେବାମୀ ଚିଠିର ଶେଷରେ ଯାହା କୁହାଯାଇଛି 'ବର୍ତ୍ତମାନର ମୁଖ୍ୟମନ୍ତ୍ରୀ, ପଟ୍ଟନାୟକଙ୍କର ସଖୀକଣ୍ଢେଇ', ତାହା ନିଶ୍ଚୟ ନବବାବୁଙ୍କୁ ଆଘାତ କରିଥିବ । ଲକ୍ଷ୍ୟ କରିହୁଏ ଯେ ସେ ଏହାପରେ ମହତାବ ଓ ବିଜୁ ପଟ୍ଟନାୟକଙ୍କଠାରୁ ଦୂରତ୍ୱ ରକ୍ଷା କରିଛନ୍ତି । ଏହି ବିଜୁ ପଟ୍ଟନାୟକଙ୍କୁ ନବକୃଷ୍ଣ ଚୌଧୁରୀ ପ୍ରାଥମିକ ଅବସ୍ଥାରେ ସାହାଯ୍ୟ କରିଥିଲେ ବି ତାହା ପଛରେ ଥିଲା, ଓଡ଼ିଶାର ଯୁବ ଶିଳ୍ପୋଦ୍ୟୋଗୀ ହିସାବରେ ପ୍ରୋତ୍ସାହନ ଦେବା । କିନ୍ତୁ ଯେଉଁଭଳି ଭାବରେ ନେହେରୁଙ୍କ ପାଖରେ ମହତାବ-ବିଜୁ ମୁଖା ଖୋଲିଯାଇଛି ଓ ତାହା ସଙ୍ଗେସଙ୍ଗେ ରାଜ୍ୟ ସରକାରଙ୍କ ସମ୍ପୃକ୍ତି କଥାମାନ କୁହାଯାଇଛି, ତଦ୍ୱାରା ନବବାବୁ ବିବ୍ରତ ହୋଇଛନ୍ତି । ଏହି ପଟ୍ଟଭୂମିରେ ସେ ଇସ୍ତଫା ଦେବାପାଇଁ ନେହେରୁଙ୍କୁ ଜଣାଇଛନ୍ତି । ଅବଶ୍ୟ ନେହେରୁ ତାଙ୍କୁ ଇସ୍ତଫା ଦେବାରୁ ନିବୃତ୍ତ ରହିବାକୁ କହି ଏ ବାବଦରେ ତଦନ୍ତ ଅବ୍ୟାହତ ରଖିଛନ୍ତି । ତଦନ୍ତରୁ ନେହେରୁ ଜାଣିପାରିଛନ୍ତି ଯେ ପଟ୍ଟନାୟକଙ୍କ ଧନ୍ଦାରେ ନବବାବୁ ଜଡ଼ିତ ନୁହନ୍ତି ଓ ସେସବୁ ଧନ୍ଦାରେ ମହତାବବାବୁଙ୍କ ସମ୍ପର୍କ ଥିବା ବିଷୟ ନେହେରୁଙ୍କର ହୃଦ୍‌ବୋଧ ହୋଇଛି । କେନ୍ଦ୍ରରେ ଶିଳ୍ପ ଓ ଯୋଗାଣ ମନ୍ତ୍ରୀ ଭାବରେ ବି ମହତାବବାବୁଙ୍କ ବିରୋଧରେ ଅଭିଯୋଗମାନ ହୋଇଥିଲା । ଏହିସବୁ କାରଣରୁ ମହତାବବାବୁ କେନ୍ଦ୍ର ମନ୍ତ୍ରିମଣ୍ଡଳରୁ ବାଦ୍ ପଡ଼ିଥିଲେ ।

ଏ ଖବର ପାଇ ନବବାବୁଙ୍କ ସମେତ ମହତାବବାବୁଙ୍କ ଅନୁଗତ ବ୍ୟକ୍ତିମାନେ ବିବ୍ରତ ହୋଇଥିଲେ ଓ ନବବାବୁ ନେହେରୁଙ୍କୁ ଟେଲିଫୋନ୍ ଦ୍ୱାରା ମହତାବବାବୁଙ୍କୁ ମନ୍ତ୍ରିମଣ୍ଡଳରେ ନେବାକୁ କହିଛନ୍ତି । ସେହିସମୟରେ ନବବାବୁ ମହତାବବାବୁଙ୍କୁ ଯେଉଁ ଟେଲିଗ୍ରାମ କରିଛନ୍ତି, ତହିଁରୁ ତାଙ୍କର ମହତାବବାବୁଙ୍କ ପ୍ରତି ମନର ଭାବ ଜଣାପଡ଼େ । କିନ୍ତୁ ନେହେରୁ ନବବାବୁଙ୍କ ଅନୁରୋଧ ରକ୍ଷା କରିନାହାନ୍ତି । କେନ୍ଦ୍ର ମନ୍ତ୍ରିମଣ୍ଡଳରୁ ବାଦ୍ ପଡ଼ିଲା ପରେ ମହତାବବାବୁ ଓଡ଼ିଶା ତଥା ଭାରତବର୍ଷର ଆଇ.ଏ.ଏସ୍.ଙ୍କ ବିରୋଧରେ ତାଙ୍କ 'ପ୍ରଜାତନ୍ତ୍ର' ଓ 'ଇଷ୍ଟର୍ଣ୍ଣ ଟାଇମସ୍‌'ରେ ଲେଖା ଆରମ୍ଭ କରିଥିଲେ ଏବଂ ସଭାସମିତିରେ, ଯେଉଁଠି ସୁବିଧା ପାଇଲେ,

ସେମାନଙ୍କୁ ସମାଲୋଚନା କରୁଥିଲେ । ନବବାବୁଙ୍କ ନେତୃତ୍ୱକୁ ସମାଲୋଚନା ନକଲେ ବି ଓଡ଼ିଶାର ସରକାରୀ ଉଚ୍ଚ ଅଫିସରମାନଙ୍କ କାର୍ଯ୍ୟକଳାପ ସମ୍ପର୍କରେ ତାଙ୍କ ପ୍ରତିଷ୍ଠିତ ଖବରକାଗଜମାନଙ୍କରେ ନାନା କଟୁ ସମାଲୋଚନା ପ୍ରକାଶ ପାଇଲା । ଅବସ୍ଥା ଏପରି ସ୍ତରକୁ ଗଲା, ଯଦ୍ୱାରା ବିରକ୍ତ ହୋଇ ନବବାବୁ ମହତାବବାବୁଙ୍କ ଦୃଷ୍ଟିକୁ ସେସବୁ କଥା ଆଣିଥିଲେ । କିନ୍ତୁ ଏହା ସମ୍ବାଦପତ୍ରର ଧର୍ମ ବୋଲି ମହତାବବାବୁ ସଫେଇ ଦେଲେ । ସେ କହିଲେ, ''ପ୍ରଜାତନ୍ତ୍ର ଓ ଇଷ୍ଟର୍ଣ୍ଣ ଟାଇମ୍‌ସ ଏସବୁ ସମାଲୋଚନା ନ କରିଥିଲେ, ଅନ୍ୟାନ୍ୟ ଇଂରେଜୀ କାଗଜ ସେଭଳି ସମାଲୋଚନା କରୁଛନ୍ତି ଓ କରିବେ । ଏଣୁ ପ୍ରଜାତନ୍ତ୍ର ଆଉ ଇଷ୍ଟର୍ଣ୍ଣ ଟାଇମ୍‌ସ କାହିଁକି ନ କରିବେ ?''

ସେହି ସମୟରେ ହରେକୃଷ୍ଣ ମହତାବ ୧୯୫୩ ଅଗଷ୍ଟ ୨୭ ତାରିଖରେ ନେହେରୁଙ୍କୁ ଯେଉଁ ଚିଠି ଲେଖିଛନ୍ତି, ତହିଁରୁ ଜଣାଯାଏ, ପ୍ରାୟ ବର୍ଷେ କାଳ କ୍ଷମତାରୁ ବିଚ୍ୟୁତ ହେଲାପରେ, ମହତାବ ଏହିଭଳି ଅବସ୍ଥାକୁ ଆସିଥା'ନ୍ତି ଯେ କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ସେକ୍ରେଟେରୀ-ଜେନେରାଲ ପଦରୁ ଇସ୍ତଫା ଦେବା ସଙ୍ଗେସଙ୍ଗେ ନିଖିଳ ଭାରତ କଂଗ୍ରେସ କମିଟିରୁ, ଏପରିକି ପାର୍ଲାମେଣ୍ଟ ସଭ୍ୟ ପଦରୁ, ଇସ୍ତଫା ଦେଇ ଗଠନମୂଳକ କାମରେ ନିଜକୁ ନିୟୋଜନ କରିବେ, ଏଥିପାଇଁ ଅନୁମତି ଦେବାକୁ ନେହେରୁଙ୍କୁ ଏହି ପତ୍ରରେ ଲେଖିଥିଲେ । ଉକ୍ତ ଚିଠିର ନକଲ ବନମାଳୀ ପଟ୍ଟନାୟକ ନବବାବୁଙ୍କୁ ଦେଖାଇଥାନ୍ତି । ସେତେବେଳକୁ ମହତାବବାବୁ ନିଜର ବିଶ୍ୱସ୍ତ ବନମାଳୀ ପଟ୍ଟନାୟକଙ୍କୁ ଓଡ଼ିଶା କଂଗ୍ରେସର ସଭାପତି କରାଇଥିଲେ । ଓଡ଼ିଶାରେ କଂଗ୍ରେସ ଦଳ ଚାରୋଟି ବିଧାନସଭା ଉପନିର୍ବାଚନରେ ହାରିଯାଇଥାଏ । ସେହି ପରିସ୍ଥିତିରେ ନବବାବୁ ବି ନିଜେ ଇସ୍ତଫା ଦେଇ ଲୋକଙ୍କ ଭିତରେ ମିଶି କାମ କରିବାପାଇଁ ୧୯୫୩ ଜୁଲାଇ ୧୬ ତାରିଖରେ ନେହେରୁଙ୍କୁ ଚିଠି ଲେଖିଥିଲେ । ଚିଠିରେ ସବୁପ୍ରକାର ଦଳୀୟ ଦାୟିତ୍ୱରୁ ମୁକ୍ତି ପାଇ ମହତାବବାବୁ ଗଠନମୂଳକ କାମରେ ନିଜକୁ ନିୟୋଜନ କରିବେ ବୋଲି ଯାହା ନେହେରୁଙ୍କୁ ଜଣାଇଛନ୍ତି, ତାହାକୁ ତାଙ୍କର ଶତ୍ରୁମାନେ ଛଳନାମୂଳକ ବୋଲି ବିଚାର କରୁଥିଲେହେଁ ତାହା କିନ୍ତୁ ମହତାବବାବୁଙ୍କର ଆନ୍ତରିକ ଅଭିଳାଷ ବୋଲି ନବବାବୁ ନେହେରୁଙ୍କୁ ଜଣାଇଛନ୍ତି ।

ସେହି ଚିଠିର ଶେଷ ଆଡ଼କୁ ନବବାବୁ ନେହେରୁଙ୍କୁ ଲେଖିଛନ୍ତି ଯେ ମହତାବବାବୁ ଓ ସେ ନିଜେ ଆପଣାକୁ ଗଠନମୂଳକ କାର୍ଯ୍ୟରେ ଉତ୍ସର୍ଗ କରିଦେଲେ କଂଗ୍ରେସର ସମ୍ମାନ ଲୋକଙ୍କ ଦୃଷ୍ଟିରେ ନିଶ୍ଚିତ ଭାବରେ ବଢ଼ିଯିବ । କଂଗ୍ରେସ ଲୋକେ କ୍ଷମତା ପଛରେ ପାଗଳ ବୋଲି ଯେଉଁ ସାଂଘାତିକ ପ୍ରଚାର ଚାଲିଛି, ତାହାର ଅବସାନ ଘଟିବା ସଙ୍ଗେସଙ୍ଗେ କଂଗ୍ରେସ ଦଳ ମଧ୍ୟରେ ଚାଲିଥିବା ଅନ୍ତର୍ଦ୍ୱନ୍ଦ୍ୱର ସମାପ୍ତି ଘଟିବ ।

ଇତିମଧ୍ୟରେ ନବବାବୁ କଂଗ୍ରେସ ମହଲରେ ଓ ବିଭିନ୍ନ ସ୍ଥାନରେ ନିଜ ଇସ୍ତଫା ଦେବା କଥା କହୁଥାନ୍ତି । ବାସ୍ତବିକ ନବବାବୁଙ୍କର ମତଲବ କ'ଣ, ତାହା ଜାଣିବାକୁ ମହତାବବାବୁ ନବବାବୁଙ୍କ ସହିତ ୧୯୫୪ ମସିହା ଜାନୁଆରି ପହିଲା ଦିନ କଥାବାର୍ତ୍ତା ହୋଇଥିବା ବିଷୟ ନେହେରୁଙ୍କୁ ସେହି ମାସ ୬ ତାରିଖ ଚିଠିରେ ଜଣାଇଛନ୍ତି । ସେଥିରେ ସେ ଉଲ୍ଲେଖ କରିଛନ୍ତି, ''କେତେକ ମହଲ ମୋତେ ନବବାବୁଙ୍କ ପରେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିବାକୁ ପ୍ରସ୍ତାବ ଦେଇଛନ୍ତି । ଆଜିକାଲି ଯେଉଁଭଳି ଦଳୀୟ ପେଞ୍ଚପାଞ୍ଚ ରାଜନୀତି ଚାଲିଛି, ମୁଁ ତାହାଠାରୁ ବହୁ ଦୂରରେ । ଏବକାର ଯେଉଁ ଅନିଶ୍ଚିତ ରାଜନୀତି, ସେଥିରେ ନିଜର ଶକ୍ତି ଓ ସମୟ ନଷ୍ଟ କରିବା ଦ୍ୱାରା କିଛି ବଡ଼ କାମ ହୋଇପାରିବ ନାହିଁ । ...କାହାକୁ ଆପଣ ମୁଖ୍ୟମନ୍ତ୍ରୀ କରିବେ, ତାହା ମୋତେ ଅଜଣା । ଏବେ ମୋ'ର ମନେହେଉଛି ଯେ ଆପଣଙ୍କର ମୋ' ପାଇଁ କିଛି ଯୋଜନା ନାହିଁ । ଓଡ଼ିଶା ପାଇଁ କଅଣ କରିବେ, ସେସବୁ ଆପଣଙ୍କ ବିଚାରର କଥା । ମୋ'ଭଳି ଜଣେ ସାମାନ୍ୟ ଲୋକ ସେଥିରେ ମୁଣ୍ଡ ପୂରାଇବା ଉଚିତ ନୁହେଁ । ଏଣୁ ମୋ' ବନ୍ଧୁମାନେ ଯେଉଁ ପରାମର୍ଶ ଦେଇଛନ୍ତି, ତାକୁ ବିଚାରକୁ ନେବା ମୋ' ପକ୍ଷରେ ଭୁଲ୍ ହେବ, ବିଶେଷକରି ଆପଣଙ୍କ ମତିଗତି ନଜାଣିବା ପର୍ଯ୍ୟନ୍ତ । ଏ ଦିଗରେ ଆପଣଙ୍କ ଯୋଜନା ଜାଣିଲେ ମୁଁ ବାଧିତ ହେବି । କିଛି ନଜଣାଇଲେ ବି ମୋ'ର ଶୋଚନା ନାହିଁ । ମୁଁ ମୋ' ବର୍ତ୍ତମାନର ସ୍ଥିତିରେ ବେଶ୍ ସୁଖରେ ଅଛି ।''

ଏହାର ଛ'ଦିନ ପରେ ମହତାବବାବୁ ନବବାବୁଙ୍କୁ କଟକରୁ ଚିଠି ଲେଖିଛନ୍ତି । ସେଥିରେ ସେ ଲେଖିଛନ୍ତି, ''ମୁଁ ବହୁ ଚିନ୍ତା ପରେ ଏ ଚିଠି ଲେଖୁଛି । ନେହେରୁଙ୍କୁ ମୋ' ଚିଠିର କିଭଳି ପ୍ରତିକ୍ରିୟା ତୁମେ ପ୍ରକାଶ କଲ, ତାହା ମୁଁ ବୀରେନଠାରୁ ଶୁଣିଲି । ମୁଁ ଯଥାସମ୍ଭବ କଠୋର ଭାଷାରେ ତାହା ଲେଖିଛି । ହୁଏତ ମୋ' ଭାଷା ମୋ'ର ଭାବକୁ ପୂରା ପ୍ରକାଶ କରିପାରିଲା ନାହିଁ । ଯାହାହେଉ, ମୁଁ ତାଙ୍କଠାରୁ ବା ଅନ୍ୟ କାହାଠାରୁ କୌଣସି ଅନୁଗ୍ରହ ଆଶା କରେନାହିଁ । ଓଡ଼ିଶା ଯେଉଁ ଶୋଚନୀୟ ଦିଗକୁ ଗତି କରୁଛି, ତାହାକୁ ମୁଁ ଭଲଭାବରେ ବିଚାରକୁ ନେଇଛି । ବହୁ ମାସ ପରେ ମୁଁ ବୌଦ୍ଧିକ ଦୁନିଆରୁ ବାସ୍ତବ କ୍ଷେତ୍ରକୁ ଓହ୍ଲାଇ ଆସି ବହୁ ସମସ୍ୟାର ସମାଧାନ ବାଟ ଖୋଜୁଛି । ତୁମେ ତୁମର ଇସ୍ତଫା ଦେବାର ପରିଣାମ ସମ୍ପର୍କରେ ନିଶ୍ଚୟ ଭଲ ଭାବରେ ବିଚାର କରିଥିବ । ମୁଁ ଯେତେଦୂର ଲକ୍ଷ୍ୟ କରିପାରିଛି, ତହିଁରୁ ମୋ'ର ମନେହୁଏ, ତୁମ ଇସ୍ତଫାର ତାତ୍ପର୍ଯ୍ୟ ଖୁବ୍ ଗୁରୁତର ଓ ତାହାକୁ ହାଲୁକା ଭାବରେ ଉଡ଼ାଇ ଦିଆଯାଇପାରିବ ନାହିଁ । ବିଧାନସଭାରେ ଦଳର ସ୍ଥିତି ଓ ରାଜ୍ୟର ପରିସ୍ଥିତିକୁ ବିଚାରକୁ ନେଇ ମୁଁ ଅନୁଭବ କରୁଛି, ତୁମେ ବେଶ୍ ଦକ୍ଷତା ଓ ପ୍ରଶଂସନୀୟ ଭାବରେ ସମୁଦାୟ ବ୍ୟାପାରଟି ଚଳାଇଛ । ଏହା ମାନେ ନୁହେଁ ଯେ, ସେଇଟି ଆଦର୍ଶସ୍ଥାନୀୟ ବା ସବୁ ସମୟ ପାଇଁ ସେଇଆହିଁ ବାଞ୍ଛା ହୋଇଥିବ । ଯାହା ଯେତେ ଭଲ କଲେ ବି ତ

ଲୋକେ ସମାଲୋଚନା କରିବେ । ଅନ୍ୟମାନଙ୍କ ଲାଗି ଜଣକୁ ତୋଡ଼ମାଡ଼ ସହିବାକୁ ହେବ ଏବଂ ଯିଏ ଏସବୁ ସହେ, ସିଏ ହିଁ ନିଃସନ୍ଦେହ ରୂପରେ ବଡ଼ ମଣିଷ । ଅଭିନୟରେ ବିଭିନ୍ନ ଲୋକଙ୍କୁ ବିଭିନ୍ନ ଭୂମିକା ଗ୍ରହଣ କରିବାକୁ ହୋଇଥାଏ । କିନ୍ତୁ ମଞ୍ଚରେ ଅଭିନୟ କରୁଥିବା ଅଭିନେତାଙ୍କୁ ଅନ୍ୟ ଯେଉଁମାନେ ସମାଲୋଚନା କରୁଥାନ୍ତି, ସେହି ସମାଲୋଚକଙ୍କଠାରୁ ମଞ୍ଚସ୍ଥ ଅଭିନେତା ପ୍ରାୟ ବଡ଼ ଅଭିନେତା । ମୁଁ ଦୂରରେ ରହି ବି ସ୍ପଷ୍ଟ ଦେଖିପାରୁଛି ଯେ, ତୁମର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ଯଦିଓ ଏଥିପାଇଁ ତୁମେ ବର୍ତ୍ତମାନ ପାଇଁ ପ୍ରଶଂସା ପାଇପାରିବ ନାହିଁ । ଏହା ନିଃସନ୍ଦେହ ଯେ, ସେହି ଭୂମିକାଟି ଅନ୍ୟ କେହି ଏତେ ସୁନ୍ଦର ରୂପେ କରିପାରନ୍ତେ ନାହିଁ । ମୁଁ ବିଷୟଟିକୁ, ତୁମ ସ୍ଥାନରେ ମୋତେ ରଖି ବିଚାର କରି ଦେଖୁଛି ଏବଂ ଡରିଯାଉଛି ଯେ, ସେଭଳି ପରିସ୍ଥିତିରେ ମୁଁ ତ ପୂରା ହାରିଯାଇଥାନ୍ତି । ମୁଁ ମୋ ମତିଗତି ଓ କାମ କରିବାର ଢଙ୍ଗ ଜାଣେ । ମୁଁ ତୁମ ସ୍ଥାନରେ ପୂରାପୂରି ବିଗିଡ଼ିଯାଇଥାନ୍ତି । ବର୍ତ୍ତମାନ ପରିସ୍ଥିତିରେ ତୁମେ ମୁଖ୍ୟମନ୍ତ୍ରୀ ରହିବା ଏକାନ୍ତ ବାଞ୍ଛନୀୟ ଓ ତୁମକୁ ଏହା ଗ୍ରହଣ କରିନେବାକୁ ହେବ । ଏହିଭଳି ପରିସ୍ଥିତିରେ ଗୀତାର ସ୍ୱଧର୍ମଜ୍ଞାନକୁ ହିଁ ମାନିନେବା କଥା । ଫଳ ଯାହା ହେଉନା କାହିଁକି ପ୍ରତ୍ୟେକକୁ ତା'ର ଧର୍ମରେ ଅଟଳ ରହିବାକୁ ହେବ ।

''ମୋତେ ଯେ ମୁଖ୍ୟମନ୍ତ୍ରୀ ହେବାକୁ ତୁମେ ଚାହୁଁଛ, ଏହା ଶୁଣି ମୋତେ ଆଶ୍ଚର୍ଯ୍ୟ ଲାଗିଲା । ଏପରି ପରିସ୍ଥିତି ଦେଖାଦେଲେ ଅବଶ୍ୟ ମୁଁ ପଛେଇଯିବି ନାହିଁ, ଯଦିଓ ମୁଁ ଜାଣେ, ଏହାଦ୍ୱାରା ମୋ'ର ବା ରାଜ୍ୟର କିଛି ମଙ୍ଗଳ ହେବନାହିଁ । ମୁଁ ନା କହିଲେ ତା' ବି ମୋ' ଧର୍ମ ବିରୁଦ୍ଧରେ ଯିବ; ମୁଁ ଏହିଭଳି ଏକ ମାନସିକ ଦ୍ୱନ୍ଦ୍ୱରେ ପଡ଼ିଛି । ମୁଁ ଜବାହରଲାଲ ନେହେରୁଙ୍କଠାରୁ କିଛି ଶୁଣି ନାହିଁ । ସେ ବି ଯଦି ଏ ଦାୟିତ୍ୱ ନେବାକୁ କହନ୍ତି ତଥାପି ବି ସେଇ ଏକା ଦ୍ୱନ୍ଦ୍ୱ ରହିଯିବ । ତୁମେ ବର୍ତ୍ତମାନର ପରିସ୍ଥିତିକୁ ନିର୍ଲିପ୍ତ ଭାବରେ ବିଚାର କଲେ ନିଶ୍ଚୟ ଏକମତ ହେବ ଯେ, ବର୍ତ୍ତମାନ ପରିସ୍ଥିତିରେ ଦାୟିତ୍ୱ ନେବାପାଇଁ ମୁଁ ଅନୁପଯୁକ୍ତ । କେତେକ ବନ୍ଧୁ କହିପାରନ୍ତି ଯେ, ରାଜ୍ୟର ସ୍ୱାର୍ଥ ଦୃଷ୍ଟିରୁ ମୁଁ ଏଭଳି ରିସ୍କ ନେବା ଭୁଲ୍ ହେବ ନାହିଁ । ଏଭଳି ରିସ୍କ ନେବା ଲାଭଜନକ ହେବ କି ? ମୁଁ ଏଭଳି ପ୍ରଶ୍ନର ଉତ୍ତର ବାହାର କରିପାରିଲି ନାହିଁ । ଏଣୁ ବିଷୟଟିକୁ ଆହୁରି ଥରେ ନିର୍ଲିପ୍ତ ଭାବରେ ବିଚାର କରି ଦେଖିବ । ତୁମେ ଯେଉଁ ଉଲ୍ଲେଖନୀୟ ଭୂମିକାରେ ଅଭିନୟ କରୁଛ, ତାହା ଚାଲୁରହୁ । ଆମେ ତ ଆତ୍ମିକ ଦିଗରେ ଅଭିନ୍ନ ଏବଂ ଈଶ୍ୱରଙ୍କର ଯଦି ଇଚ୍ଛା ଥାଏ ତ, ଆମେ ୧୯୫୭ ମସିହା ବେଳକୁ ଦୈହିକ ଓ ମାନସିକ ଭାବରେ ଏକତ୍ର ହେବା ।''

ହରେକୃଷ୍ଣ ମହତାବ ତାଙ୍କ ଚିଠିପତ୍ରରେ ନିଜର ''ସ୍ୱଧର୍ମ'' ସମ୍ପର୍କରେ ଯେତେ ଯାହା ସଫେଇ ଦେଲେ ବି କ୍ଷମତାରୁ ଦୂରେଇ ରହିବା ଫଳରେ ତାଙ୍କର ପ୍ରଜାତନ୍ତ୍ର ଦରବାରରେ ସମାଗମ କମିଗଲା ଓ ଖଣିମାଲିକ ଏବଂ ଶିଳ୍ପପତିମାନଙ୍କଠାରୁ ଆସୁଥିବା ଆୟରେ ଭଟ୍ଟା

ପଡ଼ିଗଲା । ଏଭଳି ଅବସ୍ଥାରେ ତାଙ୍କର ଏକାନ୍ତ ବିଶ୍ୱାସୀ ବୀରେନ୍ ମିତ୍ର ଦିନେ ରାତି ପ୍ରାୟ ୧୦ଟା ବେଳେ ମୁଖ୍ୟମନ୍ତ୍ରୀଙ୍କ ବସାରେ ପହଞ୍ଚିଲେ । ସେଠାରେ ଅନ୍ୟମାନଙ୍କ ମଧ୍ୟରେ ବିଧାୟକ ଜୟକୃଷ୍ଣ ମହାନ୍ତି ଥାଆନ୍ତି । ନବବାବୁ ଆଦି ଶୋଇବାକୁ ଯାଉଥାନ୍ତି । ବୀରେନ ମିତ୍ର ଆସି ଅତି ଆବେଗର ସହ ନବବାବୁଙ୍କୁ କହିଲେ, ''ଦାଦା, ସେ ଲୋକଟା (ମହତାବବାବୁ) କ'ଣ ମରିବ ?''

ନବବାବୁ କିଛି ସମୟ ନୀରବ ରହି କହିଲେ, ''ମୁଁ ତାଙ୍କୁ ମାରୁଛି ନା ସେ ନିଜେ ନିଜ କର୍ମ ଲାଗି ଏଭଳି ଭୋଗୁଛନ୍ତି ? ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ଭଳି ଲୋକ ବର୍ତ୍ତମାନ ଦିଲ୍ଲୀ ମହଲରେ ଭଦ୍ରଲୋକ (କେନ୍ଦ୍ରରେ ଉପମନ୍ତ୍ରୀ ହୋଇସାରିଥାନ୍ତି), କିନ୍ତୁ ଏ ଲୋକ ନିଜ କାର୍ଯ୍ୟକଳାପ ଯୋଗୁଁ ନର୍ଦ୍ଦମାରେ ସଢ଼ୁଛନ୍ତି ।''

ଏ ସମ୍ପର୍କରେ କିଛି କଥାବାର୍ତ୍ତା ପରେ ବୀରେନ୍ ମିତ୍ର ନବବାବୁଙ୍କ ହାତ ଧରିପକାଇ, 'ତାଙ୍କ କଥା ବୁଝ' ବୋଲି କହି, ବିଦାୟ ନେଲେ ।

ଏହାର କିଛି କାଳ ପରେ ଆଭାଡ଼ିଠାରେ କଂଗ୍ରେସ ଅଧିବେଶନ ବସିଥିଲା । ସେହି ଅଧିବେଶନକୁ ମହତାବବାବୁ ଯାଇଥିଲେ ବି ସେଠାରେ ତାଙ୍କର କିଛି ଉଲ୍ଲେଖଯୋଗ୍ୟ ଭୂମିକା ନଥାଏ । ନବବାବୁଙ୍କ ପାଖ ବଖରାରେ ଜୟକୃଷ୍ଣ ମହାନ୍ତି ଓ ବନମାଳୀ ପଟ୍ଟନାୟକ ରହୁଥିଲେ । ଦିନେ ନବବାବୁ ଏ ଦୁହିଁଙ୍କୁ ଡାକି କହିଲେ, ''ଯାଇ ବୁଝିଆସି କୁହ, ମହତାବ ବାବୁ ବମ୍ବେର ଗଭର୍ଣ୍ଣର ହୋଇ ଯିବାପାଇଁ ରାଜି କି ?''

ସେମାନେ ଯାଇ କିଛି ସମୟ ପରେ ମହତାବବାବୁଙ୍କ ପାଖରୁ ଫେରି କହିଲେ, ''ମହତାବବାବୁ ସମ୍ମତ ।''

ମହତାବବାବୁ ବମ୍ବେର ରାଜ୍ୟପାଳ ହେବାପରେ ନବବାବୁଙ୍କ ପାଖକୁ ଆଉ ଚିଠିପତ୍ର ନାହିଁ । ଏହି ପଦବୀରେ ଯେ ମହତାବବାବୁ ସନ୍ତୁଷ୍ଟ ଥିଲେ, ଏଭଳି ନୁହେଁ । ସେ ବମ୍ବେରୁ ଏହାପରେ ଓଡ଼ିଶାର ତାଙ୍କ ଅନୁଗତମାନଙ୍କ ସହିତ ଯୋଗାଯୋଗ ରଖି ଓଡ଼ିଶାକୁ ମୁଖ୍ୟମନ୍ତ୍ରୀ ଭାବରେ ଫେରିବାର ଉଦ୍ୟମ ଚଳାଇଥିଲେ । ସେଠାରୁ ତାଙ୍କର ଦୀନବନ୍ଧୁ ସାହୁଙ୍କ ପାଖକୁ ଲେଖା ଚିଠିଟି ତାତ୍ପର୍ଯ୍ୟପୂର୍ଣ୍ଣ ।

ଦୀନବନ୍ଧୁ ସାହୁ ଏକସମୟରେ ସୋସାଲିଷ୍ଟମାନଙ୍କ ସହିତ ସଂଯୋଗ ରଖୁଥିଲେ ବୋଲି ମହତାବବାବୁଙ୍କ ଆତ୍ମଜୀବନୀ ''ସାଧନାର ପଥେ''ରୁ ଜାଣିହୁଏ । ସେ ବି ପ୍ରଜାତନ୍ତ୍ର ପ୍ରଚାର ସମିତି ସହିତ ସମ୍ପୃକ୍ତ ଥିଲେ । ସେ ମନ୍ତ୍ରୀ ଥିଲାବେଳେ ତାଙ୍କର କିଛି କାର୍ଯ୍ୟ ନବବାବୁଙ୍କୁ ଠିକ୍ ଲାଗିନଥିଲା । ଏଣୁ ନବବାବୁ ତାଙ୍କଠାରୁ ଉନ୍ନୟନ ବିଭାଗଟି କାଢ଼ିନେଇ ନିଜ ଦାୟିତ୍ୱରେ ରଖିଥିଲେ । ଏଥିରେ କ୍ଷୁବ୍ଧ ହୋଇ ସେ ୧୯୫୩ ମସିହା ଅକ୍ଟୋବର ୨୭ ତାରିଖରେ ଏକ

ଚିଠି ଲେଖି ନବବାବୁଙ୍କୁ ନିଜର ଅସନ୍ତୋଷ ପ୍ରକାଶ କରିଛନ୍ତି । ମନ୍ତ୍ରୀ ଥିଲାବେଳେ ତାଙ୍କ ନାମରେ ଏକ ନିର୍ବାଚନୀ ମକଦ୍ଦମା ହୋଇଥିଲା ଓ ସେଥିରେ ସେ ବିଧାନସଭା ସଭ୍ୟପଦ ହରାଇ ନିଜ ଓକିଲାତି ବ୍ୟବସାୟକୁ ଫେରିଯାଇଥିଲେ ।

ନବକୃଷ୍ଣ ଚୌଧୁରୀଙ୍କୁ ତଡ଼ିବା ପାଇଁ ଯେଉଁ ପ୍ରଜାତନ୍ତ୍ର ଗୋଷ୍ଠୀ ବାହାରିଥିଲେ, ସେ ସେଥିରେ ଯୋଗ ଦେଇଥିଲେ ଓ ମହତାବବାବୁଙ୍କୁ ନିଜର ପ୍ରତିକ୍ରିୟା ଜଣାଇଥିଲେ । ତାଙ୍କ ପାଖକୁ ମହତାବବାବୁ ୧୯୫୫ ସେପ୍ଟେମ୍ବର ୨୨ ତାରିଖରେ ଯେଉଁ ଗୁପ୍ତ ଚିଠି ଲେଖିଥିଲେ, ତହିଁରେ ସେ ଉଲ୍ଲେଖ କରିଥିଲେ–

''ତୁମେ ଓଡ଼ିଶା ରାଜନୀତିରେ ସକ୍ରିୟ ଆଗ୍ରହ ପ୍ରକାଶ କରୁଥିବାର ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ଓଡ଼ିଶା ଖାଲି ଧନରେ ଦରିଦ୍ର ନୁହେଁ, ସାଧାରଣ ଜୀବନରେ ବି ଦରିଦ୍ର ।... ବନମାଳୀ ଓ ବୀରେନ୍ ଏବଂ ଅନ୍ୟମାନେ ଭଲ ଲୋକ, କିନ୍ତୁ ସମୁଦାୟ ପରିସ୍ଥିତିକୁ ସେମାନେ ସ୍ପଷ୍ଟ ଭାବରେ ଦେଖିପାରୁଛନ୍ତି କି ନାହିଁ, ସେ ବିଷୟରେ ମୋ'ର ସନ୍ଦେହ ରହିଛି । ଅବଶ୍ୟ ଏ ଚିଠି ସେମାନଙ୍କ ଲାଗି ଗୁପ୍ତ ନୁହେଁ ।''

''ଓଡ଼ିଶା କଂଗ୍ରେସ ରକ୍ଷଣଶୀଳ ଓ ପ୍ରଗତିଶୀଳ ଭାବରେ ଦୁଇ ଗୋଷ୍ଠୀରେ ବିଭକ୍ତ । ନବବାବୁ ଓ ମୁଁ ଏବଂ ଅନ୍ୟ କେତେକ ପ୍ରଗତିଶୀଳ ଗୋଷ୍ଠୀରେ ଥିଲୁ । ଆମେ ନୀଳକଣ୍ଠ ବାବୁ ଓ ଗୋପବନ୍ଧୁ ଚୌଧୁରୀ ଆଦି ରକ୍ଷଣଶୀଳ ଗୋଷ୍ଠୀ ବିରୋଧରେ ଲଢ଼ିଥିଲୁ । ୧୯୩୧ରେ ଗୋପବନ୍ଧୁ ଚୌଧୁରୀ ଯେ ସେ ଗୋଷ୍ଠୀର ଥିଲେ, ତାହା ମୁଁ ଯାଇ ୧୯୩୪ରେ ଜାଣିଲି । ୧୯୩୭ରେ ଏକ ଚାଲ୍ ଖେଳି ଆମେ ନୀଳକଣ୍ଠଙ୍କୁ ତଡ଼ି ବିଶ୍ୱନାଥ ଦାସଙ୍କୁ ପ୍ରଧାନମନ୍ତ୍ରୀ କରିଥିଲୁ, ଯେ କି ଏକ ନିଷ୍କ୍ରିୟ ବ୍ୟକ୍ତି । ମୁଁ ଏବଂ ନବବାବୁ ସେସବୁ ଗୋଷ୍ଠୀ ବିରୋଧରେ ଲଢ଼ି ଲଢ଼ି ୧୯୪୫ ବେଳକୁ ସେମାନଙ୍କୁ ହାଲିଆ କରିଦେଇଥିଲୁ । ତା'ପରେ ମୁଁ ଜୋର କରି ବନମାଳୀ, ବୀରେନ୍, ଭୈରବ ମହାନ୍ତି ଓ ନୀଳମଣିଙ୍କ ଭଳି ନୂଆ ଲୋକଙ୍କୁ ଆଗକୁ ଆଣିଲି । ମୁଁ ଚାରି ବର୍ଷ ପ୍ରଧାନମନ୍ତ୍ରୀ ଥିବାବେଳେ ମୋ' ବିରୋଧରେ ସମସ୍ତେ ଲାଗିପଡ଼ିଲେ ବି ମୋତେ ପାରି ନଥିଲେ ।''

''କିନ୍ତୁ ଯେତେବେଳେ ଦେଖିଲି ଯେ, ବିରୋଧ ପ୍ରବଳ ହୋଇଉଠିଲା, ମୁଁ କେନ୍ଦ୍ର ମନ୍ତ୍ରିମଣ୍ଡଳକୁ ବାଟ କାଟିଲି ଓ ପ୍ରଗତିଶୀଳ ଗୋଷ୍ଠୀର ନବବାବୁଙ୍କୁ ଛାଡ଼ିଆସିଲି ସେ ଲଢ଼େଇ ଚାଲୁରଖିବା ଲାଗି । ମୁଁ ସେତେବେଳେ ଭାବିଥିଲି ଯେ, ମୁଁ ଏକ କିସ୍ତିମାତ୍ କରିଦେଲି । କିନ୍ତୁ ସେଇଟି ପୂରା ବ୍ୟର୍ଥ ହୋଇଗଲା, କାରଣ ନବବାବୁ ପୂରାପୂରି ବିଶ୍ୱାସଘାତକତା କଲେ ଓ ରକ୍ଷଣଶୀଳ ଗୋଷ୍ଠୀର ନେତା ହୋଇଗଲେ । ଏବେ ଦେଖ, ସବୁ ପୁରୁଣା ରକ୍ଷଣଶୀଳ ମିଶିଯାଇ ଅନ୍ୟମାନଙ୍କୁ ଶେଷ କରିଦେବାକୁ ଦୃଢ଼ପ୍ରତିଜ୍ଞ । ଗୋପବନ୍ଧୁ ଚୌଧୁରୀ ଖୁବ୍ ଭିତିରି

ଭିତିରି ଏହି ଖେଳରେ ରହିଛନ୍ତି । ନବବାବୁ ଦୁଇ କିସମର ରକ୍ଷଣଶୀଳଙ୍କ ସହିତ ଯୋଗସୂତ୍ରକାରୀ । ଏଣୁ ଏମାନେ ଏତେ ଶକ୍ତିଶାଳୀ । ମୁଁ କୌଣସିମତେ ନିଜକୁ ରକ୍ଷା କରିନେଇଛି । ମୁଁ ଯେତେବେଳେ ମୋ'ର ଆତ୍ମଜୀବନୀ ଲେଖିବି, ସେତେବେଳେ ଜାଣିବ, କିଭଳି ଅସଲ ବେଳେ ନବବାବୁ ମୋ' ସହିତ ବିଶ୍ୱାସଘାତକତା କରିଛନ୍ତି । ମୋତେ ପୂରାପୂରି ସାଧାରଣ ଜୀବନରୁ ବିଦାକରି ଅନ୍ୟମାନଙ୍କୁ ଖତମ୍ କରିଦେବା ଲାଗି ସେମାନଙ୍କର ଯୋଜନା ଥିଲା । ନବବାବୁ ଖୁବ୍ ଚତୁରତାର ସହ ସମଗ୍ର ଖେଳଟି ଖେଳିଛନ୍ତି । ଯେତେବେଳେ ବନମାଳୀ ତଡ଼ା ଖାଇଲେ (ପ୍ରାଦେଶିକ କଂଗ୍ରେସ ସଭାପତିତ୍ୱରୁ) ଓ ବୀରେନ୍‌ର ମୋହଭଙ୍ଗ ହେଲା, ସେତେବେଳେ ଯାଇ ମୁଁ କିଛି ବନ୍ଧୁ ପାଇଲି । ନବବାବୁ କିନ୍ତୁ ଠିକଣା ବେଳେ ସେମାନଙ୍କୁ ମନେଇ ନେଉଥିଲେ । ମୁଁ ବର୍ତ୍ତମାନର ମନ୍ତ୍ରିମଣ୍ଡଳରେ କେତେକଙ୍କୁ ପୂରେଇ ଦେଇଥିଲି ବୋଲି ରକ୍ଷା ହୋଇଛି । ନ ହେଲେ ଚୌଧୁରୀ ପରିବାର ଦ୍ୱାରା ପରିଚାଳିତ ରକ୍ଷଣଶୀଳ ଗୋଷ୍ଠୀ ସମସ୍ତଙ୍କୁ ଖତମ୍ କରିଦେଇଥାନ୍ତେ । କିନ୍ତୁ ରଣପୁର ରାଜମାତାଙ୍କ ଛଡ଼ା ଅନ୍ୟ ନୂଆ ନେତାମାନେ ଟାଣପଣ ଦେଖାଉନାହାନ୍ତି । ୧୯୪୫ ବେଳକୁ ଯେଉଁ ଶକ୍ତି ଅଗ୍ରଭାଗକୁ ଆସିଥିଲେ, ଦେଖିବାକୁ ଗଲେ ସେହି ଗୋଷ୍ଠୀ ଲୋପ ହେବା ଉପରେ ।''

''ମୁଁ ଏବେ ତୁମକୁ ମୋ'ର ଭୁଲ୍‌ଟି କହୁଛି । ମୁଁ ରକ୍ଷଣଶୀଳ ଗୋଷ୍ଠୀକୁ ପୂରାପୂରି ଖତମ୍ ନ କରି ଭୁଲ୍ କରିଥିଲି, ଯାହା କି ମୁଁ ସହଜରେ କରିପାରିଥାନ୍ତି । ଦ୍ୱିତୀୟ ଭୁଲ୍ ହେଲା, ମୁଁ ନବବାବୁଙ୍କୁ ନେତୃତ୍ୱ ଦେଇଆସିଲି, ଯେଉଁଥିପାଇଁ ସାରା ରାଜ୍ୟ କଷ୍ଟଭୋଗ କରୁଛି । ସେ ତାଙ୍କ ଭିତରଟାକୁ ଏପର୍ଯ୍ୟନ୍ତ ଅତି ଚତୁରତାର ସହ ଏତେ ବର୍ଷ ଧରି ଲୁଚାଇ ରଖିଥିଲେ । ଏହା ବାସ୍ତବିକ ଏକ ଚମତ୍କାର ଓ ଅଦ୍ଭୁତ କରାମତି । ଯାହା ତ ଭୁଲ୍ ହେବାର ହୋଇଯାଇଛି । ଏବେ କେତେଜଣ ଦୃଢ଼ ହୋଇ ଏମାନଙ୍କର ମୁକାବିଲା କରିଲେ ହିଁ ଏହି ଅବସ୍ଥାର ସଂଶୋଧନ ହୋଇପାରିବ । ହୋଇପାରେ, ସେମାନେ ପ୍ରଥମ ଦଫାରେ ସଫଳ ହୋଇ ନ ପାରନ୍ତି । କିନ୍ତୁ ସର୍ବସାଧାରଣଙ୍କ ସ୍ୱାର୍ଥ ଦୃଷ୍ଟିରୁ ଏହା ଆବଶ୍ୟକ । ଗତ ଦୁଇ ବର୍ଷ ହେଲା ମୁଁ ହିଁ ଏକୁଟିଆ ସେମାନଙ୍କୁ ମୁକାବିଲା କରିବାରେ ଲାଗିଥିଲି । ରାଜ୍ୟର ସ୍ୱାର୍ଥ ଦୃଷ୍ଟିରୁ ମୁଁ ଏଠାକୁ ନ ଆସି ଅବସ୍ଥା ସୁଧୁରିବା ପର୍ଯ୍ୟନ୍ତ ସେଇଠି ରହି ସେ ମୁକାବିଲା ଚଳାଇବାର ଥିଲା । କିନ୍ତୁ ସବୁ ବନ୍ଧୁ ସେଠାରୁ ଚାଲିଆସିବାକୁ ପରାମର୍ଶ ଦେଲେ । ମୁଁ ଦେଖିଲି, ଯେମିତି ମୁଁ ବନ୍ଧୁମାନଙ୍କର ଦୟାର ପାତ୍ର ହୋଇପଡ଼ିଛି । ମୋ' ପାଇଁ ସବୁବେଳେ ନୂଆ ନୂଆ କ୍ଷେତ୍ର ଥିଲା । ଏଠାକୁ ଆସି ମୁଁ ବ୍ୟକ୍ତିଗତ ଭାବରେ ଖୁବ୍ ଲାଭବାନ ହୋଇଛି । କିନ୍ତୁ ତଦ୍ୱାରା ରାଜ୍ୟର କ୍ଷତି ହୋଇଛି । ଏଇଆ ତ ଅବସ୍ଥା, ତେବେ ତୁମକୁ ମୁଁ କହୁଛି, ତୁମେ ଦୃଢ଼ ହୋଇ ପ୍ରତିରୋଧ କର । ଆଗାମୀ ନିର୍ବାଚନ ପୂର୍ବରୁ ଏଇ ବର୍ଷକ ମଧ୍ୟରେ ଅବସ୍ଥାର ପରିବର୍ତ୍ତନ ହୋଇଯିବ । ମୋ'ର କିନ୍ତୁ ଆଶଙ୍କା, ଏକ ପର୍ଯ୍ୟାୟରେ ପ୍ରତିରୋଧ ଭୁଶୁଡ଼ିପଡ଼ିବ । ମୁଁ କିନ୍ତୁ ବଞ୍ଚିଥିବା ପର୍ଯ୍ୟନ୍ତ

ଯେକୌଣସିମତେ ପ୍ରତିରୋଧ ଚଳାଇ ରଖିବି । ରାଜ୍ୟର ସ୍ୱାର୍ଥ ଦୃଷ୍ଟିରୁ ଯାହା ସବୁଠାରୁ ଭଲ ହେବ, ସେ ଦିଗରେ ଅଣ୍ଟା ଭିଡ଼ି ଲାଗିପଡ଼ । ତମେ ପ୍ରାୟ ଭଲ କରି ବୁଝିପାରୁନା ଯେ, ବର୍ତ୍ତମାନ ସରକାରରେ ପୁରୁଣା ଜମିଦାରୀ ଧନ୍ଦା ଚାଲିଛ । ତୁମେ ପ୍ରାୟ ଜାଣନା ଯେ, ଚୌଧୁରୀ ଦୁଇ ଭାଇ ଓ ସେମାନଙ୍କୁ ବେଢ଼ି ରହିଥିବା ଲୋକେ କେତେ କଅଣ ନେଇସାରିଲେଣି । ଏଇଥିଲାଗି ଅଫିସରମାନେ ମୁଖ୍ୟମନ୍ତ୍ରୀଙ୍କୁ ଓ ଅନ୍ୟ ମନ୍ତ୍ରୀମାନଙ୍କୁ ମାନୁ ନାହାନ୍ତି । ଦୟାକରି ଟାଣ ହୁଅ । ମୁଁ ଭୁଲିଗଲି ବଢ଼ି ବିଷୟରେ କିଛି ଲେଖିବାକୁ । ପରବର୍ତ୍ତୀ ଚିଠିରେ ସେସବୁ କଥା ଲେଖିବି ।''

(ରେଖାଙ୍କିତ ଅଂଶତକ ଏହି ଜୀବନୀଲେଖକ ଦ୍ୱାରା ଚିହ୍ନିତ ହୋଇଛି । କାରଣ, ମହତାବବାବୁଙ୍କ ଛଡ଼ା ଓଡ଼ିଶା ତଥା ଭାରତବର୍ଷର ଲୋକେ ଜାଣନ୍ତି, ଗୋପବନ୍ଧୁ ଚୌଧୁରୀ ଓ ନବକୃଷ୍ଣ ଚୌଧୁରୀ ସରକାରରୁ ବା ଦେଶବାସୀଙ୍କଠାରୁ କେତେ ନେଇଛନ୍ତି ଏବଂ ହରେକୃଷ୍ଣ ମହତାବଙ୍କ ଏହି ଉକ୍ତି କେତେଦୂର ସତ୍ୟ ।)

ଏହାପରେ ଦଳେଇଘାଇ ବନ୍ୟାତ୍ରାଣ କାର୍ଯ୍ୟ ଦେଖିବାକୁ ହରେକୃଷ୍ଣ ମହତାବ ବମ୍ବେରୁ ଆସିଥିଲେ । ତାଙ୍କ ଖବରକାଗଜରେ ତ ପୂର୍ବରୁ ସରକାରଙ୍କର ଏ ସମ୍ପର୍କୀୟ ତ୍ରୁଟି କଥା ବିସ୍ତୃତ ଭାବରେ ବାରମ୍ବାର ବାହାରୁଥିଲା । କିନ୍ତୁ ନିଜେ ବନ୍ୟାଗ୍ରସ୍ତ ଅଞ୍ଚଳ ବୁଲି ସେ ଯେଉଁ ବିବୃତି ଦେଲେ, ତାହାକୁ କେନ୍ଦ୍ର ନେତୃତ୍ୱ ଅପସନ୍ଦ କରି ତାଙ୍କୁ ତାଗିଦ୍ କରିଥିଲେ ।

ରଣପୁର ରାଜମାତା ବସନ୍ତମଞ୍ଜରୀ ଦେବୀ, ତାଙ୍କ ସ୍ୱାମୀଙ୍କ ଦେହାନ୍ତ ପରେ, ଉଚ୍ଚ ମହଲରେ ଖୁବ୍ ମିଶାମିଶି କରୁଥିଲେ । ରାଜପରିବାର ମଧ୍ୟରେ ସେ ଥିଲେ ଆଧୁନିକା । ରାଜନୀତିରେ ତାଙ୍କର ଆଗ୍ରହ ଲକ୍ଷ୍ୟ କରି ହରେକୃଷ୍ଣ ମହତାବ ନବବାବୁଙ୍କ ଦ୍ୱାରା ତାଙ୍କୁ ବିଧାନସଭା ପାଇଁ କଂଗ୍ରେସ ଦଳର ପ୍ରାର୍ଥୀ ରୂପେ ବାଛିବା ସଙ୍ଗେସଙ୍ଗେ ସ୍ୱାସ୍ଥ୍ୟ ବିଭାଗର ଉପମନ୍ତ୍ରୀ କରାଇଥିଲେ । ସେ ସ୍ୱାସ୍ଥ୍ୟ ଉପମନ୍ତ୍ରୀ ଭାବରେ ଏଭଳି ସକ୍ରିୟ ଥିଲେ ଯେ ବିଭାଗୀୟ ମନ୍ତ୍ରୀ ଦୀନବନ୍ଧୁ ସାହୁ ସେଥିରେ ଅସ୍ୱସ୍ତି ବୋଧ କରୁଥାନ୍ତି । ବସନ୍ତମଞ୍ଜରୀ ଦେବୀଙ୍କର ବହୁ ପ୍ରଶାସନଗର୍ହିତ କାର୍ଯ୍ୟ ଏବଂ ସ୍ୱେଚ୍ଛାଚାରିତା ଲାଗି ନବବାବୁ ତାଙ୍କୁ ତାଗିଦ କରିବା ସହିତ ତାଙ୍କର କେତେକ କାର୍ଯ୍ୟକୁ ନାକଚ କରିଥିଲେ । ନବବାବୁ ଥରେ ବିଧାନସଭାର ଲବିରେ କହିଥିବାର ଶୁଣାଯାଇଥିଲା ଯେ କଂଗ୍ରେସ ଦଳରେ ତ ରାଜା ଜମିଦାର ପଶିଲେ; ଆଉ କଂଗ୍ରେସ କିପରି ତା'ର ନୀତି କାର୍ଯ୍ୟକାରୀ କରିପାରିବ ? ଏସବୁ କାରଣରୁ ରଣପୁର ରାଜମାତା ନବବାବୁଙ୍କୁ ତଡ଼ିବା ଗୋଷ୍ଠୀରେ ଖୁବ୍ ମୁଖର ହୋଇଉଠିଥିଲେ ।

୧୯୫୭ ମସିହାରେ ହରେକୃଷ୍ଣ ମହତାବ ଖାଲି ରଣପୁର ରାଜମାତା, କନିକା ରାଜା, ଖଲିକୋଟ ରାଜାଙ୍କ ଭଳି ଲୋକଙ୍କୁ କଂଗ୍ରେସ ଦଳଭୁକ୍ତ କଲେ ନାହିଁ, ଗଣତନ୍ତ୍ର ପରିଷଦ

ଭଳି ଅତି ରକ୍ଷଣଶୀଳ ଦଳ ସହିତ ମିଶି କଂଗ୍ରେସ-ଗଣତନ୍ତ୍ର ପରିଷଦ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ିଲେ । ଏଣୁ ସେ କିଭଳି ପ୍ରଗତିଶୀଳତା ପାଇଁ ବ୍ୟାକୁଳ ଥିଲେ, ତାହା ତାଙ୍କର ପରବର୍ତ୍ତୀକାଳୀନ କାର୍ଯ୍ୟକଳାପରୁ ପ୍ରମାଣିତ ହୁଏ ।

ମହତାବବାବୁ ନବବାବୁଙ୍କୁ ଓଡ଼ିଶା ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିଦେଇଯାଇଥିବା କାରଣରୁ ନବବାବୁ ଯେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବେଛାଡ଼ିବେ ବୋଲି କହୁଥାନ୍ତି, ସେ ମହତାବବାବୁଙ୍କୁ ଗାଦି ଛାଡ଼ିବେ ବୋଲି କହୁନଥିଲେ । ଏହା ଥିଲା ମହତାବବାବୁଙ୍କ ଅଭିଯୋଗ । ମହତାବବାବୁ ଏ ଇଚ୍ଛା ତ ନେହେରୁଙ୍କୁ ଇଙ୍ଗିତରେ ଜଣାଇଥାନ୍ତି ଓ ନବବାବୁଙ୍କ କାନରେ ପକାଇଥାନ୍ତି । ନବବାବୁ ମଧ୍ୟ ସେଭଳି ଚାହୁଁଛନ୍ତି ବୋଲି ମହତାବବାବୁ ଏକ ପତ୍ରରେ ନବବାବୁଙ୍କୁ ଜଣାଇବାରୁ ନବବାବୁ ତା'ର ଉତ୍ତରରେ ମହତାବବାବୁଙ୍କୁ ଲେଖିଥିଲେ (ଏକ ତାରିଖବିହୀନ ହାତଲେଖା ଚିଠିରୁ ଏହା ଉପଲବ୍ଧ), ''ବର୍ତ୍ତମାନ ପରିସ୍ଥିତିରେ ଆପଣ ମୁଖ୍ୟମନ୍ତ୍ରିତ୍ୱ ପାଇଁ ଅଯୋଗ୍ୟ ହେବେ ବୋଲି ଯାହା ଲେଖିଛନ୍ତି, ସେ ସମ୍ପର୍କରେ ମୁଁ ଏକମତ । କିନ୍ତୁ ମୁଁ ଆପଣଙ୍କୁ ସେ ଦାୟିତ୍ୱ ଗ୍ରହଣ କରିବା ଲାଗି ମୋ' ଚିଠିରେ ଲେଖିଛି ବୋଲି ଯାହା ଲେଖିଛନ୍ତି, ତାହା ଠିକ୍ ନୁହେଁ । ମୁଁ ଏଭଳି ମୋଟେ ଲେଖି ନାହିଁ । ବରଂ ମୁଁ ଜବାହରଲାଲ ନେହେରୁଙ୍କୁ ଲେଖିଛି ଯେ, ଆପଣ ଓ ମୁଁ କ୍ଷମତା ବାହାରେ ରହି କାର୍ଯ୍ୟ କଲେ କଂଗ୍ରେସ ଦଳକୁ ସୁଧାରି ପାରିବା । ମୋତେ ଯେତେବେଳେ ବନ୍ଧୁମାନେ କହିଲେ ଯେ, ଆପଣ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିଲେ ମହତାବବାବୁ ମୁଖ୍ୟମନ୍ତ୍ରୀ ହୁଅନ୍ତୁ, ମୁଁ ସେମାନଙ୍କୁ କହିଥିଲି, 'ତାଙ୍କୁ କୁହ, ତାଙ୍କୁ ଯଦି ରାଜି କରାଇପାରିବ ତ ସେ ମୋ'ଠାରୁ ଆନ୍ତରିକ ସହଯୋଗ ପାଇବେ ।' କିନ୍ତୁ ମୁଁ ସେ ବନ୍ଧୁମାନଙ୍କୁ ସ୍ପଷ୍ଟ ସତର୍କ କରିଦେଇଥିଲି ଯେ, ମହତାବବାବୁ ଯେଉଁଭଳି ଢଙ୍ଗରେ କାମ କରୁଥିଲେ ଏବଂ ତାଙ୍କର ମନୋଭାବ ଯେପରି, ସେଥିରେ ସେ ଏ ଦାୟିତ୍ୱ ନେଲେ ଅତି ଅସୁବିଧାରେ ପଡ଼ିବେ । ପାର୍ଟି ଏହା ମଧ୍ୟରେ ବଦଳିଯାଇଛି ଓ ସବୁ କଥା ବଦଳିଛି ।''

ହରେକୃଷ୍ଣ ମହତାବ, ଅତି ସିଧାସଳଖ ବୋଲି ମନେକରୁଥିବା ନବକୃଷ୍ଣ ଚୌଧୁରୀଙ୍କଠାରୁ, ଏଭଳି ଉତ୍ତର ଆଶା କରୁନଥିଲେ । ସେ ଏହାକୁ ହିଁ ତାଙ୍କ ପ୍ରତି 'ବିଶ୍ୱାସଘାତକତା' ବୋଲି ଗ୍ରହଣ କରି ଦୀନବନ୍ଧୁ ସାହୁଙ୍କୁ ସେକଥା ଲେଖିଛନ୍ତି ।

ଏହାପରେ ୧୯୫୫ ଅକ୍ଟୋବର ୧୧ ତାରିଖରେ ମହତାବବାବୁ ବୀରେନ୍ ମିତ୍ରଙ୍କୁ ଅନୁରୂପ ତାତ୍ପର୍ଯ୍ୟପୂର୍ଣ୍ଣ ଚିଠିଟିଏ ଲେଖିଛନ୍ତି ।

ଶ୍ରଦ୍ଧେୟ ବୀରେନ୍,

ବନମାଳୀ, ଦୀନବନ୍ଧୁ ଓ ଜାନକୀଙ୍କୁ ଯେଭଳି ଦୀର୍ଘ ଓ ବିରକ୍ତିକର ଚିଠି ଲେଖିଥିଲି, ସେଭଳି ତୁମକୁ ଲେଖିବାର ପାଳି ଏଥର ପଡ଼ିଲା ।

ଧେବରଙ୍କ ପାଟନା ଗସ୍ତ ସମ୍ପର୍କୀୟ ସମ୍ବାଦ ତୁମ ଆଖିରେ ପଡ଼ିଥିବ । ଯଦି ନ ଦେଖିଥିବ, ଏଇ ମାସ ୨ରୁ ୫ ତାରିଖ ଖବରକାଗଜ ଦେଖ । ତୁମେ ସେଥିରୁ ଦେଖିବ ଯେ, ସେଠାରେ ଶହ ଶହ ଲୋକ ତାଙ୍କ ପାଖରେ ଅଭିଯୋଗ କରିଛନ୍ତି ଯେ, କଂଗ୍ରେସ ଦଳ ବା ସରକାର କେହି ସେମାନଙ୍କର ଅଭିଯୋଗ ଶୁଣୁନାହାନ୍ତି । ସେଥିପାଇଁ ସେମାନେ ଧେବରଙ୍କ ଆଗରେ ବିକ୍ଷୋଭ ଦେଖାଇଥିଲେ ଓ ଧେବରଙ୍କର ସେଥିରେ ହୃଦ୍‌ବୋଧ ହୋଇଥିଲା । ସେ ବିହାର ସରକାରଙ୍କୁ ମଧୁର ଭର୍ତ୍ସନା ବି କରିଥିଲେ । ଏଇଆକୁ ଯେ କହନ୍ତି ସାଧାରଣ ଜୀବନ । ଯଦି କିଛି ସଫାସଫି ସିଧାସଳଖ ପ୍ରକାଶ କରିବାର ଥିବ ତ ସେ ଦିଗରେ ସଙ୍କୋଚ ରହିବା ଉଚିତ ନୁହେଁ । ତାହାହେଲେ ଯାଇ ଜନସାଧାରଣଙ୍କ ଚେତନା ବଢ଼ିବ । ତାହା ନ ହେଲେ ମନେହେବ, ସବୁ ଠିକ୍‌ଠାକ୍ ଚାଲିଛି । ଖବରକାଗଜରୁ ଦେଖିଲି ଯେ, ଧେବର ବଲାଙ୍ଗୀର, ସମ୍ବଲପୁର ଓ ମୟୂରଭଞ୍ଜ ଯାଉଛନ୍ତି । ସେ ଅଞ୍ଚଳରେ ତ କଂଗ୍ରେସର ସେଭଳି ସଙ୍ଗଠନ ନାହିଁ । ଏଣୁ ସେ ଆଡ଼କୁ ଧେବର ଗଲେ ତାଙ୍କୁ ଯେପରି ସରକାରଙ୍କ ତରଫରୁ ବୁଝେଇ ଦିଆଯିବ, ସେ ସେସବୁ ଗ୍ରହଣ କରିନେବେ । ତାଙ୍କୁ କହି କଟକ ନିଅ ଓ ସେଠାରୁ ସେ ଜାଣନ୍ତୁ ଯେ, କଂଗ୍ରେସ କିଭଳି ଚାଲିଛି । ସେଠାରେ ଦାବି ଉଠିବା ଦରକାର । ଯେଉଁମାନେ ସେସବୁ ଦାବି କରିବେ, ସେମାନେ ଆଗକୁ ବାହାରି ଆସିବା ଦରକାର । ଓଡ଼ିଶାରେ ଯେମିତି ଚାଲିଛି, ଅଜଣା ବା ଟୋକାଳିଆ ସ୍ତରର ଲୋକଙ୍କ ଦ୍ୱାରା ଏ କଥା କଲେ, ସେଥିରେ କାମ ହେବ ନାହିଁ । ଖାଣ୍ଟି ଓ ସିଧାସଳଖ ବାଟ ହେଲା ସବୁଠାରୁ ଭଲ ଓ ଫଳପ୍ରଦ । କଂଗ୍ରେସ କମିଟି ବା କଂଗ୍ରେସ ସରକାର ବିରୋଧରେ ଅଭିଯୋଗ କଲେ, ସେ ଅଭିଯୋଗ ଯେ କଂଗ୍ରେସ ଦଳ ବିରୋଧରେ ହେଲା, ଏଭଳି କଥା ନୁହେଁ । କଂଗ୍ରେସ ଦଳରେ ଏସବୁ ଚଳେ ।

ମୋ'ର କହିବାର କଥା, ସମାଧାନର ବାଟ ନ କରି, ଖାଲି ଚିଡ଼େଇଲା ଭଳି ନ କରି ସବୁ କିଛି ଧାରାବାହିକ ଭାବରେ କରିବା ଉଚିତ । ...ତା'ପରେ ମୋ' ଯିବା କଥା– ଦୀନବନ୍ଧୁବାବୁ ଗୋଟିଏ ଦିଗରୁ କହୁଛନ୍ତି ଯେ, ମୁଁ ବର୍ତ୍ତମାନ ଏଠାରୁ ଚାଲିଯାଏ । ସେ ମୋତେ ଯେଉଁ ଚିଠି ଲେଖିଛନ୍ତି, ତହିଁରେ ଅନେକ ତ୍ରୁଟି ରହିଯାଇଛି । ପ୍ରଥମ କଥା ହେଲା, ମୋତେ କେନ୍ଦ୍ର ନେତୃତ୍ୱ ଆଗରେ ଏକ ଯୁକ୍ତି ଦେଖାଇ ଏଠାକୁ ଛାଡ଼ିବାକୁ ହେବ । ନ ହେଲେ ସେମାନେ ଭାବିବେ, ମୁଁ ସେଠାରେ ଗୋଳମାଳ ଆରମ୍ଭ କରିବାକୁ ଯାଉଛି । ଖାଲି ଜଣେ ରାଜ୍ୟପାଳ ଭାବରେ ନୁହେଁ, ମୁଁ ଜଣେ ତୁଙ୍ଗ ଶ୍ରେଣୀ କଂଗ୍ରେସ ଲୋକ ହୋଇଥିବାରୁ ମୋ' ପକ୍ଷରେ ସେ ଅସୁବିଧାଟି ରହିଛି । ମୁଁ ଯେତେବେଳେ ଜାଣିବି, ବାଟ ସଫା ହୋଇଗଲା, ସେତେବେଳେ ଯାଇ ମୁଁ ଯିବି । ମୁଁ ଅଧାବାଟିଆ କାମ ଜାଣେନା । କିନ୍ତୁ ତୁମେମାନେ ସେଭଳି ବାଟ ଲାଗି ପ୍ରସ୍ତୁତ ନୁହଁ । ତା'ପର କୌଶଳଟି ହେଲା, କାମଟି କଂଗ୍ରେସ ଦଳ ଭିତରୁ ହିଁ ଆରମ୍ଭ ହେବା ଆବଶ୍ୟକ । ସେଇଥିପାଇଁ କଂଗ୍ରେସ ଦଳ ମଧ୍ୟରେ ଓ ବିଧାନସଭାର କଂଗ୍ରେସ ଗୋଷ୍ଠୀ ମଧ୍ୟରେ

ଲଗାତାର ଭାବରେ ଏକ ବିରୋଧୀ ଗୋଷ୍ଠୀ ରହିବା ଦରକାର । ସେଥିପାଇଁ ତୁମମାନଙ୍କୁ ପ୍ରାଦେଶିକ କମିଟିର ଓ କଂଗ୍ରେସ ବିଧାୟକମାନଙ୍କର କେତେକ ବରାଦୀ ବୈଠକ ଡକାଇବାକୁ ନୋଟିସ ଦେବାକୁ ହେବ । ମୋତେ ଦେଖାଯାଉଛି, ଓଡ଼ିଶା ପାର୍ଟିରେ ସେଭଳି କାମ କରିବାକୁ ଜଣେ ହେଲେ ନାହିଁ । ମୁଁ ତ ବିଧାୟକ ନୁହେଁ; ତେବେ ପ୍ରାଦେଶିକ କମିଟିର ସଦସ୍ୟ ଭାବରେ ମୁଁ ସେକଥା କରିପାରିବି । ହେଲେ ବର୍ତ୍ତମାନର ଦୁରବସ୍ଥା (ବନ୍ୟାତ୍ରାଣ କାମ ଚାଲିଥିବା ଭିତରେ) ସମୟରେ ସେ କାମ ପାଇଁ ସମୟ ଅନୁକୂଳ ନୁହେଁ । ଦୀନବନ୍ଧୁବାବୁ କହନ୍ତି, ମୁଁ ବେସରକାରୀ ବନ୍ୟାତ୍ରାଣ କାର୍ଯ୍ୟର ଦାୟିତ୍ୱ ନିଏ । ମୁଁ ଯାହା ଦେଖିପାରୁଛି, ପ୍ରାଦେଶିକ କଂଗ୍ରେସ କମିଟି ଓ ସରକାର ନିଜର ସ୍ୱାର୍ଥସାଧନ ଲାଗି ପ୍ରାଣପଣେ ଲାଗିପଡ଼ିଛନ୍ତି । ଦେଶର ସ୍ୱାର୍ଥ କଥା ସେମାନଙ୍କ ମନରେ ନାହିଁ । ଯାହାସବୁ ସେ ବାବଦରେ ଖବର ପାଉଛି, ସେସବୁ ଉଦ୍‌ବେଗଜନକ । ମୁଁ ଯେମିତି ଆଉ କେଉଁ ଦୁନିଆରେ ଅଛି । ଜନମତ ଏଭଳି ଅନ୍ୟାୟ କାମକୁ କିଭଳି ବରଦାସ୍ତ କରୁଛି, ତାହା ମୋତେ ଆଶ୍ଚର୍ଯ୍ୟ ଲାଗୁଛି... ।

ଗୋଟିଏ କଥା ଉପରେ ମୁଁ ଜୋର ଦେବି ଯେ, କିଛି କିଛି ବିରୋଧ ଦେଖାଇବାକୁ ହେବ, ତାହା ନ ହେଲେ ଭବିଷ୍ୟତର ବାଟ ବନ୍ଦ ହୋଇଯିବ । ଯଦି ତୁମ୍ଭେମାନେ ବିରୋଧକୁ ଯଥାସମ୍ଭବ ସ୍ତରକୁ ନେଇ ଚଳାଇ ରଖିପାରିବ ତ ଖୁବ୍ ଏକ ବଡ଼ କାମ କରିବ ।

ସ୍ୱା–ଡ. ମହତାବ

ମହତାବବାବୁଙ୍କ ନିଜର ଅନୁଗତମାନଙ୍କୁ ଏତେ ଉଦ୍‌ବୋଧନ ସତ୍ତ୍ୱେ ପ୍ରାୟ ଛଅ ସାତ ମାସ ପର୍ଯ୍ୟନ୍ତ ସେମାନେ ବିଶେଷ କିଛି କରିପାରୁନଥାନ୍ତି । ଇତିମଧ୍ୟରେ ସୀମା କମିଶନର ରିପୋର୍ଟ ଉପରେ କେନ୍ଦ୍ର ସରକାରଙ୍କ ନିଷ୍ପତ୍ତି ପ୍ରକାଶିତ ହେଲା । ତହିଁରେ ଓଡ଼ିଶା ପାଇଁ କିଛି କୁଆଡୁ ମିଳିଲା ନାହିଁ । ଏଥିରେ ରାଜ୍ୟବାସୀଙ୍କ ମଧ୍ୟରେ ଘୋର ଅସନ୍ତୋଷ ଦେଖାଦେଇଥିଲା ଓ କଂଗ୍ରେସ ଦଳ ଏ ଜନଅସନ୍ତୋଷରେ ଯୋଗ ଦେଲା । ଏହି ଆନ୍ଦୋଳନରେ ଦୁଇଜଣ ଲୋକ ପୁଲିସ ଗୁଳିରେ ପ୍ରାଣ ହରାଇଥିଲେ ଓ କଂଗ୍ରେସ ଦଳ ପୂରାପୂରି ବଦନାମ ହୋଇଯାଇଥିଲା । ...ଓଡ଼ିଶାରେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ଓଡ଼ିଶା ସରକାର ପ୍ରଚାର ଓ ପ୍ରଭାବ ପକାଇବା ଲାଗି ସରକାରୀ ତହବିଲରୁ ୨ ଲକ୍ଷ ଟଙ୍କା ଗୁପ୍ତରେ ଖର୍ଚ୍ଚ ହୋଇଥିବା କଥା ଓ ସେ କାମ ପାଇଁ ଜଣେ ଆଇ.ଏ.ଏସ୍. ଅଫିସର ନିଯୁକ୍ତିକୁ ମହତାବ ବାବୁ ତାଙ୍କ ଲୋକଙ୍କ ଜରିଆରେ ଜାଣିପାରିଥାନ୍ତି । ବୃହତ୍ତର ଓଡ଼ିଶା ଗଠନର ବିଶ୍ୱକର୍ମା ବୋଲି କୁହାଯାଉଥିବା ହରେକୃଷ୍ଣ ମହତାବ ନିଜର ଶତ୍ରୁମାନଙ୍କୁ (ନବକୃଷ୍ଣ ଚୌଧୁରୀଙ୍କୁ) ବଦନାମ କରିବା ଲାଗି ଜବାହରଲାଲ ନେହେରୁ ଓ ଆଜାଦ୍‌ଙ୍କୁ ଏସବୁ ଜଣାଇବାକୁ ୧୯୫୬ ଏପ୍ରିଲ ୧୫ ତାରିଖରେ ଏବଂ ଏପ୍ରିଲ ୨୦ରେ ଦୁଇଟି ଚିଠି ଲେଖିଛନ୍ତି ଏବଂ ନେହେରୁଙ୍କର

ଏତେଦିନେ ତାଙ୍କ ପ୍ରତି ସୁଦୃଷ୍ଟି ପଡ଼ିଥିବାରୁ ତାଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରିଛନ୍ତି । ଏହାଫଳରେ ନେହେରୁ ଓଡ଼ିଶା ସରକାରଙ୍କ ଏଭଳି କାର୍ଯ୍ୟକୁ ଅପସନ୍ଦ କରି ନବବାବୁଙ୍କୁ ଏକ ଚିଠି ଲେଖିଥିବାର ଜଣାଯାଏ ।

କିନ୍ତୁ ଏସବୁ ସତ୍ତ୍ୱେ ନବକୃଷ୍ଣ ଚୌଧୁରୀଙ୍କୁ ତଡ଼ିବା ମୋଟେ ସହଜ ନଥିଲା । କାରଣ, ସେତେବେଳର ପ୍ରାଦେଶିକ କଂଗ୍ରେସ କମିଟି ସଭାପତି ବିଶ୍ୱନାଥ ଦାସ ଏବଂ ସୁରେନ୍ଦ୍ରନାଥ ପଟ୍ଟନାୟକ ନବବାବୁ ମୁଖ୍ୟମନ୍ତ୍ରୀ ହୋଇ ରହିବା ପାଇଁ ଅନୁରୋଧ କରି କହିବା ଓ ପତ୍ର ଲେଖିବାଠାରୁ ଆରମ୍ଭ କରି ନିଖିଳ ଭାରତ କଂଗ୍ରେସ କମିଟିର ସଭାପତି ଧେବରଙ୍କୁ ନବବାବୁ ମୁଖ୍ୟମନ୍ତିତ୍ୱ ନ ଛାଡ଼ନ୍ତୁ ବୋଲି ଅନୁରୋଧ କରୁଥାନ୍ତି । ଅଧିକାଂଶ ବିଧାୟକ ନବବାବୁଙ୍କ ରହିବା ଚାହୁଁଥାନ୍ତି । ନବବାବୁ ସେସବୁ ଅନୁରୋଧ ରକ୍ଷା କରି ହଁ ଭରିଥିଲେ, ମହତାବବାବୁ ଆରବ ସାଗର ତଟରେ ହିଁ ରହିଯାଇଥାନ୍ତେ ।

୧ ୯୫୩ ଜୁଲାଇ ୧୬ ତାରିଖରେ ନବକୃଷ୍ଣ ଚୌଧୁରୀ ଜବାହରଲାଲ ନେହେରୁଙ୍କୁ ଯେଉଁ ଚିଠି ଲେଖିଥିଲେ, ତହିଁରେ ସେ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବା କଥା ଜଣାଇଥିଲେ । ପରବର୍ତ୍ତୀ କାଳରେ ତାଙ୍କ ଇସ୍ତଫା କଥା ବହୁବାର ଉଠିଛି, କିନ୍ତୁ ନେହେରୁ ଓ କଂଗ୍ରେସ ସଭାପତି ଧେବର ଚାହୁଁଥିଲେ ଯେ ସେ ୧ ୯୫୭ ନିର୍ବାଚନ ପର୍ଯ୍ୟନ୍ତ ରହନ୍ତୁ । ତେବେ ବ୍ରହ୍ମପୁରରେ ଅନୁଷ୍ଠିତ ହେଉଥିବା ଅଖିଳ ଭାରତୀୟ କଂଗ୍ରେସ କମିଟି ଅଧିବେଶନ ପର ପର୍ଯ୍ୟନ୍ତ ଏବଂ ବିନୋବା ଓଡ଼ିଶା ନ ଛାଡ଼ିବା ପର୍ଯ୍ୟନ୍ତ ନବବାବୁ ଇସ୍ତଫା ଦେବେ ନାହିଁ ବୋଲି ସ୍ଥିର କରିଥିଲେ । କୌଣସି ସଙ୍କଟମୟ ପରିସ୍ଥିତିରେ ନାଟକୀୟ ଭାବରେ ଇସ୍ତଫା ଦେବାର ପକ୍ଷପାତୀ ସେ ନଥିଲେ । ଏସବୁ ପରେ ବି ସେ ଇସ୍ତଫା ନ ଦେଉଥିବାରୁ ମହତାବବାବୁ ଏବଂ ତାଙ୍କର ଅନୁଗତ ଗୋଷ୍ଠୀ ଅସ୍ଥିର ହୋଇପଡୁଥାନ୍ତି । ସେମାନଙ୍କ ସୁଯୋଗକୁ, ଓଡ଼ିଶା ସରକାର ସୀମା ଆନ୍ଦୋଳନ ଯୋଗୁଁ ଲୋକଙ୍କ ନିକଟରେ ଅପ୍ରିୟ ହୋଇପଡ଼ିଥିଲେ । ଯେଉଁ କଂଗ୍ରେସ ନେତାମାନେ ଖୋଲାଖୋଲି ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱକୁ ଚାଲେଞ୍ଜ ଦେବାକୁ ଭରସୁ ନଥିଲେ, ସେମାନେ ଏହି ମଉକାରେ ସକ୍ରିୟ ହେଲେ । ଦିନେ ମହତାବବାବୁଙ୍କର ଏକାନ୍ତ ବିଶ୍ୱସ୍ତ ବନମାଳୀ ପଟ୍ଟନାୟକ ନବବାବୁଙ୍କ ବିଶ୍ୱସ୍ତ ଜୟକୃଷ୍ଣ ମହାନ୍ତିଙ୍କ ନିକଟକୁ ଆସି କହିଲେ, ''ନବବାବୁ ତ ଯିବେଯିବେ ବୋଲି ଜିଦ୍ ଧରିଛନ୍ତି ; ଏମିତି କଅଣ ଅଚଳ ଅବସ୍ଥା ରହିଥିବ ?'' ମହତାବବାବୁଙ୍କ ଭକ୍ତ ହେଲେ ବି ବନମାଳୀବାବୁଙ୍କର ନବବାବୁଙ୍କ ପ୍ରତି ସମ୍ମାନ ଥିଲା । ଉଭୟ ବନ୍ଧୁ ଏହାର ଉତ୍ତର ପାଇଁ ନବବାବୁଙ୍କ ନିକଟକୁ ଯାଇଥିଲେ । ନବବାବୁଙ୍କ ପରେ ମହତାବବାବୁ ଓଡ଼ିଶାକୁ ମୁଖ୍ୟମନ୍ତ୍ରୀ ହୋଇ ଆସିବା ପ୍ରସ୍ତାବ ବନମାଳୀବାବୁ ଦେଲେ । ନବବାବୁ ସେମାନଙ୍କୁ ତାଙ୍କ ଚିରାଚରିତ ବିଚାର କହିଥିଲେ । ସେ କହିଥିଲେ, ''ଶାସନ ଚଳାଇବାଟା ଖୁବ୍ ବଡ଼ କଥା

ନୁହେଁ । ଏଥିପାଇଁ ଏକ ଶାସନ କଳ ଅଛି । ଶଗଡ଼ ସରି ପଡ଼ିଥିଲେ, ହଡ଼ାବଳଦ ଯୋଚି ବୁଢ଼ା ଗାଡ଼ିଆଳ ବି ଗାଡ଼ି ନେଇ ଯାଇପାରିବ । ମୁଁ ଚାହୁଁଛି, ମହତାବବାବୁ ଓ ମୁଁ ଶାସନ ବାହାରେ ରହି ସାଙ୍ଗଠନିକ କାମ କରନ୍ତୁ, ଯୁବକମାନେ ଶାସନ ଚଳାନ୍ତେ ।''

ଏହାପରେ ୧୯୫୬ ଜୁନ୍ ୨୭ ଓ ୨୮ ତାରିଖ ଦିନ ଖଣ୍ଡଗିରିଠାରେ ନୂତନ ନେତା ନିର୍ବାଚନ ସମ୍ପର୍କରେ ଆଲୋଚନା କରିବାକୁ ଏକ କବାଟକିଳା ବୈଠକ ଡକାଯାଇଥିଲା । ନବବାବୁ ଏକ ସାଇକେଲ ଚଢ଼ି ଯାଇ ସେଠାରେ ପହଞ୍ଚି ଦେଖିଲେ, ଘରର ସବୁ କବାଟ ଏବଂ ଝରକା ବନ୍ଦ ରହିଛି । ସେ ନିଜେ ଝରକାଗୁଡ଼ିକୁ ଖୋଲିଦେଲେ ; କହିଲେ, ''କଅଣ ଏତେ ଗୁପ୍ତକଥା ହେବାକୁ ଅଛି ଯେ ଝରକା, କବାଟସବୁ ବନ୍ଦ ହୋଇଛି ?''

ତା'ପରେ ମହତାବବାବୁଙ୍କ ଅନୁଚରମାନଙ୍କର ଯେଉଁ ପ୍ରସ୍ତାବ ଆଣିବାର କଥା, ସେମାନଙ୍କ ତରଫରୁ କେହି କିଛି କହୁନଥାନ୍ତି । ଅବସ୍ଥା ଲକ୍ଷ୍ୟ କରି ନବବାବୁ ନିଜେ କହିଲେ, ''ମୁଁ ତ ଯିବାକୁ ଚାହୁଁଚି, ଆଉ ଅଡୁଆ କଅଣ ଅଛି ଯେ ଏଥିପାଇଁ ବୈଠକ ଡକାଯାଇଛି ?''

ସେ ଦିଗରେ ଆଉ କିଛି ଆଲୋଚନା ହେଲାନାହିଁ । ଏହାପରେ ଶାନ୍ତନୁକୁମାର ଦାସ, ଭୈରବ ମହାନ୍ତି, ସୁରେନ୍ଦ୍ରନାଥ ପଟ୍ଟନାୟକ, ଗୋବିନ୍ଦଚନ୍ଦ୍ର ସେଠ, ଉପେନ୍ଦ୍ର ମହାନ୍ତି, ଜୟକୃଷ୍ଣ ମହାନ୍ତି ଓ ମାଧବ ରାଉତରାୟ ଓଡ଼ିଶା କଂଗ୍ରେସ ବିଧାୟକମାନଙ୍କର ଏକ ବରାଦୀ ବୈଠକ ପାଇଁ ସେକ୍ରେଟେରୀଙ୍କୁ ଏକ ନୋଟିସ୍ ଦେଲେ । ସବୁକଥା ବିଚାର କରି ନବବାବୁଙ୍କ ନେତୃତ୍ୱ ଉପରେ ଦୃଢ଼ ଆସ୍ଥା ପ୍ରକାଶ କରିବା ଏବଂ ତାଙ୍କୁ ପରବର୍ତ୍ତୀ ନିର୍ବାଚନ ପର୍ଯ୍ୟନ୍ତ ରହିବା ଲାଗି ଏକ ପ୍ରସ୍ତାବ ଆଣିବାକୁ ସେମାନେ ଚାହିଁଲେ ।

ଇତିମଧ୍ୟରେ କେନ୍ଦ୍ର ପାର୍ଲାମେଣ୍ଟାରୀ ବୋର୍ଡ଼ରେ ନବବାବୁଙ୍କ ଇସ୍ତଫା ଗ୍ରହଣ କରାଯାଇ ମହତାବବାବୁଙ୍କୁ ଓଡ଼ିଶାର ନେତା ହେବା କଥା ସ୍ଥିର ହୋଇଯାଇଥାଏ । ଖାଲି ମହତାବବାବୁଙ୍କ ବଦଳରେ ବମ୍ବେର କିଏ ରାଜ୍ୟପାଳ ହେବେ, ସେହି କଥା ସ୍ଥିର ହୋଇ ନଥିବାରୁ ଅକ୍ଟୋବର ମାସ ପର୍ଯ୍ୟନ୍ତ ନବବାବୁ ରହନ୍ତୁ ବୋଲି ନେହେରୁଙ୍କ ଇଚ୍ଛା ଥାଏ । ତେବେ, ପୂର୍ବୋକ୍ତ ସପ୍ତରଥୀଙ୍କ ଉଦ୍ୟମ ଫଳରେ ପୁଣି କଅଣ ବିଗିଡ଼ିଯାଇପାରେ, ସେଥିପାଇଁ ମହତାବବାବୁ ଓ ତାଙ୍କ ଅନୁଗତମାନେ ଆଶ୍ୱସ୍ତ ରହିପାରୁ ନଥାନ୍ତି । କାରଣ, ବିଶ୍ୱନାଥ ଦାସ ଓ ସୁରେନ୍ଦ୍ରନାଥ ପଟ୍ଟନାୟକ ଗୋଷ୍ଠୀ ନବବାବୁଙ୍କ ଭାଗଚାଷୀ ଆଇନ ଆଦି ଯୋଗୁଁ ବିରକ୍ତ ହୋଇଥିଲେ ବି ମହତାବବାବୁଙ୍କର ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ହେବାକୁ ତୀବ୍ର ବିରୋଧ କରୁଥିଲେ ।

ଏହି ସମୟରେ ବମ୍ବେରେ କଂଗ୍ରେସ ଅଧିବେଶନ ବସିଲା । ସେଠାରେ ଉଭୟ ଗୋଷ୍ଠୀ ମହତାବବାବୁଙ୍କୁ ଆଣିବା ଓ ନବବାବୁଙ୍କୁ ରଖିବା ପାଇଁ ଲବି କଲେ । କିନ୍ତୁ ନିଜେ ନବବାବୁ

ଏକାନ୍ତ ଅନିଚ୍ଛା ପ୍ରକାଶ କରିବାରୁ, କଂଗ୍ରେସ ନେତୃତ୍ୱ ମହତାବବାବୁଙ୍କ କଥା ସ୍ଥିର କଲେ । ମହତାବବାବୁ ନିଜେ ବି ମୋରାରଜୀ ଦେଶାଇ ଓ ବିଧାନଚନ୍ଦ୍ର ରାୟଙ୍କ ଜରିଆରେ ଚାପ ଦେବା ଆରମ୍ଭ କଲେ । ଏ ଦିଗରେ ୧୯୫୬ ଅଗଷ୍ଟ ୯ ତାରିଖର ବିଧାନଚନ୍ଦ୍ର ରାୟଙ୍କର ନବବାବୁଙ୍କୁ ଲେଖା ଚିଠିଟି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ସେ ସେହି ଚିଠିରେ ଲେଖିଛନ୍ତି, ''ମହତାବ ବାବୁ ଆସି ଦାୟିତ୍ୱ ନେବା ଯଦି ଡେରି ହୁଏ ତ, ତୁମେ ରାଧାନାଥ ରଥଙ୍କୁ ଦାୟିତ୍ୱ ଦେଇ ଚାଲିଗଲେ ଭଲ ହେବ ।''

ଏହାପରେ ସେପ୍ଟେମ୍ବର ପ୍ରଥମାର୍ଦ୍ଧରେ ବିଧାନସଭା ବୈଠକ ବସିବା ଲାଗି ଦିନ ସ୍ଥିର ହୋଇଗଲା । ମହତାବବାବୁଙ୍କର ମୁଖ୍ୟମନ୍ତ୍ରୀ ଭାବରେ ଆସିବା ଲାଗି ଯେଉଁଭଳି କିଛି ବିଧାୟକ ଲାଗିପଡ଼ିଥାନ୍ତି, ସେହିଭଳି ପୂର୍ବୋକ୍ତ ଶାନ୍ତନୁକୁମାର ଦାସ ଆଦି ଓ ଆଉକିଛି ବିଧାୟକ ଏହାର ତୀବ୍ର ବିରୋଧ କରୁଥାନ୍ତି । ଅନ୍ୟ କେତେକ ବିଧାୟକ କୌଣସି ନିଷ୍ପତ୍ତିରେ ପହଂଞ୍ଚିପାରୁ ନଥାନ୍ତି । ମନ୍ତ୍ରୀମାନଙ୍କ ମଧ୍ୟରେ ସଦାଶିବ ତ୍ରିପାଠୀ ଇତିପୂର୍ବରୁ ମନ୍ତ୍ରିତ୍ୱରୁ ଇସ୍ତଫା ଦେଇଦେଇଥାନ୍ତି । ତତ୍କାଳୀନ ମନ୍ତ୍ରୀ ସତ୍ୟପ୍ରିୟ ମହାନ୍ତି ଦିନେ ନବବାବୁଙ୍କୁ ତାଙ୍କ ଘରକୁ ଖାଇବାକୁ ଡାକିଥିଲେ । ନବବାବୁ କୁଆଡ଼େ ତାଙ୍କ ବୋହୂଙ୍କ ବଡ଼ି ଆମ୍ବିଳକୁ ଖୁବ୍ ପସନ୍ଦ କରନ୍ତି । ଖାଇବା ସରିବା ପରେ ସେ ନବବାବୁଙ୍କୁ ଶେଷ କଥା ପଚାରିଲେ, ''ଆପଣ କଅଣ ଇସ୍ତଫା ଦେବାକୁ ଏକାନ୍ତ ବଦ୍ଧପରିକର ?''

ତା'ର ଉତ୍ତରରେ ନବବାବୁ କହିଥିଲେ, ''ମୋତେ ତଡ଼ିବାକୁ ଯେଉଁମାନେ ଉତ୍ସାହୀ ଓ ମୋତେ ରଖିବାକୁ ଯେଉଁମାନେ ଆଗ୍ରହୀ, କେହି ମୋ' ନୀତିକୁ ବିଚାରକୁ ନେଇ ସେକଥା କରୁନାହାନ୍ତି । ସେମାନେ ନିଜର ବା ନିଜ ଗୋଷ୍ଠୀର ସ୍ୱାର୍ଥ ଦୃଷ୍ଟିରୁ ଏସବୁ କଥା କହୁଛନ୍ତି । ଏଣୁ ମୋ' ରହିବା ପ୍ରଶ୍ନ ଉଠୁନାହିଁ ।''

କଂଗ୍ରେସ ବିଧାୟକମାନଙ୍କ ବୈଠକ ପୂର୍ବରୁ ମହତାବବାବୁଙ୍କ ପ୍ରମୁଖ ସେନାପତି କିଛି ବିଧାୟକଙ୍କୁ ବିମାନରେ ବୁଲାଇନେବା ଛଡ଼ା ନାନା ପ୍ରକାର ଉପାୟରେ କରାୟତ୍ତ କରିଥିଲେ । ଅନ୍ୟ କିଛି ନିରୀହ ବିଧାୟକଙ୍କୁ ଭୟଭୀତ କରି ସମ୍ମତି ହାସଲ ଉଦ୍ଦେଶ୍ୟରେ ନିର୍ଦ୍ଧାରିତ ଦିନ କଟକର ଜଣାଶୁଣା ଗୁଣ୍ଡାଙ୍କୁ ବିଧାନସଭା ପରିସର ମଧ୍ୟକୁ ଅଣାଯାଇଥିଲା । ଏସବୁର ମୋଟେ କିଛି ଆବଶ୍ୟକତା ନଥିଲା । କାରଣ, ବିଧାୟକମାନଙ୍କର ସେହି ଶେଷ ସଭାରେ ନବବାବୁ ଏଭଳି ଭାବୋଚ୍ଛ୍ୱାସରେ ତାଙ୍କର ବକ୍ତବ୍ୟ ରଖିଲେ ଯେ ତାହା ପରେ ଅନ୍ୟ କାହାର କିଛି କହିବାର ନଥିଲା ।

କେନ୍ଦ୍ରୀୟ ପାର୍ଲାମେଣ୍ଟାରୀ କମିଟି ନବବାବୁଙ୍କୁ ଅବ୍ୟାହତି ଦେଇ ମହତାବବାବୁଙ୍କୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ କରାଇବାକୁ ନିଷ୍ପତ୍ତି ନେଲାପରେ ନବବାବୁଙ୍କ ସହଯୋଗ କାମନା

କରି ତାଙ୍କୁ ଏକ ପତ୍ର ଲେଖିବାକୁ ପରାମର୍ଶ ଦେଇଥିଲେ । ମହତାବବାବୁଙ୍କ ସେହି ପତ୍ରଟି ଅତି ଉଲ୍ଲେଖଯୋଗ୍ୟ । ଅନ୍ୟ ସମସ୍ତ ଚିଠିରେ ମହତାବବାବୁ ବନ୍ଧୁଙ୍କୁ 'ନବବାବୁ' ବୋଲି ସମ୍ବୋଧନ କରିଆସୁଥିଲେ । ଏଥିରେ କିନ୍ତୁ ପ୍ରିୟ ଚୌଧୁରୀ ବୋଲି ସମ୍ବୋଧନ କରିଛନ୍ତି; ତାହାର ଓଡ଼ିଆ ଅନୁବାଦ ନିମ୍ନରେ ଦିଆଗଲା ।

ଘରୋଇ ଏବଂ ବ୍ୟକ୍ତିଗତ

ଗଭର୍ଣ୍ଣର
ବମ୍ବେ
ରାଜଭବନ
ତା ୧୨, ଜୁଲାଇ, ୧୯୫୬

ପ୍ରିୟ ଚୌଧୁରୀ !

ବହୁ ବିଚାର କରି ଓ ହେଜିପାଞ୍ଚି ହେଲାପରେ ମୁଁ ଅତି ସନ୍ତର୍ପଣରେ ଏ ଚିଠି ଲେଖୁଛି । ମୁଁ ଜାଣେନା ଆପଣ କିପରି ଏହାକୁ ଗ୍ରହଣ କରିବେ । କଥାଟି ହେଉଛି, ଆପଣ ବହୁ ଦିନରୁ ଇସ୍ତଫା ଦେବାକୁ ଚାହୁଁଥିଲେ ଓ କେନ୍ଦ୍ରୀୟ ସଂସଦୀୟ ବୋର୍ଡ଼ ଆପଣଙ୍କୁ ସେଥିପାଇଁ ଅନୁମତି ଦେବା ସଙ୍ଗେସଙ୍ଗେ ମୋତେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଦେବାଲାଗି ନିଷ୍ପତ୍ତି ନେଇଛନ୍ତି । ଏହି ନିଷ୍ପତ୍ତି ଜୁନ୍ ୪ ତାରିଖରୁ ବମ୍ବେଠାରେ ନିଆଯାଇଥିଲେ ବି, ଦୁଃଖର କଥା ଯେ, ମୁଁ ଗତ ୫ ତାରିଖ ପର୍ଯ୍ୟନ୍ତ, ଧେବର ଓ ମୋରାଜ୍‌ଜୀ ଭାଇ ମୋତେ ନ କହିବା ଯାଏଁ, ସେ ବିଷୟରେ କିଛି ଜାଣି ନଥିଲି । ମୁଁ ତ ଅନ୍ୟ ଏକ ଦିଗରେ ଚିନ୍ତା କରୁଥିଲି; ଏଣୁ ଏ ନିଷ୍ପତ୍ତି ମୋ' ପାଇଁ ଅପ୍ରତ୍ୟାଶିତ ଥିଲା । ମୁଁ ମୋ' ମନକଥା ଜବାହରଲାଲଜୀ, ପନ୍ଥଜୀ ଓ ମୌଲାନାଙ୍କୁ ଜଣାଇ ଦେଇଥିଲି । କିନ୍ତୁ ସେମାନେ ମୋତେ ସଂସଦୀୟ ବୋର୍ଡ଼ର ନିଷ୍ପତ୍ତି ମାନିନେବା ଲାଗି ପ୍ରବର୍ତ୍ତାଇଛନ୍ତି । ଏହି ନିଷ୍ପତ୍ତିରେ ମୁଁ ଖୁସି ନୁହେଁ, ଯଦିଓ ଓଡ଼ିଶାର କିଛି ବନ୍ଧୁ ଭାବୁଥିଲେ ଯେ ମୁଁ ଓଡ଼ିଶା ଫେରିଯିବାକୁ ଚାହେଁ । କିନ୍ତୁ କେନ୍ଦ୍ର ନେତୃତ୍ୱ ତାହା ଚାହୁଁନାହାନ୍ତି । ମୁଁ କର୍ମତତ୍ତ୍ୱରେ ପୂରାପୂରି ବିଶ୍ୱାସ କରେ । ମୁଁ ଆଧ୍ୟାତ୍ମିକ ସାଧନା ଦିଗରେ ଯେତିକି ଆଗେଇଛି, ସେଇଥିରୁ ମୋ'ର ଯେତିକି ଜ୍ଞାନ ହୋଇଛି, ତହିଁରୁ ମୋତେ ଲାଗୁଛି, ଓଡ଼ିଶାରେ ମୋ'ର କର୍ମ ଶେଷ ହୋଇଯାଇଛି । ଯାହା ଭଲମନ୍ଦ କରୁଛି, ତାହା ମୃତବ୍ୟକ୍ତିର କର୍ମ ଭଳି, ଲୋକେ ତାଙ୍କ ତଉଲରେ ବିଚାର କରିବେ । ଏଣୁ ଓଡ଼ିଶା ଫେରିବା ଲାଗି ପ୍ରତିଦିନ ଯେଉଁସବୁ ଚିଠି ଯାଏ, ତା'ର ଉତ୍ତରରେ ମୁଁ ଏଇଆ ହିଁ ଜଣେଇଦେଇଥାଏ । ମୁଁ ସେମାନଙ୍କୁ ଲେଖିଛି ଯେ ମୁଁ ଜୀବନର ଅନ୍ତିମ କାଳରେ ଓଡ଼ିଶା ପାଇଁ କିଛି ଆଧ୍ୟାତ୍ମିକ କାମ କରିବି । ସେ ପର୍ଯ୍ୟନ୍ତ ମୁଁ ମୁକ୍ତ ବିହଙ୍ଗମ ପରି ଖୋଲା ଦୁନିଆରେ ବୁଲିବି । କେନ୍ଦ୍ରୀୟ ସଂସଦୀୟ ବୋର୍ଡ଼ର ନିଷ୍ପତ୍ତି ମୋତେ ଏକ ପିଞ୍ଜରାର ଫନ୍ଦିରେ ପକାଇଦେଲା ପରି ଲାଗୁଛି । ମୁଁ ଏହିଭଳି ଭାବୁଥିଲା ବେଳେ ପ୍ରାଦେଶିକ କମିଟି ଓ କାର୍ଯ୍ୟକାରୀ କମିଟିର ପ୍ରସ୍ତାବ ଆସିଗଲା । ମୁଁ ସଙ୍ଗେସଙ୍ଗେ

ରାଧାନାଥବାବୁଙ୍କୁ ଲେଖିଲି ଯେ ଆପଣଙ୍କୁ ସେ ଦାୟିତ୍ୱରେ ରହିବାପାଇଁ କହିବୋଲି ବୁଝାଇ ଦିଅନ୍ତୁ ଓ ଅନ୍ୟମାନଙ୍କୁ ମୁଣ୍ଡବ୍ୟଥାରୁ ରକ୍ଷା କରନ୍ତୁ । କିନ୍ତୁ ଯାହା ଦେଖାଯାଉଛି, ଆପଣ ନଛୋଡ଼ବନ୍ଧା ।

ଅଗଷ୍ଟ ସୁଦ୍ଧା ସେପ୍ଟେମ୍ବର ଆରମ୍ଭରେ ବର୍ତ୍ତମାନର ଦାୟିତ୍ୱ ଛାଡ଼ିବା ପାଇଁ ପ୍ରସ୍ତୁତ ହୋଇଯାଆନ୍ତୁ ବୋଲି ଧେବର ମୋତେ କହିଲେ । ମୋ' ମନର କଥା ମୁଁ ବି ତାଙ୍କୁ କହିଲି । କିନ୍ତୁ ସେ ତ ଅଟଳ । ଯାହା ଜଣାପଡୁଛି, କଥାଟା ଚୂଡ଼ାନ୍ତ ଭାବରେ ନିଷ୍ପତ୍ତି ହୋଇଯାଇଛି ।

କିନ୍ତୁ ମୋ'ର ଆଶଙ୍କା ହେଉଛି ଯେ ମୁଁ ଓଡ଼ିଶା ଗଲେ ପୁଣି ପୂରାପୂରି ଅଖାଡୁଆରେ ପଡ଼ିଯିବି । ମୁଁ କାମକୁ ବା ବିରୋଧକୁ ବା ଅସୁବିଧାକୁ ସମ୍ମୁଖୀନ ହେବାକୁ ଡରେନାହିଁ । କିନ୍ତୁ କେଉଁ କାମରେ କାହାର ସରାଗ ଥାଏ, କିଏ ବାଧ୍ୟ ହୋଇ କରେ, କଥାଟି ସେଇଠି ରହିଛି । ଓଡ଼ିଶାବାସୀଙ୍କ ଶ୍ରଦ୍ଧାଭାଜନ ହୋଇପାରିଲେ ମୁଁ ଖୁସି ହେବି । ମୁଁ ଯେକୌଣସି ଦାୟିତ୍ୱ ନିଏ, ତାକୁ ସଫଳ କରିବାରେ ମୋ'ର ଆନନ୍ଦ ଥାଏ ।

ଆମ ପିଢ଼ି ଭିତରେ ଆମେ ଓଡ଼ିଶାକୁ ଭାରତ ମଧ୍ୟରେ ସୁପ୍ରତିଷ୍ଠିତ କରିପାରିଲେ ମୋ'ର ଏକ ଅଭିଳାଷ ପୂରଣ ହୁଅନ୍ତା । କିନ୍ତୁ ଏ ଜୀବନ ଲାଗି ଓଡ଼ିଶାରେ ମୋ'ର କର୍ମ ଶେଷ ହୋଇଯାଇଛି ବୋଲି ମୁଁ ବିଶ୍ୱାସ କରୁଥିବାରୁ ସେସବୁ ଅଭିଳାଷକୁ ଚାପିରଖିଥିଲି । ମୁଁ ଜାଣେନା, ଏ ଜୀବନରେ ମୋ' ପାଇଁ କଅଣ ଅଛି ? ଭୁଲ୍ ହେଉ ବା ଠିକ୍ ହେଉ, ମୁଁ ନିଜକୁ ନିଜେ ଭାବିବସେ ଯେ ଓଡ଼ିଶାବାସୀଙ୍କର ମୋ' ପ୍ରତି କିଛି ଆଶୀର୍ବାଦ ଅଛି । ମୁଁ ଯଦି ଏବେ ସେ ଦିଗରେ କିଛି ନ କରିପାରେ, ତାହାହେଲେ ଜାଣିବାକୁ ହେବ ଯେ ମୋ'ର ସେହି ପ୍ରାପ୍ୟ ଶେଷ ହୋଇଗଲା । ସେ କ୍ଷେତ୍ରରେ ତ ଜୀବନଟା ଏକ ବିରାଟ ବିଫଳତାରେ ପର୍ଯ୍ୟବସିତ ହେବ । ସେଥିଲାଗି ମୁଁ ଏକ ନୂଆ କ୍ଷେତ୍ର ସନ୍ଧାନରେ ଥିଲି । ଅନ୍ତତଃ ତା'ରି ଭିତରେ ବୁଢ଼ା ହେଲା ବେଳକୁ କର୍ମ ଆକାଙ୍‌କ୍ଷା ଲୋପପାଇଯାଇଥିବ । କିନ୍ତୁ ଯାହା ଦେଖାଯାଉଛି, ପ୍ରାରବ୍ଧର ଭୋଗରୁ ରକ୍ଷା ନାହିଁ; ମଣିଷକୁ ଅସହାୟ ଭାବରେ ପ୍ରାରବ୍ଧକୁ ମାନିନେବାକୁ ହେବ ।

ଏଇ ପ୍ରାରବ୍ଧ ଭୋଗ କାଳରେ ମୁଁ ଆପଣଙ୍କ ଆଶୀର୍ବାଦ କାମନା କରୁଛି । ଏ ଦୁନିଆର ବନ୍ଧୁ ବିଷୟରେ ବିଭିନ୍ନ ପରିସ୍ଥିତିର ମୂଲ୍ୟାୟନରେ ବିଚାରକ ଭାବରେ କାମ କରିବାର ପଦ୍ଧତି ଦିଗରେ ଭିନ୍ନ ମତ ରହିବ ହିଁ ରହିବ । ଏହାସତ୍ତ୍ୱେ ସହନଶୀଳତା ହିଁ ମଣିଷକୁ ବାନ୍ଧିରଖେ, ଦ୍ୱନ୍ଦ୍ୱ ଊଣା କରେ । ଅନେକଙ୍କଠାରୁ ଶୁଣିଛି ଯେ ୧୯୪୮-୪୯ ମସିହାରେ ଆପଣ ଯେତେବେଳେ ଇସ୍ତଫା ଦେଲେ, ସେତେବେଳେ ମୋ'ର ଅନେକ କାମରେ ଆପଣ ଏକମତ ନ ହୋଇ ଇସ୍ତଫା ଦେଇଥିଲେ । ଏକଥା ମୁଁ କାହା ସହିତ ଆଲୋଚନା କରିନାହିଁ । ସେକଥା

ସତ କି ନୁହେଁ, ତାହା ମୁଁ ଏପର୍ଯ୍ୟନ୍ତ ଜାଣିନାହିଁ । କ୍ୱଚିତ ବିଭିନ୍ନ ଲୋକଙ୍କ ମଧ୍ୟରେ ବିଚାର ଓ କାମ କରିବାର ଢଙ୍ଗରେ ପୂର୍ଣ୍ଣ ଐକ୍ୟମତ ଥାଏ ବୋଲି ମୁଁ ଧରିନେଇଛି । ଏହାସତ୍ତ୍ୱେ ଲୋକେ ଧୈର୍ଯ୍ୟ ଓ ବୁଝାମଣା ସାହାଯ୍ୟରେ ଏକାଠି ଚଳନ୍ତି । କିଏ କିଛି ଦାୟିତ୍ୱ ନେଲେ, ତାକୁ ଯେ ଅନ୍ୟମାନେ ଲାଗିପଡ଼ି ସାହାଯ୍ୟ କରିବେ, ଏଭଳି ଆଶା କରିହୁଏନା । କିନ୍ତୁ ସେଭଳି ସାହାଯ୍ୟ ମିଳୁ ବା ନମିଳୁ, ଯିଏ କିଛି ଦାୟିତ୍ୱ ନିଏ, ତା'ର ଅନ୍ୟମାନଙ୍କ ସାହାଯ୍ୟ କାମନା କରିବା ବିଧେୟ । ଯଦିବା ଅନ୍ୟମାନଙ୍କ ସାହାଯ୍ୟ ନ ମିଳିଲା ତ ପ୍ରଥମେ ଧରିନେବାକୁ ହେବ ଯେ ସାହାଯ୍ୟ ଭିକ୍ଷା କରିବା ଲୋକର କିଛି ତ୍ରୁଟି ରହିଗଲା । 'କର୍ମ' ନିୟମର ଏହି ବହୁପ୍ରଚଳିତ ପଦ୍ଧତି ଅନୁସରଣ କରି ମୁଁ ଅତି ଆନ୍ତରିକ ଭାବରେ ଆପଣଙ୍କ ସହଯୋଗ କାମନା କରୁଛି ।

ମୁଁ ଜାଣେନା, ଆପଣ କିଭଳି ଚିନ୍ତା କରୁଛନ୍ତି । ଯେଉଁ ଅଭିଳାଷ ଧରି ମୁଁ କିଛି କାଳ ଚାଲିଥିଲି, ତାକୁ ଛାଡ଼ି ନୂଆ ଆକାଙ୍‌କ୍ଷା ମୋ' ମୁଣ୍ଡରେ ପଶିବା ଫଳରେ ମୁଁ ଟିକିଏ ବିଚଳିତ ହୋଇପଡ଼ିଛି । ଜୀବନର ବହୁ ଦିନର ଆକାଙ୍‌କ୍ଷାକୁ ଚାପି ନୂଆ ଦିଗରେ ନିଜକୁ ନିୟୋଜିତ କରିବା ପାଇଁ ମନର ଦୃଢ଼ ସଂଯମ ଆବଶ୍ୟକ ।

ମୁଁ ଆପଣଙ୍କଠାରୁ ଏ ବାବଦରେ ଶୀଘ୍ର କିଛି ଜାଣିବାକୁ ପାଇଲେ ଧନ୍ୟ ହେବି ଏବଂ ଯଦି ଆବଶ୍ୟକ ହୁଏ, ଆମେ ଭେଟାଭେଟି ହୋଇ ଏ ବାବଦରେ ଆଲୋଚନା କରିବା ।

ଶ୍ରୀ ନବକୃଷ୍ଣ ଚୌଧୁରୀ — ଆପଣଙ୍କର ଏକାନ୍ତ
ଓଡ଼ିଶାର ମୁଖ୍ୟମନ୍ତ୍ରୀ — ସ୍ୱା. ହରେକୃଷ୍ଣ ମହତାବ

ଏହି ଚିଠିର ଉତ୍ତର ନବବାବୁ ଦେଇଛନ୍ତି କି ନାହିଁ, ଉଭୟଙ୍କ ପୁରୁଣା ଚିଠିପତ୍ର ଫାଇଲରୁ ତାହା ମିଳୁନାହିଁ । କିନ୍ତୁ ମହତାବବାବୁ ଏହାର ଦଶମାସ ପୂର୍ବରୁ ନବବାବୁଙ୍କ ବିତାଡ଼ନ ଅଭିଯାନ କାଳରେ ପୂର୍ବତନ ମନ୍ତ୍ରୀ ଦୀନବନ୍ଧୁ ସାହୁଙ୍କୁ ଯେଉଁ ପତ୍ର ଲେଖିଥିଲେ, ତାକୁ ଓ ନବବାବୁଙ୍କୁ ଲେଖିଥିବା ପୂର୍ବର ଚିଠିଗୁଡ଼ିକ ସହିତ ଏହି ପତ୍ରଟି ମିଳାଇ ପଢ଼ିଲେ ମହତାବବାବୁଙ୍କ ଅସଲ ଭାବମୂର୍ତ୍ତି ବେଶ୍ ଧରାପଡ଼େ ।

## ଏଭଳି ବି ମୁଖ୍ୟମନ୍ତ୍ରୀ ଥିଲେ

ନବବାବୁଙ୍କ କ୍ୱାଟର ପାଖକୁ ଲାଗି ଆସିଷ୍ଟାଣ୍ଟ ସେକ୍ରେଟେରୀ ସଚ୍ଚିଦାନନ୍ଦ ମିଶ୍ରଙ୍କ କ୍ୱାଟର । ସେହି ଏକା ଟାଇପ୍-୬ ଘର । ନବବାବୁଙ୍କ ଘରେ ତ ଗାଲିଚା ଆଦି ନ ଥାଏ । ଖଟରେ ପତଳା ଶେଯ । ନିଜ ବିଛଣା ନିଜେ ବିଛାନ୍ତି ଓ ଉଠିଲା ବେଳେ ନିଜେ ସେସବୁ ଉଠାଇ ଝାଡ଼ିଝୁଡ଼ିଦିଅନ୍ତି । ଚାରିଖଣ୍ଡରୁ ଅଧିକ ଧୋତି ବା ପଞ୍ଜାବି ନଥାଏ । ଆଉ ଥାଏ ଦୁଇଟି ଦୋମୁହାଁ ଧୋତି । ଯେଉଁ ଧୋତିର ମଝି ଅଂଶ ପତଳା ହୋଇ ଚିରିଆସେ, ତା'କୁ

ମଝିରୁ ଚିରି ଦୁଇ କାନିର ଟାଣ ଅଂଶକୁ ସିଲାଇ କରାଯାଏ । ସେ ଦୁଇଟି ଥାଏ ଘରପିନ୍ଧା ପାଇଁ । ପଞ୍ଜାବିର ବେକ ପାଖରୁ ଚିରି ଆସିଲେ ସେଥିରେ ତାଳି ପକାଯାଇ କିଛିଦିନ ଚାଲେ । ଦିଲ୍ଲୀ ଗଲା ବେଳକୁ ଚିରା ଲୁଗା ଓ ପଞ୍ଜାବି ଦେଖାଦେଖି କରି ଅଲଗା କରି ରଖାଯାଏ । ଦିଲ୍ଲୀର ଶୀତରେ ପଞ୍ଜାବି ଉପରେ ସେ ହାତକଟା ସ୍ୱେଟର ପିନ୍ଧନ୍ତି ଓ ତାହା ଉପରେ ଶାଲ୍ । ଏହା ଦେଖି ଥରେ ମୋତିଲାଲ୍ ପଣ୍ଡିତ ଗୋଟିଏ କଳା କୋର୍ଟ ତିଆରି କରି ଆଣି ନବବାବୁଙ୍କୁ ପିନ୍ଧିବାକୁ କହିଥିଲେ । ସେ କୋର୍ଟ୍ ଦେଖି ନବବାବୁ ମୋତିବାବୁଙ୍କୁ କହିଥିଲେ, ''ଏ କୋର୍ଟ ପିନ୍ଧିଲେ ମୁଁ ମୋ' ପରି ଦେଖାଯିବି ନାହିଁ ।'' ଅବଶ୍ୟ ସେ ସେହି କୋର୍ଟଟି କିଛିଦିନ ପିନ୍ଧିଲେ । କିନ୍ତୁ ତାଙ୍କ ସାନଝିଅ ତିନୁ କହନ୍ତି ଯେ ତାଙ୍କର ସେହି କୋର୍ଟପିନ୍ଧା ବେଶ୍ କୌତୁକିଆ ଦେଖାଯାଉଥିଲା । ସେ କୋର୍ଟକୁ ନବବାବୁଙ୍କ ଅପେକ୍ଷା ଅନ୍ୟମାନେ ବେଶି ପିନ୍ଧିଥିଲେ ବୋଲି ତିନୁ କହନ୍ତି । ମୁଖ୍ୟମନ୍ତ୍ରୀ ଥିଲାବେଳେ ବି ସେ ଗାଧୋଇଲାବେଳେ ନିଜର ଲୁଗା, ଫତେଇ ଓ ପଞ୍ଜାବି ସାବୁନରେ ସଫା କରନ୍ତି, କିନ୍ତୁ ସେଥିରେ ନୀଳ ଦିଅନ୍ତି ନାହିଁ କି ଇସ୍ତ୍ରି କରନ୍ତି ନାହିଁ ।

ନବବାବୁ ମୁଖ୍ୟମନ୍ତ୍ରୀ ଥିଲାବେଳେ ଦିନେ ସେକାଳର ସ୍ୱାସ୍ଥ୍ୟମନ୍ତ୍ରୀ ବସନ୍ତମଞ୍ଜରୀ ଦେବୀ ବିଧାନସଭାସ୍ଥିତ ମୁଖ୍ୟମନ୍ତ୍ରୀଙ୍କ ବଖରାରେ ମଧ୍ୟାହ୍ନ ଭୋଜନ ଟିଫିନ୍ କ୍ୟାରିୟର ଦେଖି କୌତୂହଳପରବଶ ହୋଇ ତାକୁ ଖୋଲି ଖୁବ୍ ନିରାଶ ହୋଇ କହିଲେ, ''ସି.ଏମ୍. ଏଇଆ ଖାଆନ୍ତି ! ମାଛ, ମାଂସ, ଅଣ୍ଡା କିଛି ନାହିଁ ? ମୁଁ ତାଙ୍କ ପାଇଁ ଖାଇବା ଲାଗି ଦୁଇ ତିନିଥର ପଠାଇବି । ସେହିଭଳି କରିବ ।'' ନବବାବୁ ସେକଥା ଶୁଣି ତାଙ୍କୁ କହିଥିଲେ ଯେ ଟିଫିନ୍ କ୍ୟାରିଅର ଜିନିଷ ତାଙ୍କ ପାଇଁ ଖାଦ୍ୟ, ଅନ୍ୟସବୁ ଅଖାଦ୍ୟ ।

ମୁଖ୍ୟମନ୍ତ୍ରୀ ଥିଲାବେଳେ ସେ ଓଡ଼ିଶାର ପ୍ରଥମ ଗ୍ରାମଦାନ ଗାଁ ମାନପୁର ଯାଇଥିଲେ । ମୁଖ୍ୟମନ୍ତ୍ରୀ ଆସିଛନ୍ତି ଶୁଣି ପାଖଆଖ ଗାଁର କିଛି ଲୋକ ସେଠାକୁ ଆସିଥିଲେ । ନବକୃଷ୍ଣ ଚୌଧୁରୀ ମାନପୁର ସ୍କୁଲ୍ ବାରଣ୍ଡାରେ ଖାଲିଦେହରେ ଖଣ୍ଡେ ଗାମୁଛା ପକାଇ ଏକ ଚେୟାରରେ ବସିଥାନ୍ତି । ପାଖ ଗାଁର ଜଣେ ଲୋକ ନିଜ ଗାଁର କିଛି ଅସୁବିଧା କଥା ଜଣାଇବା ଲାଗି ମୁଖ୍ୟମନ୍ତ୍ରୀଙ୍କ ସହିତ ସାକ୍ଷାତ କରାଇଦେବା ପାଇଁ ସ୍କୁଲ ଶିକ୍ଷକଙ୍କୁ କହିଲେ । ଶିକ୍ଷକ ଜଣକ ବାରଣ୍ଡାରେ ବସିଥିବା ଲୋକଙ୍କ ଆଡ଼କୁ ଆଙ୍ଗୁଳି ଦେଖାଇଦେଲେ । ଚେୟାରରେ ବସିଥିବା ଲୋକଙ୍କ ବେଶଭୂଷା ଦେଖି ସେ ଭାବିଲେ, ଶିକ୍ଷକଜଣକ ପ୍ରାୟ ତାଙ୍କ କଥା ଠିକ୍ ଭାବରେ ଶୁଣିପାରିଲେ ନାହିଁ । ତେବେ, କିଛି ବାଟ ଯାଇ ସେ ଜଣେ ଭୂ-ଦାନ କର୍ମୀଙ୍କୁ ପୁଣି ସେହିକଥା କହି ମୁଖ୍ୟମନ୍ତ୍ରୀଙ୍କ ପାଖକୁ ନେଇଯିବା ଲାଗି ଅନୁରୋଧ କଲେ । ଭୂ-ଦାନ କର୍ମୀଜଣକ ବି ସ୍କୁଲ୍ ବାରଣ୍ଡାରେ ଗାମୁଛା ପକାଇ ଫୁଙ୍ଗୁଳା ଦେହରେ ବସିଥିବା ଲୋକଙ୍କୁ

ଦେଖାଇଦେଲେ ; କିନ୍ତୁ ତାଙ୍କ କଥା ବି ଲୋକଟିର ମନକୁ ଗଲା ନାହିଁ । ସେ ସାହସ ବାନ୍ଧି ପୁଣି କହିଲା, ''ମୋତେ କପଟ କରି କୁହ ନାହିଁ, ମୁଁ କେତେ ଦୂରରୁ ଆସିଛି ମୁଖ୍ୟମନ୍ତ୍ରୀଙ୍କୁ କିଛି ଆପତ୍ତି ଜଣାଇବାକୁ । ମୋତେ ଟିକିଏ ତାଙ୍କ ସହିତ ସାକ୍ଷାତ କରାଇଦିଅ ।'' କର୍ମୀଜଣକ ଟିକିଏ ବିରକ୍ତ ହୋଇ କହିଲେ, ''ସେଇ, ସେଇ ଯେ ଚେୟାରରେ ବସିଛନ୍ତି, ସେ ହେଉଛନ୍ତି ମୁଖ୍ୟମନ୍ତ୍ରୀ ।'' ବିଚରା ଲୋକଟି ନିରାଶ ହୋଇ ଚେୟାରରେ ବସିଥିବା ଲୋକଙ୍କୁ ଯାଇ କହିଲା ଯେ ସେ ମୁଖ୍ୟମନ୍ତ୍ରୀଙ୍କୁ କିଛି ଆପତ୍ତି ଜଣାଇବାକୁ ଆସିଛି । ନବବାବୁ କହିଲେ, ''କୁହ'' । କିନ୍ତୁ ସିଏ ତ ମୁଖ୍ୟମନ୍ତ୍ରୀଙ୍କୁ ଆପତ୍ତି ଜଣାଇବାକୁ ଆସିଛି, ଇଏ ତ ଜଣେ ଗାଉଁଲି ଲୋକ ଭଳି, ୟାଙ୍କୁ କଅଣ କହିବ ? ତା'ପରେ ଲୋକଟି କହିଲା, ''ମୋତେ ଟିକିଏ ମୁଖ୍ୟମନ୍ତ୍ରୀଙ୍କୁ ଭେଟ କରାଇଦିଅ ।'' ନବବାବୁ କହିଲେ, ''କଅଣ କହିବାର କୁହ ।'' ସେ ଗାଉଁଲି ଲୋକଟି ପୁଣି ପୂର୍ବଭଳି ଅନୁରୋଧ କରିବାରୁ ନବବାବୁ ଲୋକଟିର ମନୋଭାବ ଅନୁମାନ କରିପାରି ଟିକିଏ ବିଗିଡ଼ିଯାଇ କହିଲେ, ''କଅଣ ବେଶପୋଷାକ ହୋଇ ପଗଡ଼ି ଭିଡ଼ି ଆସିଥାନ୍ତି ?'' ଏହାପରେ ବି ଗାଉଁଲି ଲୋକଟିର ହୃଦ୍‌ବୋଧ ହେଉନଥାଏ ।

ମାନପୁର ଆଳି ଥାନାର ଏକ ଅପନ୍ତରା ଗାଁ । ପାଖଆଖ ଗାଁ ବି ଖୁବ୍ ଦୂରରେ ଦୂରରେ । ସୋମନେ ଆଳି ରାଜା, କନିକା ରାଜାଙ୍କ ନାଁ ଶୁଣିଥିଲେ ବି କେଉଁ ସେମାନଙ୍କୁ ଦେଖିବାର ସୁଯୋଗ ପାଆନ୍ତି ନାହିଁ । ସେମାନଙ୍କ କଳ୍ପନାରେ ରାଜା ଓ ମନ୍ତ୍ରୀ, ଯାତ୍ରାର ରାଜା ମନ୍ତ୍ରୀ ଭଳି ବେଶପୋଷାକ ହୋଇଥିବେ । ଏଣୁ ନବବାବୁଙ୍କୁ ଗାମୁଛାପକା ଫୁଙ୍ଗୁଳା ଦେହରେ ଦେଖି ଗାଉଁଲି ଲୋକଟି ବିଶ୍ୱାସ କରିବାକୁ ନାରାଜ ଯେ ଇଏ ହୋଇଥିବେ ଓଡ଼ିଶାର ସବୁଠାରୁ ବଡ଼ ମନ୍ତ୍ରୀ ।

ମୁଖ୍ୟମନ୍ତ୍ରୀ ଥିଲାବେଳେ ସେ କ୍ୱଚିତ୍ ସାମ୍ବାଦିକ ସମ୍ମିଳନୀ ଡାକୁଥିଲେ ଏବଂ ସାମ୍ବାଦିକ ସମ୍ମିଳନୀରେ ଓଡ଼ିଆରେ କହୁଥିଲେ । ଏଣୁ ଅଣଓଡ଼ିଆ ସାମ୍ବାଦିକମାନେ ତାଙ୍କ କଥା ପୂରା ବୁଝିପାରୁନଥିଲେ ଓ ତାଙ୍କ ସରକାରର ପ୍ରଚାର କରୁନଥିଲେ । ତାଙ୍କ ସମୟରେ ରାଜ୍ୟରେ ହୀରାକୁଦ ବନ୍ଧ, ରାଉରକେଲା ଇସ୍ପାତ କାରଖାନା, କୃଷି ମହାବିଦ୍ୟାଳୟ, ପଶୁପାଳନ ଓ ପଶୁଚିକିତ୍ସା ମହାବିଦ୍ୟାଳୟ ଏବଂ ବୁର୍ଲା ଇଞ୍ଜିନିୟରିଂ କଲେଜ ହୋଇଥିଲେ ବି ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିଲା ପରେ କେବେ ସେ ସେସବୁ କଥା ମୁହଁରେ ଉଚ୍ଚାରଣ କରିନଥିଲେ ।

ନେତୃସ୍ଥାନୀୟ ବ୍ୟକ୍ତିଙ୍କ ଛଡ଼ା ସାଧାରଣ ଲୋକେ ତାଙ୍କ ସମ୍ପର୍କରେ ତଥା ତାଙ୍କ ସରକାରଙ୍କ ସମ୍ପର୍କରେ କ'ଣ ଭାବୁଛନ୍ତି, ତାହା ଜାଣିବାପାଇଁ ନବବାବୁଙ୍କର ଖୁବ୍ ଆଗ୍ରହ ଥିଲା । ଥରେ ସେ ସର୍ବୋଦୟ କାର୍ଯ୍ୟରେ କୋରାପୁଟର ଗରଣ୍ଡା ଅଞ୍ଚଳକୁ ସେତେବେଳକା

ଦ୍ବିତୀୟ ଶ୍ରେଣୀ ଡବାରେ ଯାଉଥାନ୍ତି । ସାଙ୍ଗରେ ଥାଆନ୍ତି ରାଜକନିକାର ଡାକ୍ତର ନିର୍ମଳଚନ୍ଦ୍ର ଦାସ । ଗରଣ୍ଡା ଆଦି ଅଞ୍ଚଳରେ ଦେଖାଦେଇଥିବା ''ୟଜ୍'' ରୋଗ ଚିକିତ୍ସା ପାଇଁ ସେ ରମା ଦେବୀଙ୍କ ଅନୁରୋଧରେ ସେଠାକୁ ଯାଉଥାନ୍ତି । ଦ୍ବିତୀୟ ଶ୍ରେଣୀ ଡବାରେ ବହୁ ଯୁବକ ଥାଆନ୍ତି । ସେମାନଙ୍କ ମଧ୍ୟରେ ସରକାରଙ୍କୁ ସମାଲୋଚନା କରାଯିବା ସଙ୍ଗେସଙ୍ଗେ ନବବାବୁଙ୍କୁ ସମାଲୋଚନା କରାଯାଉଥାଏ । ନବବାବୁ ଖଣ୍ଡେ ବହି ପଢ଼ିବା ଅବସରରେ ସେସବୁ କଥା ଶୁଣୁଥାନ୍ତି । ଯୁବକମାନଙ୍କ ସମାଲୋଚନା ସୀମାତୀତ ହେବାରୁ ନିର୍ମଳବାବୁ ସେମାନଙ୍କୁ ଇଙ୍ଗିତରେ ଜଣାଇଦେଲେ ଯେ ଯାହାଙ୍କୁ ସେମାନେ ସମାଲୋଚନା କରୁଛନ୍ତି, ସେ ହିଁ ସେମାନଙ୍କ ସାମ୍ନାରେ । ଏକଥା ଶୁଣି ଯୁବକମାନେ ସମାଲୋଚନା ବନ୍ଦ କରି ପରବର୍ତ୍ତୀ ଷ୍ଟେସନରେ ଅନ୍ୟ ଡବାକୁ ଚାଲିଗଲେ । ନବବାବୁ, ସେମାନଙ୍କର ଏକାଠି ହୋଇ ଚାଲିଯିବା ଲକ୍ଷ୍ୟ କରି, ନିର୍ମଳବାବୁଙ୍କ ଉପରେ ବିରକ୍ତ ହେଲେ; କହିଲେ, ''କଅଣ ଖାଲି ଖୋସାମତିଆଙ୍କ ପ୍ରଶଂସା ଶୁଣୁଥିବା ? କଟୁ ସମାଲୋଚନା ଶୁଣିବାନି ?...ତୋତେ ସେମାନଙ୍କ କଥା ଖରାପ ଲାଗିଲା । ମୁଁ କିନ୍ତୁ ଅତି ଆଗ୍ରହ ସହକାରେ ସେସବୁ ଶୁଣୁଥିଲି । ତୁମ ବିଷୟରେ ସାଧାରଣ ଲୋକେ ଯାହା ଭାବୁଚନ୍ତି, ଯାହା କହୁଚନ୍ତି, ତାହା ହିଁ ତୁମର ଅସଲ ପରିଚୟ । ଆଉଦିନେ ଏମିତି କରିବୁ ନାହିଁ । ତା'ହେଲେ, ଆମର ଦୋଷସବୁ ସଂଶୋଧନ ହେବ କେମିତି ?'' ଏପରି କହିବାର କାରଣ, ସେ ଚାହୁଁଥିଲେ, ଅନ୍ୟମାନେ ତାଙ୍କ ସମ୍ପର୍କରେ ଏବଂ ତାଙ୍କ ସରକାର ସମ୍ପର୍କରେ କ'ଣ କହୁଛନ୍ତି, ଜାଣିବାକୁ ।

ଗୁଣୁପୁର-ରାୟଗଡ଼ା ରାସ୍ତାର ଗଠନପଦରଠାରୁ ୮ କିଲୋମିଟର ବାଟ ଚାଲିଚାଲି ସେମାନେ ଗରଣ୍ଡାରେ ପହଞ୍ଚିଲେ । ନିର୍ମଳବାବୁ ସେଠାରେ 'ୟଜ୍' ରୋଗର ଚିକିତ୍ସା ଲାଗି ଏକବର୍ଷ ରହିଥିଲେ । ଆଦିବାସୀମାନଙ୍କ ମଧ୍ୟରେ ଦେଖାଦେଉଥିବା ଏହି 'ୟଜ୍' ରୋଗ ଫଳରେ ଦେହସାରା ଘା' ହୋଇଯାଏ ଓ ମାଂସ ଖଣ୍ଡଖଣ୍ଡ ହୋଇ ଛିଣ୍ଡିପଡ଼େ ଏବଂ ହାଡ଼ ବି ଦେଖାଯାଏ । ରୋଗୀ ସମ୍ପୂର୍ଣ୍ଣ ବିକଳାଙ୍ଗ ଓ ଅକର୍ମଣ୍ୟ ହୋଇପଡ଼େ ।

ତିନିମାସ ପରେ ନବବାବୁ ପୁଣି ଗରଣ୍ଡା ଅଞ୍ଚଳକୁ ଯାଇ ଯେତେବେଳେ ଜାଣିଲେ ଯେ ପ୍ରାୟ ଆଖପାଖର ଚାରିହଜାର 'ୟଜ୍' ରୋଗୀ ଆରୋଗ୍ୟ ଲାଭ କଲେଣି, ସେତେବେଳେ ତାଙ୍କର ବିସ୍ମୟ ଓ ଆନନ୍ଦର ସୀମା ରହିଲା ନାହିଁ । ନିର୍ମଳବାବୁଙ୍କ ସମେତ ଯେଉଁମାନେ ଏହି ଚିକିତ୍ସା କରୁଥିଲେ, ସେମାନେ ନାମକୁମାତ୍ର ପାରିଶ୍ରମିକ ନେଉଥିଲେ ।

ଗରଣ୍ଡା ଗାଁର ସବୁ ଜମିର ପୁନର୍ବଣ୍ଟନ ହୋଇଥାଏ । ଜଳସେଚନ ପାଇଁ ସର୍ବସେବା ସଂଘ ତରଫରୁ କିଛି ଟଙ୍କାର ବ୍ୟବସ୍ଥା ଥାଏ । କିନ୍ତୁ ମାଟିକାମ ସ୍ଥାନୀୟ ଲୋକ କରିବାର

କଥା । ମାତ୍ର ରୁଗ୍ଣ ଓ ଅର୍ଦ୍ଧାହାରରେ ଥିବା ଆଦିବାସୀମାନେ ସେ କାମ ପୂରା କରିପାରୁ ନଥାନ୍ତି । ଏଣୁ ନବବାବୁ ପହଞ୍ଚିବା ପରଦିନ ସକାଳୁ ନବଜୀବନ ମଣ୍ଡଳର ସବୁ କର୍ମୀ ଓ ଡାକ୍ତର ନିର୍ମଳଚନ୍ଦ୍ର ଦାସ ଆଦି ସମସ୍ତେ ମିଶି ମାଟି କାମ କରିବେ ବୋଲି ସ୍ଥିର ହେଲା । ନବବାବୁ ଓ ମନମୋହନ ଚୌଧୁରୀ ବି ସେଥିରେ ଅଂଶ ଗ୍ରହଣ କଲେ । ଅନ୍ୟମାନେ ଘଣ୍ଟାଏଅଧେ ମାଟି କାମ କରି ହାଲିଆ ହୋଇଗଲେ, କିନ୍ତୁ ନବବାବୁ ଓ ମନମୋହନବାବୁ ପ୍ରାୟ ଦୁଇ ଘଣ୍ଟା କାଳ ମାଟି କାମ କଲେ । ସେମାନଙ୍କ କାମରେ ଉପସ୍ଥିତ ଅଫିସର୍‌ମାନେ ଲଜ୍ଜିତ ହୋଇଗଲେ । ସେତେବେଳେ ସେଠାରେ ନଥିଲା ଫଟୋଉଠାଇ ଖବରକାଗଜ ବା ପତ୍ରପତ୍ରିକାରେ ପ୍ରଚାରର ବ୍ୟବସ୍ଥା ।

ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲାବେଳେ ସ୍ୱାଧୀନତା ସଂଗ୍ରାମୀ ଓ ଗଡ଼ଜାତ ଆନ୍ଦୋଳନ କାଳର ପ୍ରଜାମଣ୍ଡଳ କର୍ମୀମାନେ ତାଙ୍କଠାରୁ ସାହାଯ୍ୟ ସହାନୁଭୂତି ପାଉଥିଲେ । କେତେକଙ୍କର ନବବାବୁଙ୍କ ବାସଭବନକୁ ଅବାଧ ପ୍ରବେଶର ସୌଭାଗ୍ୟ ଥିଲା । ସେଭଳି ଜଣେ ହେଉଛନ୍ତି ନୟାଗଡ଼ର ଶୁକ୍ରୁ ବେହେରା । ଦିନେ ସେ ଆସି ନବବାବୁଙ୍କ ବସାର ବାରଣ୍ଡାରେ ଶୋଇଯାଇଥିଲେ । ନବବାବୁ ସେକ୍ରେଟେରିଏଟ୍‌ରୁ ଫେରି ଶୁକ୍ରୁଙ୍କୁ ବାରଣ୍ଡାରେ ଶୋଇଥିବାର ଦେଖିଲେ । କହିଲେ, ''ଘର ଭିତରକୁ ନଯାଇ ବାରଣ୍ଡାରେ କାହିଁକି ଶୋଇଛୁ ?''

ଶୁକ୍ରୁ କହିଲେ, ''ଟିକିଏ ଜର ହୋଇଯାଇଥିବାରୁ ଏଇ ବାରଣ୍ଡାରେ ଶୋଇପଡ଼ିଲି ।''

ନବବାବୁ କହିଲେ, ''ତୋତେ ଟିକିଏ ମୋଡ଼ିଦିଏ ।''

ଶୁକ୍ରୁ କିଛି ନ କହି ନିରବ ରହିବାରୁ ନବବାବୁ ତା'ର ଦେହହାତ ମୋଡ଼ିଦେଉଦେଉ ଗୋଡ଼ ମୋଡ଼ିବାକୁ ଉଦ୍ୟତ ହେବାରୁ ଶୁକ୍ରୁ ଉଠିପଡ଼ି କହିଲେ, ''ମୋ'ର ଜର ଭଲ ହୋଇଗଲାଣି ।''

ଏବେ ଏକଥା କେତେ ଜଣ ବିଶ୍ୱାସ କରିବେ ?

ଦିନେ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କର ଭୁବନେଶ୍ୱରରୁ ପୁରୀ ଯାଇ ସେଠାରୁ କୌଣସି ଦୂର ମଫସଲ ଗସ୍ତରେ ଯିବାର ଥାଏ । ନବବାବୁ ଶୀତଦିନର ରାତିପାହାନ୍ତାରେ ଭୁବନେଶ୍ୱରରୁ ପୁରୀ ଯିବା ବାଟରେ ଉତ୍ତରା ଛକରେ କିଛି ପୋଲିସଙ୍କୁ କମ୍ବଳ ଘୋଡ଼ାଇ ହୋଇ ବସିଥିବାର ଦେଖିଲେ । ଅଟକି ପଚାରିଲେ କାହିଁକି ବସିଛନ୍ତି ବୋଲି । ସେମାନଙ୍କ ମଧ୍ୟରୁ ଜଣେ କହିଲା, ''କୋଉ ଶଳା ମନ୍ତ୍ରୀ ଯିବ ବୋଲି ଶୀତରାତିଟାରେ ଆମକୁ ନିଦରୁ ଉଠାଇ ଏଠାରେ ହରବର କରାଯାଉଛି ।'' ନବବାବୁ ପୁରୀରେ ପହଞ୍ଚି ଅଫିସରମାନଙ୍କୁ

ନିଜର ଅନୁଭୂତି ପ୍ରକାଶ କରି କହିଥିଲେ, ''ତଳିଆ କର୍ମଚାରୀମାନଙ୍କୁ ଆମ ଗସ୍ତକାମ ଲାଗି ଏଭଳି ଅସୁବିଧାରେ ପକାଇବା ଅନୁଚିତ ।'' ଅନ୍ୟ ମୁଖ୍ୟମନ୍ତ୍ରୀ ହୋଇଥିଲେ ବିଚରା ସେ ପୋଲିସଟିର ଚାକିରି ଯାଇଥାନ୍ତା । ଏବେ ତ, କେବଳ ମୁଖ୍ୟମନ୍ତ୍ରୀ କାହିଁକି, ଟାଣୁଆ ଏମ୍.ଏଲ୍.ଏ.ଙ୍କ ପଛରେ ବି ଏକାଧିକ ଗାଡ଼ି ଓ ବହୁ ମଟର ସାଇକେଲ ଛୁଟୁଛି; ଏଣୁ କିଏଜଣେ ଭି.ଆଇ.ପି ଯାଉଛନ୍ତି ବୋଲି ଆଗରୁ ବାରିହୋଇପଡୁଛି ।

ନବକୃଷ୍ଣ ଚୌଧୁରୀ ସାରାଜୀବନ ସାମନ୍ତବାଦ ବିରୋଧରେ ସଂଗ୍ରାମ ଚଳାଇଥିଲେ । ସାମନ୍ତବାଦ ଲୋପ ହେବାର ଅର୍ଥ ଖାଲି ରାଜାମହାରାଜାଙ୍କ ଅଧିକାର ଲୋପ ନୁହେଁ; ସାମନ୍ତବାଦୀ ଧାରାରେ ସାଧାରଣ ଲୋକଙ୍କର ଯେଉଁ ଆତ୍ମସମ୍ମାନ ଲୋପ ପାଇଥିଲା ଓ ଶ୍ରମକୁ ହୀନ, ହେୟ ଦୃଷ୍ଟିରେ ଦେଖାଯାଉଥିଲା, ନବବାବୁ ତାହା ବିରୋଧରେ କାମ କରି ଅସଂଖ୍ୟ ଦୃଷ୍ଟାନ୍ତ ଦେଖାଇଯାଇଛନ୍ତି ଏବଂ ସାମନ୍ତବାଦୀ ଆଚାର ଓ ବିଚାର ବିରୋଧରେ ଜୀବନସାରା ଲଢ଼ିଛନ୍ତି । ସେହି ଦୃଷ୍ଟିରୁ ସେ ଥିଲେ ଅନନ୍ୟ ।



## ଅଷ୍ଟମ ଅଧ୍ୟାୟ

# ରାଜନୀତିରୁ ଲୋକନୀତି

### ପୁନଶ୍ଚ କୁ ପ୍ରସ୍ଥାନ :

ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବା ପରେ ଖାଲି ଭୂ-ଦାନ ଦିଗରେ ନୁହେଁ, ଓଡ଼ିଶାର ଅନ୍ଧାରି ମୁଲକକୁ ଫେରିଯିବା ଲାଗି ନବକୃଷ୍ଣ ଚୌଧୁରୀ ସ୍ଥିର କରିଥିଲେ । ସେହିସବୁ ଅଞ୍ଚଳର ଅତ୍ୟାଚାରିତ ଓ ଶୋଷିତ ଲୋକମାନଙ୍କ ମଧ୍ୟରେ ମାଳତୀଦେବୀ ବହୁ ବର୍ଷରୁ କାର୍ଯ୍ୟ କରୁଥିଲେ । ସେଥିପାଇଁ ନବଜୀବନ ମଣ୍ଡଳ ନାମକ ଏକ ସ୍ୱେଚ୍ଛାସେବୀ ସଂସ୍ଥା ପ୍ରତିଷ୍ଠିତ ହୋଇଥିଲା । ତାହାର କେନ୍ଦ୍ର, ପ୍ରାରମ୍ଭିକ ଅବସ୍ଥାରେ, କୋରାପୁଟରେ ଥିଲା, କିନ୍ତୁ ନବଜୀବନ ମଣ୍ଡଳର କାର୍ଯ୍ୟ ଓଡ଼ିଶାର ଅନ୍ୟତ୍ର ପ୍ରସାରିତ ହେବା ଯୋଗୁଁ ତାହାର କେନ୍ଦ୍ର ହେଲା ଅନୁଗୋଳ । ସେହିଠାରେ ପୂର୍ବରୁ ବାଜି ରାଉତ ଛାତ୍ରାବାସ ପ୍ରତିଷ୍ଠିତ ହୋଇଥିଲା ଏବଂ ପରେ ୧୫ କିଲୋମିଟର ଦୂର ଚମ୍ପତିମୁଣ୍ଡାଠାରେ ଉତ୍ତର ମୌଳିକ ବିଦ୍ୟାଳୟ ଗଢ଼ିଉଠିଥିଲା । ମାଳତୀ ଦେବୀ ଏସବୁ ସଂସ୍କାରର ସ୍ରଷ୍ଟା ଥିଲେ ବି ନବକୃଷ୍ଣ ଚୌଧୁରୀ ଥିଲେ ସେସବୁର ପ୍ରେରଣାଦାତା ଓ ପରିପୂରକ ବ୍ୟକ୍ତିତ୍ୱ ।

ଭୁବନେଶ୍ୱରରୁ ବିଦାୟ ନେଲା ପୂର୍ବରୁ ବହୁ ସହକର୍ମୀ ଓ କର୍ମଚାରୀ ନବକୃଷ୍ଣ ଚୌଧୁରୀଙ୍କୁ ସାକ୍ଷାତ କରି ବିଦାୟ ଦେଇଥିଲେ । ମନ୍ତ୍ରୀମାନଙ୍କ ମଧ୍ୟରୁ ସତ୍ୟପ୍ରିୟ ମହାନ୍ତି ଅସୁସ୍ଥ ଥିବାରୁ ଆସିପାରି ନଥିଲେ । ସେ ସେହି ସମୟରେ ଅନେକ ମନ୍ତ୍ରୀ ଓ ନେତାଙ୍କ ଭଳି କଟକରେ ରହୁଥିଲେ । ଅକ୍ଟୋବର ୧୯ ତାରିଖ ଅପରାହ୍ଣରେ ନବବାବୁ ସପରିବାର କଟକରେ ପହଞ୍ଚି ସନ୍ଧ୍ୟାବେଳକୁ ସତ୍ୟପ୍ରିୟ ମହାନ୍ତିଙ୍କୁ ଦେଖିବାକୁ ଯାଇଥିଲେ । ପରଦିନ ଏକ ସାଇକେଲରେ ନୀଳମଣି ରାଉତରାୟଙ୍କ ଘରକୁ ଯାଇ ତାଙ୍କ ପରିବାରର ଭଲମନ୍ଦ ଖବର ବୁଝି ବୀରେନ୍ ମିତ୍ରଙ୍କ ଘରକୁ ଯାଇଥିଲେ । ଋଣରେ କିଣା ହୋଇଥିବା ମଟର ଗାଡ଼ିଟିର ବିକ୍ରି ବ୍ୟବସ୍ଥା କରିବାକୁ ବୀରେନ୍ ମିତ୍ରଙ୍କୁ କହିବାରେ, ଭାବପ୍ରବଣ ବୀରେନ୍ ବାବୁ, କାଲିର ମୁଖ୍ୟମନ୍ତ୍ରୀଙ୍କୁ ସାଇକେଲରେ ଦେଖି ଭୋ ଭୋ କାନ୍ଦିପକାଇଲେ । ପରଦିନ ସମସ୍ତେ ତାଳଚେର ଟ୍ରେନର ତୃତୀୟ ଶ୍ରେଣୀରେ (ବର୍ତ୍ତମାନର ଦ୍ୱିତୀୟ ଶ୍ରେଣୀ)ରେ ଅନୁଗୋଳ ଗଲେ ।

ବସ୍ତ୍ରଖଣ୍ଡରୁ ସମସ୍ତେ ନିଜନିଜର ବିଛଣାପତ୍ର ଧରି ଚାଲିଲେ ତିନି କିଲୋମିଟର ଦୂର ବାଜି ରାଉତ ଛାତ୍ରାବାସକୁ । ବାପି ଆସିବା ଖବର ପାଇ ଆଶ୍ରମବାସୀଙ୍କ ମଧ୍ୟରେ ଆନନ୍ଦର କୋଳାହଳ ଖେଳିଗଲା, ଦେଖିଲେ ଜିନିଷପତ୍ର ବିଶେଷ ନାହିଁ । ଶୁଣାଗଲା, ପର ଦିନ ଟ୍ରକ୍‌ରେ ଆସିବ । ପରଦିନ ବିଜୁ ପଟ୍ଟନାୟକଙ୍କ ଟ୍ରକ୍ ପହଞ୍ଚିଲାରୁ ଦେଖାଗଲା, ଦୁଇଟି ଗାଈ, କିଛି ବହିପତ୍ର ଓ କେତୋଟି ଫୁଲକୁଣ୍ଡ ।

ତରିକୁନ୍ଦ ଚାଷଘର ବିକ୍ରି କରି ୧୯୩୮ ମସିହାରେ ଅନୁଗୋଳର ଗିରିଜା ଦତ୍ତଙ୍କଠାରୁ ମାଳତୀଦେବୀ ଯେଉଁ ଏକ ହେକ୍ଟର ଜମି କିଣିଥିଲେ, ତହିଁରେ ଛୋଟ ଛୋଟ ତିନି ବଖରା ଘର ଥିଲା । ଗୋଟିଏ ବଖରାରେ ରହିଲେ ମାଳତୀଦେବୀ । ତରିକୁନ୍ଦ ପରେ ଏଇଠି ପୁଣି ନୂଆ ସଂସାର ଗଢ଼ିଲେ ବୋଲି ସେହି ବଖରାର ନାଁ 'ପୁନଶ୍ଚ' । ଗଡ଼ଜାତ ଆନ୍ଦୋଳନ ପାଇଁ ଅନୁଗୋଳ ଉପଯୁକ୍ତ ସ୍ଥାନ ଭାବେ ବିବେଚିତ ହୋଇଥିବାରୁ ଏଇଠି ହିଁ ଶେଷ ପର୍ଯ୍ୟନ୍ତ ରହିଲେ । ପରେ ଅବଶ୍ୟ ଆବଶ୍ୟକ ପଡ଼ିବାରୁ ସେଇ ବଖରାକୁ ବଡ଼ କରି ବାରଣ୍ଡା ଓ ବାଘମୁହିଁ କରାଇଥିଲେ । ସାରଙ୍ଗଧର ଦାସଙ୍କୁ ଫ୍ରିଡା ଦାସ ଛାଡ଼ି ଯୁକ୍ତରାଷ୍ଟ୍ର ଆମେରିକା ଯିବା ପରେ ସେ ସେଠାକାର ଏକବଖରିଆ ଘରେ ରହୁଥିଲେ । ବାଜି ରାଉତ ଛାତ୍ରାବାସର ପିଲାଙ୍କ ପାଇଁ ତା' ନାଁ ଥିଲା 'ଅଜାଙ୍କ ଘର' ।

**ବାଜି ରାଉତ ଛାତ୍ରାବାସ :**

୧୯୪୨ ଆନ୍ଦୋଳନ କାଳରେ ବନ୍ଦିଶାଳାରେ ଥିବାବେଳେ ମାଳତୀଦେବୀ, ଜୟକୃଷ୍ଣ ମହାନ୍ତିଙ୍କ ସହଧର୍ମିଣୀ କିରଣଅପା ଓ ବୁବୁ (ଉତ୍ତରା) ଅପା ଆଦି ଅନୁଗୋଳ ଘରକୁ ସେମାନଙ୍କର କର୍ମକେନ୍ଦ୍ର ହେବ ବୋଲି ସ୍ଥିର କରିଥିଲେ ।

୧୯୪୫ ମସିହା ଏପ୍ରିଲ ପହିଲା ଦିନ ମାଳତୀଦେବୀ ଓ କସ୍ତୁରୀ ମଲିକ ଯଥାକ୍ରମେ କଟକ ଓ ବ୍ରହ୍ମପୁର ଜେଲ୍‌ରୁ ଖଲାସ ହେଲେ । କସ୍ତୁରୀବାବୁଙ୍କ ହାତରେ ନବବାବୁ ମାଳତୀ ଦେବୀଙ୍କୁ ଏକ ଚିଠି ଦେଇଥିଲେ ଯେ ସେ ଚାହିଁଲେ ତରିକୁନ୍ଦ ବା ଅନୁଗୋଳ ଯେଉଁଠି ରହିବେ, ସାଙ୍ଗରେ କସ୍ତୁରୀବାବୁଙ୍କୁ ନେବେ । ଏମାନଙ୍କ ପୂର୍ବରୁ ବାବାଜୀଭାଇ (ବଳଭଦ୍ର ମିଶ୍ର) ଖଲାସ ହୋଇ ଅନୁଗୋଳ ଆଶ୍ରମକୁ ଜଗିରହିଥାନ୍ତି । ବନ୍ଦିଶାଳାର ପୂର୍ବୋକ୍ତ ନିଷ୍ପତ୍ତି ଅନୁସାରେ ମାଳତୀଦେବୀ ଅନୁଗୋଳରେ ରହିବା ଲାଗି ସ୍ଥିର କଲେ । କସ୍ତୁରୀବାବୁ ଗାଁରେ ଦୁଇଚାରି ଦିନ କଟାଇ କଟକ ଫେରିଲେ । ଅନୁଗୋଳ ଯିବା ବେଳେ ସାଙ୍ଗରେ ସେ କସ୍ତୁରୀବାବୁଙ୍କୁ ନେଲେ ଏବଂ ଶାଶୁଙ୍କୁ ଲୁଚାଇ କିଛି ଚାଉଳ ଏବଂ ଇକନମିକ୍ କୁକର୍ ନେଇଥିଲେ । ସେହି କୁକର୍‌ଟିରେ କାଠକୋଇଲା ଦ୍ୱାରା ରୋଷେଇ ହୁଏ । ଆଶ୍ରମ ବାଡ଼ିରେ ହୋଇଥିବା ଓଲୁଅ ଖୋଳା ହୋଇଥାଏ । ଅନ୍ୟ ପରିବା କିଣିବାକୁ ପଇସା ନଥାଏ । ଏମାନଙ୍କ ଏହି ଅବସ୍ଥା

ଦେଖି ପାଖପଡ଼ିଶା ମଦନମୋହନ ପ୍ରଧାନଙ୍କ ସ୍ତ୍ରୀ ରେବତୀଦେବୀ ସ୍ୱାମୀଙ୍କ ଅଜ୍ଞାତରେ କିଛିକିଛି ମୁଗଜାଇ ଦିଅନ୍ତି । ରେବତୀଦେବୀଙ୍କ ମା'ଙ୍କ ନାମ ମାଳତୀ । ସେହି କାରଣରୁ ରେବତୀଦେବୀ ହୋଇଥାନ୍ତି ମାଳତୀଦେବୀଙ୍କର ଧର୍ମଝିଅ । କଟକ ଘରୁ ଶାଶୁ ପଦ୍ମାବତୀ ଅନୁଗୋଳ ଲାଗି ଚାଉଳ ଦିଅନ୍ତି ନାହିଁ । ନବବାବୁ ଏ କଥା ଶୁଣି ଭିଣୋଇ ମାଗୁଣିଚରଣ କାନୁନ୍‌ଗୋଙ୍କ ନିକଟକୁ ଚିଠି ଦେଲେ । ନବବାବୁଙ୍କ ସେ ଚିଠି କସ୍ତୁରୀଚରଣ ମଲିକ ନେଇ ତାଙ୍କ ଗାଁରୁ କିଛି ଚାଉଳ ଆଣି କିଛିଦିନ ଚଳିଲେ । ମା' ଖଲାସ ହେବା ଖବର ପାଇ ମାମୁଙ୍କ ପାଖରେ କିଛିଦିନ ରହିଥିବା ଦୁଇ ଝିଅ ଅନୁଗୋଳ ଆସିଲେ । କେତେ ମାସ ପରେ ନବବାବୁ ଓ ସାରଙ୍ଗଧର ଦାସ ୧୯୪୫ ମସିହା ଶେଷ ବେଳକୁ ଜେଲ୍‌ରୁ ଖଲାସ ହେଲେ ।

ଅନୁଗୋଳରେ ପହଞ୍ଚିଲା ପରେ ୧୯୪୨ ଆନ୍ଦୋଳନର ଓ ତାହା ପୂର୍ବ ଆନ୍ଦୋଳନରେ ବନ୍ଦୀ ଥିବା ଲୋକମାନଙ୍କର ଖବର ନେବାପାଇଁ ମାଳତୀଦେବୀ ଓ କସ୍ତୁରୀଚରଣ ମଲିକ ବାହାରିଲେ । ଢେଙ୍କାନାଳର ବନ୍ଦୀମାନଙ୍କୁ ୫ ବର୍ଷରୁ ୭୦ ବର୍ଷ ପର୍ଯ୍ୟନ୍ତ ଜେଲ ଦଣ୍ଡ ହୋଇଥାଏ । ସେମାନଙ୍କ ପରିବାରର ଦୁର୍ଦ୍ଦଶା କହିଲେ ନ ସରେ । ଅଧିକାଂଶ ଭିକଦୁଃଖ କରି ଚଳୁଥାନ୍ତି । ସେମାନେ ଅନୁଗୋଳରୁ ଚାଲି ଚାଲି ପର୍ଜଙ୍ଗ (ତିରିଶ କିଲୋମିଟର ଦୂର) ଗଲେ ଓ ସେଠାରେ ଗଡ଼ଜାତ ଆନ୍ଦୋଳନର ବିଶିଷ୍ଟ ସଂଗ୍ରାମୀ ମହେଶ୍ୱର ସୁବାହୁସିଂହଙ୍କଠାରୁ କରୁଣ କାହାଣୀ ଜାଣିବାକୁ ପାଇଲେ । ଏହାପରେ ମାଳତୀଦେବୀଙ୍କ ଲେଡିଜ୍ ସାଇକେଲଟି ସଜଡ଼ାଗଲା । ତା'କୁ ନେଇ କସ୍ତୁରୀବାବୁ ଢେଙ୍କାନାଳର ବିଭିନ୍ନ ଅଞ୍ଚଳରୁ ତଥ୍ୟ ସଂଗ୍ରହ କଲେ । ଦୁଃସ୍ଥ ସଂଗ୍ରାମୀମାନଙ୍କର ପିଲାମାନଙ୍କୁ ଅନୁଗୋଳ ଆଶ୍ରମରେ ରଖି ମଣିଷ କରିବାର ସଂକଳ୍ପ ନିଆଗଲା । ଉତ୍ତରା ଆସିବା ପରେପରେ ପାର୍ବତୀ ଗିରି, କିରଣବାଳା ରାୟ, ଶଶି ଦେବୀ ଓ ହାରାମଣି ଦେବୀ ଆଦି ଜେଲ୍‌ରୁ ଖଲାସ ହୋଇ ଅନୁଗୋଳ ଆଶ୍ରମରେ ପହଞ୍ଚିଲେ ।

ପ୍ରଥମେ ଆସିଲେ ନିତ୍ୟାନନ୍ଦ, ସାବି, ଲୋଭା, ଚକ୍ର, ଲକ୍ଷ୍ମୀ । ପରେ ପରେ ଆସିଗଲେ ସୁନାଫୁଲ, ଗୁରୁବାରୀ, ରତ୍ନାକର, ସୁଲ, ଖୁଲ, ଗୋଲୋକ, ସାବି, ମହେଶ୍ୱର, ନବଘନ, ମୀରା ଆଦି । ୧୯୪୬ ମଇ ୧୧ ତାରିଖ ଦିନ ବିଭିନ୍ନ ବୟସର ୧୫ ଜଣ ପିଲାଙ୍କୁ ନେଇ ଆରମ୍ଭ ହେଲା ପଢ଼ାପଢ଼ି । ଅନେକଙ୍କ ଦେହରେ କାଛୁକୁଣ୍ଡିଆ ହୋଇଥାଏ । ନିମପତ୍ର ସିଝାଇ କାଛୁକୁଣ୍ଡିଆ ସଫା କରିବା ଓ ଔଷଧ ଲଗାଇବା ଛଡ଼ା ସେହି ପିଲାମାନଙ୍କୁ ଘଷିମାଜି ଗାଧୋଇ ଦେବା ଓ ଲୁଗାସଫା ଶିଖାଇବା କାମରେ ଲାଗିଗଲେ ଉତ୍ତରା, ପାର୍ବତୀ ଓ କିରଣ ଆଦି । ଜେଲ୍‌ରୁ ଫେରିଥାନ୍ତି ଜଗାଭାଇ । ଚିତ୍ରକଳା ପ୍ରତି ତାଙ୍କର ପିଲାଦିନୁ ଆଗ୍ରହ । ସ୍କୁଲପଢ଼ା ଛାଡ଼ି ସେ ୧୯୪୨ ଆନ୍ଦୋଳନରେ ଯୋଗଦେଇ ଜେଲ୍ ଯାଇଥିଲେ । ଜେଲ୍ କାନ୍ଥରେ ଅଙ୍ଗାରରେ ଛବି ଆଙ୍କିଥିଲେ ବୋଲି ତାଙ୍କୁ ସ୍ୱତନ୍ତ୍ର ଦଣ୍ଡ ଦିଆଯାଇଥିଲା । ସେ

ଖାଇବା ଘର, ଶାନ୍ତି ମନ୍ଦିର କାନ୍ଥରେ ଛବି ଆଙ୍କିଲେ ଓ ବିଭିନ୍ନ ପ୍ରକାର ମୂର୍ତ୍ତି ଗଢ଼ି ପିଲାମାନଙ୍କ ମନ ଖୁସି କରିଲେ ।

ଋଷି ବେହେରା ପୂର୍ବରୁ ମୌଳିକ ଶିକ୍ଷା ତାଲିମ ପାଇ ଆସିଥିଲେ । ସେ ହେଲେ ମୁଖ୍ୟ ଗୁରୁଜୀ । ତାଙ୍କ ସହିତ ଦିବାକର ପ୍ରଧାନ, ଉତ୍ତରା, ପାର୍ବତୀ ଓ କିରଣଲେଖା ଆଦି ପିଲାମାନଙ୍କୁ ପଢ଼ାଇଲେ । ଛାତ୍ରାବାସ ନାଁ ରହିଲେ ବି ତାହା ଥାଏ ଏକ ଆବାସିକ ବିଦ୍ୟାଳୟ । ପାଠପଢ଼ା ସହିତ ସବୁ କାମ କରିବାକୁ ହୁଏ । ପାଠପଢ଼ାର ନିର୍ଦ୍ଦିଷ୍ଟ ନିର୍ଘଣ୍ଟ ନଥାଏ । ପିଲାମାନଙ୍କୁ ହସ୍ତକର୍ମଠାରୁ ଆରମ୍ଭ କରି ନାଚଗୀତରେ ତାଲିମ ଦିଆଯାଏ । ସେହି ସମୟରେ ଗୁରୁଜୀ ଯେଉଁ ଗୀତ ଲେଖି ପିଲାମାନଙ୍କୁ ଶିଖାଇଥିଲେ, ତାହାର ପ୍ରଥମ ପଦଟି ଏହିପରି–

ମାଦଳ ବାଜିଲାରେ ଘୁମୁରା ବାଜିଲା
ଆମେ ସବୁ ଅଟୁ ଭାଇ ବାଜି ରାଉତ ଚେଲାରେ
ଗୁଳିଚୋଟେ ପ୍ରାଣ ଯେହୁ ଦେଲା ।

ପଚାଶ ବର୍ଷ ଧରି ତାହାହିଁ ରହିଛି ବାଜି ରାଉତ ଛାତ୍ରାବାସର ଉଦ୍‌ବୋଧନୀ ସଙ୍ଗୀତ । ପରେ ଧାରାବାହିକ ଶିକ୍ଷା ଦେବାର ଆବଶ୍ୟକତା ଅନୁଭବ କରାଯିବାରୁ ସଂଲଗ୍ନ ଖଲାରୀ ବିଦ୍ୟାଳୟକୁ ମୌଳିକ ବିଦ୍ୟାଳୟରେ ପରିଣତ କରାଯାଇ ପିଲାମାନଙ୍କୁ ପ୍ରାଥମିକ ଶିକ୍ଷା ଦିଆହେଲା । କିନ୍ତୁ ବାଜି ରାଉତ ଛାତ୍ରାବାସ ହିଁ ରହିଲା ଅସଲ ଶିକ୍ଷାୟତନ । ରାତିପାହାନ୍ତାରୁ ଉଠି ପ୍ରାର୍ଥନା ଓ ସଫେଇ ପରେ ସକାଳୁ ସୂତାକଟା, ବଗିଚା କାମ ଆଦି ଚାଲେ । ୧୯୫୦ ମସିହାରେ ଏହା ଉଚ୍ଚ ମୌଳିକ ବିଦ୍ୟାଳୟରେ ପରିଣତ ହେଲା । ସେବାଗ୍ରାମରେ 'ନୟୀ ତାଲିମ ଭବନ'ରେ ଶିକ୍ଷକତା ତାଲିମ ପାଇ ଆସିଥିବା ସର୍ବେଶ୍ୱର ନାୟକଙ୍କ ଅମଳରେ ବାଜି ରାଉତ ଛାତ୍ରାବାସର ପରିସର ଓ କାର୍ଯ୍ୟକ୍ରମ ବଢ଼ିଲା । ମାଳତୀଦେବୀଙ୍କର ସାଧନାର ପୀଠ ବାଜି ରାଉତ ଛାତ୍ରାବାସକୁ ଅନୁଗୋଳ ସାଧାରଣ ଲୋକେ ମାଳତୀ ଆଶ୍ରମ ବୋଲି ବି କହନ୍ତି ।

ସେତେବେଳକୁ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ । ପୂର୍ବର ପରିସରକୁ ଲାଗି ନଅ ଏକର ସରକାରୀ ଜମି ଏହି ଛାତ୍ରାବାସର ପରିସରଭୁକ୍ତ ହେଲା । ଘର ଲାଗି ବିଜୁ ପଟ୍ଟନାୟକ ଆଦି ବିଭିନ୍ନ ଲୋକଙ୍କଠାରୁ ଟଙ୍କା ମିଳିଲା ଏବଂ ସରକାରୀ ସାହାଯ୍ୟ ବି ମିଳିଥିଲା । ଛାତ୍ରାବାସରେ ଚାଷକାମ ଛଡ଼ା ଗୋପାଳନ ଓ ବଢ଼େଇ କାମ, ଲୁଗାବୁଣା ଆଦି ପିଲାମାନେ ଶିଖିଲେ । ଏହାର ଗୁରୁତ୍ୱ ଏତେ ବଢ଼ିଯାଇଥିଲା ଯେ ତାକୁ ଦେଖିବାକୁ ରାଷ୍ଟ୍ରପତି ରାଜେନ୍ଦ୍ର

ପ୍ରସାଦ ବି ଆସିଥିଲେ । ଏସବୁ ସତ୍ତ୍ୱେ ନଅ ଏକର ଜମି ବାଜି ରାଉତ ଛାତ୍ରାବାସ ପରିସରଭୁକ୍ତ ହୋଇଥିବାରୁ ଅନୁଗୋଳର କିଛି ଲୋକଙ୍କର କ୍ଷୋଭ ଓ ଅଭିଯୋଗ ଯେ ମାଳତୀଦେବୀ ତାଙ୍କ ଗାଁ ଅନାବାଦୀ ଜମି ନେଇଗଲେ ।

ବାଜି ରାଉତ ଛାତ୍ରାବାସକୁ ବହୁ ଗୁରୁଜୀ, ଭାଇ ଓ ଅପା ଆସିଛନ୍ତି, କିନ୍ତୁ ଏହାର ଆରମ୍ଭରୁ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ବାବାଜୀଭାଇଁ ହିଁ ଥିଲେ ଏହାର ମଝିଖୁଣ୍ଟ । ବାବାଜୀଭାଇ (ବଳଭଦ୍ର ମିଶ୍ର) ସ୍ୱାଧୀନତା ସଂଗ୍ରାମୀମାନଙ୍କ ସହିତ ମିଶିଲା ପରେ ଛୁଆଁଅଛୁଆଁ ବାରଣ ଛାଡ଼ିଥିଲେ । ସ୍ୱାଧୀନତା ଆନ୍ଦୋଳନ କାଳରେ ଅନ୍ୟମାନେ ଜେଲ୍‌କୁ ଗଲେ ବା ଅନ୍ୟଆଡ଼େ ଗଲେ, ସେ ହିଁ ଆଶ୍ରମକୁ ଜଗିରହିଥାନ୍ତି । ୧୯୪୨ ମସିହାରେ ସେ ବି କିଛିକାଳ କାରାବରଣ କରିଥିଲେ । ଜେଲ୍‌ରୁ ଖଲାସ ହୋଇ ଆସିଲା ପରେ ସେ ଆଶ୍ରମର ପିଜୁଳି ଓ କମଳା ଆଦି ନେଇ ଅନୁଗୋଳ ଜେଲ୍‌ରେ ଥିବା ବନ୍ଦୀମାନଙ୍କୁ ଦିଅନ୍ତି ଏବଂ ସେମାନଙ୍କର ଭଲମନ୍ଦ ଖବର ବାହାରକୁ ଆଣନ୍ତି । ଦୀର୍ଘ ପଇଁଚାଳିଶ ବର୍ଷ ଧରି ବାଜି ରାଉତ ଛାତ୍ରାବାସର ମଝିଖୁଣ୍ଟ ବାବାଜୀଭାଇ, ନବକୃଷ୍ଣ ଚୌଧୁରୀ ଓ ମାଳତୀଦେବୀଙ୍କର ନାତି ; ସେହି ହିସାବରେ ଉତ୍ତରା ଓ କୃଷ୍ଣାଙ୍କର ପୁଅ । ପୁତୁରା, ଝିଆରୀ ଓ ଝିଅମାନଙ୍କ ଭଳି ସେ ବି ନବବାବୁ ଓ ମାଳତୀ ଦେବୀଙ୍କୁ 'ତୁ' ବୋଲି ଡାକନ୍ତି ।

ସେ କହୁଥିଲେ, ଏହି ୪୫ ବର୍ଷ ଭିତରେ ନବବାବୁ କେବେ ତାଙ୍କ ଉପରେ ରାଗି ନାହାନ୍ତି । ନବବାବୁଙ୍କ ଦେହପା' ଖରାପ ହେଲେ କେବେ ତାଙ୍କୁ ତାଙ୍କ ଦେହରେ ହାତ ଲଗାଇଦିଅନ୍ତି ନାହିଁ । କିନ୍ତୁ ଥରେ ତାଙ୍କ ଉପରେ ଏକ ଘଟଣାରେ ଖୁବ୍ ରାଗିଥିଲେ । ସେ ରାଜସ୍ୱମନ୍ତ୍ରୀ ଥିଲାବେଳେ ଛାତ୍ରାବାସର ପିଲାଙ୍କୁ ନେଇ ଟିକରପଡ଼ା ଯାଉଥିଲେ । ସାଙ୍ଗରେ ଥିଲେ ବାବାଜୀଭାଇ । ନବବାବୁଙ୍କୁ ନଜଣାଇ ଏମାନେ ଗୋଟିଏ ସମ୍ବର ମାରିଥିଲେ । ନବବାବୁ ଏହା ଦେଖି ନିଆଁବାଣ । କହିଲେ, ''ଯିଏ ଏହା କରିଛି, ତାକୁ ଛାଡ଼ିବି ନାହିଁ, ତାକୁ ଜେଲ୍‌କୁ ପଠାଇବି ।'' ମାଳତୀଦେବୀ ଖୁବ୍ ବୁଝାସୁଝା କରିବାରେ କହିଲେ, ''ଏ ମାଂସକୁ କାଟି ପାଖ ଗାଁରେ ବାଣ୍ଟ ।'' ସେଭଳି କରିବା ଭିତରେ ଦୁଇଟି ଫଡ଼ିଆ ଲୁଚାଇ ଟ୍ରକରେ ଅନୁଗୋଳ ଅଣାଯାଇଥିଲା । ଏଠାରେ ବି ନବବାବୁ ତା'ର ସନ୍ଧାନ ପାଇ କହିଲେ, ''ଚୋରି ମାଂସ ତମକୁ ଖୁଆଇଦେବି ନାହିଁ ।'' ତାକୁ ପୁଣି କାଟି ପାଖ ଗାଁରେ ବଣ୍ଟାଗଲା । ତା' ପରେ ରାଗ କମିଯିବାରୁ ସେ ପଚିଶ ଟଙ୍କା ଦେଲେ ଖାସି କିଣି ମାଂସ ଖାଇବା ପାଇଁ ।

ଏହି ବାବାଜୀଭାଇଙ୍କ ଉପରେ ଆଶ୍ରମର ସବୁ ହାନିଲାଭ । ପିଲା ବେମାର ପଡ଼ିଲେ ସେ ବୁଝିବେ, ଆଶ୍ରମରେ ବିବାହ ଉତ୍ସବ ହେଲେ ସେ ବୁଝିବେ ; ହେଲେ, ସେ ଥିଲେ ସାରା ଜୀବନ ଅବିବାହିତ ଓ ଉତ୍ସର୍ଗୀକୃତ । ନବବାବୁଙ୍କ ମୃତ୍ୟୁର ନଅବର୍ଷ ପରେ ତାଙ୍କର ଦେହାନ୍ତ ହୋଇଯାଇଛି ।

## ନବଜୀବନ ମଣ୍ଡଳ :

୧୯୩୮ ମସିହାରେ ଠକ୍କର ବାପ୍ପା ଓଡ଼ିଶାର ଅନ୍ଧାରି ମୁଲକ (Partially Excluded area)ର ସମସ୍ୟା ଅନୁଧ୍ୟାନ କରି ଯେଉଁ ରିପୋର୍ଟ ଦେଇଥିଲେ, ତାହା କାର୍ଯ୍ୟକାରୀ ହେବା ପୂର୍ବରୁ କଂଗ୍ରେସ ସରକାର ଭାଙ୍ଗିଯାଇଥିଲା । ଦେଶ ସ୍ୱାଧୀନ ହେବାପରେ ୧୯୪୭ ମସିହା ଶେଷବେଳକୁ ସେ ଓଡ଼ିଶା ଆସିଥିଲା ବେଳେ ଗୋପବନ୍ଧୁ ଚୌଧୁରୀଙ୍କ ସହିତ ସେହି ଅପନ୍ତରା ଅଞ୍ଚଳରେ ଗାନ୍ଧିଜୀଙ୍କ ଦ୍ୱାରା ପ୍ରବର୍ତ୍ତିତ କିଛି କାର୍ଯ୍ୟକ୍ରମ ହାତକୁ ନିଆଯିବା ଲାଗି ପରାମର୍ଶ ଦେଇଥିଲେ । ତଦନୁସାରେ ଗୋକୁଳାନନ୍ଦ ଚୌଧୁରୀଙ୍କ କଟକ ବାଖରାବାଦ ଘର ବାରଣ୍ଡାରେ ୧୯୪୮ ମସିହା ଅକ୍ଟୋବର ୨୪ ତାରିଖରେ ଏକ ବୈଠକ ବସିଥିଲା । ସେଥିରେ ଗୋପବନ୍ଧୁ ଚୌଧୁରୀଙ୍କ ଛଡ଼ା ଉପସ୍ଥିତ ଥିଲେ ସାରଙ୍ଗଧର ଦାସ, ଆଚାର୍ଯ୍ୟ ହରିହର, କୃପାସିନ୍ଧୁ ହୋତା, ଈଶ୍ୱରଲାଲ ବ୍ୟାସ, ରମାଦେବୀ, ମାଳତୀଦେବୀ, ଭରତଚନ୍ଦ୍ର ମହାନ୍ତି, ଉପେନ୍ଦ୍ର ମହାପାତ୍ର, ମନମୋହନ ଚୌଧୁରୀ ଓ ବିଶ୍ୱନାଥ ପଟ୍ଟନାୟକ । ଆଚାର୍ଯ୍ୟ ହରିହରଙ୍କ ସଭାପତିତ୍ୱରେ ସକାଳ ଆଠଟାରୁ ଦିନ ଗୋଟାଏ ପର୍ଯ୍ୟନ୍ତ ସେହି ବୈଠକର ଆଲୋଚନା ଚାଲିଲା । ଖାଲି ଆଦିବାସୀଙ୍କ ମଧ୍ୟରେ ସୀମିତ ନ ରଖି ଏହାର କାମକୁ ଆହୁରି ବ୍ୟାପକ କରାଯିବା ଲାଗି ଲକ୍ଷ୍ୟ ଧାର୍ଯ୍ୟ କରାଗଲା । 'କୃଷକ' ପତ୍ରିକା ବାହାରୁଥିବା ବେଳେ ମାଳତୀ ଦେବୀଙ୍କ 'ନବଜୀବନ' ଶୀର୍ଷକ ଧାରାବାହିକ ଲେଖା ବାହାରୁଥିଲା । ସେଇ ନାଁଟିକୁ ଲଗାଇ ଗୋପବାବୁ ଅନୁଷ୍ଠାନର ନାମ 'ଉତ୍କଳ ନବଜୀବନ ମଣ୍ଡଳ' ରଖାଯାଉ ବୋଲି ପ୍ରସ୍ତାବ ଦେଲେ ଏବଂ ତାହା ସମସ୍ତେ ଗ୍ରହଣ କରିଥିଲେ । ଅନୁଷ୍ଠାନର ପ୍ରଥମ ସଭାପତି ହେଲେ ସାରଙ୍ଗଧର ଦାସ ଓ ସମ୍ପାଦକ ରହିଲେ ଗୋପବନ୍ଧୁ ଚୌଧୁରୀ ଏବଂ ମାଳତୀଦେବୀଙ୍କୁ କୋଷାଧ୍ୟକ୍ଷ ରଖାଗଲା । ବୈଠକରେ ଅନୁପସ୍ଥିତ ଥିଲେ ମଧ୍ୟ ଏଥିରେ ନବକୃଷ୍ଣ ଚୌଧୁରୀ ଓ ରାଜକୃଷ୍ଣ ବୋଷଙ୍କୁ ସଦସ୍ୟ ଭାବରେ ରଖାଯିବାର ପ୍ରସ୍ତାବ ନିଆଯାଇଥିଲା ଓ ସେମାନେ ଉତ୍କଳ ନବଜୀବନ ମଣ୍ଡଳର ପ୍ରଥମ କମିଟିର ସଦସ୍ୟ ଭାବରେ ରହିଲେ ।

ଆଦିବାସୀମାନଙ୍କ ମଧ୍ୟରେ ବିଶେଷ ଭାବରେ କାମ କରାଯିବା ଲକ୍ଷ୍ୟରେ ପ୍ରଥମେ ବଣେଇର ପାହାଡୀ ଭୂୟାଁ ଅଞ୍ଚଳରେ ଭରତଚନ୍ଦ୍ର ମହାନ୍ତିଙ୍କ ପରିଚାଳନାରେ ଏକ କର୍ମୀ ତାଲିମକେନ୍ଦ୍ର ପ୍ରତିଷ୍ଠିତ ହୋଇଥିଲା । ପରେ ବରୀ ନିକଟସ୍ଥ ରାମଚନ୍ଦ୍ରପୁରଠାରେ ଫକୀର ମିଶ୍ରଙ୍କ ପରିଚାଳନାରେ ଅନ୍ୟ ଏକ କର୍ମୀ ତାଲିମ୍‌କେନ୍ଦ୍ର ଖୋଲାଗଲା । ସେଠାରୁ ତାଲିମ ପାଇଥିବା କର୍ମୀମାନେ କୋରାପୁଟ ଓ ସୁନ୍ଦରଗଡ଼ ଜିଲ୍ଲାକୁ କାମ କରିବାକୁ ଗଲେ । ଅଧିକ ମହିଳା କର୍ମୀଙ୍କ ଆବଶ୍ୟକତା ଦେଖାଦେବାରୁ ଏହାପରେ ଅନୁଗୋଳଠାରେ ମାଳତୀଦେବୀଙ୍କ ତତ୍ତ୍ୱାବଧାନରେ ଆଦିବାସୀମାନଙ୍କ ମଧ୍ୟରେ କାମ କରିବା ଲାଗି ଏକ ମହିଳା ତାଲିମ୍ ଶିବିର

ଆରମ୍ଭ ହେଲା । ୧୯୫୧ ମସିହାରେ ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀ ଗଞ୍ଜାମ ମାଳ ଅଞ୍ଚଳରେ ପଦଯାତ୍ରା କଲାବେଳେ ସେଠାକାର ଆଦିବାସୀମାନଙ୍କ ଅବସ୍ଥା ଦେଖି ଓ ସରକାରୀ କର୍ମଚାରୀଙ୍କ ଜୁଲମ, ବେଠି, ମାସୁଲ (ବେଆଇନ୍ ଦେୟ) ଆଦିର ଉତ୍ପୀଡ଼ନ କଥା ଶୁଣି ଅତ୍ୟନ୍ତ ବ୍ୟଥିତ ହୋଇଥିଲେ । ସେମାନଙ୍କ ମଧ୍ୟରେ ବ୍ୟାପକ କାର୍ଯ୍ୟକ୍ରମ ନେବା ଲାଗି ଗୋପ ବାବୁ ସମ୍ପାଦକ ପଦ ଛାଡ଼ି ମାଳତୀଦେବୀଙ୍କୁ ନବଜୀବନ ମଣ୍ଡଳର ଦାୟିତ୍ୱ ନେବାପାଇଁ ପ୍ରସ୍ତାବ ଦେଲେ । ସେହି ସମୟରେ ଭରତଚନ୍ଦ୍ର ମହାନ୍ତି ଏହାର ସମ୍ପାଦକ ରହିଲେ ।

ଯେତେବେଳେ ଖ୍ରୀଷ୍ଟିଆନ୍ ମିଶନାରୀଙ୍କ ବ୍ୟତୀତ ଗଞ୍ଜାମ, କୋରାପୁଟ, ସୁନ୍ଦରଗଡ଼ ଓ କେଉଁଝରର ଆଦିବାସୀ ଅଞ୍ଚଳ ଓଡ଼ିଶା ଲୋକଙ୍କ ପାଇଁ ଅଜଣା ଥିଲା, ସେତେବେଳେ ମାଳତୀଦେବୀଙ୍କ ନେତୃତ୍ୱରେ ସେହି ଅନ୍ଧାରି ମୁଲକରେ ଅନ୍ୟାୟ ବିରୋଧରେ ପ୍ରଥମ ପ୍ରତିବାଦର ଧ୍ୱନି ଶୁଭିଥିଲା । ଖ୍ରୀଷ୍ଟିୟାନ ମିଶନାରୀମାନେ ନିଜ ଧର୍ମ ପ୍ରଚାର ଓ ପ୍ରସାର ଲକ୍ଷ୍ୟରେ ଆଦିବାସୀମାନଙ୍କର ଶିକ୍ଷା, ସ୍ୱାସ୍ଥ୍ୟ ଓ ଚାଲିଚଳନରେ ଅନେକ ପରିବର୍ତ୍ତନ ଆଣିପାରିଛନ୍ତି ସତ, କିନ୍ତୁ ଆଦିବାସୀଙ୍କ ଉପରେ ଚାଲିଥିବା ଶୋଷଣ ବିରୋଧରେ ସ୍ୱର ଉତ୍ତୋଳନ କରିନାହାନ୍ତି । କାରଣ, ସେସବୁ ଅଞ୍ଚଳରେ ଶୋଷକ ଓ ଅତ୍ୟାଚାରୀମାନେ ଆଦିବାସୀମାନଙ୍କ ମଧ୍ୟରେ ଏଭଳି ଧାରଣା ସୃଷ୍ଟି କରିଥିଲେ ଯେ ବାହାରର ଲୋକଙ୍କୁ ଆଦିବାସୀମାନେ ବିଶ୍ୱାସ କରୁନଥିଲେ । ଏଣୁ ଆଦିବାସୀମାନଙ୍କ ମଧ୍ୟରେ କୌଣସି ବୈପ୍ଳବିକ କାର୍ଯ୍ୟ କରିବା ସେତେବେଳେ ଚିନ୍ତା ବାହାରର କଥା ଥିଲା । ସାହୁକାର ଓ ଶୋଷକବର୍ଗଙ୍କ ଅତ୍ୟାଚାର ସତ୍ତ୍ୱେ ସେହି ସରଳ ଆଦିବାସୀମାନଙ୍କର ସେମାନଙ୍କ ଉପରେ ଅଗାଧ ବିଶ୍ୱାସ ଥିଲା । ତେଣୁ ସେହିସବୁ ଅଞ୍ଚଳରେ କାମ କରିବା ଅତ୍ୟନ୍ତ ଦୁଃସାଧ ଥିଲା । ମାଳତୀଦେବୀଙ୍କ ନେତୃତ୍ୱରେ ନବଜୀବନ ମଣ୍ଡଳର କର୍ମୀମାନେ ହିଁ ପ୍ରଥମେ ଏ ଦିଗରେ ଏକ ହଲ୍‌ଚଲ୍ ସୃଷ୍ଟି କରିଥିଲେ । ମାଳତୀଦେବୀ ବ୍ରହ୍ମପୁରରୁ ପାରଳାଖେମୁଣ୍ଡି ଯାଉଯାଉ ମାର୍ଲଭା ଘାଟି ଅଞ୍ଚଳ ରାସ୍ତାରେ ଅରୁଣାଚଳମ୍ ନାମକ ଆଇ.ସି.ଏସ୍. ଅଫିସରଙ୍କ ନାମରେ ଏକ ଫଳକ ଦେଖି ଜାଣିଲେ ଯେ ସେହି ଘାଟିରାସ୍ତା ଅରୁଣାଚଳମ୍ ପୂରା ବେଠିରେ ତିଆରି କରାଇଥିଲେ । ସେ ଏକଥା ଶୁଣି ଏତେ ରାଗିଯାଇଥିଲେ ଯେ ନିଜର କୋହ ସମ୍ବରଣ ନ କରିପାରି, ସେହି ଫଳକଟିକୁ ଭାଙ୍ଗିଦେଇଥିଲେ । ଏହି କର୍ମୀମାନଙ୍କ କାମ ଖ୍ରୀଷ୍ଟିଆନ୍ ମିଶ୍‌ନାରୀମାନଙ୍କଠାରୁ ଥିଲା ସମ୍ପୂର୍ଣ୍ଣ ଭିନ୍ନ ଧରଣର । ଆଦିବାସୀମାନଙ୍କ ପରମ୍ପରା ଓ ବିଶ୍ୱାସକୁ ନବଜୀବନ ମଣ୍ଡଳର କର୍ମୀମାନେ ଅନେକ ପରିମାଣରେ ସମ୍ମାନ ଦେଇ ସେମାନଙ୍କ ସହିତ ମିଶିଲେ । ହାଟମାନଙ୍କରେ ଆଦିବାସୀମାନଙ୍କ ଉତ୍ପନ୍ନ ଜିନିଷ ସାହୁକାର ଓ ଅନ୍ୟମାନେ ଜବରଦସ୍ତ ଅଳ୍ପ ଦରରେ କିଣି, ସେମାନଙ୍କୁ ଠକିଦେଉଥିଲେ । ଜଙ୍ଗଲ ବିଭାଗ, ଅବକାରୀ ବିଭାଗ କର୍ମଚାରୀମାନଙ୍କ ଉତ୍ପାତ ସାଙ୍ଗକୁ ସାହୁକାର, ମଦଭାଟି ମାଲିକମାନଙ୍କ ଶୋଷଣ ଆଦିବାସୀ

ଜୀବନକୁ ଦୟନୀୟ କରି ରଖିଥିଲା । ଦେଶୀମଦ ଟିକିଏ ମିଳିଗଲେ ଆଦିବାସୀ ସବୁକିଛି ମିଳିଗଲା ବୋଲି ବିଚାର କରୁଥିଲା । ଏଣୁ ସେହି ପରିସ୍ଥିତିରେ ଥିବା ଲୋକଙ୍କ ମଧ୍ୟରେ ନୂଆ ବିଚାରଧାରା ଓ ପ୍ରତିବାଦର ଧ୍ୱନି ସୃଷ୍ଟି କରିବା କେଡ଼େ କଷ୍ଟକର, ତାହା ବେଶ୍ ଅନୁମାନ କରିହୁଏ । ଏହାଛଡ଼ା ବହୁ ଆଦିବାସୀ ଅଞ୍ଚଳରେ ପାନୀୟ ଜଳର ଅଭାବ ସାଙ୍ଗକୁ ସାଂଘାତିକ ଜ୍ୱରର ଆଶଙ୍କା ଥାଏ । ଏବେ ତ ବହୁ ଅଞ୍ଚଳକୁ ରାସ୍ତା ଫିଟିଲାଣି, ନବଜୀବନ ମଣ୍ଡଳ କାମ ଆରମ୍ଭ କଲାବେଳକୁ ମାଳତୀଦେବୀ ଓ କର୍ମୀମାନେ ପନ୍ଦରକୋଡ଼ିଏ କି.ମି. ପାଦରେ ଚାଲି ଚାଲି ସେ ଅଞ୍ଚଳକୁ ଯାଉଥିଲେ । ଆଦିବାସୀ ଅଞ୍ଚଳରେ କାମ କରିବା ଭିତରେ ସେ ବହୁ ଆଦିବାସୀ କନ୍ୟା ତଥା ମହିଳାଙ୍କୁ ନବଜୀବନ ମଣ୍ଡଳ ପରିବାରଭୁକ୍ତ କରି ନାନା ପ୍ରକାର ତାଲିମ୍ ଦେଇଥିଲେ । ତାହାରି ଫଳରେ ସେମାନେ ହୋଇଉଠିଥିଲେ ସ୍ଥାନୀୟ ସ୍ତରରେ ଜଣେଜଣେ ଲଢୁଆ ସୈନିକ । ସେମାନଙ୍କ ମଧ୍ୟରେ ତୁଳସୀ ମୁଣ୍ଡାଙ୍କ ନାମ ଉଲ୍ଲେଖନୀୟ । ମାଳତୀଦେବୀ କେନ୍ଦୁଝରର ଖଣି ଅଞ୍ଚଳରୁ ସେହି ନିରକ୍ଷରା ଆଦିବାସୀ ମହିଳାଙ୍କୁ ଆଣି ଶିକ୍ଷାଦୀକ୍ଷା ଦେଇ ଓଡ଼ିଶାର ଜଣେ ପ୍ରମୁଖ ନାରୀ ନେତ୍ରୀ ଭାବରେ ପ୍ରତିଷ୍ଠା କରାଇଯାଇଛନ୍ତି ।

ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲାବେଳେ ବହୁଦିନ ଧରି ସେ ମାଳତୀଦେବୀଙ୍କର କୌଣସି ଖବର ପାଇଲେ ନାହିଁ । ସେ ସମୟରେ ବିଘ୍ନରାଜ ପଟେଲ୍ ବ୍ରହ୍ମପୁରର ସବ୍‌କଲେକ୍ଟର ଥାଆନ୍ତି । ମାଳତୀଦେବୀ ଗଞ୍ଜାମ ଅଞ୍ଚଳର ଅତି ଅଗମ୍ୟ ସ୍ଥାନରେ କାମରେ ବ୍ୟସ୍ତ ଥାଆନ୍ତି । ସେଠାରୁ ଚିଠିପତ୍ର ଆସିବା ସମ୍ଭବପର ନୁହେଁ । ନବବାବୁ ବ୍ୟସ୍ତ ହୋଇ ସେ ସମୟର ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟ୍ ଉଦୟନାଥ ପଟ୍ଟନାୟକ ଓ ବିଘ୍ନରାଜ ପଟେଲଙ୍କୁ ମାଳତୀ ଦେବୀଙ୍କ ଖବର ଜାଣିବାକୁ ଟେଲିଫୋନ୍ କଲେ । ଏମାନେ ଏକାଠି ଏକ ଜିପ୍‌ରେ ମହେନ୍ଦ୍ରଗଡ଼ ପର୍ଯ୍ୟନ୍ତ ଗଲେ । ସେତେବେଳକୁ ସନ୍ଧ୍ୟା ହୋଇଆସିଥାଏ ଏବଂ ପାଖ ଗିରିନଦୀରେ ଟିକିଏ ଅଧିକ ବର୍ଷାପାଣି ଆସିଯାଇଥାଏ । ସେମାନେ ଖବର ପାଇଲେ ଯେ ମହେନ୍ଦ୍ରଗଡ଼ ପାଖ ନଈ ଆରପଟକୁ ଜିପ୍‌ରେ ଯାଇହେବ ନାହିଁ, ମାଳତୀଦେବୀ ଛେଳିଗଡ଼ ନିକଟସ୍ଥ ଅବାର ସଂ ସେବାକେନ୍ଦ୍ରରେ ରହୁଛନ୍ତି ଏବଂ ତାଙ୍କର ଦେହପା' ଖରାପ ନାହିଁ । ଏହି ଖବର ଦେବାକୁ ବିଘ୍ନରାଜ ପଟେଲ ବ୍ରହ୍ମପୁର ଫେରିଆସିଲେ । ମହେନ୍ଦ୍ରଗଡ଼ରୁ ବ୍ରହ୍ମପୁର ରାସ୍ତା ଏତେ ଖରାପ ଥିଲା ଯେ ସେ ବ୍ରହ୍ମପୁରରେ ପହଞ୍ଚିଲା ବେଳକୁ ରାତି ୪ଟା ବାଜିଯାଇଥିଲା । ଉଦୟନାଥ ପଟ୍ଟନାୟକ ସେହି ସନ୍ଧ୍ୟାରେ ନଦୀ ପାରହୋଇ ଚାଲି ଚାଲି ଯାଇ ମାଳତୀଦେବୀଙ୍କୁ ଠାବ କଲେ । ସେହି ବିପଦସଙ୍କୁଳ ରାସ୍ତାରେ କେତେଥର ମାଳତୀଦେବୀ ହିଂସ୍ରଜନ୍ତୁଙ୍କ ହାବୁଡ଼ରେ ପଡ଼ିଛନ୍ତି, ଜିପ୍ ରାସ୍ତାରୁ ତଳକୁ ଖସିଛି, ଗାଁ ଗହଳରେ କାମ କରିବା ଭିତରେ ସେ ଆଦିବାସୀମାନଙ୍କର ଖାଦ୍ୟ ଖାଇ ସେହିମାନଙ୍କ ଛୋଟ ଘରେ ଚଳିଛନ୍ତି । ପରେ ଅବଶ୍ୟ ଅନେକ ଅଞ୍ଚଳରେ ନବଜୀବନ ମଣ୍ଡଳର ଆଶ୍ରମମାନ ଖୋଲିଲା । ସେହି କୁଟୀରମାନଙ୍କୁ

ଲୋକେ ଏବେ ବି 'ମାଳତୀ ଆଶ୍ରମ' ବୋଲି କହୁଛନ୍ତି । ଦଶାବ୍ଦୀ ଦଶାବ୍ଦୀ ଧରି ତାଙ୍କର ନେତୃତ୍ୱରେ ଗଞ୍ଜାମ ଓ କୋରାପୁଟର ମାଳ ଅଞ୍ଚଳ ଲୋକେ ପ୍ରତିବାଦ କରିଶିଖିଛନ୍ତି ଓ ବେଠି, ବେଗାରି, ଗୋତି ପ୍ରଥା, ମୁସ୍ତାଦାରି ପ୍ରଥା ଲୋପପାଇଛି ଏବଂ ଆଦିବାସୀମାନଙ୍କ ମଧ୍ୟରେ ଆତ୍ମପ୍ରତ୍ୟୟ ସୃଷ୍ଟି ହୋଇଛି । ଆଦିବାସୀମାନେ ଥରେଖଣ୍ଡେ ଜେଲ୍ ଗଲେ ସେମାନଙ୍କର ପୋଲିସ ଓ ଜେଲ୍ ଡର ଭାଙ୍ଗିଯିବ ବୋଲି ସେ ଅଞ୍ଚଳରେ କାମ କରୁଥିବା ନଟବର ପ୍ରଧାନଙ୍କୁ ନବବାବୁ ପରାମର୍ଶ ଦେଉଥିଲେ । ନକ୍ସଲ୍ ଆନ୍ଦୋଳନ କାଳରେ ଆଦିବାସୀମାନଙ୍କୁ ନିର୍ଯାତନା ଦିଆଯାଉଥିବା କଥା ଶୁଣି ନବବାବୁ ଓ ମାଳତୀଦେବୀ ପୁଣି ସେହି ଅଞ୍ଚଳକୁ ଯାଇ ଅଭୟବାଣୀ ଶୁଣାଇଥିଲେ । ସେହିମାନଙ୍କ କୃଚ୍ଛ୍ର ସାଧନା ଫଳରେ ନବଜୀବନ ମଣ୍ଡଳ ବାସ୍ତବରେ ଆଦିବାସୀମାନଙ୍କ ଭିତରେ ନବଜୀବନର ଆଭାସ ସୃଷ୍ଟି କରିପାରିଛି । ରାୟଗଡ଼ାର ପୂର୍ବତନ ବିଧାୟକ ମାଦଙ୍ଗି କାମାୟା କହନ୍ତି ଯେ ନବଜୀବନ ମଣ୍ଡଳ ଓ ଭୂଦାନ କର୍ମୀଙ୍କ ଉପସ୍ଥିତି ଯୋଗୁଁ ସେତେବେଳେ ଶୋଷକ ଓ ଅତ୍ୟଚାରୀଙ୍କର ଯେଉଁ ଡର ଥିଲା, ଏବେ ତାହା ନାହିଁ ଏବଂ ସେଠାକାର ଶୋଷିତ ଓ ନିର୍ଯାତିତ ଲୋକଙ୍କ କଥା ଉଠେଇବାକୁ ଏବେ କେହି ନାହାନ୍ତି ।

ନବଜୀବନ ମଣ୍ଡଳର କାମ ଖାଲି ଅତ୍ୟାଚାରୀମାନଙ୍କ ବିରୋଧରେ ସ୍ୱର ଉତ୍ତୋଳନରେ ସୀମାବଦ୍ଧ ହୋଇ ରହିଲା ନାହିଁ; ଚାଲିଲା ଉନ୍ନୟନର ନାନା କାର୍ଯ୍ୟକ୍ରମ । ଛୋଟଛୋଟ ନଦୀ ଓ ଝରଣା ବନ୍ଧାଇ, ଜଳଭଣ୍ଡାର ସୃଷ୍ଟି କରିବା ଓ ସମବାୟ ଭିତ୍ତିରେ ଜିନିଷପତ୍ର ବିକିବା ଓ କିଣିବା କାମ ଚାଲିଲା । ଆଦିବାସୀଙ୍କୁ ଦାନ୍ତଘଷା, ଝାଡ଼ା ପରେ ଶୌଚ ହେବା, ମାଟିହାତ ହେବା, ପୁରୁଷମାନେ କେଶ କାଟିବା, ଶୁଖିଲା ବା ବାସି ମାଂସ ନ ଖାଇବା, ରାନ୍ଧି ଖାଇବା ଓ ଲୁଗା ସଫାକରି ଜାଣିବା ଆଦି ଅତି ସାଧାରଣ କାମ ନବଜୀବନ ମଣ୍ଡଳର କର୍ମୀମାନେ ଶିଖାଇଲେ । ମାଳତୀଦେବୀ ଏସବୁ କାମର ଉତ୍ସ ଥିଲେ ବି ନବକୃଷ୍ଣ ଚୌଧୁରୀ ଥିଲେ ସବୁ କାମର ପ୍ରେରଣାଦାତା । ୧୯୭୫ ମସିହାର ଜରୁରୀକାଳୀନ ପରିସ୍ଥିତି ବେଳେ ସରକାର ନବଜୀବନ ମଣ୍ଡଳର ଗ୍ରାଣ୍ଟ୍ ବନ୍ଦ କରିଦେଲେ । ତାହାସତ୍ତ୍ୱେ କର୍ମୀମାନେ ସେହି ଅବସ୍ଥାରେ ଭାଙ୍ଗିନପଡ଼ି ନିଜ କର୍ମକ୍ଷେତ୍ରରେ ଅଟଳ ରହିଥିଲେ ।

ଆଦିବାସୀ ଅଞ୍ଚଳର ଏହି କାମ କଥା ଦେଶବିଦେଶରେ ପ୍ରଚାରିତ ହୋଇଛି । ଏହା ଫଳରେ ଡାକ୍ତର ନିର୍ମଳଚନ୍ଦ୍ର ଦାସଙ୍କଠାରୁ ଆରମ୍ଭ କରି ବିଦେଶୀ ଝିଅ ଉର୍ସୁଲା ଓ ଯୁବକ ରୋରିକ୍ ସେଠାକୁ ଆକର୍ଷିତ ହୋଇ ଆସିଛନ୍ତି । ସେଠାରେ ଚିକିତ୍ସାକେନ୍ଦ୍ରମାନ ଖୋଲାଯାଇଛି, ଯାହା କି ସରକାରୀ ଚିକିତ୍ସାଗାରଠୁଁ ଥିଲା ଭିନ୍ନ ଧରଣର ଓ ଚିକିତ୍ସକମାନେ ବି ଥିଲେ ବ୍ରତଚାରୀ ।

## ଉତ୍ତର ମୌଳିକ ବିଦ୍ୟାଳୟ :

ବାଜି ରାଉତ ଛାତ୍ରାବାସ ଓ ସଂଲଗ୍ନ ଖଲାରୀ ମୌଳିକ ବିଦ୍ୟାଳୟର ଉପର ପାହାଚର ଶିକ୍ଷାୟତନ କଥା ଅନେକ ଦିନରୁ ଚିନ୍ତା କରାଯାଇଥିଲେ ମଧ୍ୟ ସେଥିଲାଗି ଆବଶ୍ୟକ ପରିମାଣ ଜମି ମିଳିବା ଲାଗି ଅନେକ ଦିନ ଲାଗିଯାଇଥିଲା । ମାଳତୀଦେବୀ ଭୂ-ଦାନ ଆନ୍ଦୋଳନରେ ବ୍ୟସ୍ତ ଥିବାବେଳେ ବି ଏଥିଲାଗି ଅନୁଗୋଳଠାରୁ ପନ୍ଦର କିଲୋମିଟର ଦୂରର ଚମ୍ପତିମୁଣ୍ଡାଠାରେ ଏକ ଉପଯୁକ୍ତ ସ୍ଥାନ ଠାବ କରି ନବବାବୁଙ୍କୁ ଜଣାଇଥିଲେ । କିନ୍ତୁ ସେଥିପାଇଁ ଉପଯୁକ୍ତ ଶିକ୍ଷକ ନଥାନ୍ତି । ସେହି ସମୟକୁ ଚିତ୍ତରଞ୍ଜନ ଦାସ ଶାନ୍ତିନିକେତନରୁ ଶିକ୍ଷା ଶେଷ କରିଥାନ୍ତି । ସେହି ଶାନ୍ତିନିକେତନରେ ସେ ଡେନ୍‌ମାର୍କର ଗଣବିଦ୍ୟାଳୟ ସମ୍ପର୍କରେ ଜାଣିବାକୁ ପାଉଥିଲେ । ନବବାବୁ ଏବଂ ମାଳତୀଦେବୀ ତାଙ୍କଠାରୁ ସେଭଳି ଶିକ୍ଷାର ବିଶେଷତ୍ୱ କଥା ଶୁଣି ଚିତ୍ତବାବୁଙ୍କୁ ଡେନ୍‌ମାର୍କ ପଠାଇଥିଲେ । ଏ ଦିଗରେ ବିଜୁ ପଟ୍ଟନାୟକଙ୍କୁ ବୁଝେଇବାରୁ ସେ ଚିତ୍ତବାବୁଙ୍କ ଡେନ୍‌ମାର୍କ ଯିବା ଲାଗି ଆର୍ଥିକ ସହାୟତା ଦେଇଥିଲେ । ଚିତ୍ତବାବୁ ସେଠାରୁ ଫେରିଆସିବା ପରେ ନବବାବୁ ମୁଖ୍ୟମନ୍ତ୍ରୀ ଥିବାରୁ ଚମ୍ପତିମୁଣ୍ଡା ଜମି ମିଳିବାରେ ବେଶି ଡେରି ହେଲା ନାହିଁ । ପଞ୍ଚସ୍ତରି ଏକର ଜମି ମିଳିଲା ସତ, କିନ୍ତୁ ତାହା ସେତେବେଳକୁ ଜଙ୍ଗଲପୂର୍ଣ୍ଣ ଥିଲା । ୧୯୫୪ ମସିହାରେ ଗାନ୍ଧିଜନ ଧୀରେନ୍ଦ୍ର ମଜୁମଦାରଙ୍କ ଦ୍ୱାରା ଏହି ଅନୁଷ୍ଠାନର ଭୂମିପୂଜା ଆରମ୍ଭ ହେଲା । ଖୁବ୍ ଉତ୍ସାହର ସହ ଛାତ୍ରଛାତ୍ରୀ ଏବଂ ଶିକ୍ଷକମାନେ ଲାଗିପଡ଼ିଲେ । ଜଙ୍ଗଲ କାଟି ସମତଳ କରି ଘର ତିଆରି କଲେ । ତା'ରି ଭିତରେ ପୋଖରୀ ଖୋଳାହେଲା । ବିଦ୍ୟାଳୟ ଛଡ଼ା ଛାତ୍ରାବାସ ନିର୍ମିତ ହେଲା । ପଢ଼ାପଢ଼ି ପାଇଁ ନିର୍ଦ୍ଦିଷ୍ଟ ପିରିୟଡ୍ ରହିଲା ନାହିଁ । ପିଲାମାନଙ୍କ ସୃଜନଶୀଳତା ଉପରେ ବିଶେଷ ଗୁରୁତ୍ୱ ଦିଆଗଲା । ଜୀବନ ଉପଯୋଗୀ ଶିକ୍ଷା ପ୍ରଚଳନ କରାଯିବାରୁ ବିଦ୍ୟାଳୟର ନାମ ହେଲା 'ଜୀବନ ବିଦ୍ୟାଳୟ' । ଗାନ୍ଧୀ, ରବୀନ୍ଦ୍ରନାଥଙ୍କ ଶିକ୍ଷାଧାରା ଛଡ଼ା ବିଦେଶରେ ଚିତ୍ତରଞ୍ଜନ ଦାସ ଯେଉଁ ଶିକ୍ଷା ଲାଭ କରିଥିଲେ, ସେସବୁର ପ୍ରୟୋଗ ହେଲା । ଉତ୍ତର ମୌଳିକ ବିଦ୍ୟାଳୟ ବେଶ୍ ଆଗେଇଚାଲିବା ଅବସରରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିଲେ । ତେଣିକି ସେ ସମ୍ପୃକ୍ତ ଥିବା ଅନୁଷ୍ଠାନ ଓ କାର୍ଯ୍ୟାବଳୀ ଉପରେ ମହତାବ ସରକାରଙ୍କର ବିଷଦୃଷ୍ଟି ପଡ଼ିଲା । ବ୍ରିଟିଶ ଅମଳର ତାଲିମ ଅଫିସରମାନେ କର୍ତ୍ତାଙ୍କୁ ସନ୍ତୁଷ୍ଟ କରିବା ଲାଗି, ପାଦେ ଯିବାକୁ କୁହାଗଲେ, ସେମାନେ ତିନିପାଦ ଆଗେଇ ନବକୃଷ୍ଣ ଚୌଧୁରୀ ସମ୍ପୃକ୍ତ ଥିବା ଅନୁଷ୍ଠାନକୁ ବଦ୍‌ନାମ କରିବାକୁ ବାହାରିପଡ଼ିଲେ । ମୌଳିକ ଶିକ୍ଷାକୁ ହରେକୃଷ୍ଣ ମହତାବ ମୋଟେ ଗ୍ରହଣ କରିପାରିନଥିଲେ । ବଳଭଦ୍ର ପ୍ରସାଦ ଡି.ପି.ଆଇ. ପଦରୁ ଅବସର ନେବା ପରେ ବାମାଚରଣ ଦାସ ଡି.ପି.ଆଇ. ହେଲେ । ସେ ଥରେ ଅନୁଗୋଳର ମୌଳିକ ଶିକ୍ଷା ପ୍ରଶିକ୍ଷଣ ମହାବିଦ୍ୟାଳୟକୁ ଆସିଥିଲେ । କିନ୍ତୁ ତାଙ୍କ ଉପଲକ୍ଷରେ ହୋଇଥିବା ସମାବେଶରେ

ଚିତ୍ତବାବୁଙ୍କ ଧନ୍ୟବାଦ ଭାଷଣ ତାଙ୍କୁ ଭଲ ଲାଗି ନଥିଲା । ଏହାପରେ ଚମ୍ପତିମୁଣ୍ଡାର ଅଧ୍ୟକ୍ଷଙ୍କଠାରୁ ଚିଠି ଗଲେ, ଲେଖାଗଲା, ସିଧା ଡି.ପି.ଆଇ.ଙ୍କୁ ନ ପଠାଇ ଠିକଣା ବାଟରେ ଚିଠି ଆସୁ । ଶିକ୍ଷା ବିଭାଗ ଚମ୍ପତିମୁଣ୍ଡା ଉତ୍ତର ମୌଳିକ ବିଦ୍ୟାଳୟର ଶିକ୍ଷାକୁ ଗ୍ରହଣ କଲେନାହିଁ ଏବଂ ସେଠାକାର ଛାତ୍ରଛାତ୍ରୀମାନଙ୍କୁ ଅନ୍ୟ ସ୍କୁଲ ମାଧ୍ୟମରେ ମାଟ୍ରିକ୍ ପରୀକ୍ଷା ଦେବାକୁ କୁହାଗଲା । ଶିକ୍ଷାବିଭାଗର ଏଭଳି ବିଷଦୃଷ୍ଟି ପଡ଼ିଥିଲା ବେଳେ ଚମ୍ପତିମୁଣ୍ଡା ପରିସର ମଧ୍ୟରେ କେତେକ ଘଟଣା ଘଟିଲା, ଯାହା ଲାଗି ଚିତ୍ତରଞ୍ଜନ ଦାସଙ୍କୁ ଉତ୍ତର ମୌଳିକ ବିଦ୍ୟାଳୟ ଛାଡ଼ିବାକୁ ହେଲା । ଯେଉଁ ସ୍ୱପ୍ନ ନେଇ ଏକ ଅଭିନବ ଅନୁଷ୍ଠାନ ଗଢ଼ିଉଠିଥିଲା, ତା' ଉପରେ ଏକ ବଡ଼ ଧରଣର ଧକ୍କା ଲାଗିଲା । ତଥାପି ମାଳତୀଦେବୀ ଓ ନବବାବୁ ଚମ୍ପତିମୁଣ୍ଡାଙ୍କୁ ଜୀବନ୍ନ୍ୟାସ ଦେବାର ଆଶା ଛାଡ଼ିନଥାନ୍ତି ।

**ମାଳତୀଦେବୀ :**

ମିନୁ ବା ମାଳତୀ, ବିବାହ ପରେ, ମାଳତୀ ସେନ୍ ହୋଇ ରହିଲେ ନାହିଁ, ଯେଭଳି କିଛି ଶିକ୍ଷିତା ଆଧୁନିକ ନାରୀ ନିଜ ପିତୃପକ୍ଷର ସାଙ୍ଗିଆ, ବିବାହ ପରେ, ବଜାୟ ରଖୁଛନ୍ତି ଓ କିଛି ଯେପରି ଶ୍ୱଶୁର ପକ୍ଷର ସାଙ୍ଗିଆ ବ୍ୟବହାର କରୁଛନ୍ତି । ସେ ରହିଲେ ମାଳତୀଦେବୀ ହୋଇ । ସେ ନବକୃଷ୍ଣ ଚୌଧୁରୀଙ୍କର ଯଥାର୍ଥ ସହଧର୍ମିଣୀ ଥିଲେ ସତ, କିନ୍ତୁ ନିଜର ସାଧନା ଓ ପ୍ରତିଭାରେ ଯଶସ୍ୱୀ ହୋଇ ସେ ଥିଲେ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ।

ବାପଘରବଂଶର ଜନ୍ମସ୍ଥାନ ଥିଲା ପୂର୍ବବଙ୍ଗ ବା ଆଜିର ବାଂଲାଦେଶ । ପୂର୍ବବଙ୍ଗର ଲୋକଙ୍କୁ କଲିକତାର ବଙ୍ଗାଳୀ 'ବାଙ୍ଗାଲ୍' ବୋଲି କହି ଟିକିଏ ହେୟ ଭାବ ଦେଖାଇ କହନ୍ତି । ସେମାନଙ୍କର କଥା କହିବାର ଢଙ୍ଗ ଟିକିଏ ଭିନ୍ନ ଧରଣର ଓ ଚରିତ୍ରରେ ଭାବପ୍ରବଣତା ଓ ଆବେଗ ଟିକିଏ ଅଧିକ ଥାଏ । ସେମାନେ ହଠାତ୍ ରାଗିଯାନ୍ତି ଓ ଅତିଶୀଘ୍ର ମାତିଯା'ନ୍ତି । ବାପା କୁମୁଦବନ୍ଧୁ ଥିଲେ ବାରିଷ୍ଟର । ମିନୁଙ୍କର ତିନିବର୍ଷ ବୟସ ବେଳେ ବାବା ତାଙ୍କର ମରିଯାଆନ୍ତି ଓ ଆର୍ଥିକ ଦୁରବସ୍ଥା ଆରମ୍ଭ ହୁଏ । ମା' ଦାର୍ଜିଲିଂର ଭିକ୍ଟୋରିଆ ହାଇସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ ହୋଇ ପିଲାମାନଙ୍କୁ ମଣିଷ କରନ୍ତି । ମିନୁଙ୍କୁ ଗଣିତ ଟ୍ୟୁସନ୍ କରିବା ପାଇଁ ଜଣେ ଟ୍ୟୁଟର ନିଯୁକ୍ତ ହୋଇଥିଲେ । କିନ୍ତୁ ସେ ଯେଉଁ ଧାରା ବତାନ୍ତି, ମିନୁ ତାକୁ ନ ମାନି ଅନ୍ୟ ଧାରାରେ ଗଣିତ କରେ । ତା'ର ଖିଆଲକୁ ଲକ୍ଷ୍ୟ କରି ଟ୍ୟୁଟର କହିଥିଲେ, ''ଏ ଝିଅ ଯାହାକୁ ବିବାହ କରିବ, ସେ ଅସୁବିଧାରେ ପଡ଼ିବ ।'' ମିନୁଙ୍କ ମାଟ୍ରିକ୍ ପରୀକ୍ଷା ବର୍ଷ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା । ପରୀକ୍ଷାର ଠିକ୍ ପୂର୍ବରୁ ସେ ପରୀକ୍ଷା ନଦେବା ମତଲବରେ ରଙ୍ଗପୁରରେ ରହୁଥିବା ତାଙ୍କର ଜଣେ ଦାଦାଙ୍କ ପାଖକୁ ଚାଲିଯାଇଥିଲେ ।

ମା' ତାଙ୍କୁ ଡକାଇ, ମଗାଇ ପରୀକ୍ଷା ଦିଆଇଲେ । ସେ ପରୀକ୍ଷାରେ ପ୍ରଥମ ଶ୍ରେଣୀ ପାଇଲେ, କିନ୍ତୁ ଏଣିକି ସରକାରୀ ମହାବିଦ୍ୟାଳୟରେ ପଢ଼ିବା ପାଇଁ ଏକାନ୍ତ ଅନିଚ୍ଛୁକ । ସେ ଶାନ୍ତିନିକେତନରେ ପଢ଼ିବା ଲାଗି ରବୀନ୍ଦ୍ରନାଥଙ୍କୁ ଚିଠି ଲେଖିଲେ । ରବୀନ୍ଦ୍ରନାଥଙ୍କ ସହ ତାଙ୍କ ଅଜା ବିହାରୀଲାଲ ଗୁପ୍ତଙ୍କ ପରିବାରର ଘନିଷ୍ଠ ବନ୍ଧୁତା ଥିଲା । ଏଣୁ ମିନୁର ପରିଚୟ ପାଇ ସେ ଉତ୍ତର ଦେଲେ ଯେ ତାଙ୍କ ମା' ଯଦି ଛାତ୍ରୀନିବାସର ସୁପରିନ୍‌ଟେନ୍‌ଡେଣ୍ଟ ହେବାପାଇଁ ରାଜି ହୁଅନ୍ତି, ମିନୁ ସେଠାରେ ପଢ଼ିପାରିବ । କାରଣ, ସେତେବେଳକୁ ଶାନ୍ତିନିକେତନରେ ଝିଅମାନେ ପଢ଼ିବାର ବ୍ୟବସ୍ଥା ନଥିଲା ।

ମିନୁ ଶାନ୍ତିନିକେତନରେ ସାତବର୍ଷ ଅଧ୍ୟୟନ କଲେ । ସେଠାକାର ବାତାବରଣ ତାଙ୍କୁ ଭଲ ଲାଗିଲା । ସେ ସେଠାରେ ସ୍ୱୟଂ ରବୀନ୍ଦ୍ରନାଥଙ୍କଠାରୁ ଗୀତ ଓ ଦୀନେନ୍ଦ୍ରନାଥ ଠାକୁରଙ୍କଠାରୁ ସଙ୍ଗୀତ ଶିକ୍ଷା ପାଇଲେ ଏବଂ ଭୀମରାଓ ଶାସ୍ତ୍ରୀଙ୍କଠାରୁ ବୀଣାବାଦନ ଶିଖିଲେ । ଏହାଛଡ଼ା ସେ ସି.ଏଫ୍‌.ଆଣ୍ଡ୍ରୁଜ୍‌ଙ୍କଠାରୁ ଶିକ୍ଷାଲାଭର ସୌଭାଗ୍ୟ ମଧ୍ୟ ପାଇଥିଲେ । କିନ୍ତୁ ଶାନ୍ତିନିକେତନର ଶାନ୍ତ, ନରମ ଓ ବିନମ୍ର ଭାବ ତାଙ୍କ ଚରିତ୍ରରେ ପ୍ରତିଫଳିତ ହୋଇପାରି ନାହିଁ । ସେଭଳି ବିପ୍ଳବିଣୀ ଶାନ୍ତିନିକେତନରୁ ବାହାରିଥିବାର ବି ଜଣାଯାଏ ନାହିଁ ।

ନାନା ରୁଚିରେ ମାର୍ଜିତ ଓ କଲିକତା ମହାନଗରୀର ସଭ୍ୟତାରେ ବଢ଼ିଥିବା ମିନୁ ସେନ୍ ବିବାହ ପରେ ତରିକୁନ୍ଦ ଚାଷଘରେ ପାଲଟିଗଲେ ପୂରାପୂରି ଏକ ଚାଷୁଣୀ । ସରୁ, ସୁରୁଚିସମ୍ପନ୍ନ ବସନ ବଦଳରେ ମୋଟା ଖଦଡ଼ପିନ୍ଧା ଓ ମୋଟା ଚାଉଳ ଖାଇବାରେ ଅଭ୍ୟସ୍ତ ହୋଇଗଲେ, ଆଉ ଡାଲି, ତରକାରି ତ କ୍ୱଚିତ୍ ଏବଂ ସେସବୁରେ ତେଲମସଲା ନାଁକୁ ମାତ୍ର । ଦେଶର ଶୋଷିତ ନିର୍ଯାତିତ ଲୋକଙ୍କ ଲାଗି ଉଭୟେ ଗଢ଼ିଛନ୍ତି କଂଗ୍ରେସ ସାମ୍ୟବାଦୀ ସଂଘ, କୃଷକ ସଂଘ । 'ସାରଥି' ପତ୍ରିକା ଓ ସମାଜବାଦ ଆନ୍ଦୋଳନ ଲାଗି ମାଳତୀଦେବୀ ନିଜର ବହୁମୂଲ୍ୟ ଅଳଙ୍କାର ବିକିଛନ୍ତି । ଅନେକ କ୍ଷେତ୍ରରେ ସ୍ୱାମୀଙ୍କ ବିନା ସହାୟତାରେ ଅନ୍ୟ କର୍ମୀଙ୍କୁ ସଙ୍ଗରେ ନେଇ ଦୂରଦୂରାନ୍ତରକୁ ଯାଇ କୃଷକ ଆନ୍ଦୋଳନ କରିଛନ୍ତି ଓ ଗଡ଼ଜାତ ଆନ୍ଦୋଳନରେ ନେତୃତ୍ୱ ନେଇଛନ୍ତି । ତାଙ୍କର ସାହସ ଓ ତେଜ ଅନେକ ସମୟରେ ପ୍ରତିପକ୍ଷକୁ ହତବାକ୍ କରିଛି । ଅନେକ ସମୟରେ ସେ ହୋଇଛନ୍ତି ନବବାବୁଙ୍କଠାରୁ ଅଧିକ ଲଢ଼ୁଆ । ସେଇଥିପାଇଁ ଗଡ଼ଜାତ ଆନ୍ଦୋଳନ କାଳରେ ଯେଉଁମାନେ ଲଢ଼ୁଆ ଭୂମିକା ଗ୍ରହଣ କରିଥିଲେ, ସେମାନେ ନବବାବୁଙ୍କ ଅପେକ୍ଷା ମାଳତୀଦେବୀଙ୍କୁ ଅଧିକ ପସନ୍ଦ କରୁଥିଲେ । ସେମାନେ କହୁଥିଲେ, ସେ ହେଉଛନ୍ତି 'ବାଘୁଣୀ' । ମାଳତୀଦେବୀ କିନ୍ତୁ ଲଢ଼ୁଆ କମ୍ୟୁନିଷ୍ଟମାନଙ୍କ ସହିତ ରହିଲେ ନାହିଁ; ଯିବା ପାଇଁ ଚାହିଁଥିଲେ, ଉଦାର ଦୃଷ୍ଟିଭଙ୍ଗୀର ନବବାବୁ ବାଧା ବି ଦେଇନଥାନ୍ତେ । କିନ୍ତୁ ଉଭୟଙ୍କ ମଧ୍ୟର ବନ୍ଧନ ଯୋଗୁଁ ପ୍ରାୟ ତାହା ସମ୍ଭବପର

ହୋଇନଥିଲା । ଲୁଣମରା ଆନ୍ଦୋଳନ ଓ ଅସହଯୋଗ ଆନ୍ଦୋଳନରେ ତାଙ୍କର ସାହସ, ଦମ୍ଭ ଓ ମାଡ଼ଖିଆ ବାନରସେନାଙ୍କ ସେବା ତଥା ସେମାନଙ୍କ ପ୍ରତି ଗଭୀର ଶ୍ରଦ୍ଧା କଥା ଏବେ ବି ବହୁ ଲୋକ ମନେପକାନ୍ତି ।

୧୯୩୦ ଲବଣ ସତ୍ୟାଗ୍ରହ ବେଳେ ସତ୍ୟାଗ୍ରହୀ ସଂଗ୍ରହ ଓ ସେହି ଆନ୍ଦୋଳନ ଲାଗି ଅର୍ଥ ସଂଗ୍ରହ ଚାଲିଲା । କଂଗ୍ରେସ କମିଟି ବୈଠକରେ ଅର୍ଥ ସଂଗ୍ରହ କଥା ଉଠିଲା ମାତ୍ରେ ମାଳତୀଦେବୀ ତାଙ୍କ ହାତରୁ ଛଅପଟ ସୁନାଚୁଡ଼ି ବାହାର କରି ସେହି ପାଣ୍ଠିକୁ ଦାନ କରିଥିଲେ । ସେହି ବର୍ଷ ଜାନୁଆରି ୨୬ ତାରିଖରେ 'ପୂର୍ଣ୍ଣ ସ୍ୱରାଜ ଦିବସ' ପାଳିତ ହୋଇଥିଲା । ତାହାକୁ ଭଣ୍ଡୁର୍ କରିବାଲାଗି ସରକାର ସର୍ବତ୍ର କଟକଣା ଜାରି କରିଥିଲେ । ଏହାସତ୍ତ୍ୱେ ରାଜକୃଷ୍ଣ ବୋଷଙ୍କ ଦ୍ୱାରା ପରିଚାଳିତ କାଠଗଡ଼ା ସାହିର ଲୋକସେବା ପ୍ରେସ ହତାରେ ସକାଳେ ଯେଉଁ ପତାକା ଉତ୍ତୋଳନ କରାଯାଇଥିଲା, ସେଥିରେ ମାଳତୀଦେବୀ ଓ ନରସିଂହ ମହାନ୍ତି ଆଦି ଅଂଶ ଗ୍ରହଣ କରିଥିଲେ ଓ ସନ୍ଧ୍ୟାରେ ପୂର୍ଣ୍ଣ ସ୍ୱରାଜ ହାସଲ ପାଇଁ ଶପଥ ପାଠ କରିଥିଲେ । ଏତକ କରିବା ସେ ସମୟରେ ଖୁବ୍ ସାହସିକ କାମ ଥିଲା ।

ଲବଣ ସତ୍ୟାଗ୍ରହ ସମୟରେ ସେ ଇଞ୍ଚୁଡ଼ି, ଶ୍ରୀଜଙ୍ଗ ଏବଂ କୁଜଙ୍ଗର କାଳିଆପାଟକୁ ଅନ୍ୟମାନଙ୍କୁ ସାଙ୍ଗରେ ନେଇ ଯାଇଥିଲେ ଓ ସେଠାକାର ସ୍ତ୍ରୀ, ପୁରୁଷଙ୍କୁ ଆନ୍ଦୋଳନ ଆଡ଼କୁ ଟାଣିଆଣିଥିଲେ । ଶ୍ରୀଜଙ୍ଗ ଆଦି ଅଞ୍ଚଳରେ ଅତ୍ୟାଚାର ଚାଲିଥିଲା ସମୟରେ ସେ ରମା ଦେବୀ ଆଦିଙ୍କ ସହିତ ୨୫, ୩୦ କିଲୋମିଟର ଚାଲିଚାଲି ଯାଇ ସେଠାରେ ପହଞ୍ଚୁଥିଲେ ଏବଂ ବିଭିନ୍ନ ସମୟରେ ନାନା ଦୁଃଖ, ଯାତନା ଭୋଗ କରିଥିଲେ । କାଉନସିଲ ନିର୍ବାଚନ ବର୍ଜନ ପାଇଁ ଭୋଟଗ୍ରହଣ କେନ୍ଦ୍ରରେ ପିକେଟିଂ କରି ମାଳତୀଦେବୀ ଓ ତାଙ୍କ ବଡ଼ ନଣନ୍ଦ ଗୋଲାପସୁନ୍ଦରୀ ମଧ୍ୟ ଗିରଫ ହୋଇଥିଲେ । ନଣନ୍ଦଙ୍କୁ ପୋଲିସ ରାତିଏ ହାଜତରେ ରଖି ଛାଡ଼ିଦେଇଥିଲେ, କିନ୍ତୁ ମାଳତୀଦେବୀଙ୍କୁ କଟକ ଜେଲ୍‌ର ୧୧ ନମ୍ବର ୱାର୍ଡ଼୍‌ରେ ଚୋରଣୀ ଏବଂ ଖୁଣୀ ଆସାମୀଙ୍କ ସହିତ ରଖାଇଥିଲେ । ବିଚାରରେ ତାଙ୍କୁ ଛଅମାସ ଦଣ୍ଡ ମିଳିଲା ଓ ତାଙ୍କୁ ଭାଗଲପୁର ସେଣ୍ଟ୍ରାଲ୍ ଜେଲ୍‌କୁ ପଠାଇଦିଆଗଲା । ସାଙ୍ଗରେ ଗଲେ ତାଙ୍କର ଅଢ଼େଇ-ବର୍ଷର ଝିଅ ଉତ୍ତରା । ପର ବର୍ଷ ଗାନ୍ଧି-ଇରଉଇନ୍ ଚୁକ୍ତି ଫଳରେ ସେ ମୁକ୍ତ ହୋଇଥିଲେ ଏବଂ ପୁରୀ ପ୍ରସ୍ତାବିତ କଂଗ୍ରେସ ଅଧିବେଶନ ଲାଗି ସ୍ୱେଚ୍ଛାସେବକ ସଂଗ୍ରହ ତଥା ତାଲିମରେ ବିଶେଷ ଅଂଶ ଗ୍ରହଣ କରିଥିଲେ । ୧୯୩୨ ରେ ପୁଣି ସତ୍ୟାଗ୍ରହ ଆନ୍ଦୋଳନ ଚାଲିବାରୁ ଅନ୍ୟମାନଙ୍କ ମଧ୍ୟରେ ମାଳତୀଦେବୀ ଗିରଫ ହେଲେ ଓ ଛଅମାସ ଦଣ୍ଡ ପାଇଲେ । ଏଥର ତାଙ୍କ ସହିତ ଶିଶୁପୁତ୍ର କାଲୁ ହଜାରିବାଗ ଜେଲ୍‌ରେ ରହିଲା । ଏହି ସମୟରେ ଚୌଧୁରୀ ପରିବାରର ସମସ୍ତେ ସେହି ଜେଲ୍‌ରେ ରହିବା ଫଳରେ ତାହା ସେମାନଙ୍କର ଘର ପାଲଟି-ଯାଇଥିଲା ।

୧୯୪୨ ମସିହା ବେଳକୁ ମାଳତୀଦେବୀ ନିଖିଳ ଭାରତ କଂଗ୍ରେସ କମିଟିର ସଦସ୍ୟ ହୋଇସାରିଥିଲେ ଏବଂ ଅଗଷ୍ଟ ଆନ୍ଦୋଳନ ସମ୍ପର୍କୀୟ ଆଲୋଚନାରେ ଅଂଶ ଗ୍ରହଣ କରିବା ଲାଗି ସୁରେନ୍ଦ୍ର ଦ୍ୱିବେଦୀଙ୍କୁ ସଙ୍ଗରେ ନେଇ ବମ୍ବେ ଯାଇଥିଲେ । 'ଭାରତ ଛାଡ଼ ଆନ୍ଦୋଳନ' ସମ୍ପର୍କରେ ନିଷ୍ପତ୍ତି ନିଆଯିବା ସଙ୍ଗେସଙ୍ଗେ ସେ ଦୁହେଁ କୌଶଳକ୍ରମେ ମାନ୍ଦ୍ରାଜ ଦେଇ ଭୁବନେଶ୍ୱର ଷ୍ଟେସନରେ ଓହ୍ଲାଇ, ବହୁ କାଳ ଗୁପ୍ତରେ ଆନ୍ଦୋଳନ ଚଳାଇଥିଲେ । କଟକରୁ ସେହି ବର୍ଷ ଗିରଫ ହୋଇ ସେ କଟକ ଜେଲ୍‌ରେ ରହିଲେ । ୧୯୪୫ ମସିହାରେ ସେ ଖଲାସ ହେଲେ ଏବଂ ୧୯୪୬ ମସିହା ବେଳକୁ ସେ ଗୌରବର ଶିଖରରେ ପହଞ୍ଚିଥିଲେ । ସେହି ବର୍ଷ ହରେକୃଷ୍ଣ ମହତାବଙ୍କ ପ୍ରସ୍ତାବରେ ଓ ନବକୃଷ୍ଣ ଚୌଧୁରୀଙ୍କ ସମର୍ଥନରେ ପ୍ରବୀଣ ରାଜନୀତିଜ୍ଞ, ପୂର୍ବତନ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ପ୍ରଦେଶ କଂଗ୍ରେସର ସଭାପତି ପଦ ପାଇଁ ପ୍ରାର୍ଥୀ ହେଲେ । ସେଭଳି ପ୍ରାର୍ଥୀଙ୍କ ବିରୋଧରେ ଠିଆ ହେବାକୁ ସାହସ କାହାର ଥିଲା ? ଏହି ସମୟରେ ଯୁବଗୋଷ୍ଠୀ ମାଳତୀଦେବୀଙ୍କୁ ପ୍ରାଦେଶିକ କଂଗ୍ରେସ ସଭାପତି ପାଇଁ ପ୍ରାର୍ଥୀ କରନ୍ତି ଓ ସେ ବି ବିଜୟିନୀ ହୁଅନ୍ତି । ସେ ନିଜର ବିଶ୍ୱସ୍ତ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କୁ ସମ୍ପାଦକ ଭାବରେ ବାଛିଲେ ସତ, କିନ୍ତୁ ଏହି ଯୋଡ଼ି ହରେକୃଷ୍ଣ ମହତାବଙ୍କ ବିଷଦୃଷ୍ଟିରେ ପଡ଼ିଲେ । କେତେକ ଘଟଣା ପରେ ସେ ନୂଆଖାଲିଠାରୁ ସଭାପତି ପଦରୁ ଇସ୍ତଫା ଦେଇ ଗାନ୍ଧିଜୀଙ୍କ ସହିତ ଶାନ୍ତି ଅଭିଯାତ୍ରାରେ ରହିଲେ । ଏଣୁ ସେ ଏକସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇପାରିଥାନ୍ତେ ବୋଲି ରାଧାମୋହନ ଗଡ଼ନାୟକଙ୍କ ଭଳି ଲୋକ ଏ ଲେଖକକୁ ଯାହା କହିଥିଲେ, ତାହା ଅତିରଞ୍ଜନ ନୁହେଁ ।

କିନ୍ତୁ କ୍ଷମତା-ରାଜନୀତି ଅପେକ୍ଷା ଲୋକଙ୍କ ମଧ୍ୟରେ ଜାଗୃତି ସୃଷ୍ଟି କରିବା ଏବଂ ସେମାନଙ୍କୁ ଲଢୁଆ କରି ଶୋଷଣ ଓ ଅତ୍ୟାଚାର ବିରୋଧରେ ଲଢ଼େଇ କରିବାପାଇଁ ସକ୍ଷମ କରିବା ଲାଗି ସେ ଭିନ୍ନ ବାଟ ବାଛିନେଇଥିଲେ । ଏହି ସମୟର ପ୍ରାୟ ତିରିଶ ବର୍ଷ ପରେ ୧୯୭୭ ମସିହାରେ ସେ ଯେତେବେଳେ ଢେଙ୍କାନାଳରୁ ନନ୍ଦିନୀ ଶତପଥୀଙ୍କ ବିରୋଧରେ ବିଧାନସଭା ନିର୍ବାଚନରେ ଲଢ଼ିଥିଲେ, ତାହା ଥିଲା ଏକ ପ୍ରତୀକାତ୍ମକ ଲଢ଼େଇ ।

ଓଡ଼ିଶାର ଅନ୍ଧାରି ମୁଲକ ଲୋକଙ୍କ ଲାଗି ସିଏ ନିଜକୁ ଉତ୍ସର୍ଗ କରିଛନ୍ତି । ସେ ଆୟାସ ସହକାରେ ଓଡ଼ିଆ କହିଛନ୍ତି । କହିବାରେ ଶେଷ ପର୍ଯ୍ୟନ୍ତ ଟିକିଏ ଦୋଷ ରହିଲେ ବି ଓଡ଼ିଆ ଲେଖାଲେଖିରେ ସେ ଦୋରସ୍ତ । ସେ ଓଡ଼ିଆ ଜୀବନଶୈଳୀକୁ କିପରି ଗ୍ରହଣ କରିନେଇଥିଲେ, ତାହା ତାଙ୍କୁ ଦେଖିଥିଲା ଲୋକେ ହିଁ ଜାଣନ୍ତି । ଏସବୁ ସତ୍ତ୍ୱେ ଦୁଃଖର କଥା ଯେ ଓଡ଼ିଆ ଲୋକେ ତାଙ୍କୁ ପୂରା ନିଜର ବୋଲି ଗ୍ରହଣ କରିପାରିନାହାନ୍ତି । ଏଥିପାଇଁ ଗୋଟିଏ ବାଧକ ଥିଲା ତାଙ୍କର ଅସହିଷ୍ଣୁତା ଓ କ୍ରୋଧ । କିନ୍ତୁ ସେହି 'ବାଘୁଣୀ' ଯେ କିଭଳି ସ୍ନେହୀ, ତା'ର ଏକ ଦୃଷ୍ଟାନ୍ତ ଏଇ ଲେଖକ ନିଜେ ଲକ୍ଷ୍ୟ କରିଛି । କିଛି ବର୍ଷ ତଳେ ବାଜି ରାଉତ ଛାତ୍ରାବାସର

ବାର୍ଷିକ ଉତ୍ସବକୁ ଅନ୍ୟମାନଙ୍କ ମଧ୍ୟରେ ଶିଳ୍ପୀ ଜଗନ୍ନାଥ ଦାସ (ଜଗାଭାଇ) ଅନୁଗୋଳ ଯାଇଥାନ୍ତି । ସେତେବେଳକୁ ଜଗନ୍ନାଥ ଦାସଙ୍କର ସ୍ୱାସ୍ଥ୍ୟ ଖୁବ୍ ଖରାପ ହୋଇଯାଇଥାଏ । ମାଳତୀଦେବୀଙ୍କ ଦୃଷ୍ଟିଶକ୍ତି ମଧ୍ୟ ଅନେକ ପରିମାଣରେ କମିଯାଇଥାଏ । ବହୁ ବର୍ଷ ପରେ ସେ ତାଙ୍କ ପ୍ରିୟ ଜଗାକୁ ସେଭଳି ସ୍ୱାସ୍ଥ୍ୟରେ ଚିହ୍ନିପାରିଲେ ନାହିଁ । ତାଙ୍କୁ ଚିହ୍ନାଇଦେଲା ପରେ ମାଳତୀଦେବୀ ଜଗନ୍ନାଥ ଦାସଙ୍କ ମୁହଁକୁ ପୋଛି ଠିକ୍ ମଫସଲି ବୁଢ଼ୀଙ୍କ ଭଳି କହିପକାଇଲେ, ''ମୋ' ଜଗୁରେ ! ତୋ' ବେମାରି ମୋତେ ଝାଡ଼ିଝୁଡ଼ି ଦେଇଯା' ।''

ଏହିଭଳି ଭାବରେ ମାଳତୀଦେବୀ ବି ଏକ ଅଦ୍ଭୁତ ଚରିତ୍ର ; କାହା କଥା ଶୁଣିବେ ନାହିଁ, କାହା ମୁହଁଓପ୍ରଧ ରଖିବେ ନାହିଁ–ସିଧା ବାକ୍ୟବାଣ ! ନବବାବୁଙ୍କ ଭଳି ବୁଝିବା ସୁଝିବା ଓ ସହନଶୀଳ ଲୋକ ହିଁ ତାଙ୍କ ଦାଢ଼ ମୁନ ସହିସମ୍ଭାଳି ସାରା ଜୀବନ ଘନିଷ୍ଠ ସଙ୍ଗୀ ହୋଇପାରିଥିଲେ ; କିନ୍ତୁ ସେହି ଦାଢ଼ ମୁନ ଭୟରେ ଅନେକ ମୂଲ୍ୟବାନ କର୍ମୀ ନବଜୀବନ ମଣ୍ଡଳ ଓ ବାଜି ରାଉତ ଛାତ୍ରାବାସ ଛାଡ଼ି ଚାଲିଯାଇଛନ୍ତି । ସେ ବିରାଟ ବିଚିତ୍ର ବ୍ୟକ୍ତିତ୍ୱର ମୂଲ୍ୟାୟନ ଏକ ସ୍ୱତନ୍ତ୍ର ଅଧ୍ୟୟନସାପେକ୍ଷ । ତାଙ୍କର ମହନୀୟତା ପଛରେ ନବକୃଷ୍ଣ ଚୌଧୁରୀଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା ଓ ନବକୃଷ୍ଣ ଚୌଧୁରୀ ଏକ ମହାନ ବ୍ୟକ୍ତି ହେବାପଛରେ ବି ମାଳତୀଦେବୀଙ୍କର ପରିପୂରକ ଭୂମିକା ରହିଆସିଛି । ସେହି ଯୋଡ଼ିଙ୍କୁ ଅନେକେ ଆଦର୍ଶ ଦମ୍ପତି ବୋଲି କହନ୍ତି । ଏକା ତାଳରେ କାମ କରିବା ଓ ଏକା ଦୃଷ୍ଟିଭଙ୍ଗୀ ଥାଇ ବି ଦୁଇ ଚରିତ୍ରରେ କେତେ ସ୍ୱତନ୍ତ୍ରତା ଥିବା କଥା ମଧ୍ୟ ଅନେକେ ଲକ୍ଷ୍ୟ କରିଛନ୍ତି । ୧୯୯୯ ମସିହାରେ ଅନୁଗୋଳ ଆଶ୍ରମରେ ତାଙ୍କର ଦେହାନ୍ତ ହୋଇଯାଇଛି ।

**ନେହେରୁ ଯାହାଙ୍କୁ ଆଗ ନମସ୍କାର କରନ୍ତି :**

ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବାର କିଛି ମାସ ପରେ ହୀରାକୁଦ ବନ୍ଧ ଉନ୍ମୋଚିତ ହେଲା । ନେହେରୁ ଆସିଥାନ୍ତି ମୁଖ୍ୟଅତିଥି ଭାବରେ । ନବକୃଷ୍ଣ ଚୌଧୁରୀଙ୍କୁ ମଧ୍ୟ ନିମନ୍ତ୍ରଣ ଥିଲା । ନବବାବୁ ଉତ୍ସବ ସ୍ଥାନର ବିଶିଷ୍ଟ ଅତିଥିମାନଙ୍କ ପାଇଁ ଉଦ୍ଦିଷ୍ଟ ସ୍ଥାନକୁ ଗଲାବେଳେ ତାଙ୍କର ଗାଉଁଲି ପୋଷାକ ଦେଖି ପୋଲିସ ତାଙ୍କୁ ବାଟ ଛାଡ଼ି ନ ଥିଲା । ବିଜୁ ପଟ୍ଟନାୟକ ଏହା ଦେଖିପାରି ନବବାବୁଙ୍କୁ ପାଛୋଟି ନେଇଥିଲେ ।

ନେହେରୁଙ୍କ ସହିତ ନବବାବୁଙ୍କ ସମ୍ପର୍କ ୧୯୩୩ ମସିହାରୁ । ୧୯୩୭ ମସିହାର ନିର୍ବାଚନ ବେଳେ ନେହେରୁ ନିର୍ବାଚନ ପ୍ରଚାର ଲାଗି ଓଡ଼ିଶା ଆସିଥିଲେ । ସେତେବେଳକୁ ନବବାବୁ କଂଗ୍ରେସ ଦଳର ସାଧାରଣ ସମ୍ପାଦକ । ନିଜେ କଂଗ୍ରେସ ସୋସାଲିଷ୍ଟ ପାର୍ଟିଭୁକ୍ତ ନ ହେଲେ ବି ନେହେରୁଙ୍କର ସେହି ଗୋଷ୍ଠୀ ପ୍ରତି ନିଶ୍ଚିତ ଭାବରେ ସହାନୁଭୂତି ଥିବାରୁ ସୋସାଲିଷ୍ଟ-ବିରୋଧୀ ଗୋଷ୍ଠୀର ଅନିଚ୍ଛା ସତ୍ତ୍ୱେ କଂଗ୍ରେସ--ସୋସାଲିଷ୍ଟମାନେ କଂଗ୍ରେସ ଦଳ ମଧ୍ୟରେ ରହି କାମ କରିପାରିଲେ । ନବକୃଷ୍ଣ ଚୌଧୁରୀ ଥିଲେ ସେହି କଂଗ୍ରେସ--ସୋସାଲିଷ୍ଟ

ପାର୍ଟିର ଅନ୍ୟତମ ସାଧାରଣ ସମ୍ପାଦକ । ଗଡ଼ଜାତ ଆନ୍ଦୋଳନ ବେଳେ ନବବାବୁ ନେହେରୁଙ୍କ ପରାମର୍ଶ ପାଇଁ ତାଙ୍କୁ ସାକ୍ଷାତ କରିବାକୁ ଯାଇଥିଲେ । ଏହି ଆନ୍ତରିକ ସମ୍ପର୍କ ଛଡ଼ା ନେହେରୁଙ୍କର ନବବାବୁଙ୍କ ପ୍ରତି ଏକ ସ୍ୱତନ୍ତ୍ର ଆକର୍ଷଣ ଥିଲା । ଏଣୁ ହରେକୃଷ୍ଣ ମହତାବ କେନ୍ଦ୍ର ମନ୍ତ୍ରିମଣ୍ଡଳକୁ ଯିବାକଥା ଉଠିଲା ବେଳକୁ ଖାଲି ମହତାବବାବୁ ଚାହିଁନାହାନ୍ତି, ନେହେରୁ ବି ଚାହିଁଥିଲେ ଯେ ନବବାବୁଙ୍କ ଭଳି ଜଣେ ସମାଜବାଦୀ ଚିନ୍ତାଧାରାର ଲୋକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୁଅନ୍ତୁ ।

ପରବର୍ତ୍ତୀ କାଳରେ ଉଭୟଙ୍କ ମଧ୍ୟରେ ଏଭଳି ଗଭୀର ଆସ୍ଥା ଥିଲା ଯେ ନେହେରୁ ତାଙ୍କ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବାକୁ ମୋଟେ ଗ୍ରହଣ କରିପାରୁ ନଥାନ୍ତି । ଏଣୁ ନବବାବୁ ୧୯୫୩ ମସିହାରୁ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବି ଛାଡ଼ିବି ବୋଲି କହୁଥିଲେହେଁ ନେହେରୁଙ୍କ ଯୋଗୁଁ ତାହା ତିନିବର୍ଷ ପଛେଇ ଯାଇଥିଲା । ସେ ହିଁ ଓଡ଼ିଶାର ଏକମାତ୍ର ମୁଖ୍ୟମନ୍ତ୍ରୀ, ଯେ କି ଦିଲ୍ଲୀ ଗଲେ ପ୍ରଧାନମନ୍ତ୍ରୀଙ୍କ ଘରେ ଆତିଥ୍ୟ ଲାଭ କରିବାର ସୌଭାଗ୍ୟ ଲାଭ କରୁଥିଲେ । ଓଡ଼ିଶା ଆସିଲା ବେଳକୁ ଥରେ ନେହେରୁ ନବବାବୁଙ୍କ ଅତିଥି ହେବେ ବୋଲି କହିଥିଲେ । କିନ୍ତୁ ମାଳତୀଦେବୀ ଆଦିବାସୀ ଅଞ୍ଚଳ କାମରେ ବ୍ୟସ୍ତ ଥିବାରୁ ଓ ନବବାବୁଙ୍କ ଛୋଟ ଘରେ ତାହା ସମ୍ଭବପର ହେବ ନାହିଁ ବୋଲି କହିବାରୁ କଥାଟି ସେହିଠି ରହିଗଲା ।

ବ୍ରହ୍ମପୁରଠାରେ ହୋଇଥିବା ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନ ବେଳକୁ ନେହେରୁ ଗୋପାଳପୁରର ପାମ୍ ବିଚ୍ ହୋଟେଲରେ ରହୁଥାନ୍ତି । ଖୋଲା ଅଧିବେଶନକୁ ଯିବା ଦିନ ନବବାବୁ ତାଙ୍କୁ ସଙ୍ଗରେ ଆଣିବା ଲାଗି ସେହି ହୋଟେଲକୁ ଯାଇଥାନ୍ତି । ପ୍ରଧାନମନ୍ତ୍ରୀଙ୍କ ରହଣି ଯୋଗୁଁ ଆସିଷ୍ଟାଣ୍ଟ କଲେକ୍ଟର ବିଘ୍ନରାଜ ପଟେଲ ବି ସେଠାରେ ଉପସ୍ଥିତ ଥାଆନ୍ତି । ନେହେରୁ ତାଙ୍କ ଅର୍ଦ୍ଧଉନ୍ମୋଚିତ ଗୋଲାପଖଚିତ ଚକ୍‌ଚକ୍ ପୋଷାକରେ ପାମ୍ ବିଚ୍ ହୋଟେଲକୁ ବାହାରିଲେ । ନବବାବୁଙ୍କୁ ଦେଖି ତାଙ୍କ ପଞ୍ଜାବିକୁ ଟିକିଏ ଆଙ୍ଗୁଳିରେ ଟେକି କହିଲେ, ''ନବବାବୁ ଇତ୍‌ନା ଗନ୍ଦା କପ୍‌ଡ଼ା କେୟାଁ ପହେନ୍‌ତେ ହେଁ ?'' ନୀଳ ଓ ମଣ୍ଡବିହୀନ, ଇସ୍ତ୍ରି ନ ହୋଇଥିବା ପଞ୍ଜାବିଟି ନେହେରୁଙ୍କୁ ନିଶ୍ଚିତ ଭାବରେ ଅଖାଡୁଆ ଲାଗିଥିଲା । ଉଭୟେ ଆଗପଛ ହୋଇ ବ୍ରହ୍ମପୁର ଗଲେ । ଗାଡ଼ିରୁ ଓହ୍ଲାଇ ନେହେରୁ ଡଗଡଗ ହୋଇ ପେଣ୍ଡାଲ୍ ଆଡ଼କୁ ଚାଲିଯାଉଥାନ୍ତି । କିଛି ବାଟ ଗଲା ପରେ ପଛକୁ ଚାହିଁଲା ବେଳକୁ ନବବାବୁ ବେଶ୍ କିଛି ବାଟ ଦୂରରେ । ସେଠାରେ ପୁଣି କହିଲେ, ''ନବବାବୁ ତୁମ୍ କେୟାଁ ଇତନା ପିଛେ ରହ୍ ଜାତେ ହୋ ?''

ଖୋଲା ଅଧିବେଶନ ଆରମ୍ଭ ହେଲା । ନେହେରୁ ଭାଷଣର ଆରମ୍ଭରେ କହିଲେ, ''ଆପ୍‌କା ନବବାବୁ ବହୁତ୍ ଅଚ୍ଛା ଆଦମୀ ହେ । ମଗର ମୈଁ ଉନ୍‌କୋ ଜିତ୍‌ନା ଆଗେ ଲେ ଜାନା ଚାହତା ହୁଁ, ୱୋ ଉତ୍‌ନା ହି ପିଛେ ରହ୍ ଯାତେ ହେଁ ।''

ସେ ଦୁଇ ସ୍ଥାନରେ ଉପସ୍ଥିତ ଥିବା ବିଘ୍ନରାଜ ପଟେଲ ଏସବୁ ଦେଖି ଓ ଶୁଣି ଅନୁଭବ କରିଥିଲେ, ସତେ ଯେପରି ବଡ଼ଭାଇ ଆବ୍‌ଦା କରି ସାନଭାଇକୁ ଏସବୁ କହୁଥିଲେ । ସେମାନଙ୍କ ମଧ୍ୟରେ ବହୁତ ବ୍ୟକ୍ତିଗତ ପତ୍ର ଆଦାନପ୍ରଦାନ ହୋଇଥିଲା । ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବା ପରେ ନେହେରୁ ଯେଉଁ ହାତଲେଖା ଚିଠିଟି ପଠାଇଥିଲେ, ତାହା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ।

ନୂଆଦିଲ୍ଲୀ

୧୧-୧୦-୧୯୫୬

ପ୍ରିୟ ନବକୃଷ୍ଣ ;

ତୁମେ ତା' ହେଲେ ସକ୍ରିୟ ରାଜନୀତି ଛାଡ଼ି ଏଥର ପୂରା ସମୟ ରଚନାତ୍ମକ କାମରେ ଯୋଗ ଦେବା ପାଇଁ ଚାଲିଲ ! ଯାହାସବୁ ଘଟିଗଲା, ସେଥିପାଇଁ ମୁଁ ଖୁବ୍ ଦୁଃଖିତ । ଯାହା ଘଟିଲା, ସେଥିଲାଗି ଯେତେ ଦୁଃଖିତ ନୁହେଁ, ଯେପରି ଭାବରେ ଘଟିଲା, ତା' ପାଇଁ ବେଶି ଦୁଃଖିତ । ବୋଧହୁଏ ତୁମେ ଠିକ୍ ନିଷ୍ପତ୍ତି ନେଇଛ–ମୁଁ ଜାଣେନା । ରଚନାତ୍ମକ କାର୍ଯ୍ୟର ମହତ୍ତ୍ୱ ନିଃସନ୍ଦେହ ରୂପେ ଅଧିକ । ସେସବୁ ପ୍ରତ୍ୟେକ କାମର ମୌଳିକ ଆଧାର । ମାତ୍ର ମୋ'ର ଆଶଙ୍କା ଯେ ଆମର ରଚନାତ୍ମକ କର୍ମୀମାନେ ମାନସିକ ଉଦାସୀନତାରେ ବୁଡ଼ିରହୁଛନ୍ତି । ଏପରିକି ଜୟପ୍ରକାଶ ମଧ୍ୟ ମାନସିକ ସ୍ତରରେ ଭାଙ୍ଗିପଡ଼ିଲେଣି । କଂଗ୍ରେସ ଉପରେ ରାଗିରାଗି ତାଙ୍କର ଶକ୍ତି ନଷ୍ଟ ହୋଇଯାଉଛି । ତାଙ୍କର ଆଉ କିଛି କାମ ଥିଲା ପରି ମନେହେଉନାହିଁ । ଭୂଦାନ ଆନ୍ଦୋଳନ ବହୁସଂଖ୍ୟକ ଦରମାପ୍ରାପ୍ତ କର୍ମୀଙ୍କୁ ନେଇ ଚାଲିଛି ; ଯେଉଁମାନେ କି ଆଦର୍ଶବାଦର ଦାଢ଼କୁ ଦନ୍ତୁରା କରି ନିଜେ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀରେ ପରିଣତ ହୋଇଛନ୍ତି । ଚିନ୍ତା କରିବାର ଶକ୍ତି କମିକମିଯାଉଛି ଓ ଆମେ ସମସ୍ତେ ଊଣାଅଧିକେ ଆମ ନିଜନିଜର ସଂକୀର୍ଣ୍ଣ ମାନସିକ ଖାଇ ଭିତରେ ଚାଲିଛୁ । ତୁମେ ଥିଲ ଅଳ୍ପ କେତେକଙ୍କ ମଧ୍ୟରୁ ଜଣେ, ଯେ କି ସେହି ଖାଇ ଭିତରୁ ବାହାରି ଆସି ଆମ ଆଗରେ ଦେଖାଦେଉଥିବା ବିଭିନ୍ନ ସମସ୍ୟାର ସମାଧାନ ପାଇଁ ଲାଗିପାଗି ମୁଣ୍ଡ ଖେଳାଉଥିଲ । ସେ ସୁଯୋଗରୁ କଅଣ ଆମେମାନେ ଏଣିକି ବଞ୍ଚିତ ହେବୁ ? ନିରାଶ କରାଇବ ନାହିଁ, ଆଶା । ଦୁନିଆ, ବିଶେଷ କରି ଆମର ଛୋଟ ଦୁନିଆ, ଭାରତବର୍ଷଟି ଦିନକୁଦିନ ଜଟିଳ ହୋଇଚାଲିଛି, ଯାହାକୁ କଳନା ବି କରିହେଉ ନାହିଁ । ଆମେ ଆମ ଧରାବନ୍ଧା ଚିନ୍ତାଧାରା ଭିତରେ ପଡ଼ିରହିଥିବା ବେଳେ ଦୁନିଆଟା ଆମ ଚାରିପଟେ ବଦଳିଚାଲିଛି । ପରିବର୍ତ୍ତନର ଏଇ ନିରବଛିନ୍ନ ଧାରାଟିକୁ ମୁଁ ବୁଝୁଛି । ମନେହେଉଛି, ସତେ ଯେମିତି ମୁଁ ପଛରେ ପଡ଼ିଯାଉଛି ଓ ସେଇଥିପାଇଁ ପଡ଼ିଉଠି ସେହି ପରିବର୍ତ୍ତନ ସହ ତାଳ ଦେଇ ଆଗେଇବାକୁ ଚେଷ୍ଟା କରୁଛି । ଜନ୍ ଷ୍ଟ୍ରାଚି ଲେଖିଥିବା

'କଣ୍ଟେମ୍ପରାରୀ କ୍ୟାପିଟାଲିଜିମ୍' ବହିଟି ତୁମେ ଦେଖିଲଣି କି ? ଭଲ ବହିଟିଏ । ନିଜର ଖୋଳପା ଭିତରକୁ ନିଜକୁ ନେଇଯାଅନି । ମୁଁ ଏକଥା ଲେଖୁଚି ; କାରଣ, ମୁଁ ଜାଣେ ଯେ ତୁମେ ଜଣେ ଖୁବ୍ ସମ୍ବେଦନଶୀଳ ଲୋକ ଓ ସେଇଥିପାଇଁ ଖୋଳପା ଭିତରେ ପଶିଯିବା ଲାଗି ଏକ ପ୍ରବଣତା ତୁମ ଭିତରେ ଦେଖାଦେଇପାରେ ! ଉଣାଅଧିକେ ଆମ ସମସ୍ତଙ୍କର ସେପରି ହୋଇଯିବାର ପ୍ରବଣତା ରହିଛି । ମାତ୍ର ତାହା କରିବାଟା ସେତେ ଭଲ ନୁହେଁ ।

ମୋର ସ୍ନେହ, ଶୁଭେଚ୍ଛା ଓ ବନ୍ଧୁତା ତୁମ ପ୍ରତି ରହିଛି—ଆଶା, ଏକଥା ମନେ-ରଖିଥିବ ।

ତୁମର ସଶ୍ରଦ୍ଧ

ଜବାହରଲାଲ ନେହେରୁ

ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲା ସମୟରେ ହିଁ ହୀରାକୁଦ ବନ୍ଧର କାମ ସରିଥିଲା । କିନ୍ତୁ ହୀରାକୁଦ ବନ୍ଧର ଉନ୍ମୋଚନ ବେଳକୁ ସେ ଆଉ ମୁଖ୍ୟମନ୍ତ୍ରୀ ନଥିଲେ । ଉଦ୍‌ଘାଟନ ଉତ୍ସବର ମୁଖ୍ୟ ଅତିଥି ଥିଲେ ଜବାହରଲାଲ ନେହେରୁ । ହୀରାକୁଦ ଉଦ୍‌ଘାଟନ ଉତ୍ସବ ପାଇଁ ପ୍ରବଳ ଜନସମାଗମ । ଖୋଲା ମଇଦାନର ସ୍ୱତନ୍ତ୍ର ସଭାମଣ୍ଡପରେ ନେହେରୁ ଆସନ ଗ୍ରହଣ କରିବା ପୂର୍ବରୁ ସ୍ୱଭାବସୁଲଭ ହସହସ ବଦନରେ, ଯୋଡ଼ହସ୍ତ ହୋଇ, ଉପସ୍ଥିତ ଜନତାକୁ ନମସ୍କାର ଜଣେଇଲେ । ଆସନ ଗ୍ରହଣ ଓ ପୁଷ୍ପଗୁଚ୍ଛ ପ୍ରଦାନ ପରେ ସ୍ୱାଗତ ଅଭିଭାଷଣ ପଠନ ଆରମ୍ଭ ହେଲା । ଅଳ୍ପ କେତେକ ମିନିଟ ପରେ ପ୍ରଧାନମନ୍ତ୍ରୀ ବୋଧହୁଏ ମଞ୍ଚ ନିକଟରୁ ଟିକିଏ ଦୂରରେ ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ଆସନ ପ୍ରତି ଦୃଷ୍ଟି ପକାଇଲେ । କେହି ଜଣେ ପରିଚିତ ବ୍ୟକ୍ତିଙ୍କୁ ଦେଖି ସେହି ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ ପୁନର୍ବାର ଯୋଡ଼ହସ୍ତ ହୋଇ ନମସ୍କାର ଜ୍ଞାପନ କଲେ । ସଭାମଞ୍ଚରେ ସ୍ୱେଚ୍ଛାସେବକ ଭାବରେ ଥିବା ଅଧ୍ୟାପକ ସୂର୍ଯ୍ୟକାନ୍ତ ଦାସ ଲକ୍ଷ୍ୟ କଲେ ଯେ ନେହେରୁ ନବକୃଷ୍ଣ ଚୌଧୁରୀଙ୍କୁ ଏହି ସ୍ୱତନ୍ତ୍ର ନମସ୍କାରଟି ଜଣାଇଲେ । ଏହା ଦେଖି ତାଙ୍କର ବିସ୍ମୟର ସୀମା ରହିଲା ନାହିଁ ଯେ ଭାରତବର୍ଷର ପ୍ରଧାନମନ୍ତ୍ରୀ ନିଜେ ହିଁ ଆଗ ନବବାବୁଙ୍କୁ ପ୍ରଣାମ ଜଣାଉଛନ୍ତି । ଅଳ୍ପ କିଛି ବର୍ଷ ପୂର୍ବେ ବିଘ୍ନରାଜ ପଟେଲଙ୍କ ଦୃଷ୍ଟିରେ ଯିଏ ନେହେରୁଙ୍କ ସାନଭାଇ ଭଳି ମନେହେଉଥିଲେ, ମୁଖ୍ୟମନ୍ତ୍ରିତ୍ୱ ତ୍ୟାଗ କରିବା ପରେ ସିଏ ହୋଇଯାଇଥିଲେ ନେହେରୁଙ୍କ ଦୃଷ୍ଟିରେ ବହୁତ ବଡ଼ ।

ସେହି ସମୟକୁ ବ୍ରହ୍ମଦେଶର ଉ-ନୁ ମଧ୍ୟ ସ୍ୱେଚ୍ଛାରେ କ୍ଷମତା ତ୍ୟାଗ କରିଥାନ୍ତି । ଏହି ଦୁଇ ବିଶିଷ୍ଟ ବ୍ୟକ୍ତିଙ୍କୁ ଲକ୍ଷ୍ୟ କରି ଏକ ବିଖ୍ୟାତ ଇଂରାଜୀ ପତ୍ରିକାରେ Two Wisemen of the East ବୋଲି ଏକ ପ୍ରବନ୍ଧ ବାହାରିଲା । ଜୀବନର ଶେଷ ପର୍ଯ୍ୟନ୍ତ ନେହେରୁଙ୍କ ନବବାବୁଙ୍କ ପ୍ରତି ଗଭୀର ଆସ୍ଥା ଓ ଆନ୍ତରିକତା ଥିଲା । ଓଡ଼ିଶା ସମ୍ପର୍କରେ ଯେତେବେଳେ କିଛି ଅଭିଯୋଗ କାନରେ ପଡ଼ିଛି, ବାସ୍ତବ ଘଟଣା ଜାଣିବା ଲାଗି ସେ ନବବାବୁଙ୍କୁ ହିଁ ପଚାରିଛନ୍ତି ।

ବୀରେନ୍ ମିତ୍ର ଉପମୁଖ୍ୟମନ୍ତ୍ରୀ ଥିଲାବେଳେ ଖଣି ନିଲାମ ନେଇଥିବା ସିରାଜଉଦ୍ଦିନଙ୍କ ରେକର୍ଡ଼୍‌ରୁ ଜଣାଗଲା ଯେ ବୀରେନ୍ ମିତ୍ର ତାଙ୍କଠାରୁ ଏକଲକ୍ଷ ଅଣଚାଶ ହଜାର ଟଙ୍କା ନେଇଥିଲେ । ଏ ସମ୍ପର୍କୀୟ ଅଭିଯୋଗ ନେହେରୁଙ୍କ ସ୍ତରରେ ପହଞ୍ଚିବାରୁ ବୀରେନ୍ ମିତ୍ର ସ୍ୱୀକାର କରିଥିଲେ ଯେ ସେ କଂଗ୍ରେସ ଦଳୀୟ କାର୍ଯ୍ୟ ଲାଗି ଏ ଟଙ୍କା ନେଇଥିଲେ ; ବ୍ୟକ୍ତିଗତ ଲାଞ୍ଚ ନେଇନଥିଲେ । ନେହେରୁ ଏହାର ସତ୍ୟାସତ୍ୟ ଜାଣିବା ଲାଗି ନବବାବୁଙ୍କୁ ଦିଲ୍ଲୀ ଡକାଇଥିଲେ । ଓଡ଼ିଶାର କେତେକ କଂଗ୍ରେସ ନେତା ଯେପରି ଭାବରେ ଖଣିମାଲିକ, କେନ୍ଦୁପତ୍ର ବ୍ୟବସାୟୀ ଓ ଅନ୍ୟ ଶିଳ୍ପପତିମାନଙ୍କଠାରୁ ଅର୍ଥ ଆଦାୟ କରନ୍ତି, ସେ ବିଷୟରେ ଶ୍ରୀ ଚୌଧୁରୀ ଖୋଲାଖୋଲି ଭାବରେ ପଣ୍ଡିତ ନେହେରୁଙ୍କୁ କହିଥିଲେ ବୋଲି ନୀଳମଣି ରାଉତରାୟ ତାଙ୍କ 'ସ୍ମୃତି ଓ ଅନୁଭୂତି' ବହିରେ ଉଲ୍ଲେଖ କରିଛନ୍ତି (ପୃଷ୍ଠା ୩୭୭) ।

ନେହେରୁ ଜଣେ ସମାଜବାଦୀ ଓ ଗଣତନ୍ତ୍ରପ୍ରେମୀ ଲୋକ ବୋଲି ନବବାବୁଙ୍କର ଧାରଣା ଥିଲା । କିନ୍ତୁ ଇନ୍ଦିରା ଗାନ୍ଧୀଙ୍କୁ ନେହେରୁ କଂଗ୍ରେସ ଦଳର ସଭାନେତ୍ରୀ କରିବାଟାକୁ ସେ ପସନ୍ଦ କରିନଥିଲେ । ପୁଣି ଯେତେବେଳେ କେରଳର ଗଣତାନ୍ତ୍ରିକ ଧାରାରେ ନିର୍ବାଚିତ ନମ୍ବୁଦ୍ରିପଦଙ୍କ ସରକାରକୁ ଅଗଣତାନ୍ତ୍ରିକ ଉପାୟରେ ଭାଙ୍ଗିଦିଆଗଲା, ସେହି ସମୟରୁ ନେହେରୁଙ୍କ ଉପରୁ ନବବାବୁଙ୍କର ଆସ୍ଥା ତୁଟିଯାଇଥିଲା ।

**ସର୍ବସେବା ସଂଘର ସଭାପତି :**

ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବା ସଙ୍ଗେସଙ୍ଗେ ନବବାବୁ କଂଗ୍ରେସ ଦଳର ସଭ୍ୟପଦ ପରିତ୍ୟାଗ କରିଥିଲେ । ସେ ଅନୁଗୋଳରେ କିଛିଦିନ ରହି ବଡ଼ଝିଅ ଓ ଜ୍ୱାଇଁଙ୍କ କର୍ମକେନ୍ଦ୍ର ୱେଡରୀ ଯାଇଥିଲେ । ଯିବା ପୂର୍ବରୁ ଗୋପବନ୍ଧୁ ଚୌଧୁରୀଙ୍କଠାରୁ ଏକ ଚିଠି ଆସି ପହଞ୍ଚିଥିଲା । ନବବାବୁ ମୁଖ୍ୟମନ୍ତ୍ରିତ୍ୱ ଛାଡ଼ି ସେମାନଙ୍କ ସାଙ୍ଗକୁ ଫେରିଆସିଥିବାରୁ ସେ ଆନନ୍ଦ ପ୍ରକାଶ କରି ଚିଠିଟି ଲେଖିଥିଲେ । ନବବାବୁ ସେ ଚିଠିଟି ତାଙ୍କ ସୁଟକେଶରେ ରଖନ୍ତି । ଥରେ ବନାରସରୁ ସୀତାପୁର ଯିବା ସମୟରେ, ଷ୍ଟେସନରେ ଗାଡ଼ିକୁ ଅପେକ୍ଷା କରିବା ଅବସରରେ ଢୋଳେଇ ପଡ଼ିଥିବା ଦେଖି କେହି ସେ ସୁଟକେଶଟି ନେଇଯାଇଥିଲା । ତହିଁରେ ଗୋପବାବୁଙ୍କ ସେ ଚିଠି ଛଡ଼ା ଅନ୍ୟ କେତେକ ମୂଲ୍ୟବାନ ଚିଠି ଥିଲା । ସେସବୁ ଚିଠି ହଜିବାରୁ ନବବାବୁ ଯେତେ ଦୁଃଖିତ ନ ଥିଲେ, ତହିଁରୁ ଅଧିକ ଦୁଃଖିତ ହୋଇଥିଲେ ଗୋପବାବୁଙ୍କ ଚିଠିଟି ହରାଇବାରେ ।

ଇଂଲଣ୍ଡର ବିଖ୍ୟାତ ପତ୍ରିକା The New Statesmanରେ ନବବାବୁ ଓ ଉ-ନୁ'ଙ୍କ ଫଟୋ ସହିତ The Two Wisemen of the East ଶୀର୍ଷକ ଏକ ପ୍ରବନ୍ଧ ପଢ଼ି ଭାରତ ପରିଭ୍ରମଣରେ ଆସିଥିବା କେତେକ ବିଶିଷ୍ଟ ବ୍ୟକ୍ତି ନବକୃଷ୍ଣ ଚୌଧୁରୀଙ୍କୁ ସାକ୍ଷାତ କରିବାକୁ

ଅନୁଗୋଳ ଆସିଥିଲେ । ନବବାବୁ ସେ ସମୟରେ ଗଞ୍ଜାମର ମାଳ ଅଞ୍ଚଳ ଆଡ଼େ ଯାଇଥିବାରୁ ସେମାନେ ଦୁଇତିନିଦିନ ଅପେକ୍ଷା କରି ତାଙ୍କୁ ସାକ୍ଷାତ ନକରି ଫେରିଥିଲେ ।

ଅନୁଗୋଳରେ ଏହି ସମୟରେ ନବବାବୁ ରହୁଥିଲା ବେଳେ ଚମ୍ପତିମୁଣ୍ଡାରେ କେତେ ଘଟଣା ଘଟିଲା, ଯେଉଁଥିପାଇଁ ଚିତ୍ତରଞ୍ଜନ ଦାସଙ୍କୁ ଚମ୍ପତିମୁଣ୍ଡା ଛାଡ଼ିବାକୁ ପଡ଼ିଲା । ସେହି ଅବସ୍ଥାରେ ତାଙ୍କର ପ୍ରିୟ ଅନୁଷ୍ଠାନକୁ ଚଳାଇବା ଭଳି ଲୋକ ନଥାନ୍ତି । ଏହା ନବବାବୁ ଓ ମାଳତୀଦେବୀଙ୍କ ଲାଗି ଥିଲା ଏକ ବିରାଟ ଧକ୍କା ।

ଇତିମଧ୍ୟରେ ନବକୃଷ୍ଣ ଚୌଧୁରୀଙ୍କୁ ସର୍ବସେବା ସଂଘର ସଭାପତି ଭାବରେ ମନୋନୟନ କରାଯାଇଥାଏ । ତାଙ୍କୁ ଏ ବାର୍ତ୍ତା ଦେବାକୁ କେତେକ କର୍ମକର୍ତ୍ତା ଅନୁଗୋଳରେ ପହଞ୍ଚିଲା ବେଳକୁ ସେ ଛାତ୍ରାବାସ କାମରେ ବ୍ୟସ୍ତ । ସେ ସେମାନଙ୍କୁ ଦେଖି କହିଲେ, ‘‘ମୁଁ ତ ଏଠି କୁକୁଡ଼ା ପାଳୁଛି, ମୋ’ ଭଳି ଲୋକକୁ କିପରି ସର୍ବସେବା ସଂଘର ସଭାପତି କଲେ ?’’ ଯାହା ହେଉ, ସେ ଉକ୍ତ ଦାୟିତ୍ୱ ଗ୍ରହଣ କରିଥିଲେ ଏବଂ ଲାଗ୍ ଲାଗ୍ ଦୁଇଥର ପାଇଁ ଉକ୍ତ ଅନୁଷ୍ଠାନର ସଭାପତି ହେଲେ । ଏହି ସମୟରେ ସେ ବିନୋବାଙ୍କ ସହିତ କାଶ୍ମୀର ଏବଂ ହିମାଳୟ ଯାତ୍ରା କରିଥିଲେ । ସେ କାଶ୍ମୀର ବୁଲିବା ଭିତରେ ସେଠାକାର ଲୋକଙ୍କ ଦାରିଦ୍ର୍ୟ ଜାଣିବାକୁ ପାଇଲେ ଓ କାଶ୍ମୀର ସମସ୍ୟାର ସମାଧାନ ଲାଗି ଶେଖ୍ ଅବଦୁଲ୍ଲାଙ୍କ ମୁକ୍ତି ଏକାନ୍ତ ଆବଶ୍ୟକ ବୋଲି ତାଙ୍କର ସେଇଠୁ ଏକ ଦୃଢ଼ ଧାରଣା ହୋଇଥିଲା । ଇତିମଧ୍ୟରେ ଭୂ-ଦାନ କାର୍ଯ୍ୟର ଗତି ଶିଥିଳ ହୋଇଯାଇଥାଏ ଏବଂ ବିନୋବାଙ୍କ ସୁଲଭ ଗ୍ରାମଦାନ କଥାରେ ନବବାବୁ ବିରକ୍ତ ହୋଇଥାନ୍ତି । ଗାନ୍ଧିବୋଧର ଅଧିକ ଅଧ୍ୟୟନ ଆବଶ୍ୟକ ମନେକରି ସେ ୧୯୬୦ ମସିହାରେ ସର୍ବସେବା ସଂଘର ଦାୟିତ୍ୱରୁ ଅବ୍ୟାହତି ନେବା ପରେ ତା’ରି ପ୍ରାଙ୍ଗଣକୁ ଲାଗି ଏକ ଗୃହରେ ଆଉଗୋଟିଏ ଅନୁଷ୍ଠାନ ପ୍ରତିଷ୍ଠା କଲେ । ତହିଁରେ ଜୟପ୍ରକାଶ ନାରାୟଣ ଓ ସୁବ୍ରତ ଦାସଗୁପ୍ତ ଡିରେକ୍ଟର ଏବଂ ନବବାବୁ ଚେୟାରମ୍ୟାନ ଥିଲେ । ଉକ୍ତ ପ୍ରତିଷ୍ଠାନ ଗାନ୍ଧିବିଦ୍ୟା ଅଧ୍ୟୟନ ଓ ପ୍ରଚାର ଛଡ଼ା ବିଦେଶରେ ଗାନ୍ଧିନୀତିରେ ଚାଲୁଥିବା ସଂସ୍ଥା ଓ ବ୍ୟକ୍ତିଙ୍କ ସହିତ ସମ୍ପର୍କ ପ୍ରତିଷ୍ଠା କଲେ । ବିଦେଶରୁ ଗାନ୍ଧିବିଚାରର କେତେକ ଲୋକ ବି ବନାରସର ଏହି ପ୍ରତିଷ୍ଠାନକୁ ଆସିଲେ ।

## ତିନୁ ବା କୃଷ୍ଣାର ବିବାହ :

ତିନୁ ବା କୃଷ୍ଣାର ବିବାହ ଲାଗି ନବବାବୁଙ୍କର ଇଚ୍ଛା ଥାଏ, ଦକ୍ଷିଣ ଭାରତର ପିଲାଟିଏ ହେଲେ ଭଲ ହୁଅନ୍ତା । ଯଦି ମୁସଲମାନ ପରିବାରର କେହି ଉପଯୁକ୍ତ ପିଲା ମିଳେ ତ ସେ ଖୁସି । ଆନ୍ଧ୍ରର ଖ୍ୟାତନାମା ନାସ୍ତିକ ଗାନ୍ଧିବାଦୀ ଗୋରା ନବବାବୁଙ୍କର ଘନିଷ୍ଠ ବନ୍ଧୁ । ନବବାବୁ ଓ ମାଳତୀଦେବୀ ତାଙ୍କ ଘରେ ବନ୍ଧୁବାନ୍ଧିବା ଲାଗି ଖୁବ୍ ଆଗ୍ରହ ପ୍ରକାଶ କରୁଥାନ୍ତି । କିନ୍ତୁ ତାଙ୍କ ପୁଅ ନିଜେ କନ୍ୟା ସ୍ଥିର କରିଥିବା କଥା ଜଣାପଡ଼ିବାରୁ ସେକଥା ଆଗେଇଲା ନାହିଁ ।

ବିଭୂତିଭୂଷଣ ମହାନ୍ତି ସେତେବେଳକୁ ଅନୁଗୋଳଠାରେ ଜିଲ୍ଲା ସାମାଜିକ ଶିକ୍ଷା ସଙ୍ଗଠକ ଭାବେ କାର୍ଯ୍ୟ କରୁଥାନ୍ତି । ବାଜି ରାଉତ ଛାତ୍ରାବାସକୁ ଲାଗି ଏକ ଘରେ ସେ ସେତେବେଳେ ରହୁଥିଲେ । ସେହି ରହିବା ସମୟରେ ସେ ଆଶ୍ରମରେ ଚାଲିଥିବା ପ୍ରାର୍ଥନାରେ ଏବଂ ବିଭିନ୍ନ ବିଚିତ୍ରାନୁଷ୍ଠାନରେ ଯୋଗ ଦିଅନ୍ତି । ତା'ରି ଭିତରେ ତିନୁ ସହିତ ତାଙ୍କର ପରିଚୟ ଓ ଆଳାପ । କିଛିକାଳ ପରେ ସେମାନଙ୍କ ବିବାହ କଥା ଉଠିଲା । ମାଳତୀଦେବୀ କିନ୍ତୁ ଏ ପ୍ରସ୍ତାବକୁ ପସନ୍ଦ କରୁନଥାନ୍ତି । ଆପତ୍ତିର ବଡ଼ କାରଣ ହେଲା ବିଭୂତିବାବୁଙ୍କ ସରକାରୀ ଚାକିରି । ନବବାବୁଙ୍କର କିନ୍ତୁ ଭିନ୍ନ ମତ । ସେ ଯେତେବେଳେ ଜାଣିଲେ ଯେ ଝିଅର ଇଚ୍ଛା ଅଛି, ସେ ମାଳତୀଦେବୀଙ୍କୁ ବୁଝାଇଦେଇଥିଲେ ।

ବିବାହ ଖୁବ୍ ସାଦାସିଧା ଢଙ୍ଗରେ ହୋଇଥିଲା । ଏହି ଅନୁଗୋଳ ଆଶ୍ରମରେ ବହୁ ସ୍ୱାଧୀନତା ସଂଗ୍ରାମୀ ଓ ସମାଜସେବୀଙ୍କର ବିବାହ ହୋଇଛି । ଅସବର୍ଣ୍ଣ ବିବାହ ବି ଅନେକ ହୋଇଛି, ଯେଉଁଥିରେ ନବବାବୁ ବା ମାଳତୀଦେବୀ ଗୋଟିଏ ପକ୍ଷର ବାପା ବା ମା' ହୋଇ ବସନ୍ତି । ସେସବୁ ବିବାହ ମଧ୍ୟରେ ଉଲ୍ଲେଖଯୋଗ୍ୟ ହେଉଛି ଅଧ୍ୟାପକ ଏମ୍.ଏ. ୱାହିଦ୍‌ଙ୍କ ବିବାହ । ଅନୁଗୋଳର ମୁସଲମାନ ସମାଜର ବିଶିଷ୍ଟ ବ୍ୟକ୍ତିମାନଙ୍କ ଉପସ୍ଥିତିରେ ଏବଂ ଦୁଇ ମହାବିଦ୍ୟାଳୟର ଅଧ୍ୟାପକମାନଙ୍କ ଗହଣରେ ସେ ବିବାହ ଅନୁଷ୍ଠିତ ହୋଇଥିଲା । ମାଳତୀ ଦେବୀଙ୍କ ଆଶ୍ରମର ଏକ କନ୍ୟା ସହିତ ବିବାହ ହେଉଥିବାରୁ ମାଳତୀଦେବୀ ହେଲେ ମା' । ହୋଚିମିନ୍-ଦାଢ଼ି ସହିତ ପଞ୍ଜାବି ପିନ୍ଧି ବସିଥିବା ନବବାବୁ ଦେଖାଯାଉଥାନ୍ତି ଜଣେ ମୁସଲମାନ ଧର୍ମଗୁରୁ ଭଳି ।

କୃଷ୍ଣା ଓଡ଼ିଶା ଭିତରେ ଓ ବିଭୂତିବାବୁଙ୍କୁ ବିବାହ କରିବାରେ ଗୋଟିଏ ବଡ଼ କଥା ହେଲା ଯେ ସେମାନେ ନବକୃଷ୍ଣ ଚୌଧୁରୀ ଏବଂ ମାଳତୀଦେବୀଙ୍କର ଅନ୍ତିମ କାଳରେ ତାଙ୍କର ସେବା କରିପାରିଲେ ।

## ଓଡ଼ିଶା ରାଜନୀତିରେ ଓଲଟପାଲଟ :

ଯେଉଁମାନେ ନବକୃଷ୍ଣ ଚୌଧୁରୀଙ୍କୁ ହଟାଇ ହରେକୃଷ୍ଣ ମହତାବଙ୍କୁ ଆଣି ଓଡ଼ିଶାର ମୁଖ୍ୟମନ୍ତ୍ରୀ କରାଇଥିଲେ, ସେହି ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର ଓ ନୀଳମଣି ରାଉତରାୟ ଆଦି ୧୯୬୧ ମସିହାରେ ହରେକୃଷ୍ଣ ମହତାବଙ୍କୁ ହଟାଇବାରେ ସମର୍ଥ ହୋଇଥିଲେ ଓ ପ୍ରାର୍ଥୀ ନିର୍ବାଚନ କାଳରେ ସେମାନେ ନବକୃଷ୍ଣ ଚୌଧୁରୀଙ୍କ ପରାମର୍ଶ ନେଇଥିବା ଭଳି ଜଣାଯାଏ । ଯେଉଁଦିନ ସେହି ମନ୍ତ୍ରିମଣ୍ଡଳ ଶପଥ ନେଲେ, ସେଦିନ ନବକୃଷ୍ଣ ଚୌଧୁରୀ ନିମନ୍ତ୍ରିତ ହୋଇ ଆସିଥିଲେ । ନବବାବୁଙ୍କର ପୂର୍ବରୁ ତ ଇଚ୍ଛା ଥାଏ ଯେ ବୁଢ଼ାମାନେ ରାଜନୀତିରୁ ଲୋକନୀତିକୁ ପାଇ ଯୁବକମାନଙ୍କୁ ଦେଶ ଚଳାଇବା ଦାୟିତ୍ୱ ଦିଅନ୍ତୁ । ଏହାଛଡ଼ା

ପାରିବାରିକ ସ୍ତରରେ ବି ନବବାବୁଙ୍କର ବିଜୁ ପଟ୍ଟନାୟକଙ୍କ ସହିତ ସମ୍ପର୍କ ଥିଲା । ବିଜୁ ପଟ୍ଟନାୟକଙ୍କ ମା' ମାଳତୀଦେବୀଙ୍କର ସମ୍ପର୍କୀୟା ଭଉଣୀ । ଏଣୁ ବିଜୁବାବୁ ନବବାବୁଙ୍କୁ ନବଦା' ଏବଂ ମାଳତୀଦେବୀଙ୍କୁ 'ମିନୁଦି' ବୋଲି ଡାକନ୍ତି । ବିଜୁ ପଟ୍ଟନାୟକଙ୍କ ଦ୍ୱାରା ସେ ସମୟରେ ପ୍ରତିଷ୍ଠିତ 'କଳିଙ୍ଗ' ଖବରକାଗଜର ଉପଦେଷ୍ଟା ଭାବରେ ନବବାବୁ କିଛି କାଳ ଥିଲେ ବୋଲି ସେ ସମୟର ଲୋକଙ୍କଠାରୁ ଜଣାଯାଏ ।

ନବବାବୁଙ୍କର ଏହି ଯୁବନେତୃତ୍ୱ ପ୍ରତି ସଦିଚ୍ଛା କିନ୍ତୁ ବେଶିଦିନ ରହିଲା ନାହିଁ । ସେହି ମନ୍ତ୍ରିମଣ୍ଡଳ କେତେକ ଉଲ୍ଲେଖନୀୟ ଓ ଲୋକପ୍ରିୟ କାର୍ଯ୍ୟ କରିଥିଲେହେଁ ସେମାନଙ୍କର କାମ କରିବାର ଢଙ୍ଗ ଏବଂ ତାକୁ ପ୍ରଚାର କରିବାର ଶୈଳୀକୁ ସାଧାରଣ ଲୋକେ ପସନ୍ଦ କରିପାରିଲେ ନାହିଁ । ଅଳ୍ପ କିଛିଦିନ ପରେ ସେହି ସମୟର ମନ୍ତ୍ରିମଣ୍ଡଳ ଲୋକଙ୍କ ଶ୍ରଦ୍ଧା ଓ ସମ୍ମାନ ହରାଇଲା ।

### କଂଗ୍ରେସ ହଟାଓ :

ବିଜୁ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳ ଗଢ଼ାହେବାର ବର୍ଷକ ପରେ କଂଗ୍ରେସ ଭିତରୁ ଓ ବାହାରୁ ତା' ବିରୋଧରେ ସ୍ୱର ଉଠିଥିଲା । କଂଗ୍ରେସ ଦଳରେ କିନ୍ତୁ ବିଜୁ ପଟ୍ଟନାୟକଙ୍କର ଏଭଳି ପ୍ରତିପତ୍ତି ଥାଏ ଯେ ମହତାବଙ୍କ ସମେତ ସୁରେନ୍ଦ୍ର ପଟ୍ଟନାୟକ, ବନମାଳୀ ପଟ୍ଟନାୟକ, ଉପେନ୍ଦ୍ର ମହାନ୍ତି ଓ ମୁରଲୀଧର ଜେନା ଏବଂ ଶାନ୍ତନୁକୁମାର ଦାସ ଆଦି ତାଙ୍କ ବିରୋଧରେ ଖୋଲାଖୋଲି ବାହାରିବା ଅବସ୍ଥାରେ ନଥାନ୍ତି । ସେତେବେଳେ ତତ୍କାଳୀନ ପ୍ରଜା ସୋସାଲିଷ୍ଟ ଦଳ ଓ ଗଣତନ୍ତ୍ର ପରିଷଦ ହିଁ ବିଜୁ ପଟ୍ଟନାୟକଙ୍କ ସରକାରକୁ ତୀବ୍ର ସମାଲୋଚନା କରୁଥାନ୍ତି । ୧ ୯ ୬୩ ଜୁଲାଇ ୧୪ ତାରିଖରେ ବାଲେଶ୍ୱରଠାରେ ଗାନ୍ଧିତତ୍ତ୍ୱ ସମ୍ପର୍କରେ କହିବାକୁ ଯାଇ ନବବାବୁ କହିଥିଲେ, ''ନିର୍ବାଚନ ସମୟରେ ବଡ଼ ବଡ଼ ଖଣିମାଲିକ ଓ ଅନ୍ୟ ବ୍ୟବସାୟୀଙ୍କଠାରୁ ପ୍ରଚୁର ଟଙ୍କା ଆଦାୟ କରାଯାଏ, ଯାହାର ହିସାବ ରଖାଯାଏ ନାହିଁ । ଦଳ ତରଫରୁ ଯେଉଁ ବ୍ୟକ୍ତିମାନେ ଏ ପ୍ରକାର ଅର୍ଥ ସଂଗ୍ରହ କରନ୍ତି, ସେମାନେ ସେଥିରୁ ପ୍ରାର୍ଥୀମାନଙ୍କୁ ଓ ନିଜ ଗୋଷ୍ଠୀର ଲୋକଙ୍କୁ କିଛି ଦିଅନ୍ତି, କିଛି ତାଙ୍କର ନିଜର ଅନୁଷ୍ଠାନ ପାଇଁ ରଖନ୍ତି ଏବଂ ଆଉକିଛି ନିଜେ ଆତ୍ମସାତ୍ କରନ୍ତି । ମୁଁ ଏହାର ରାଜସାକ୍ଷୀ ।'' ଏହା ଥିଲା କଂଗ୍ରେସ ହଟାଓ ଆନ୍ଦୋଳନର ପ୍ରଥମ ଦୁନ୍ଦୁଭି ନାଦ ।

୧ ୯ ୬୩ ମସିହାର ମଧ୍ୟଭାଗରେ ମାନ୍ଦ୍ରାଜର ମୁଖ୍ୟମନ୍ତ୍ରୀ ଥିଲେ କେ. କାମରାଜ । ଉଚ୍ଚଶିକ୍ଷା ନ ଥାଇ ବି ନିଜର ସାଧନା ଓ ସଙ୍ଗଠନ ଶକ୍ତି ବଳରେ ସେ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇପାରିଥିଲେ । ତଥାପି ତାଙ୍କର ବହୁ ସମାଲୋଚକ ଥିଲେ । ୧ ୯ ୬ ୨ ନିର୍ବାଚନରେ କଂଗ୍ରେସ ଦଳର ଲୋକପ୍ରିୟତା କିଛି ପରିମାଣରେ ହ୍ରାସ ପାଇଥାଏ । ଏଣୁ କ୍ଷମତାରେ ଥିବା

କଂଗ୍ରେସ ନେତାମାନେ ଇସ୍ତଫା ଦେଇ ସାଙ୍ଗଠନିକ କାର୍ଯ୍ୟରେ ଲାଗିବା ପାଇଁ ସେ ନେହେରୁଙ୍କୁ ପରାମର୍ଶ ଦେଇଥିଲେ । ଏହାକୁ ''କାମରାଜ ଯୋଜନା'' କୁହାଯାଉଥିଲା । ଏହି ଯୋଜନା ଅନୁସାରେ ମୋରାରଜୀ ଦେଶାଇ, ଏସ୍.କେ. ପାଟିଲ, ଜଗଜ୍ଜୀବନ ରାମ, ବକ୍ସି ଗୋଲାମ ମହମ୍ମଦ, ଅଜୟ ମୁଖାର୍ଜୀ, ବିଜୁ ପଟ୍ଟନାୟକ ଏବଂ କେ. କାମରାଜ ଇସ୍ତଫା ଦେଲେ । କିନ୍ତୁ ନିଜେ ନେହେରୁ ଇସ୍ତଫା ଦେଲେନାହିଁ । ଏଭଳି ଅଧାପନ୍ତରିଆ କାର୍ଯ୍ୟ ଫଳରେ କାମରାଜ ଯୋଜନାର ଲକ୍ଷ୍ୟ ତ ସାଧିତ ହେଲାନାହିଁ, ବରଂ ଦଳ ମଧ୍ୟରେ ଅସନ୍ତୋଷ ଓ କନ୍ଦଳ ଦେଖାଦେଲା । କାମରାଜଙ୍କ ଏହି 'ଯୋଜନା'ର ବହୁ ପୂର୍ବରୁ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଏକ ଆଦର୍ଶ ଦେଖାଇଥିଲେ । କିନ୍ତୁ କ୍ଷମତାପାଗଳ କଂଗ୍ରେସ ନେତାମାନେ ତାଙ୍କ ପଦାଙ୍କ ଅନୁସରଣ କଲେନାହିଁ । ବିଜୁ ପଟ୍ଟନାୟକଙ୍କ ପଦତ୍ୟାଗ ପରେ ବୀରେନ୍ ମିତ୍ର ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ଏହି ପଦତ୍ୟାଗ କିନ୍ତୁ ଲୋକଙ୍କ ମନରେ ତ୍ୟାଗର ଭାବ ସଞ୍ଚାର କଲାନାହିଁ । ମିତ୍ରଙ୍କ ସମୟରେ ଛାତ୍ର ଆନ୍ଦୋଳନ ହୋଇ ରାଜ୍ୟ ସାରା କଂଗ୍ରେସବିରୋଧୀ ହାୱା ବହିଲା । କଂଗ୍ରେସ ଦଳରୁ ମହତାବଙ୍କ ସମେତ ଅସନ୍ତୁଷ୍ଟ ପବିତ୍ରମୋହନ ପ୍ରଧାନ, ବନମାଳୀ ପଟ୍ଟନାୟକ, ସୁରେନ୍ଦ୍ର ପଟ୍ଟନାୟକ, ଉପେନ୍ଦ୍ର ମହାନ୍ତି, ଶାନ୍ତନୁକୁମାର ଦାସ ଆଦି ଏବଂ ପ୍ରଜାସୋସାଲିଷ୍ଟ ପାର୍ଟି ସେହି କଂଗ୍ରେସ ହଟାଓ ଆନ୍ଦୋଳନକୁ ତେଜେଇଲେ । ୧୯୬୬ ମସିହା ବେଳକୁ ଏହା ଚୂଡ଼ାନ୍ତ ସ୍ତରରେ ପହଞ୍ଚିଥାଏ । ନବବାବୁ ସେ ସମୟରେ ଓଡ଼ିଶାର ବିଭିନ୍ନ ଅଞ୍ଚଳ ବୁଲି ଭାଷଣ ଦେଉଥିଲେ । ସେସବୁ ବକ୍ତୃତାରେ କଂଗ୍ରେସର ଦୁର୍ନୀତିର ସେ ରାଜସାକ୍ଷୀ ବୋଲି କହୁଥିଲେ । ମହତାବବାବୁ ଆଦି କଂଗ୍ରେସ ହଟାଓ ଆନ୍ଦୋଳନର ସବୁ ମହାରଥୀ ଓ ରଥୀ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କଲେ । ନବବାବୁଙ୍କୁ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଅନୁରୋଧ କରାଯିବା ବେଳେ ସେ ତାହାକୁ ନାସ୍ତି କରିଦେଇଥିଲେ ।

**ଶାନ୍ତି ଅଭିଯାତ୍ରା :**

୧୯୬୦ ମସିହା ଜୁନ୍ ମାସରେ ଅସମୀୟା ଭାଷାକୁ ନେଇ ଅସମୀୟା ଓ ବଙ୍ଗଳାଭାଷୀଙ୍କ ମଧ୍ୟରେ ଦଙ୍ଗା ଆରମ୍ଭ ହେଲା । ଏହାଛଡ଼ା ଅସମ (ଆସାମ ନୁହେଁ) ଅର୍ଥନୀତି ତଥା ପ୍ରଶାସନରେ ବଙ୍ଗୀୟମାନଙ୍କ ପ୍ରଭାବ ଯୋଗୁ ଅସମୀୟମାନଙ୍କ ମଧ୍ୟରେ ପୂର୍ବରୁ ଅସନ୍ତୋଷ କୁହୁଳୁଥିଲା । ଏହା ଏଭଳି ସ୍ତରକୁ ଗଲା ଯେ ବଙ୍ଗଭାଷୀମାନେ ଅସମରେ ବସବାସ କରିବା ନିରାପଦ ମନେକଲେ ନାହିଁ । ଏହି ଅବସ୍ଥାକୁ ସୁଧାରିବା ଲାଗି ବିଭିନ୍ନ ରାଜ୍ୟରୁ ସର୍ବୋଦୟ ନେତା ଓ ଶାନ୍ତି ସୈନିକ ଅସମ ଆସିଥିଲେ । ସେତେବେଳେ ନବବାବୁ, ରମାଦେବୀ ଓ ମାଳତୀଦେବୀ ଆଦି ଯାଇ ଗୁଆହାଟିର ଶରଣିଆ ଆଶ୍ରମରେ ରହିଲେ । ସେଠାରେ ତିନିଦିନ

ଶାନ୍ତି ସେନା ଶିବିର ଚାଲିଥିଲା । ତାହାପରେ ଶାନ୍ତି ସୈନିକମାନଙ୍କୁ ଭିନ୍ନ ଭିନ୍ନ ଅଞ୍ଚଳକୁ ଶାନ୍ତି ସ୍ଥାପନା କାର୍ଯ୍ୟ ପାଇଁ ପଠାଯାଇଥିଲା । ନବବାବୁ ବିଭିନ୍ନ ଅଞ୍ଚଳକୁ ଯାଇ ବିଭିନ୍ନ ଭାଷାଭାଷୀମାନଙ୍କୁ ଡାକି ଏକାଠି କରି ପ୍ରାର୍ଥନା ସଭା କରାଇଥିଲେ ଏବଂ ସେମାନଙ୍କ ମଧ୍ୟରେ ତିକ୍ତତା ଦୂର କରିବା ଲାଗି ବୁଝାଉଥିଲେ । ପରସ୍ପର ପ୍ରତି ବିଶ୍ୱାସ, ସଦ୍ଭାବନା ଓ ସ୍ନେହ ଆଦର ସୃଷ୍ଟି କରିବା ଦିଗରେ ଉଦ୍ୟମ କରିବା କାମରେ ୧୯୬୧ ଫେବୃଆରୀ ପର୍ଯ୍ୟନ୍ତ ସେ ଅଞ୍ଚଳରେ ରହିଥିଲେ । ଏହାଛଡ଼ା ବିନୋବାଙ୍କ ଭୂ-ଦାନ ଯାତ୍ରା ସମୟରେ ବି ସେ ଓ ରମାଦେବୀ ଏବଂ ମାଳତୀଦେବୀ କିଛିକାଳ ଅସମରେ କଟାଇଥିଲେ । ସେହି ସମୟରେ ସେ ଅସମର ଉତ୍ତର ଲକ୍ଷ୍ମୀପୁରସ୍ଥ ମୈତ୍ରୀ ଆଶ୍ରମରେ କିଛିଦିନ ରହିଥିଲେ । ତାଙ୍କ ସଙ୍ଗରେ ରହୁଥିବା ସେହି ଆଶ୍ରମର ଲକ୍ଷ୍ମୀ ଫୁକନ୍ କହନ୍ତି ଯେ ନବବାବୁ ଗାଁ ଲୋକଙ୍କ ସହିତ ଏଭଳି ମିଶିଯାଉଥିଲେ ଯେ ସେମାନେ ତାଙ୍କୁ ଆପଣାର ବୋଲି ମନେକରୁଥିଲେ । ତାଙ୍କ ସହଜସରଳ ସ୍ୱଭାବ ଓ ସାଦାସିଧା ଚାଲିଚଳନ ଯୋଗୁ, ସେ ଯେ ଏକସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ, ତାହା କେହି କଳ୍ପନା କରିପାରୁନଥିଲେ । ଅସମୀୟ ଲୋକଙ୍କ ସହିତ ସେ ବେଶି ସମୟ ଓଡ଼ିଆରେ କଥାବାର୍ତ୍ତା କରୁଥିଲେ । ଟିକିଏ ବେଳ ମିଳିଲେ ସେ ତାଙ୍କ ବାଇନକ୍ୟୁଲାରରେ ସେଠାକାର ଚଢ଼େଇଙ୍କୁ ଦେଖୁଥିଲେ । ତାଙ୍କର ଶିଶୁସୁଲଭ ହସ ଓ କଥାବାର୍ତ୍ତା ଯୋଗୁ ସାନବଡ଼, ଯୋଗ୍ୟଅଯୋଗ୍ୟ ସମସ୍ତେ ନିଃସଙ୍କୋଚରେ ତାଙ୍କ ପାଖକୁ ଆସୁଥିଲେ ।

ସ୍ୱାଧୀନତା ପୂର୍ବରୁ ନାଗାଲାଣ୍ଡ୍ ସହ ଭାରତବର୍ଷର ସାମାଜିକ ସମ୍ପର୍କ ନଥିଲା । ସେମାନେ କେବଳ ଇଂରେଜମାନଙ୍କର ଆଧିପତ୍ୟକୁ ମାନିନେଇଥିଲେ । ସ୍ୱାଧୀନତା ପରେ ଏହା ଭାରତରୁ ଅଲଗା ହୋଇଯିବା ଲାଗି କେତେକ ବୈଦେଶିକ ଶକ୍ତି ଓ ବ୍ୟକ୍ତି ଉଦ୍ୟମ କରୁଥିଲେ ଏବଂ ନାଗାଲାଣ୍ଡ-ଭାରତ ସରକାରଙ୍କ କର୍ତ୍ତୃତ୍ୱକୁ ଅସ୍ୱୀକାର କରିବା ଲାଗି ସେମାନଙ୍କୁ ପ୍ରବର୍ତ୍ତାଉଥିଲେ । ଲୁଚିଛପି ରହି ସେମାନେ ଭାରତ ସରକାରଙ୍କ କର୍ମଚାରୀ, ପୋଲିସ ଓ ସୈନ୍ୟଙ୍କୁ ଆକ୍ରମଣ କରି ବ୍ୟତିବ୍ୟସ୍ତ କରୁଥିଲେ । ଆଲୋଚନା ମାଧ୍ୟମରେ, ସେଠାରେ ଶାନ୍ତି ସ୍ଥାପନ କରିବା ଉଦ୍ଦେଶ୍ୟରେ ଜୟପ୍ରକାଶ ନାରାୟଣ, ନାଗାଲାଣ୍ଡ୍‌ର ମାଇକେଲ ସ୍କଟ, ଅସମର ମୁଖ୍ୟମନ୍ତ୍ରୀ ବିମଳାପ୍ରସାଦ ଚାଲିହା, ସେଠାକାର ଚର୍ଚ୍ଚର ରେଭରେଣ୍ଡ୍, ନାଗାଲାଣ୍ଡର ମୁଖ୍ୟମନ୍ତ୍ରୀ, କୁମାରୀ ଅମଲାପ୍ରଭା ଦାସ ଓ ସେବାଗ୍ରାମ୍‌ର କୁମାରୀ ମାର୍ଜରୀ ସାଇକସ୍‌ଙ୍କୁ ନେଇ ଏକ ଶାନ୍ତି ମିଶନ ଗଠିତ ହୋଇଥିଲା । ସେତେବେଳେ ନବବାବୁ ଶାନ୍ତି କେନ୍ଦ୍ରର ମୁଖ୍ୟ ଭାବରେ ଦାୟିତ୍ୱ ତୁଲାଉଥିଲେ । ସେଠାରେ ଅସମର ମୈତ୍ରୀ ଆଶ୍ରମରୁ କୁସୁମ ଦେଶପାଣ୍ଡେ ଓ ଲକ୍ଷ୍ମୀ ଫୁକନ୍ ବି ଯୋଗ ଦେଇଥିଲେ ।

ସେତେବେଳେ ନବବାବୁ ନାଗାଲାଣ୍ଡ୍‌ର ଦୂର ଗାଁଗୁଡ଼ିକୁ ଯାଉଥିଲେ, ବିଶେଷକରି ନାଗାନେତା ଫିଜୋଙ୍କ ଗାଁକୁ ଯାଇ ତାଙ୍କ ସହଯୋଗୀମାନଙ୍କୁ ଭେଟି ବୁଝାଉଥିଲେ । ତାଙ୍କର

ସହଜସରଳ ସ୍ୱଭାବ ହେତୁ ନାଗାଲାଣ୍ଡବାସୀ ବେଶ୍ ପ୍ରଭାବିତ ହୋଇଥିଲେ । ସେ ସେଠାରେ ପିଲାଙ୍କ ସହିତ ଖେଳୁଥିଲେ ଏବଂ ସେମାନଙ୍କୁ କାହାଣୀ ଶୁଣାଉଥିଲେ ।

ନାଗା ଭାଇଭଉଣୀମାନଙ୍କ ମଧ୍ୟରୁ ପ୍ରାୟ ୭୫% ଅଲଗା ହୋଇ ଖ୍ରୀଷ୍ଟଧର୍ମ ଗ୍ରହଣ କରୁଥିବା ଦେଖି ନବବାବୁ ଅତ୍ୟନ୍ତ ଦୁଃଖିତ ହୋଇଥିଲେ । ସେଠାକାର ଗିର୍ଜାଘରକୁ ସ୍ଥାନୀୟ ଲୋକେ ଡାକିଲେ, ନବବାବୁ ସେଠାକୁ ଯାଇ ସେମାନଙ୍କ ସହିତ କଥାବାର୍ତ୍ତା କରୁଥିଲେ । ସେସବୁ ସମାବେଶକୁ ଦୂରଦୂରାନ୍ତରରୁ ଲୋକେ ବି ତାଙ୍କୁ ଭେଟିବା ଲାଗି ଆସୁଥିଲେ । ପରିଚୟ ଦେଲାବେଳକୁ ସେମାନଙ୍କୁ ଯେତେବେଳେ କୁହାଗଲା ଯେ କଥାବାର୍ତ୍ତା କରିବାକୁ ଆସିଥିବା ବ୍ୟକ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ, ସେଥିରେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ସେମାନେ ତାଙ୍କୁ ଚାହିଁରହୁଥିଲେ । ନାଗାମାନଙ୍କ ଘରେ ରହି ଖାଇବା ଭିତରେ ସେ ଜାଣିଥିଲେ ଯେ ନାଗାମାନେ ଅନ୍ୟ ମାଂସଠାରୁ କୁକୁରମାଂସ ଖାଇବାକୁ ପସନ୍ଦ କରୁଥିଲେ ।

ସେ ସେଠାରୁ ମଣିପୁରର ଇମ୍ଫାଲକୁ ବି ଯାଇଥିଲେ ଓ ସେଠାର ଲେଫ୍‌ଟନାଣ୍ଟ୍ ଗଭର୍ଣ୍ଣର୍ ବିଲେଶ୍ୱର ପ୍ରସାଦଙ୍କ ଘରେ ରହୁଥିଲେ । ବିଲେଶ୍ୱର ପ୍ରସାଦ ଥିଲେ ତାଙ୍କର ବନ୍ଧୁ । ନବବାବୁଙ୍କ ସରଳ ଜୀବନଯାତ୍ରା ସେଠାରେ ଖାଲି ଅବ୍ୟାହତ ରହିନଥିଲା, ବିଲେଶ୍ୱରବାବୁ ବି ସେହି କେତେଦିନ ନବବାବୁଙ୍କ ଭଳି ସରଳ ଖାଦ୍ୟ ଖାଇଥିଲେ । ମଣିପୁରବାସୀ ନବବାବୁଙ୍କୁ ନିଜ ଘରକୁ ଖାଇବାକୁ ଡାକିଲେ ସେ ଯାଉଥିଲେ ଓ ତଳେ ବସି କଦଳୀପତ୍ରରେ ଖାଉଥିଲେ ।

ନବବାବୁ ପ୍ରାୟ ବର୍ଷେ କାଳ ନାଗାଲାଣ୍ଡରେ ରହିଥିଲେ । ଯେତେବେଳେ କେହି ତାଙ୍କୁ ପଚାରୁଥିଲେ ''ଆପଣ ଏଠାରେ କଅଣ କରୁଛନ୍ତି ?'' ସେ ହସିହସି ଏତିକି କହୁଥିଲେ– ''ଆମେ ଏଠି ଖାଲି ରହିଛୁ ।'' ସେ ରାଜ୍ୟପାଳ, ମନ୍ତ୍ରୀ, ସରକାରୀ ପଦାଧିକାରୀଙ୍କ ସହିତ ଯେଭଳି ସହଜ ଭାବରେ କଥାବାର୍ତ୍ତା କରୁଥିଲେ, ନାଗା ଲୋକଙ୍କ ସହିତ ଠିକ୍ ସେହିଭଳି ସହଜ ସରଳ ଭାବରେ ଭାବବିନିମୟ କରୁଥିଲେ । ଶାନ୍ତି କାର୍ଯ୍ୟ ପାଇଁ ଜୟପ୍ରକାଶ କୋହିମାରେ ଗୋଟିଏ ଘର କିଣିଥିଲେ । ସେହି ଶାନ୍ତିକେନ୍ଦ୍ରକୁ ସେ ବେଳେବେଳେ, ପିସ୍ ମିଶନ୍ କାମରେ ଆସିଲେ, ରହୁଥିଲେ ଏବଂ ନବବାବୁ ମଧ୍ୟ ଆସିଲେ ରହୁଥିଲେ, ମୁଖ୍ୟମନ୍ତ୍ରୀ ଓ ଚିଫ୍ ସେକ୍ରେଟେରୀଙ୍କ ଘରେ ନୈଶଭୋଜି ବେଳେ ଜୟପ୍ରକାଶ ଓ ନବବାବୁ ଯୋଗଦେଇ ଆଲୋଚନାରେ ଅଂଶ ଗ୍ରହଣ କରୁଥିଲେ ।

ଆରମ୍ଭରେ ନାଗାମାନେ ତାଙ୍କ ସହିତ ଟିକିଏ ଆଡ଼ଛାଡ଼ ହୋଇ ରହୁଥିଲେ । କିନ୍ତୁ ନବବାବୁଙ୍କ ଆଦରମିଶା କଥାବାର୍ତ୍ତାରେ ପ୍ରଭାବିତ ହୋଇ ସେମାନେ ଧୀରେଧୀରେ ମନଖୋଲି କଥାବାର୍ତ୍ତା କଲେ ।

ଯାହା ବହୁ ବର୍ଷର ଉଦ୍ୟମ ସତ୍ତ୍ୱେ ସରକାରୀ କଳ ଦ୍ୱାରା ସମ୍ଭବପର ହୋଇନଥିଲା, ଜୟପ୍ରକାଶ ଓ ନବବାବୁ ଆଦିଙ୍କ ଅସାଧାରଣ ବ୍ୟକ୍ତିତ୍ୱ ଓ ନିଷ୍ଠା ଫଳରେ ତାହା ସମ୍ଭବପର

ହୋଇଥିଲା ଓ ନାଗାଲ୍ୟାଣ୍ଡ୍‌ରେ ଶାନ୍ତିଶୃଙ୍ଖଳା ଫେରିଆସିଥିଲା । ତାଙ୍କ ସହିତ କିଛି କାଳ ନାଗାଲ୍ୟାଣ୍ଡ ଓ ଅସମରେ କଟେଇଥିବା କୁସୁମ ଦେଶପାଣ୍ଡେଙ୍କର ସେଠାକାର ସ୍ମୃତି ଶେଷ ପର୍ଯ୍ୟନ୍ତ ଅଭୁଲା ରହିଥିଲା ।

୧୯୬୪ ମସିହାରେ ପୂର୍ବବଙ୍ଗର ହିନ୍ଦୁଙ୍କ ଉପରେ ଅତ୍ୟାଚାର ହେବାରୁ ତାହାର ପ୍ରତିକ୍ରିୟା ସ୍ୱରୂପ ଭାରତବର୍ଷର କେତେକ ସ୍ଥାନରେ, ବିଶେଷ କରି ରାଉରକେଲା ନିକଟରେ, ସଂଖ୍ୟାଲଘୁଙ୍କ ବିରୋଧରେ ଅମାନୁଷିକ ଅତ୍ୟାଚାର ଚାଲିଲା । ରାଉରକେଲା ଓ ଆଖପାଖର ମୁସଲମାନ ପରିବାରର ଚାରିହଜାର ପୁରୁଷଙ୍କୁ ନାରୀ, ବୃଦ୍ଧ ତଥା ପିଲାମାନଙ୍କଠାରୁ ଆଣି ହତ୍ୟା କରାଯାଇଥିଲା । ସେତେବେଳେ ସେମାନଙ୍କୁ 'ଆହା' କହିବାକୁ କେହି ନଥିଲେ । ଏହା ଶୁଣିବା ମାତ୍ରେ ନବବାବୁ ଓ ନବଜୀବନ ମଣ୍ଡଳର କର୍ମୀମାନେ ରାଉରକେଲା ଯାଇ ସେଠାରେ ସଂଖ୍ୟାଲଘୁ ଲୋକଙ୍କ ମନରେ ଆସ୍ଥା ପ୍ରତିଷ୍ଠା ଦିଗରେ ବହୁଦିନ ଧରି କାମ କରିଥିଲେ । କେତେକ କର୍ମୀ ସେସବୁ ଅଞ୍ଚଳରେ ସ୍ଥାୟୀ ଭାବରେ ଆଶ୍ରମ କରି ରହିଲେ ଏବଂ ପିତା-ସ୍ୱାମୀ-ପୁତ୍ରହରା ସ୍ତ୍ରୀଲୋକମାନଙ୍କ ଥଇଥାନ ଲାଗି ନିଜକୁ ସମର୍ପିଦେଲେ ।

## ନାଗରିକ ଅଧିକାର ସଂଗ୍ରାମ :

କଂଗ୍ରେସ ହଟି ଓଡ଼ିଶାରେ ସ୍ୱତନ୍ତ୍ର-ଜନକଂଗ୍ରେସ ଦଳର ମିଳିତ ସରକାର ହେଲା । ସେହି ସରକାର ଅମଳରେ କୋରାପୁଟରେ ନକ୍ସଲ୍‌ପନ୍ଥୀଙ୍କ କାର୍ଯ୍ୟକଳାପ ଜୋର୍‌ସୋର୍ ଚାଲିଥାଏ । ତାକୁ ଦମନ କରିବା ଆଳରେ ନିରୀହ ଆଦିବାସୀମାନଙ୍କ ଉପରେ ଏବଂ ନବଜୀବନ ମଣ୍ଡଳ କର୍ମୀମାନଙ୍କ ଉପରେ ଅତ୍ୟାଚାର କଥା ଶୁଣି ନବକୃଷ୍ଣ ଚୌଧୁରୀ ଓ ମାଳତୀଦେବୀ ଆଦି ସେ ଅଞ୍ଚଳକୁ ଯାଇ ସଭାସମିତି କରି ଏହି କାମର ପ୍ରତିବାଦ କରିଥିଲେ ଏବଂ ସବୁ ଅତ୍ୟାଚାର ଖବର ଦେଶ ବାହାରେ ପ୍ରଚାରିତ ହେବାରୁ ଆନ୍ତର୍ଜାତୀୟ ନାଗରିକ ଅଧିକାର ସଂସ୍ଥାର କର୍ମକର୍ତ୍ତାମାନେ କୋରାପୁଟ ଆସିଥିଲେ । ନବବାବୁଙ୍କ ପ୍ରିୟ ରବୀନ୍ଦ୍ରନାଥ ସାହୁ ସେମାନଙ୍କୁ ନେଇ ଉପଦ୍ରୁତ ଅଞ୍ଚଳ ବୁଲାଇ ଦେଖାଇଥିଲେ । ପରବର୍ତ୍ତୀ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ଅମଳରେ ମଧ୍ୟ ଏହି ଉପଦ୍ରବ ଅବ୍ୟାହତ ରହିଥିଲା ।

ଏହି ସମୟରେ ନବବାବୁ, ରବୀନ୍ଦ୍ରନାଥ ସାହୁ, ପ୍ରଫୁଲ୍ଲ କୁମାର ସେନାପତି ଆଦି ଚମ୍ପତିମୁଣ୍ଡାକୁ ଜୀବନ୍ୟାସ ଦେବାକୁ ଉଦ୍ୟମ କରିଥିଲେ । ତାହା ସହରଠାରୁ ଦୂର ସ୍ଥାନ ହୋଇଥିବାରୁ ନକ୍ସଲପନ୍ଥୀ ନେତାମାନେ ସେଠାକୁ ଯାଉଥିଲେ । ନକ୍ସଲପନ୍ଥୀ ଏବଂ ସେମାନଙ୍କ ସହଗାମୀମାନେ ଇତିମଧ୍ୟରେ ବହୁସଂଖ୍ୟାରେ ବନ୍ଦୀ ହୋଇଥାନ୍ତି ଏବଂ ନାଗଭୂଷଣ ପଟ୍ଟନାୟକଙ୍କୁ ଫାଶୀଦଣ୍ଡ ହୁକୁମ ହୋଇଥାଏ । ନବବାବୁ ଆଦିଙ୍କ ଚେଷ୍ଟା ଫଳରେ ନାଗଭୂଷଣ ଫାଶୀଦଣ୍ଡରୁ ରକ୍ଷା ପାଇଥିଲେ ଏବଂ ଯାବଜ୍ଜୀବନ କାରାଦଣ୍ଡ ଭୋଗ କରୁଥିବା ଶଙ୍ଖଳପଦର ଗ୍ରାମର ଆଦିବାସୀମାନେ ଛାଡ଼ ପାଇଥିଲେ ।

ଏ ସବୁକୁ ଲକ୍ଷ୍ୟ କରି ନବକୃଷ୍ଣ ଚୌଧୁରୀ ଓ ମାଳତୀଦେବୀ ନକ୍ସଲପନ୍ଥୀ ଆନ୍ଦୋଳନକୁ ସହାୟତା କରୁଛନ୍ତି ବୋଲି କଲିକତାର ଅମୃତବଜାର ପତ୍ରିକାରେ ଲେଖା ପ୍ରକାଶ ପାଇଲା । ସର୍ବସେବା ସଂଘର ଲୋକମାନେ ବି ନବବାବୁ ତଥା ମାଳତୀଦେବୀଙ୍କ କାମକୁ ଭଲ ଆଖିରେ ଦେଖିଲେ ନାହିଁ । କିନ୍ତୁ ସେ ସମୟରେ 'ଫ୍ରଣ୍ଟିଅର୍' ନାମକ ପତ୍ରିକାର ସମ୍ପାଦକ ବିଖ୍ୟାତ ସାମ୍ବାଦିକ ସମର ସେନ୍ ଲେଖିଥିଲେ ଯେ ନକ୍ସଲ୍‌ପନ୍ଥୀଙ୍କୁ ଦମନ କରିବା ଲାଗି ନିରୀହ ଆଦିବାସୀମାନଙ୍କ ଉପରେ ଯେଉଁ ଅତ୍ୟାଚାର ଚାଲିଥିଲା, ତା'ର ପ୍ରତିବାଦ କରିବା ଦିଗରେ ନବକୃଷ୍ଣ ଚୌଧୁରୀ ଥିଲେ ଭାରତବର୍ଷରେ ପ୍ରଥମ ବ୍ୟକ୍ତି ।

ସିଦ୍ଧାର୍ଥଶଙ୍କର ରାୟ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଥିଲାବେଳେ ନକ୍ସଲ୍ ଆନ୍ଦୋଳନ ତୀବ୍ରତର ହୋଇଥାଏ । ବଙ୍ଗଳାର ବହୁ ବୁଦ୍ଧିଜୀବୀ ଓ ଉଦୀୟମାନ ଛାତ୍ର ତହିଁରେ ସାମିଲ ହୋଇଥାନ୍ତି । ସିଦ୍ଧାର୍ଥଶଙ୍କରଙ୍କ ସରକାର ସେସବୁ ନକ୍ସଲ୍ ପନ୍ଥୀମାନଙ୍କୁ ଧରି ବିନା ବିଚାରରେ, ରାତିରେ ଗୁଳିକରି, ଖତମ୍ କରିଦେଉଥିଲେ । ସେମାନଙ୍କର ଖୋଜ୍‌ଖବର ନେବା ବି ସମ୍ଭବପର ହେଉନଥାଏ । ପଶ୍ଚିମବଙ୍ଗର ମାର୍କ୍ସବାଦୀ ସାମ୍ୟବାଦୀମାନେ ଏ ସମ୍ପର୍କରେ ସ୍ୱର ଉତ୍ତୋଳନ କରୁନଥାନ୍ତି ଓ ଭୟରେ ସମଗ୍ର ପଶ୍ଚିମ ବଙ୍ଗର ସମ୍ବାଦପତ୍ରଠାରୁ ଆରମ୍ଭ କରି ନେତାମାନେ ବି ନିରବ । ଏହାରି ପ୍ରତିବାଦରେ କଲିକତା ବିଶ୍ୱବିଦ୍ୟାଳୟର ଇନ୍‌ଷ୍ଟିଚ୍ୟୁଟ୍ ହଲ୍‌ରେ ଏକ ସଭାର ଆୟୋଜନ ହୋଇଥାଏ ଓ ସେଠାକୁ ମୁଖ୍ୟବକ୍ତା ଭାବରେ ଆହୂତ ହୋଇଥାନ୍ତି ନବକୃଷ୍ଣ ଚୌଧୁରୀ । ସେହି ସଭାରେ ମୃଣାଳ ସେନ, ବିଷ୍ଣୁ ଦେ, ମଙ୍ଗଳା ଚାଟାର୍ଜୀ, ସ୍ନେହାଂଶୁ ଆଚାର୍ଯ୍ୟ ଆଦି ବିଶିଷ୍ଟ ବୁଦ୍ଧିଜୀବୀ ଯୋଗ ଦେଇଥାନ୍ତି । ସଭାଗୃହ ଭରପୂର ।

ମାନବାଧିକାର ଲଂଘନ ବିରୋଧରେ କହିବାକୁ ଯାଇ ନବବାବୁ କହିଥିଲେ ଯେ ଭାରତବର୍ଷରେ ଗାନ୍ଧିଙ୍କୁ ହତ୍ୟା କରିଥିବା ଦଳଙ୍କୁ କହିବାକୁ ଦିଆଯାଉଥିବା ସ୍ଥଳେ ନକ୍ସଲ୍‌ପନ୍ଥୀଙ୍କୁ କାହିଁକି କହିବାକୁ ଦିଆନଯାଉଛି ? ଯେଉଁ ଅତ୍ୟାଚାରିତ ଓ ଶୋଷିତ ଲୋକଙ୍କ ସ୍ୱାର୍ଥରକ୍ଷା ଦିଗରେ ନକ୍ସଲ୍‌ପନ୍ଥୀମାନେ ଆଗଭର ହୋଇଛନ୍ତି, ସେମାନଙ୍କ ପାଇଁ କଂଗ୍ରେସ ଦଳ କଅଣ କରିଛି ? ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ସତ୍ୟାଗ୍ରହ ସେମାନେ ଭୁଲିଯାଇଛନ୍ତି । ଯେଉଁମାନେ ହିଂସାତ୍ମକ ପଥରେ କିଛି କରୁଛନ୍ତି ସେମାନଙ୍କର ବିଚାର କରାନଯାଇ ରାତିଅଧରେ ଗିରଫ କଲେ, ଅନ୍ଧକାର ମଧ୍ୟରେ ସେମାନଙ୍କୁ ହତ୍ୟା କରିବା ଫଳରେ ସରକାର ଯେ ସମସ୍ୟାର ସମାଧାନ କରିଦେବେ ତାହା ସମ୍ପୂର୍ଣ୍ଣ ପ୍ରମାଦପୂର୍ଣ୍ଣ । ଏକ ଗଣତାନ୍ତ୍ରିକ ଦେଶରେ ଏଭଳି କାର୍ଯ୍ୟ ବର୍ବରୋଚିତ ! ଯେଉଁ ରାଜ୍ୟରେ ବିଶ୍ୱକବିର ଜନ୍ମ ଓ ଭୟଶୂନ୍ୟତାର ଜୟଜୟକାର କରି ଯିଏ ଅମର କବିତା ରଚନା କରିଯାଇଛନ୍ତି, ସେହି ରାଜ୍ୟରେ ଘୋଟିରହିଥିବା ଭୟ ଓ ଆତଙ୍କକୁ ଲୋକେ କିଭଳି ବରଦାସ୍ତ କରିଛନ୍ତି ? ରବୀନ୍ଦ୍ରନାଥଙ୍କ

ଭୟଶୂନ୍ୟତାର ମହାନ୍ ବାଣୀ ତାଙ୍କ ସାରା ଜୀବନକୁ କିଭଳି ପ୍ରଭାବିତ କରିଥିଲା ଓ ତା'ରି ବଳରେ କିଭଳି ବ୍ରିଟିଶ ସରକାରକୁ ସାମ୍ନା କରାଯାଇଥିଲା, ସେସବୁ କଥା ସେ ବର୍ଣ୍ଣନା କରି ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରିଦେଇଥିଲେ । ପରଦିନ କଲିକତାର ସମସ୍ତ ସମ୍ବାଦପତ୍ର ସେହି ବକ୍ତୃତାକୁ ପୂରାପୂରି ପ୍ରକାଶ କରିଥିଲେ । ଓଡ଼ିଶାର ବିଭିନ୍ନ ଧାର୍ମିକ ଗୋଷ୍ଠୀଙ୍କଠାରୁ ଆରମ୍ଭ କରି କବି, ଶିଳ୍ପୀ ଓ ମାର୍କ୍ସପନ୍ଥୀମାନେ ପଶ୍ଚିମବଙ୍ଗରୁ ଗୁରୁ ଖୋଜୁଥିବା ବେଳେ ଓଡ଼ିଶାର ଜଣେ ଲୋକ ପଶ୍ଚିମବଙ୍ଗ ରାଜନୀତିକ ଜୀବନର ଏକ ଅନ୍ଧକାର ଅଧ୍ୟାୟରେ ଏଭଳି ଦିଗ୍‌ଦର୍ଶନ ଦେବା କ'ଣ କମ୍ ଗୌରବର ବିଷୟ ?

**ଶିକ୍ଷକ ନବକୃଷ୍ଣ :**

ନବକୃଷ୍ଣ ଚୌଧୁରୀ ଆଧୁନିକ ମନସ୍ତତ୍ତ୍ୱଭିତ୍ତିକ ଶିକ୍ଷା ପଦ୍ଧତିରେ ଶିକ୍ଷାଲାଭ ନ କରିଥିଲେ ବି ଶିକ୍ଷାର ନୂତନ ଦିଗ, ନୂତନ ପ୍ରୟୋଗ ପ୍ରତି ତାଙ୍କର ଖୁବ୍ ଆଗ୍ରହ ଥିଲା । ତାଙ୍କର ସୌଭାଗ୍ୟ ଯେ ସେ ସେହି ବେଳର ଉତ୍ପୀଡ଼କ ଶିକ୍ଷା-ଦୌରାତ୍ମ୍ୟରୁ ରକ୍ଷା ପାଇଥିଲେ । ପିଲାଦିନେ ଘରୋଇ ଶିକ୍ଷକ ଯଦୁମଣି ମହାନ୍ତିଙ୍କ କାନ୍ଧରେ ତ ବେଳେବେଳେ ବସିଯାଉଥିଲେ, ଆଉ ତାଙ୍କର ବାପା ଓ ବଡ଼ଭାଇ ତାଙ୍କୁ ପିଲାଦିନରୁ ଏତେ ଶ୍ରଦ୍ଧା କରୁଥିଲେ ଯେ ମୁରବିଙ୍କଠାରୁ ଭୟର ପ୍ରଶ୍ନ ନଥିଲା ।

ତାଙ୍କର ପ୍ରଥମ ଶିକ୍ଷକତା ଅଳକାଶ୍ରମରେ । ସେ ଶିକ୍ଷାୟତନ ଥିଲା ସାଧାରଣ ବିଦ୍ୟାଳୟଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଆଶ୍ରମ ଘରେ ତ ପଢ଼ା ହେଉଥିଲା, ତା'ଛଡ଼ା ଅଳକା କୂଳରେ ପାଞ୍ଚ ସାତଜଣ ବିଦ୍ୟାର୍ଥୀ ବସିଗଲେ ବି ପାଠପଢ଼ା ଚାଲିଥିଲା । ସେଠାରେ ଯେଉଁମାନେ କିଛିକାଳ ପଢ଼ିଥିଲେ, ସେମାନେ ପରବର୍ତ୍ତୀ ଜୀବନରେ ପ୍ରତିଷ୍ଠା ଲାଭ କରିଛନ୍ତି । ଏହାପରେ ୧୯୭୪ ମସିହା ବେଳକୁ ପୁଣି ସ୍ୱପ୍ନର 'ଜୀବନ ବିଦ୍ୟାଳୟ'କୁ ଜୀବନ୍ୟାସ ଦେବା ପାଇଁ ଚମ୍ପତିମୁଣ୍ଡାରେ ସେ ନିଜେ କିଛି କାଳ ଅଧ୍ୟାପନା କରିଥିଲେ । ସେହି ସମୟରେ ସେଠାରେ ଅଧ୍ୟାପନା କରୁଥିବା ପ୍ରଫୁଲ୍ଲ ସେନାପତି ନବବାବୁଙ୍କ ପାଠପଢ଼ାର ଚମତ୍କାରିତା କଥା ବର୍ଣ୍ଣନା କରିଛନ୍ତି । ଠିକ୍ ପର ବଖରାରେ ନବବାବୁ ଇଂରାଜୀ ପଢ଼ାଉଥିଲା ବେଳେ ପ୍ରଫୁଲ୍ଲବାବୁ ନିଜେ ପଢ଼ାଇବା ବନ୍ଦ କରି ପିଲାଙ୍କୁ ପଢ଼ା ଦେଇ ସେହି ପାଠପଢ଼ାକୁ କାନାନ୍ତି । ଅବଶ୍ୟ କିଛିକାଳ ପରେ ପାଠ ପଢ଼ାଇବା ଲାଗି ସ୍ଥାୟୀ ଶିକ୍ଷକ ନିଯୁକ୍ତ ହୋଇଗଲେ । ସେ ଆଉ ଶ୍ରେଣୀରେ ପାଠ ପଢ଼ାନ୍ତି ନାହିଁ । ପଢ଼ା ଚାଲେ ଶ୍ରେଣୀ ବାହାରେ । ଜୟପ୍ରକାଶ ନାରାୟଣ ସମ୍ପୂର୍ଣ୍ଣ ବିପ୍ଳବ ଚଳାଇଥିବା ସମୟରେ ନବବାବୁ ଶିକ୍ଷକତା କରୁଛନ୍ତି ଶୁଣି ହସିଥିଲେ । କିନ୍ତୁ ନବବାବୁଙ୍କ ପାଇଁ ଶିକ୍ଷକତା ଥିଲା ଅଧିକ ଗୁରୁତ୍ୱପୂର୍ଣ୍ଣ । ସିଧାସଳଖ ଶ୍ରେଣୀରେ ପାଠପଢ଼ାରେ ଅତି ଅଳ୍ପ ସମୟ କଟାଇଥିଲେ ହେଁ ଶିକ୍ଷା ପ୍ରତି ନବବାବୁଙ୍କର ଏତେ ଆଗ୍ରହ ଓ ଶ୍ରଦ୍ଧା ଥିଲା

ଯେ ସେ ତାକୁ ଆଗ୍ରହର ସହ ସମ୍ପାଦନ କରିଥିଲେ । ନିଜେ ମୁଖ୍ୟମନ୍ତ୍ରୀ ହୋଇଥିଲା ବେଳେ ସେ ମୌଳିକ ଶିକ୍ଷାର ପ୍ରସାର ଲାଗି ଉଦ୍ୟମ କରିଥିଲେ ଓ ମୌଳିକ ଶିକ୍ଷାପଦ୍ଧତିରେ ତାଲିମପ୍ରାପ୍ତ ଶିକ୍ଷକଙ୍କ ଅଭାବ ଦୂର କରିବା ଲାଗି ଅନୁଗୋଳରେ ମୌଳିକ ଶିକ୍ଷା ପ୍ରଶିକ୍ଷଣ ମହାବିଦ୍ୟାଳୟ ଖୋଲାଇଥିଲେ । ଏହା ଥିଲା ଭାରତବର୍ଷରେ ଏ ଶ୍ରେଣୀର ପ୍ରଥମ ପ୍ରଶିକ୍ଷଣ ମହାବିଦ୍ୟାଳୟ ।

ମୌଳିକ ଶିକ୍ଷା, ସରକାରୀ ପ୍ରୋତ୍ସାହନ ସତ୍ତ୍ୱେ ଆଗେଇପାରି ନଥିଲା । ଏକ ଦିଗରେ ସାଧାରଣ ଅଭିଭାବକ ମୌଳିକ ଶିକ୍ଷାର ବିଶେଷତ୍ୱ ବୁଝିପାରିଲେ ନାହିଁ, ଅନ୍ୟ ଦିଗରେ ମାକଲେ'ଙ୍କ ପ୍ରବର୍ତ୍ତିତ ଶିକ୍ଷାରେ ତାଲିମପ୍ରାପ୍ତ ଉଚ୍ଚ ଅଫିସରମାନେ ଏହାକୁ ଏକ ଚାଲେଞ୍ଜ୍ ଭଳି ଭାବିଲେ । କାରଣ, ମୌଳିକ ଶିକ୍ଷାରେ ସେହି ଶିକ୍ଷିତ ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ପିଲାମାନଙ୍କୁ ଅତି ସାଧାରଣ ଶାରୀରିକ ପରିଶ୍ରମ କରିବାଠାରୁ ଆରମ୍ଭ କରି ପାଇଖାନା ସଫା କରିବା ପର୍ଯ୍ୟନ୍ତ କାମ କରିବାକୁ ପଡ଼ିଥାନ୍ତା । ସେସବୁ କାମ ସଫାସୁତୁରା ବାବୁମାନଙ୍କ ପିଲାମାନଙ୍କ ଲାଗି କଷ୍ଟକର ତ ହୋଇଥାନ୍ତା, ତା'ଛଡ଼ା, ସାର୍ବିକ ପ୍ରତିଯୋଗିତାରେ ଗାଉଁଲି ବା ଶ୍ରମିକର ପିଲାମାନେ ଆଗରେ ରହିଥାନ୍ତେ । ଏହାଛଡ଼ା ସେ ସମୟରେ ପାଠପଢୁଆ ପିଲାଙ୍କ ସଂଖ୍ୟା କମ୍ ଥିଲା । ଏଣୁ ଯେତିକି ପିଲା ବିଦ୍ୟାଳୟ ଓ ମହାବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେଉଥିଲେ, ସେମାନେ ଚାକିରି ପାଇଯାଉଥିଲେ । ଆଉକିଛି ନ ହେଲେ ବି ଜୀବିକାନିର୍ବାହ ପାଇଁ ସେଭଳି ପାଠପଢ଼ାରେ ସମସ୍ୟା ନଥିଲା । ଏହି କାରଣରୁ ଅଭିଭାବକମାନେ ମଧ୍ଧ ମୌଳିକ ବିଦ୍ୟାଳୟକୁ ନିଜର ପୁଅଝିଅଙ୍କୁ ପଠାଉନଥିଲେ । ମୌଳିକ ବିଦ୍ୟାଳୟମାନଙ୍କରେ ମାଧମିକ ଶିକ୍ଷାଲାଭ ପରେ ପରବର୍ତ୍ତୀ ସ୍ତରର ପାଠପଢ଼ା ପାଇଁ ସେହି ଧରଣର ମହାବିଦ୍ୟାଳୟ ନଥିଲା । ଏସବୁ ସତ୍ତ୍ୱେ ନବକୃଷ୍ଣ ଚୌଧୁରୀ ଅନୁଗୋଳ ନିକଟସ୍ଥ ଚମ୍ପତିମୁଣ୍ଡାଠାରେ ଏକ ଉତ୍ତର ମୌଳିକ ବିଦ୍ୟାଳୟ ଆରମ୍ଭ କରିଥିଲେ ଏବଂ ସେଠାରେ ନିଜ ସାନଝିଅକୁ ପଢ଼ାଇଥିଲେ । ସେ ମୌଳିକ ଶିକ୍ଷାକୁ କେତେ ଗୁରୁତ୍ୱ ଦେଉଥିଲେ, ତାହା କରୁଣାକର ପରିଡ଼ାଙ୍କୁ ଲେଖିଥିବା ଚିଠିରୁ ସ୍ପଷ୍ଟ ରୂପେ ଜାଣିହୁଏ । ୧୯୪୮ ଜୁନ୍ ୨ ତାରିଖରେ ନବବାବୁ ତାଙ୍କୁ ଲେଖିଥିଲେ, ''ମୌଳିକ ଶିକ୍ଷାକୁ ତମ ଜୀବନର ବ୍ରତ ଭାବରେ ଗ୍ରହଣ କରିପାରିଲେ ଖୁବ୍ ବଡ଼ କାମ ତମେ କରିପାରିବ । ଭାରତର ଭବିଷ୍ୟତ ଏହି ଶିକ୍ଷାପଦ୍ଧତି ଉପରେ ନିର୍ଭର କରୁଛି । ବଡ଼ବଡ଼ ବୈଜ୍ଞାନିକ ବା ଇଞ୍ଜିନିୟର ଦେଶରେ ଅଛନ୍ତି ଓ ହେବେ । କିନ୍ତୁ ମଣିଷ ଗଢ଼ିବା ବିଜ୍ଞାନ ଭାରତରେ ସବୁଠାରୁ ବେଶୀ ଲୋଡ଼ା—ଦୁନିଆରେ ମଧ୍ୟ ଲୋଡ଼ା... ।'' ନିଜେ ଭୂଦାନ ଓ ଶାନ୍ତିସେନା କାର୍ଯ୍ୟରେ ବହୁ ସମୟ ଦେଉଥିବାରୁ ଏବଂ ମଝିମଝିରେ 'କଂଗ୍ରେସ ହଟାଓ ଆନ୍ଦୋଳନ'ରେ ଜଡ଼ିତ ହୋଇପଡୁଥିବାରୁ ସେ ଚମ୍ପତିମୁଣ୍ଡା ବିଦ୍ୟାଳୟକୁ ଚଳାଇବା ଦିଗରେ ଅସମର୍ଥ ହୋଇଥିଲେ । ଏହାଛଡ଼ା ନକ୍ସଲ୍

ଆନ୍ଦୋଳନ ଚାଲିଥିବା ଅଞ୍ଚଳରେ ହେଉଥିବା ଦମନ ବିରୋଧରେ ବି ସେ ଅନେକ ସମୟ ଦେଉଥିଲେ, ଯାହା ଚମ୍ପତିମୁଣ୍ଡାର ଅଭିନବ ଶିକ୍ଷାପ୍ରୟୋଗ ଦିଗରେ ଅନ୍ତରାୟ ହୋଇଥିଲା । ଏହାସତ୍ତ୍ୱେ ୧୯୭୪ ମସିହାରେ ମାଳତୀଦେବୀଙ୍କ ସହ ସେ ନିଜେ ଚମ୍ପତିମୁଣ୍ଡାରେ ରହି ପୁଣି ତାକୁ ଏକ ଅଭିନବ ଶିକ୍ଷାନୁଷ୍ଠାନରେ ପରିଣତ କରିବାକୁ ଚେଷ୍ଟା କରିଥିଲେ ଓ ସେଠାକୁ ରବୀନ୍ଦ୍ରନାଥ ସାହୁ ଆଦି ବହୁ ବିପ୍ଳବୀ ଶିକ୍ଷକଙ୍କୁ ଟାଣିନେଇଥିଲେ ।

ମୌଳିକ ଶିକ୍ଷା ଖାଲି ଜୀବନ ଉପଯୋଗୀ ଶିକ୍ଷା ନଥିଲା, ତା' ପଛରେ ଥିଲା, ଏକ ବୈପ୍ଳବିକ ଚିନ୍ତାଧାରା, ଯାହା ସେତେବେଳର ଶିକ୍ଷିତ ଲୋକ ବି ଉପଲବ୍ଧି କରିପାରୁ ନଥିଲେ । ସେମାନେ ଭାବୁଥିଲେ, ମୌଳିକ ଶିକ୍ଷାରେ ପିଲାମାନେ ସୂତା କାଟିବେ, ଲୁଗା ବୁଣିବେ, ଚାଷକାମ ଶିଖିବେ ଓ ପାଇଖାନା ସଫା କରିବେ ଇତ୍ୟାଦି । ଏଭଳି ଶିକ୍ଷାପ୍ରାପ୍ତ ପିଲାମାନେ ଡାକ୍ତର, ଇଞ୍ଜିନିୟର ଓ ଡିପୋଟି ମାଜିଷ୍ଟ୍ରେଟ୍ ତ ହୋଇପାରିବେ ନାହିଁ, ପଶୁଡାକ୍ତର ବା କୃଷି ବିଭାଗର ଅଫିସର୍ ବି ହୋଇପାରିବେ ନାହିଁ । ଏବେ ଛତୁ ଫୁଟିଲା ଭଳି ମହାବିଦ୍ୟାଳୟମାନ ଖୋଲାଯାଇ ଯେଉଁ ଶିକ୍ଷା ଦିଆଯାଉଛି, ସେଥିରୁ ବାହାରୁଥିବା ଶତକଡ଼ା ୯୫ ଭାଗ ଛାତ୍ରଛାତ୍ରୀ ପୂର୍ବୋକ୍ତ ଚାକିରି ପାଇବା ତ ଅଚିନ୍ତନୀୟ, ମାସକୁ ୫୦୦ ଟଙ୍କା ରୋଜଗାର କରିବାକୁ ବି ଅକ୍ଷମ । ଅଥଚ ଭଲ ବଢ଼େଇ ଓ ରାଜମିସ୍ତ୍ରି, ଇଲେକ୍‌ଟ୍ରିକ୍ ମିସ୍ତ୍ରି, ପାଣିପାଇପ୍ ମିସ୍ତ୍ରି ଓ ଗାଡ଼ି ଡ୍ରାଇଭର ସେମାନଙ୍କଠାରୁ ଢେର୍ ଅଧିକ ରୋଜଗାର କରୁଛନ୍ତି ।

ମୌଳିକ ଶିକ୍ଷାରୁ ଏହି ଜୀବନ-ଉପଯୋଗୀ ତାଲିମ ତ ମିଳନ୍ତା, ତା'ଛଡ଼ା ପରବର୍ତ୍ତୀ କାଳରେ ଡାକ୍ତର, ଇଞ୍ଜିନିୟର, ପ୍ରଶାସକ ଓ ବ୍ୟାଙ୍କ କର୍ମଚାରୀ ତଥା ପ୍ରବୀଣ ବୈଜ୍ଞାନିକ ହେବା ଦିଗରେ ସମର୍ଥ ହେବା ସଙ୍ଗେସଙ୍ଗେ ସେମାନେ ସମାଜର ଅତି ତଳସ୍ତରରେ ରହିଯାଉଥିବା ଲୋକଙ୍କ କାମରେ ତାଲିମ୍ ପାଆନ୍ତେ । ଏମାନଙ୍କର ଶ୍ରମ ପ୍ରତି ଅଶ୍ରଦ୍ଧା ଓ ଅବଜ୍ଞା ଦୂର ହୁଅନ୍ତା ଏବଂ ସମାଜର ଏହି ନୂତନ ବର୍ଗର ଲୋକମାନେ ସାଧାରଣ ଲୋକର ଆୟଠାରୁ ୧୦୦ ଗୁଣ ଦରମା ଆଦି ଦାବି କରନ୍ତେ ନାହିଁ । ପ୍ରାଥମିକ ବା ମାଧମିକ ଶିକ୍ଷା ପାଇଁ ଗାଁ ବା (ସହରରେ) ପଡ଼ାରେ ଥିବା ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷା ପାଇଲା ପରେ ବିଶେଷ ଜ୍ଞାନ ଲାଗି ଯିଏ ଯୁଆଡ଼େ ଯିବାର କଥା, ଯାଆନ୍ତେ । ଏହା ନ ହୋଇ ପ୍ରଚଳିତ ଶିକ୍ଷା ଆଜି ଅମଣିଷ, ଅଶିକ୍ଷିତ ଓ ସବୁ କାମ ପାଇଁ ଅଯୋଗ୍ୟ ଯୁବକଯୁବତୀ ସୃଷ୍ଟି କରୁଥିବା ଅନୁଭବ କରି କିଛି ବିଜ୍ଞ ବ୍ୟକ୍ତି ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ ପାଇଁ ଉଦ୍ୟମ କରୁଛନ୍ତି । କିନ୍ତୁ ଶ୍ରମ କରିବାର ତାଲିମ୍ ନ ନେଇ ଶାରୀରିକ ପରିଶ୍ରମ ନକରି ଛାଇତଳେ ଦଶବର୍ଷ କଟାଇ ଆସିଥିବା କିଶୋରକିଶୋରୀମାନେ ପନ୍ଦରସତର ବର୍ଷରେ ଧନ୍ଦାମୂଳକ ଶିକ୍ଷା ପାଇଁ ଗଲାବେଳକୁ ସେମାନେ ସେଥିକୁ ଅଯୋଗ୍ୟ ବିବେଚିତ ହେଉଛନ୍ତି–କେଉଁ କୁଳର ହେଉନାହାନ୍ତି ।

ନବକୃଷ୍ଣ ଚୌଧୁରୀ ଗାନ୍ଧିଜୀଙ୍କ ଶିକ୍ଷାବିଚାର ଛଡ଼ା ରବୀନ୍ଦ୍ରନାଥ ଓ ଅରବିନ୍ଦଙ୍କ ଶିକ୍ଷାଦର୍ଶନ ସମ୍ପର୍କରେ ଅବହିତ ଥିଲେ । ଏହାଛଡ଼ା ପରବର୍ତ୍ତୀ କାଳରେ ଶିକ୍ଷା କ୍ଷେତ୍ରରେ ଯେଉଁସବୁ ବୈପ୍ଳବିକ ଚିନ୍ତାଧାରା ପ୍ରକାଶିତ ହୋଇଥିଲା, ସେସବୁ ପଢ଼ି ସେ ଅତ୍ୟନ୍ତ ଉତ୍ସାହିତ ହୋଇଥିଲେ । ନବବାବୁଙ୍କ ଅନୁରୋଧରେ ଚମ୍ପତିମୁଣ୍ଡାରେ କିଛି କାଳ ଅଧ୍ୟାପନା କରିଥିବା ଏମ୍.ଏ. ୱାହିଦ୍ ନବବାବୁଙ୍କ ଶିକ୍ଷାଦିଗନ୍ତ ଦେଖି ଅଭିଭୂତ ହୋଇଯାଇଥିଲେ । ନବବାବୁ ତାଙ୍କୁ Pedogogy of the Oppressed ଓ Cultural Revolution in China ନାମକ ଦୁଇଟି ବହି ଛଡ଼ା ଅନ୍ୟ ଦୁଇଟି ବହି ପଢ଼ିବାକୁ ଦେଇଥିଲେ । ସେସବୁ ପଢ଼ି ୱାହିଦ୍‌ଙ୍କର ଶିକ୍ଷା ସମ୍ପର୍କୀୟ ଧାରଣା ପୂରାପୂରି ବଦଳିଗଲା । ୱାହିଦ୍‌ଙ୍କ ମତରେ ନବକୃଷ୍ଣ ଚୌଧୁରୀ ଥିଲେ ସେହି ସମୟରେ ଏସିଆ ମହାଦେଶର ପ୍ରଥମ ତିନିଜଣ ଶିକ୍ଷାବିଦ୍‌ଙ୍କ ମଧ୍ୟରୁ ଜଣେ । ସାରା ବିଶ୍ୱରେ ଚିନ୍ତାଶୀଳ ତଥା ଗବେଷଣାମୂଳକ ନୂତନତମ ପୁସ୍ତକ ତାଙ୍କ ଦୃଷ୍ଟି ଏଡ଼ାଇଯାଉନଥିଲା ଓ ସେସବୁ ତାଙ୍କ ଲାଇବ୍ରେରିରେ ସ୍ଥାନ ପାଉଥିଲା । ନବବାବୁ ତାଙ୍କୁ Learning To Be ବହିଟି ପଢ଼ିବାକୁ ପରାମର୍ଶ ଦେଇଥିଲେ, ଯାହା ୱାହିଦ୍‌ଙ୍କ ଶିକ୍ଷକଜୀବନରେ ଖୁବ୍ କାମରେ ଲାଗିଥିଲା ।

ନବକୃଷ୍ଣ ଚୌଧୁରୀଙ୍କ ପାଇଁ ବିଦ୍ୟାଳୟ ଥିଲା ସମଗ୍ର ପୃଥିବୀ ଓ ଶିକ୍ଷା ଥିଲା ସମଗ୍ର ପୃଥିବୀ ଓ ଶିକ୍ଷା ଥିଲା ଜୀବନବ୍ୟାପୀ । ଏଣୁ ତାଙ୍କର ଅଳକାଶ୍ରମରେ କିଛିକାଳ ଶିକ୍ଷକତା ଓ ମୌଳିକ ଶିକ୍ଷା ସଙ୍ଗଠକ ଭାବରେ ନଅମାସ ଅଥବା ଚମ୍ପତିମୁଣ୍ଡାରେ କିଛି କାଳ ଅଧ୍ୟାପନାରୁ ତାଙ୍କ ଶିକ୍ଷାଦିଗନ୍ତ ମୋଟେ କଳିହେବ ନାହିଁ ।

ସ୍ୱାଧୀନତା ଆନ୍ଦୋଳନ କାଳରେ, ବିଶେଷକରି ବନ୍ଦୀ ଜୀବନ କାଳରେ, ଖାଲି ଗାନ୍ଧିତତ୍ତ୍ୱ ଓ ମାର୍କ୍ସତତ୍ତ୍ୱ ନୁହେଁ, ସାଧାରଣ ଚାଷୀର ସମସ୍ୟା, ଭୂ-ସଂସ୍କାର ତଥା କୃଷିସଂସ୍କାର ଆଦି ବିଭିନ୍ନ ବିଷୟ ବୁଝାଇବାରେ ସେ ଥିଲେ ପ୍ରବୀଣ ତାଲିମ୍‌ଦାତା । ତାଙ୍କ ବକ୍ତବ୍ୟ କିଛି ପରିମାଣରେ ସକ୍ରେଟିସ୍‌ଙ୍କ ଶିକ୍ଷା ଭଳି ଥିଲା । ଗୋଟିଏ ବିଷୟ ସପକ୍ଷରେ ଯୁକ୍ତି କରୁଥିବା ବେଳେ ତାହାର ବିପରୀତ ଯୁକ୍ତି ଦେଖାଇ ତାହାକୁ ଖଣ୍ଡନ କରିବା ଲାଗି ସେ ତରୁଣମାନଙ୍କୁ ଆହ୍ୱାନ କରୁଥିଲେ । ବିଭିନ୍ନ କାରାଗାରରେ ଥିଲାବେଳେ ସେ ବହୁ ଯୁବକଙ୍କୁ ରାଜନୀତି ଓ ଅର୍ଥନୀତି ସମ୍ପର୍କରେ ତାତ୍ତ୍ୱିକ ତାଲିମ୍ ଦେବାପାଇଁ ଅବସର ପାଇଥିଲେ ।

ବିଦ୍ୟାର୍ଥୀ ପ୍ରତି ସମ୍ବେଦନଶୀଳତା, ସହାନୁଭୂତି ଓ ତା'ର ମନସ୍ତତ୍ତ୍ୱ ବୁଝିବା ଏବଂ ତା' ସାଙ୍ଗରେ ସବୁ କାମରେ ମିଶିଯିବା ଭଳି ଅପରିହାର୍ଯ୍ୟ ଗୁଣ ତ ତାଙ୍କର ଥିଲା, ଆଉ ବିଶେଷ ଭାବରେ ଜଣାଥିଲା ଭୟଶୂନ୍ୟତା ସୃଷ୍ଟି କରିବାର କଳା । ସବୁ କ୍ଷେତ୍ରରେ ସେ ଥିଲେ ମିତ୍ରର ଭୂମିକାରେ । ଏଣୁ ରାଜନୀତିକ କର୍ମୀଙ୍କ ସମେତ ବିଦ୍ୟାର୍ଥୀମାନେ ତାଙ୍କ ଆଡ଼କୁ ଆକର୍ଷିତ

ହୋଇଯାଉଥିଲେ । ସମାଜସଂସ୍କାର ବିଷୟ ହେଉ ବା ରାଜନୈତିକ କଥା ହେଉ, ସେ ବିଷୟରେ ଆଲୋଚନା କାଳରେ ଯେଉଁମାନେ ଏହାଦ୍ୱାରା କ୍ଷତିଗ୍ରସ୍ତ ହେବେ, ସେମାନଙ୍କ ପ୍ରତି ନିଜର ଘୃଣା ଓ କ୍ରୋଧ ପ୍ରକାଶ ନକରି ସେମାନେ ପରିବର୍ତ୍ତନ ଦ୍ୱାରା ବାସ୍ତବିକ କିପରି ସୁଖୀ ହେବେ, ସେହି ଢଙ୍ଗରେ କଥାଟି କହୁଥିଲେ । ସେହି ପରିବର୍ତ୍ତନ ଦ୍ୱାରା ଭୋଗରେ ବାଧା ପଡ଼ିପାରେ, କିନ୍ତୁ ମାନସିକ ସୁଖ, ଶାନ୍ତି ଓ ଆନନ୍ଦ ମିଳିବ ବୋଲି ସେ ବୁଝାଉଥିଲେ । ଅର୍ଥାତ୍ ହୃଦୟର ପରିବର୍ତ୍ତନ ଥିଲା ତାଙ୍କର ମାର୍ଗ । ଭୂ-ସଂସ୍କାର ଓ ଭୂଦାନ ସମ୍ପର୍କରେ ଭାଷଣ ଦେଲାବେଳେ ସେ ଏହି ଢଙ୍ଗରେ କହୁଥିବା କଥା ବିଧାନସଭା ବିବରଣୀରୁ ଜଣାଯାଏ । ତାଙ୍କ ମତରେ ସାଧାରଣ ବି.ଏ., ଏମ୍.ଏ. ପଢ଼ିବା ପାଇଁ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟକୁ ଯିବା ଦରକାର ନାହିଁ । ସେ ନିଜେ ଓ ବିଶେଷକରି ତାଙ୍କର ପୁତୁରା ମନମୋହନ ଚୌଧୁରୀ ଘରୋଇ ଭାବରେ ପଢ଼ି ବିଦ୍ୱାନ୍ ହୋଇପାରିଥିବା ତାହାର ପ୍ରମାଣ । ଯଦିଓ ବୈଜ୍ଞାନିକ ଗବେଷଣା ପ୍ରତି ସେ ଗୁରୁତ୍ୱ ଦେଉଥିଲେ, ସେହି ଜ୍ଞାନ ଓ ଗବେଷଣା ଲୋକଙ୍କ ପ୍ରତ୍ୟକ୍ଷ କାମରେ ଲାଗିବା ପ୍ରତି ତାଙ୍କର ଆଗ୍ରହ ଥିଲା । ବନ୍ଧୁ ହେମନ୍ତକୁମାର ମହାନ୍ତି ଆଦି ତାଙ୍କୁ ଥରେ କୃଷି ଗବେଷଣାର ଅଗ୍ରଗତି ସମ୍ପର୍କରେ ଜଣାଇବାପାଇଁ ଆଗ୍ରହ ପ୍ରକାଶ କରିଥିଲେ । ତାହାର ଉତ୍ତରରେ ସେ କହିଥିଲେ, ''ତମେ ବ୍ରାହ୍ମଣ-କରଣ ତ କୃଷି ଗବେଷଣା କରୁଛ, ଚଷା କାହାନ୍ତି ? ଏ ଦେଶର ଚାଷୀ ତ କୃଷି ଗବେଷଣା ସହିତ ପରିଚିତ ହେଲେ ନାହିଁ; ଏସବୁ ଗବେଷଣା ଚାଷୀର କାମରେ ଲାଗିବ କିଭଳି ?''

ଦେଶରେ ଅନ୍ୟାୟ ଅତ୍ୟାଚାର କରୁଥିବା ଲୋକମାନେ ନିଜର କାର୍ଯ୍ୟକଳାପ ଦ୍ୱାରା କିପରି ନିଜ ଭବିଷ୍ୟତକୁ ବିପନ୍ନ କରୁଛନ୍ତି, ସେ ସମ୍ବନ୍ଧରେ ନବବାବୁ ଓ ବିନୋବା ଆଦିଙ୍କ ବୁଝେଇସୁଝେଇ କହିବାର ଭଙ୍ଗୀ ପୂରାପୂରି ଶିକ୍ଷାସୁଲଭ ଥିଲା । ମଣିଷକୁ ଭୟ ଓ ଦଣ୍ଡ ଦେଇ ବାଟକୁ ଆଣିବା ତାଙ୍କ ଦୃଷ୍ଟିରେ ପୁରୁଣାକାଳିଆ ଅବଧାନଙ୍କର ବିଭିନ୍ନ ନିର୍ଯାତନା ଦେଇ ପାଠ ଶିଖାଇଲା ଭଳି । ସେ ଗାନ୍ଧିଙ୍କଠାରୁ ତ ଏହି ମାର୍ଗ ପାଇଥିଲେ, ପରବର୍ତ୍ତୀ କାଳରେ ଶିକ୍ଷା ଦିଗରେ ବୈପ୍ଳବିକ ବିଚାର ଜାଣିବା ପରେ ଏ ଦିଗରେ ଆହୁରି ଆସ୍ଥାବାନ୍ ହୋଇଛନ୍ତି । ଜରୁରୀକାଳୀନ ଅବସ୍ଥାରେ କାରାଗାରରୁ ସେ ତାଙ୍କ ଦୁଇ ଝିଅଙ୍କୁ ଲେଖିଥିବା ପତ୍ରରେ ଉଲ୍ଲେଖ କରିଥିଲେ, ''ପରିସ୍ଥିତି ବଦଳିବା ସଙ୍ଗେସଙ୍ଗେ ବ୍ୟକ୍ତି ମଧ୍ୟ ବଦଳିଯାଏ; ପରିସ୍ଥିତିରେ କାହାର ଚାପରେ ହେଉ ବା ଭିତରର ପ୍ରଭାବରେ ହେଉ, 'ଯେ ଯାହା, ସେ ତାହା', ଏ କଥା ସତ୍ୟ ହୋଇଥିଲେ ସମାଜ, ଦେଶ, ଦୁନିଆ ବଦଳୁନଥାନ୍ତା । ସବୁ ମିଶିକରି ବଦଳୁଛି ଆମେ ମାନୁଛୁ, କିନ୍ତୁ ବ୍ୟକ୍ତି ବଦଳିବା କଥା ସହଜରେ ମାନୁନାହୁଁ ।'' ଏଣୁ ମଣିଷକୁ ଭୟ ନ ଦେଖାଇ ଓ ନିର୍ଯାତନା ନ ଦେଇ ବୁଝେଇସୁଝେଇ ବଦଳାଇହେବ ବୋଲି ତାଙ୍କର ବିଶ୍ୱାସ ପ୍ରକାଶିତ ହୋଇଛି; ଠିକ୍ ଯେଭଳି ଦୁଷ୍ଟ ଛାତ୍ରକୁ ଦଣ୍ଡ ଓ ଭୟ ପ୍ରଦର୍ଶନ ନ କରି ଶ୍ରଦ୍ଧାର ସହ ବୁଝେଇଲେ ସେ ବୁଝିବ ବୋଲି ଗ୍ରହଣ କରାଯାଇଥାଏ ।

ତାଙ୍କ ଶିକ୍ଷାୟତନର ପରିସର ବିଦ୍ୟାଳୟର ପାଚେରି ମଧ୍ୟରେ ସୀମାବଦ୍ଧ ନଥିଲା । ନାଗାଙ୍କୁ ବୁଝେଇ ମନେଇବା ବେଳେ ସେ ଥିଲେ ଶିକ୍ଷକର ଭୂମିକାରେ, ଅସମର ଅସମୀୟା ଓ ବଙ୍ଗୀୟ ବିଦ୍ୱେଷ ହ୍ରାସ ସମୟରେ ତାଙ୍କର ଭୂମିକା ମଧ୍ୟ ଥିଲା ଉପଦେଷ୍ଟାର । ଠିକ୍ ସେହିଭଳି ଗଞ୍ଜାମ ଓ କୋରାପୁଟର ଆଦିବାସୀମାନଙ୍କ ମଧ୍ୟରେ ନିର୍ଭୟତା ସଞ୍ଚାର କରିବା ଓ ଭୂମି ବ୍ୟବସ୍ଥାର ବିଭ୍ରାଟ ଦୂର କରିବା ସମ୍ପର୍କରେ ନିଜର ଯୁକ୍ତି ଉପସ୍ଥାପନ କରୁଥିବା ବେଳେ ସେସବୁ ଥିଲା ଶିକ୍ଷକୋଚିତ । ରକ୍ତାକ୍ତ ବିପ୍ଳବକୁ ସେ ସେହିସବୁ କାରଣରୁ ପସନ୍ଦ କରୁନଥିଲେ ।

ବ୍ୟାପକ ଅର୍ଥରେ ବୁଦ୍ଧ ଓ ଯୀଶୁ ଆଦି ଥିଲେ ଶିକ୍ଷକ । ସେମାନେ ଅତ୍ୟାଚାରୀ ଓ ଲୋଭୀର ମନ ବଦଳାଇବା ପାଇଁ ଚେଷ୍ଟା କରିଥିଲେ । ସେହି ଧାରାରେ ଟିକିଏ ଆଗେଇଯାଇ ନବକୃଷ୍ଣ ଚୌଧୁରୀ ଅତ୍ୟାଚାରୀ ଓ ଲୋଭୀ ଶ୍ରେଣୀର ଲୋକଙ୍କ ମନ ବଦଳାଇବା ସଙ୍ଗେସଙ୍ଗେ ଅତ୍ୟାଚାରିତଙ୍କୁ ପ୍ରତିବାଦ ଓ ପ୍ରତିରୋଧ କରିବାକୁ ଶିଖାଇଥିଲେ । ଏ ଦିଗରୁ ଗାନ୍ଧି ଥିଲେ ଅଧିକ ସାର୍ଥକ ଶିକ୍ଷକ । ସ୍ୱାଧୀନତା ଆନ୍ଦୋଳନ ପରେ ଶେଷୋକ୍ତ ଶ୍ରେଣୀର ଲୋକଙ୍କୁ ପ୍ରତିବାଦ ଓ ପ୍ରତିରୋଧ ଦିଗରେ ଆଗେଇନେବା ପାଇଁ ଗାନ୍ଧିଜୀଙ୍କର ଆୟୁଷ ନଥିଲା । ନବକୃଷ୍ଣ ଚୌଧୁରୀ କ୍ଷମତାରୁ ଚାଲିଗଲା ପରେ ଅତ୍ୟାଚାରିତ ଲୋକଙ୍କୁ ସଂଘବଦ୍ଧ କରି ପ୍ରତିବାଦ ଓ ପ୍ରତିରୋଧ ପାଇଁ ବିଶେଷ କିଛି ନ କରିପାରିଲେ ମଧ୍ୟ ସୀମିତ କ୍ଷେତ୍ରରେ ତାହା କରିଛନ୍ତି । ଏଥିପାଇଁ ତାଙ୍କ ସଙ୍ଗରେ ନଥିଲେ ଉପଯୁକ୍ତ ସହକର୍ମୀ । ଶାନ୍ତିସେନା କାର୍ଯ୍ୟରେ ତାଙ୍କର ସହଯୋଗ ବରଂ ଅଧିକ ଉଲ୍ଲେଖନୀୟ । ରାଉରକେଲା ଓ ଅସମ ଏବଂ ନାଗାଲାଣ୍ଡ ତଥା ମଣିପୁରରେ ଶାନ୍ତି ଅଭିଯାତ୍ରାରେ ତାଙ୍କର ଭୂମିକା ଥିଲା ଏକ ଶିକ୍ଷକର ଭୂମିକା ।

ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଥିଲାବେଳେ ସେ ସରକାରୀ ସାହାଯ୍ୟ ପାଣ୍ଠି ଛଡ଼ା ନିଜ ଦରମା ଟଙ୍କାରୁ ବହୁ ଉଦୀୟମାନ ଛାତ୍ରଙ୍କୁ ସାହାଯ୍ୟ କରୁଥିଲେ ଓ ପରବର୍ତ୍ତୀ ଜୀବନରେ ସେହି ଯୁବକଯୁବତୀମାନେ ଜୀବନ ପଥରେ କିଭଳି ଉନ୍ନତି କରୁଛନ୍ତି, ତାହାର ଖବର ରଖୁଥିଲେ । ତାଙ୍କର ଆଗ୍ରହ ଖାଲି ମୌଳିକ ଶିକ୍ଷାରେ ସୀମାବଦ୍ଧ ନଥିଲା, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ଚାଲିଥିବା ପାରମ୍ପରିକ ପାଠ୍ୟକ୍ରମରେ 'ବିପ୍ଳବ ଓ ସାମାଜିକ ପରିବର୍ତ୍ତନ' ପୂରାପୂରି ଏକ ସ୍ୱତନ୍ତ୍ର ଅଧ୍ୟୟନର ବସ୍ତୁ ଭାବରେ ରହିବାକୁ ସେ ଚାହୁଁଥିଲେ ବୋଲି କରୁଣାକର ପରିଡ଼ାଙ୍କୁ ଲେଖିଛନ୍ତି । କେତେକ କୃଷି ମହାବିଦ୍ୟାଳୟ ତ ସେ ସମୟକୁ ଭାରତବର୍ଷରେ ଥିଲା, କିନ୍ତୁ କୃଷି ବିଦ୍ୟାଳୟ ନଥିଲା । ଓଡ଼ିଶାରେ ଏକ କୃଷି ବିଦ୍ୟାଳୟ ପ୍ରତିଷ୍ଠା ପାଇଁ ସେ ତତ୍କାଳୀନ କୃଷି ଓ ପଶୁପାଳନ ବିଶ୍ୱବିଦ୍ୟାଳୟର କୁଳପତି ବୈଦ୍ୟନାଥ ମିଶ୍ରଙ୍କ ଜରିଆରେ ଉଦ୍ୟମ କରିଥିଲେ । କିନ୍ତୁ ଯୋଜନା କମିଶନ ଏଭଳି ଅଭିନବ ବିଦ୍ୟାଳୟର ଚିନ୍ତାଧାରାକୁ ଗ୍ରହଣ କଲେନାହିଁ ।

## ଜରୁରୀକାଳୀନ ପରିସ୍ଥିତି :

କେନ୍ଦ୍ରରେ କ୍ରମାଗତ ୨୫ ବର୍ଷ ଓ ବହୁ ରାଜ୍ୟରେ ୧୫ରୁ ୨୫ ବର୍ଷ କ୍ଷମତାରେ ରହିବା ଫଳରେ କଂଗ୍ରେସ ଦଳର ପୂର୍ବ ଲୋକପ୍ରିୟତା ବହୁ ପରିମାଣରେ ହ୍ରାସ ପାଇଥାଏ । ତଥାପି ୧୯୭୧ ନିର୍ବାଚନରେ ନାନା କାରଣରୁ କଂଗ୍ରେସ କେବଳ କେନ୍ଦ୍ରରେ ବିପୁଳ ସଂଖ୍ୟା ଗରିଷ୍ଠତା ହାସଲ କଲାନାହିଁ, ବହୁ ରାଜ୍ୟରେ ମଧ୍ୟ କ୍ଷମତା ଦଖଲ କଲା । ଏହାସତ୍ତ୍ୱେ କ୍ଷମତାକୁ ଜାବୁଡ଼ି ରଖିବା ଲାଗି କଂଗ୍ରେସ ଲୋକେ ବିଭିନ୍ନ ଅନୁଚିତ ପନ୍ଥାର ଆଶ୍ରୟ ନେଉଥିବା ଦେଖି ଗୁଜରାତ ଓ ବିହାରରେ ଜନଆନ୍ଦୋଳନ ଦେଖାଦେଇଥିଲା । ବହୁ ଯୁବକ ସେହି ଆନ୍ଦୋଳନରେ ଝାସ ଦେଇଥିଲେ । ଜୟପ୍ରକାଶ ନାରାୟଣ ଏହି ଆନ୍ଦୋଳନକୁ ନେତୃତ୍ୱ ଦେଉଥାନ୍ତି । ଏହି ସମୟରେ ନବକୃଷ୍ଣ ଚୌଧୁରୀ ଚମ୍ପତିମୁଣ୍ଡାର୍ ଉତ୍ତର ମୌଳିକ ବିଦ୍ୟାଳୟକୁ ସାକାର କରିବା ଲାଗି ଉଦ୍ୟମ କରୁଥାନ୍ତି । ପ୍ରଥମେ ଶିକ୍ଷାଦାନ ଲାଗି ଆବଶ୍ୟକୀୟ ଶିକ୍ଷକ କମିଯିବାରୁ ନବବାବୁ ନିଜେ ସେହି ବିଦ୍ୟାଳୟରେ ପାଠ ପଢ଼ାଉଥିଲେ । ପାଠପଢ଼ା ଛଡ଼ା ବିଦ୍ୟାଳୟକୁ ଆର୍ଥିକ ଦିଗରେ ସହାୟତା ଦେବା ଲାଗି ଗାଈ ରଖାଯାଇଥିଲା । ନବବାବୁ ଦିନେଦିନେ ସେହି ଗାଈଙ୍କ କ୍ଷୀର ବିକ୍ରି ଲାଗି ଏକ ଗିରିନଦୀ ପାର ହୋଇ ପାଖ ବସ୍‌ଷ୍ଟାଣ୍ଡ ପର୍ଯ୍ୟନ୍ତ କ୍ଷୀର ବୋହି ଆଣୁଥିଲେ । ଜୟପ୍ରକାଶ ଦେଶର ବିଶିଷ୍ଟ ସ୍ୱାଧୀନ ଚେତା ବ୍ୟକ୍ତିମାନଙ୍କୁ ଏହି ଆନ୍ଦୋଳନକୁ ଆହ୍ୱାନ ଦେଉଥିଲେ । ଚମ୍ପତିମୁଣ୍ଡା ବିଦ୍ୟାଳୟ କାମ ଯୋଗୁଁ ସେ ଜୟପ୍ରକାଶଙ୍କ ଆହ୍ୱାନକୁ ବହୁବାର ଟାଳିଦେଇଥିଲେ । କିନ୍ତୁ ଇନ୍ଦିରା ଗାନ୍ଧିଙ୍କ ଏକଛତ୍ରବାଦୀ କାର୍ଯ୍ୟକଳାପ ବୃଦ୍ଧି ପାଇବାରୁ ସେ ନିଜ ସ୍ୱପ୍ନର ଚମ୍ପତିମୁଣ୍ଡା ବିଦ୍ୟାଳୟ ଛାଡ଼ି ଓଡ଼ିଶା ସାରା ଜୟପ୍ରକାଶଙ୍କ ଆହୂତ ସମ୍ପୂର୍ଣ୍ଣ ବିପ୍ଳବରେ ଯୋଗ ଦେଇଥିଲେ ଏବଂ ଜୟପ୍ରକାଶଙ୍କ ଓଡ଼ିଶା ଗସ୍ତ କାଳରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଏହି ସମୟରେ ସେ ଓଡ଼ିଶାର ବିଭିନ୍ନ ଅଞ୍ଚଳ ବୁଲି ଜନଚେତନା ସୃଷ୍ଟି କରିବାରେ ନିଜକୁ ନିୟୋଜିତ କରିଥିଲେ । ଆନ୍ଦୋଳନର ଏକ ପର୍ଯ୍ୟାୟରେ ଜୟପ୍ରକାଶ ପୋଲିସ ଏବଂ ସୈନ୍ୟବାହିନୀକୁ ସରକାରର ଅନ୍ୟାୟ ଆଦେଶ ଅବଜ୍ଞା କରିବାକୁ ଆହ୍ୱାନ ଦେଇଥିଲେ । ଆନ୍ଦୋଳନ ସେଭଳି ଏକ ପର୍ଯ୍ୟାୟରେ ପହଞ୍ଚି-ନଥିବାରୁ ନବବାବୁ ଏଭଳି କଥାକୁ ଅପସନ୍ଦ କରିଥିଲେ ଓ ଜୟପ୍ରକାଶ ପରିସ୍ଥିତିଠାରୁ ବହୁତ ଆଗେଇଯାଉଥିଲେ ବୋଲି କହୁଥିଲେ । ଏପରିକି ସେ ଆନ୍ଦୋଳନରୁ ନିଜକୁ ଅଲଗା ରଖିବେ ବୋଲି ଭାବୁଥିଲେ ।

କିନ୍ତୁ ସେତେବେଳେ ପରିସ୍ଥିତିର ଦ୍ରୁତ ପରିବର୍ତ୍ତନ ଘଟୁଥାଏ । ପାଟଣାରେ ଜୟପ୍ରକାଶଙ୍କ ଉପରେ ପୋଲିସର ମାଡ଼ ପରେ ସାରା ଭାରତରେ ଇନ୍ଦିରା ଗାନ୍ଧିଙ୍କ ବିରୋଧରେ ଜନମତ ସୃଷ୍ଟି ହେଉଥାଏ । ଏହି ସମୟକୁ ଏକ ନିର୍ବାଚନ ମକଦ୍ଦମାର ରାୟ

ଦେଇ ଆଲ୍‌ହାବାଦ୍ ହାଇକୋର୍ଟ ଇନ୍ଦିରା ଗାନ୍ଧିଙ୍କୁ ସଂସଦ ସଦସ୍ୟରୁ ଅଯୋଗ୍ୟ ଘୋଷଣା କଲେ । ପ୍ରଧାନମନ୍ତ୍ରିତ୍ୱ ହରାଇବା ଆଶଙ୍କାରେ ସେ ଚରମ ପଦକ୍ଷେପ ରୂପେ ୧୯୭୫ ମସିହା ଜୁନ୍ ୨୫ ତାରିଖରେ ଭାରତବର୍ଷରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରିଥିଲେ । ଏହା ଥିଲା ସ୍ୱାଧୀନ ଭାରତର ଗଣତାନ୍ତ୍ରିକ ଇତିହାସର ଏକ କଳା ଅଧ୍ୟାୟ ।

ଇନ୍ଦିରା ଗାନ୍ଧି ନିଜର ମନମୁଖି ଶାସନ ଚଳାଇବା ଲାଗି ଯେଉଁଦିନ ରାତିଅଧରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରି ସମ୍ବାଦ ଓ ସମ୍ବାଦପତ୍ର ଉପରେ କଟକଣା ଜାରି କଲେ ଏବଂ ଜୟପ୍ରକାଶ ନାରାୟଣ ଆଦି ନେତାମାନଙ୍କୁ ଗିରଫ କଲେ, ତା'ପରେ ରାଜ୍ୟସ୍ତରୀୟ ନେତାମାନଙ୍କ ଗିରଫ କଥା ଜଳଜଳ ଦିଶୁଥାଏ । ମନମୋହନ ଚୌଧୁରୀ ଗିରଫ ହେବାର କିଛିଦିନ ପରେ ୧୯୭୫ ମସିହା ଜୁନ୍ ୩୦ ତାରିଖ ଦିନ ରାତିଅଧରେ 'ମିସା' ଆଇନ୍‌ରେ ନବକୃଷ୍ଣ ଚୌଧୁରୀ ଗିରଫ ହେଲେ । ପ୍ରଥମେ ତାଙ୍କୁ ଢେଙ୍କାନାଳ ଜେଲ୍‌ରେ କିଛିଦିନ ରଖି ପରେ ବାରିପଦା ଜେଲ୍‌ର ଏକ ନିଛାଟିଆ ଛୋଟ ବଖରାରେ ରଖାଯାଇଥିଲା । ଏଥିରେ ଆପତ୍ତି କରି ସେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କୁ ଲେଖିବାରୁ ତାଙ୍କ ସହିତ ମାର୍କ୍ସବାଦୀ ହିମାଂଶୁ ନନ୍ଦୀଙ୍କୁ ବାଲେଶ୍ୱର ଜେଲ୍‌ରୁ ଅଣାଯାଇ ବାରିପଦା ଜେଲ୍‌ରେ ରଖାଗଲା । ବାରିପଦା ଜେଲ୍‌ରେ ଥିବା ପର୍ଯ୍ୟନ୍ତ ଉଭୟଙ୍କ ମଧ୍ୟରେ ଗଭୀର ଆତ୍ମୀୟତା ସୃଷ୍ଟି ହୋଇଥିଲା । ରାତିରେ ଉଭୟେ ନିଜନିଜ ବଖରାରେ ରହୁଥିଲେ ମଧ୍ୟ ସାରାଦିନ ଉଭୟଙ୍କ ମଧ୍ୟରେ ତାତ୍ତ୍ୱିକ ଆଲୋଚନାଠାରୁ ଆରମ୍ଭ କରି ଅତ୍ୟନ୍ତ ବ୍ୟକ୍ତିଗତ କଥା ପଡୁଥିଲା । ହିମାଂଶୁବାବୁ କହନ୍ତି ଯେ ସେ ଏଭଳି ସ୍ନେହୀ ଲୋକ ଜୀବନରେ ଦେଖିନାହାନ୍ତି । ନିଜେ ଆମିଷ ନଖାଇଲେ ମଧ୍ୟ ସେ ହିମାଂଶୁବାବୁଙ୍କ ଲାଗି ମାଂସ ରାନ୍ଧି-ଦେଉଥିଲେ । ହିମାଂଶୁବାବୁଙ୍କ ସାନ୍ନିଧ୍ୟ ତାଙ୍କ ମାନସିକ ଚାପକୁ ବହୁ ପରିମାଣରେ ଲାଘବ କରୁଥିଲା । ସେହି ସମୟରେ ବାରିପଦା ଜେଲ୍‌ରେ ଜେଲର୍ ଥିଲେ ଭାସ୍କର ପଟ୍ଟନାୟକ ଓ ଜେଲ୍ ସୁପରିନ୍‌ଟେଣ୍ଡେଣ୍ଟ ଥିଲେ ସିଭିଲ୍ ସର୍ଜନ୍ ଶିଶିର ବାନାର୍ଜୀ ।

ଭାସ୍କର ପଟ୍ଟନାୟକଙ୍କର ତାଙ୍କ ପ୍ରତି ଭକ୍ତି ଓ ସମ୍ମାନ ଯୋଗୁଁ ତାଙ୍କର କାରାଗାର ଜୀବନ ଅନେକ ପରିମାଣରେ ସହନୀୟ ହୋଇଥିଲା । ସେ ପ୍ରତିଦିନ ମଧ୍ୟାହ୍ନ ପରେ ଆସି ଘଣ୍ଟାଏ ନବବାବୁଙ୍କ ସହ ଚେସ୍ ଖେଳୁଥିଲେ, ତାଙ୍କର ସମସ୍ତ ସୁବିଧାଅସୁବିଧା କଥା ବୁଝୁଥିଲେ । ନବବାବୁ ତାଙ୍କ ସହିତ ବିଭିନ୍ନ ବିଷୟରେ ଆଲୋଚନା କରୁଥିଲେ । ମୁଜିବୁର ରହେମାନଙ୍କ ହତ୍ୟାର ଚାରିଦିନ ପୂର୍ବରୁ ନବବାବୁ ରେଡିଓ ଶୁଣୁଶୁଣୁ ଭାସ୍କର ପଟ୍ଟନାୟକଙ୍କୁ କହିଥିଲେ, ''ଶୁଣ ଭାସ୍କର ! ଅତି ନିକଟରେ ବଙ୍ଗଳାଦେଶରେ ଭୟାବହ ରକ୍ତପାତ ଘଟିବ ।'' ସତକୁସତ ଚାରିଦିନ ପରେ ମୁଜିବୁରଙ୍କୁ ହତ୍ୟା ଖବର ପ୍ରଚାରିତ ହେଲା । ଏହି ଘଟଣାରେ ଭାସ୍କରବାବୁ ନବବାବୁଙ୍କର ରାଜନୀତିକ ଦୂରଦୃଷ୍ଟିର ସୂଚନା ପାଇଥିଲେ ।

ନବବାବୁ ଗିରଫ ହୋଇ କେଉଁ ଜେଲ୍‌ରେ ରହିଲେ, ତାହା ଜାଣିବା ସେତେବେଳେ ସମ୍ଭବପର ନଥିଲା । ତାଙ୍କ ସାନ ଜ୍ୱାଇଁ ବିଭୂତିଭୂଷଣ ମହାନ୍ତି ତତ୍କାଳୀନ ଡି.ଆଇ.ଜି. ବିଜୟ ପାଣିଗ୍ରାହୀଙ୍କୁ ଭେଟି ଜାଣିଲେ ଯେ ନବବାବୁ ବାରିପଦା ଜେଲ୍‌ରେ ଅଛନ୍ତି ଏବଂ ତାଙ୍କୁ କେବଳ ମାଳତୀଦେବୀ, ଉତ୍ତରା ଏବଂ କୃଷ୍ଣା ମାସକରେ ଥରେ ଦେଖାକରି ପାରିବେ ଏବଂ ଥରକରେ ସେମାନଙ୍କ ମଧ୍ୟରୁ ଦୁଇଜଣ ମାତ୍ର ଦେଖା କରିବେ । ଏମାନଙ୍କ ମଧ୍ୟରୁ ସାନଝିଅ କୃଷ୍ଣା ଦେଖା କରିବାକୁ ଆସିଲେ ନବବାବୁ ଖୁସିହୋଇ ନାଚିଯାଆନ୍ତି ବୋଲି ଭାସ୍କରବାବୁ ଲକ୍ଷ୍ୟ କରିଥିଲେ । ସେ ଚାଲିଗଲା ପରେ ଭାସ୍କରବାବୁଙ୍କୁ କହନ୍ତି, ''ବହୁତ ବିଷୟରେ କଥା ହେବାକୁ ଥିଲା । କିନ୍ତୁ ତାକୁ ଦେଖି ସବୁ ଭୁଲିଗଲି ।'' ଏହାପରେ ଯେବେ କୃଷ୍ଣା ଆସିବାର ତାରିଖ ଥିଲା, ତାହା ପୂର୍ବରୁ ସେ ସବୁ ଆଲୋଚ୍ୟ ବିଷୟର ତାଲିକା କରୁଥିଲେ ଏବଂ ଭାସ୍କରବାବୁଙ୍କୁ ବି ମନେପକାଇଦେବା ଲାଗି କହୁଥିଲେ । ଦିନେ ନବବାବୁ ସକାଳେ ଚା ଖାଇ ପାଇଖାନାକୁ ଯାଇ ଫେରିବାକୁ ବହୁ ସମୟ ଡେରି ହେବାରୁ ହିମାଂଶୁବାବୁ ପାଇଖାନା କବାଟ ଖୋଲି ନବବାବୁଙ୍କୁ ଅଚେତ ଅବସ୍ଥାରେ ଦେଖିବାକୁ ପାଇଲେ । ସେ ଏ ଖବର ଜେଲ୍ ଜମାଦାରଙ୍କୁ ଦେଇ ତାଙ୍କ ସହାୟତାରେ ନବବାବୁଙ୍କୁ ପାଇଖାନାରୁ ଆଣିଲେ । ଭାସ୍କରବାବୁ ଶୀଘ୍ର ଘରେ ନିତ୍ୟକର୍ମ ସାରି ଅଫିସରେ ପହଞ୍ଚିବାକ୍ଷଣି ଜଣେ ଜମାଦାର ତାଙ୍କୁ ଖବର ଦେଲେ ଯେ 'ମନ୍ତ୍ରୀବୁଢ଼ା' ପାଇଖାନା ଘରେ ପଡ଼ିଗଲେ । ଭାସ୍କରବାବୁ ଏ ଖବର ପାଇ ଦୌଡ଼ି ଦୌଡ଼ି ଯାଇ ଦେଖନ୍ତି ତ ନବବାବୁ ଲମ୍ବ ହୋଇ ଶୋଇଛନ୍ତି ଓ ତାଙ୍କର ଗୋଟିଏ ପାଖର ଅଙ୍ଗ ସବୁ ଅଚଳ । ସେଦିନ ଥିଲା ନଭେମ୍ବର ୨୩ ତାରିଖ, ତାଙ୍କ ଜନ୍ମଦିନ । ଏହି ତେଇଶି ତାରିଖଟିରେ ତାଙ୍କ ଜୀବନର ବହୁ ସ୍ମରଣୀୟ ଘଟଣା ଘଟିଥିଲା । ଅଳକାଶ୍ରମର ପ୍ରତିଷ୍ଠା ୧୯୨୨ ଫେବୃଆରି ୨୩ ତାରିଖରେ । ତାଙ୍କର ଅତ୍ୟନ୍ତ ଆପଣାର ଭଗବତୀ ପାଣିଗ୍ରାହୀଙ୍କ ମୃତ୍ୟୁ ୧୯୪୩ ମସିହା ଅକ୍ଟୋବର ୨୩ ତାରିଖରେ । ସେ ରାଜସ୍ୱମନ୍ତ୍ରୀ ହୋଇଥିଲେ ୧୯୪୬ ଏପ୍ରିଲ ୨୩ରେ ଏବଂ ଇସ୍ତଫା ଦେଲେ ୧୯୪୮ ଏପ୍ରିଲ ୨୩ ତାରିଖରେ । ମୁଖ୍ୟମନ୍ତ୍ରୀ ଥିଲାବେଳେ ଓଡ଼ିଆକୁ ସରକାରୀ ଭାଷା ଭାବରେ ପ୍ରଚଳନ କରିଥିଲେ ୧୯୫୪ ମସିହା ଏପ୍ରିଲ ୨୩ରେ ଏବଂ ମହାପ୍ରୟାଣ ୧୯୮୪ ଜୁନ୍ ୨୩ ତାରିଖରେ ।

ଭାସ୍କରବାବୁ ତାଙ୍କ ଅବସ୍ଥା ଦେଖି ବିହ୍ୱଳ ହୋଇଯାଇଥିଲେ ବି ସଙ୍ଗେସଙ୍ଗେ ଫେରିଆସି ଜେଲ୍ ସୁପରିନ୍‌ଟେଣ୍ଡେଣ୍ଟ୍ ଡାକ୍ତର ଶିଶିର ବାନାର୍ଜୀଙ୍କୁ ଟେଲିଫୋନ୍ କଲେ । ସେ ଆସି ସଙ୍ଗେସଙ୍ଗେ ନବବାବୁଙ୍କୁ ବାରିପଦା ସଦର ଡାକ୍ତରଖାନାକୁ ସ୍ଥାନାନ୍ତରିତ କରିବାର ବ୍ୟବସ୍ଥା କଲେ । ସେହି ଅବସ୍ଥାରେ ନବବାବୁ ଭାସ୍କରବାବୁଙ୍କ ସାନଝିଅ ଆସିଛି କି ବୋଲି କ୍ଷୀଣ ସ୍ୱରରେ ପଚାରିଥିଲେ । ସେତେବେଳକୁ ତାଙ୍କ ଝିଅ କୃଷ୍ଣା ଓ ଜ୍ୱାଇଁ ବିଭୂତିବାବୁ ଆସି ତାଙ୍କୁ ସାକ୍ଷାତ କରିବାକୁ ଅପେକ୍ଷା କରିଥିଲେ । ଏହି ଅବସ୍ଥାରେ ସେମାନଙ୍କୁ ଭେଟ ନ କରାଇ

ସେଦିନ ସାକ୍ଷାତକାରକୁ ବାତିଲ କରିଦିଆହେଲା । ଡାକ୍ତରଖାନାରେ ଥିବା ସମୟରେ କଟକରୁ ସେହିଦିନ ବିଶେଷଜ୍ଞ ଡକାହୋଇ ଗଲେ ଓ ଚିକିତ୍ସା ଚାଲିଲା । କିନ୍ତୁ ଝିଅଜ୍ୱାଇଁ କିଛି ନ ଜାଣିପାରି କଟକ ଫେରିଲେ । ତିନିଦିନ ପରେ ଅନ୍ନପୂର୍ଣ୍ଣା ମହାରଣାଙ୍କ ସହିତ କୃଷ୍ଣା ଯାଇ ଦେଖନ୍ତି ତ ଡାହାଣ ପାଖ ପକ୍ଷାଘାତରେ ଅଚଳ, କଥା ଅସ୍ପଷ୍ଟ । ଛିଡ଼ାହେବାର କ୍ଷମତା ନାହିଁ, କିଛି ଖାଇପିଇ ହେଉନଥାଏ । ସେମାନଙ୍କୁ ଦେଖି ସେ ଖୁବ୍ କାନ୍ଦିଲେ ଏବଂ ବିଶେଷ ଦୁଃଖ ପ୍ରକାଶ କଲେ ଯେ ଶୀତରାତିରେ ତାଙ୍କୁ ପୋଲିସ ବାହାରେ ଜଗିଛି । କହିଲେ, ''ମୋ' ଭଳି ଗୋଟାଏ ଅକ୍ଷମ ଲୋକକୁ ଜଗିବା ଲାଗି ଏମାନଙ୍କୁ ରାତିରେ ଖୋଲାରେ ଠିଆ କରେଇଛନ୍ତି ।'' ଏହା କହି କାନ୍ଦିପକାଇବାରୁ କୃଷ୍ଣା ଯାଇ କଲେକ୍ଟରଙ୍କୁ ଟେଲିଫୋନ କରି କହିଲେ ଓ ପୋଲିସ ପହରା ଉଠାଇନିଆଯାଇଥିଲା ।

ସେହି ଅବସ୍ଥାରେ ନବବାବୁ ପଚାରିଲେ, ''ଲୋକେ କିପରି ଅଛନ୍ତି ?'' କୃଷ୍ଣା ଲୋକଙ୍କ ଭୟଭୀତ ଅବସ୍ଥା ବର୍ଣ୍ଣନା କରିବାରୁ ସେ କହିଲେ, ''ଲୋକଙ୍କ ଉପରୁ ଆସ୍ଥା ହରାଅ ନାହିଁ । ସେମାନେ ହିଁ ତ ସବୁ । ମଣିଷ ଉପରୁ ବିଶ୍ୱାସ ହରାଇଲେ ତ ଆମେ ହାରିଯିବା ଓ ସୃଷ୍ଟି ବିଫଳ ହୋଇଯିବ ।'' ଏସବୁ କହିଲା ବେଳେ କଥା ଗୁଡ଼େଇହୋଇଯାଉଥାଏ ଏବଂ ଆଖିରୁ ଲୁହ ବୋହିଚାଲିଥାଏ । ସେହି ସମୟରେ ରମାଦେବୀ ଓ ମାଳତୀଦେବୀ ଅସୁସ୍ଥ ଜୟପ୍ରକାଶଙ୍କୁ ଦେଖିବା ଲାଗି ଚଣ୍ଡୀଗଡ଼ ଯାଇଥିଲେ । ସେମାନେ ଫେରି ଏ ଖବର ପାଇ ସଙ୍ଗେସଙ୍ଗେ ବାରିପଦା ଯାଇଥିଲେ । ସେଠାରେ ମାଳତୀଦେବୀଙ୍କୁ ଦେଖି ସେ କୁଣ୍ଢାଇଧରି ବହୁତ କାନ୍ଦିଲେ । ଜୟପ୍ରକାଶଙ୍କ ସ୍ୱାସ୍ଥ୍ୟ ଖବର ସେମାନଙ୍କଠାରୁ ଶୁଣି ଆହୁରି ବି କାନ୍ଦିଲେ । ସପ୍ତାହକ ପରେ ତାଙ୍କୁ ପ୍ୟାରୋଲରେ ଛଡ଼ାଗଲା ଓ କଟକ ଅଣାଗଲା । ସେତେବେଳକୁ ବଞ୍ଚିବାର ଇଚ୍ଛା ଲୋପ ପାଇଥାଏ ଓ ସେ ଖାଇବାକୁ ଚାହୁଁନଥାନ୍ତି । ଏହି ଅବସ୍ଥାରେ ଅନେକ ଆତ୍ମୀୟ ଓ କେତେକ ରାଜନୀତିକ ବନ୍ଧୁ ଆସି ଦେଖା କରୁଥିଲେ ବି ଜରୁରୀକାଳୀନ ଅବସ୍ଥା ଭୟରେ ତାଙ୍କର ଅତି ନିଜର କେତେକ ବ୍ୟକ୍ତି ତାଙ୍କୁ ଦେଖା କରିବାକୁ ଆସିନଥିଲେ । ମାସେ ଖଣ୍ଡେ ପରେ ଟିକିଏ ଭଲ ହେବାରୁ ସେ ଅନୁଗୋଳ ଯିବାକୁ ଚାହିଁଲେ । ଟିକେ ଟିକେ ଚାଲିବାକୁ ଚେଷ୍ଟା କଲେ ବି ଡାହାଣ ଗୋଡ଼ ଘୋଷାରିଘୋଷାରି ହେଉଥାଏ, ଡାହାଣ ପାଖ ମୁହଁ ଟିକିଏ ବଙ୍କା ହୋଇଯାଇଥିବାରୁ ଖାଇବା ବେଳେ ଅସୁବିଧା ହେଉଥାଏ । ଡାକ୍ତରି ଔଷଧ ଓ କବିରାଜି ତୈଳ ମାଲିସ ଫଳରେ ଅବସ୍ଥା ଟିକିଏ ସୁଧୁରିଲା ।

ବାରିପଦା ଜେଲ୍‌ରେ ଥିବାବେଳେ ମାଳତୀଦେବୀ, ତିନୁ (କୃଷ୍ଣା), ସୁମିତ୍ରା (ପୁତୁରା-ବୋହୂ) ନାତି ଆପ୍ପୁ, ଚୁନୀ (ଅନ୍ନପୂର୍ଣ୍ଣା ମହାରଣା) ଆଦିଙ୍କୁ ସେ ବିଭିନ୍ନ ସମୟରେ ଚିଠି ଲେଖୁଥିଲେ । ଜେଲ୍‌ରେ କିଛି କିଛି ବହି ପଢ଼ିବାକୁ ପାଉଥିଲେ ମଧ୍ୟ ତାଙ୍କ ଆବଶ୍ୟକତା

ମୁତାବକ ବହି ପାଉନଥିଲେ ବୋଲି ସେ ଚିଠିରେ ଲେଖିଛନ୍ତି । ଜେଲ୍‌ରେ ଟୀକା ସହ 'ପାତଞ୍ଜଳି ଯୋଗ ଦର୍ଶନ' ବହିଟି ମନଦେଇ ପଢୁଥିଲେ । ପାତଞ୍ଜଳିଙ୍କର ବସ୍ତୁନିଷ୍ଠ ତର୍କସିଦ୍ଧ ବୈଜ୍ଞାନିକ ଆଲୋଚନାଭଙ୍ଗୀ ତାଙ୍କୁ ଭଲ ଲାଗୁଥିଲା ବୋଲି ସେ ଚିଠିରେ ଜଣାଇଛନ୍ତି । ରବୀନ୍ଦ୍ରନାଥଙ୍କ ରଚନା 'ଲଭିବ ମୁକ୍ତିର ସ୍ୱାଦ ଅଶେଷ ବନ୍ଧନ ମାଝେ' ପିଲାଦିନରୁ ତାଙ୍କ ମନରେ ଅଲିଭା ଗାର ପକାଇଥିଲା ବୋଲି ଏ ଚିଠିରୁ ଜଣାପଡ଼େ । ଏହି କାରଣରୁ ସେ ସନ୍ନ୍ୟାସର ମୁକ୍ତିସନ୍ଧାନ ଅପେକ୍ଷା ସଂସାରର ନାନା ଜଞ୍ଜାଳ ମଧ୍ୟରେ ମୁକ୍ତିର ସନ୍ଧାନକୁ ବାଛିନେଇଥିଲେ ।

ସମ୍ପୂର୍ଣ୍ଣ ବିପ୍ଳବ ଅଭିଯାନ ସମୟରେ ଜୟପ୍ରକାଶ ତାଙ୍କୁ ପରାମର୍ଶ ପାଇଁ ଡାକିଥିଲେ । ସେ ପହଞ୍ଚିବା ପୂର୍ବରୁ ଜୟପ୍ରକାଶ ଇନ୍ଦିରା ଗାନ୍ଧିଙ୍କ ସରକାର ବିରୋଧରେ ଚୂଡ଼ାନ୍ତ ସଂଗ୍ରାମର ଆହ୍ୱାନ ଦେଇଥିବାରୁ ସେ କିଭଳି ଅସନ୍ତୁଷ୍ଟ ଥିଲେ, ତାହା ଏ ଚିଠିରୁ ଜଣାପଡ଼େ । ତାଙ୍କ ମତରେ ତତ୍କାଳୀନ ଭାରତୀୟ ପରିସ୍ଥିତି ଅପେକ୍ଷା ଭାରତୀୟ ଉପମହାଦେଶରେ ମାର୍କିନ୍ କ୍ଷମତାବିସ୍ତାରର ଷଡ଼ଯନ୍ତ୍ର ସେ ସମୟରେ ଥିଲା ଅଧିକ ଗୁରୁତ୍ୱପୂର୍ଣ୍ଣ । ମୁଜିବୁର ହତ୍ୟା ପୂର୍ବର ବାଂଲାଦେଶର ପରିସ୍ଥିତିକୁ ଲକ୍ଷ୍ୟ କରି ସେ ଚାହୁଁଥିଲେ, ବାଂଲାଦେଶ, ଭାରତ, ପାକିସ୍ତାନର ରାଷ୍ଟ୍ରନାୟକମାନେ ମାର୍କିନ ମତଲବ ବିରୋଧରେ ଏକଜୁଟ ହୁଅନ୍ତୁ । ଏହି ଉଦ୍ଦେଶ୍ୟରେ ଜୟପ୍ରକାଶ ପଦକ୍ଷେପ ନିଅନ୍ତୁ ଏବଂ ଇନ୍ଦିରାଙ୍କ ସହିତ କଥାବାର୍ତ୍ତା କରନ୍ତୁ ବୋଲି ତାଙ୍କର ଇଚ୍ଛା ଥିଲା । ଏଭଳି ଲେଖାରୁ କିଛି ଲୋକ ତାଙ୍କର ଜେଲ୍‌ରୁ ଖଲାସ ହେବାପାଇଁ ଏକ କୌଶଳ ବୋଲି ବିଚାର କରୁଥିଲେ । କିନ୍ତୁ ନବକୃଷ୍ଣ ଚୌଧୁରୀ ସର୍ବଦା ବୃହତ୍ତର ସ୍ୱାର୍ଥ ଓ ଦୀର୍ଘମିଆଦୀ ମଙ୍ଗଳ କଥା ବିଚାର କରନ୍ତି ବୋଲି, ଯେଉଁମାନେ ଜାଣନ୍ତି, ସେମାନଙ୍କ ପକ୍ଷରେ ତାଙ୍କୁ ଭୁଲ୍ ବୁଝିବାର କିଛି ନଥିଲା । ବ୍ରହ୍ମପୁର ଜେଲ୍‌ରେ ବ୍ୟକ୍ତିଗତ ସତ୍ୟାଗ୍ରହ କରି ବନ୍ଦୀ ଥିଲାବେଳେ ସେ ଫାସିଷ୍ଟ୍ ବିପଦକୁ ଆଖିଆଗରେ ରଖି ବ୍ରିଟିଶ ସରକାର ସହିତ ଆପୋସ ବୁଝାମଣା କରିବାପାଇଁ ମତ ପ୍ରକାଶ କରିଥିଲେ । ଏହା ସେକାଳ କଂଗ୍ରେସ ଦଳର ଆଭିମୁଖ୍ୟ ଠାରୁ ଭିନ୍ନ ଏବଂ ବୃହତ୍ତର ରାଜନୀତିକ ବିଚାରରୁ ଠିକ୍ ବୋଲି ମନେହୁଏ ।

ନବବାବୁ ପ୍ୟାରୋଲରେ ରହୁଥିଲା ଭିତରେ ମାଳତୀଦେବୀ ଗିରଫ ହୋଇ କଟକ ଜେଲ୍‌ରେ ରହିଲେ । ଏଣୁ ନବବାବୁ ଅନୁଗୋଳରୁ ଆସି କଟକରେ ରହିଲେ ଓ ମାସକୁ ମାସ ମାଳତୀଦେବୀଙ୍କ କେସ୍‌ର ତାରିଖ ପଡ଼ିଲା ଦିନ ଛୋଟେଇ ଛୋଟେଇ ବାଖରାବାଦ ଘରୁ କଚେରି ପର୍ଯ୍ୟନ୍ତ ଯାଇ କୋର୍ଟ ନିକଟସ୍ଥ ଗଛମୂଳେ ଘଣ୍ଟା ଘଣ୍ଟା ଅପେକ୍ଷା କରି ରହୁଥିଲେ । ଗିରଫ ହେବାର ତିନିମାସ ପରେ ମାଳତୀଦେବୀ ଖଲାସ ହେବାରୁ ସମସ୍ତେ ଅନୁଗୋଳ ଚାଲିଗଲେ । ସେମାନଙ୍କର ଏହି ଅସୁସ୍ଥ ଅବସ୍ଥା ଦେଖି ବିଭୂତିବାବୁ ଓ ତିନୁ ଅନୁଗୋଳରେ ରହିବାକୁ ସ୍ଥିର କଲେ ଏବଂ ବିଭୂତିବାବୁ, ଅନ୍ୟାନ୍ୟ ଲୋଭନୀୟ ପଦବୀ ଛାଡ଼ି, ରାଜ୍ୟର ପ୍ରୌଢ଼ଶିକ୍ଷା ସାଧନ କେନ୍ଦ୍ରର ଅଧ୍ୟକ୍ଷ ହୋଇ ଅନୁଗୋଳରେ ରହିଲେ ।

## ଜନତା ସରକାର ଓ ପରବର୍ତ୍ତୀ କାଳ :

ଯେଉଁ ନନ୍ଦିନୀ ଶତପଥୀଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ଓଡ଼ିଶାର ତୁଙ୍ଗ ନେତାମାନେ ବନ୍ଦୀ ହୋଇଥିଲେ, ସେ ଘଟଣାଚକ୍ରରେ ମୁଖ୍ୟମନ୍ତ୍ରିତ୍ୱ ହରାଇବାରୁ, କଂଗ୍ରେସ ଛାଡ଼ି ଜନତା ପାର୍ଟି ନିର୍ବାଚନ ବୁଝାମଣା କରିଥିବା ଜଗଜ୍ଜୀବନ ରାମ୍‌ଙ୍କ ଗଣତାନ୍ତ୍ରିକ କଂଗ୍ରେସ ଦଳରେ ଯୋଗ ଦେଇ ଓଡ଼ିଶା ବିଧାନସଭା ପାଇଁ ପ୍ରାର୍ଥୀ ହେଲେ । ନବବାବୁ ଆଦିଙ୍କ ବିରୋଧ ସତ୍ତ୍ୱେ ଏହା ଅପରିବର୍ତ୍ତିତ ରହିବାରୁ ମାଳତୀଦେବୀ ଢେଙ୍କାନାଳରୁ ତାଙ୍କ ବିରୋଧରେ ସ୍ୱାଧୀନ ଭାବରେ ପ୍ରାର୍ଥୀ ହେଲେ । ସେ ଲଢ଼େଇ ବେଳେ ଶାନ୍ତି କବିରଙ୍କ ଭଳି ବହୁ ବିଶିଷ୍ଟ ବ୍ୟକ୍ତି ମାଳତୀଦେବୀଙ୍କ ପାଇଁ ପ୍ରଚାର କରିବାକୁ ଆସିଥିଲେ । ସାଧାରଣ ଲୋକଙ୍କଠାରୁ କିଛି ଆର୍ଥିକ ସାହାଯ୍ୟ ମିଳିଥିଲା ଓ ବିଜୁ ପଟ୍ଟନାୟକ ମଧ୍ୟ କିଛି ସାହାଯ୍ୟ ଦେଇଥିଲେ । ନବବାବୁ ଏଥିଲାଗି ଢେଙ୍କାନାଳରେ ଏହି ସମୟତକ ରହିଲେ । ଗଡ଼ଜାତ ଆନ୍ଦୋଳନର ବୀରରମଣୀ ମାଳତୀଦେବୀ ଖାଲି ହାରିଗଲେ ନାହିଁ, ଅମାନତ ହରାଇଥିଲେ । ଏହାର ଅନ୍ୟତମ କାରଣ ଥିଲା ଯେ ୪୦ ବର୍ଷ ପୂର୍ବର ଢେଙ୍କାନାଳୀ ଅତ୍ୟାଚାର ବିରୋଧରେ ଲଢ଼େଇ କଥା ସେତେବେଳେ ଅଧିକାଂଶ ଭୁଲିଯାଇଥିଲେ ଓ ଆନ୍ଦୋଳନରେ ଅଂଶ ଗ୍ରହଣ କରୁଥିବା ଲୋକଙ୍କ ମଧ୍ୟରୁ ଅନେକେ ମରିଯାଇଥିଲେ ଏବଂ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଥିଲାବେଳେ ଅବହେଳିତ ଢେଙ୍କାନାଳ ପାଇଁ କିଛି କାର୍ଯ୍ୟ କରିବା ସଙ୍ଗେସଙ୍ଗେ ବହୁତ କିଛି କରିବାର ଆଶା ସଞ୍ଚାର କରିଥିଲେ ।

ନିର୍ବାଚନ ପରେ ଜାତୀୟ ସ୍ତରରେ ଏବଂ ଓଡ଼ିଶାରେ ଜନତା ସରକାର ଗଠିତ ହେଲା । ସେହି ସମୟରେ ରାଷ୍ଟ୍ରପତି ସଞ୍ଜୀବ ରେଡି ଓଡ଼ିଶା ପରିଦର୍ଶନ ଅବସରରେ ଅନୁଗୋଳ ଯାଇ ନବବାବୁଙ୍କୁ ସାକ୍ଷାତ କରିଥିଲେ । ନବବାବୁ ଅନ୍ୟତ୍ର ଯା'ଆସ ନ କରୁଥିଲେ ବି ଟିକିଏ ସୁସ୍ଥ ହେବାପରେ ମାଳତୀଦେବୀଙ୍କୁ ସଙ୍ଗରେ ନେଇ ଶାନ୍ତିନିକେତନ ଯାଇଥିଲେ । ନହେଲେ ଅଧିକାଂଶ ସମୟ ସେ ଅନୁଗୋଳରେ କଟାଇଥିଲେ । ଏହି ସମୟରେ, ୧୯୮୧ ମସିହାରେ, ତାଙ୍କ ସାନଝିଅର ସାନପୁଅ ଅମ୍ଳାନର ଜନ୍ମ । ଅନେକ ଦିନରୁ ନବବାବୁଙ୍କର ଦାନ୍ତସବୁ ପଡ଼ିଯାଇଥିଲା । କଥା ମୋଟେ ସ୍ପଷ୍ଟ ଶୁଭୁ ନଥିଲା । ଏଣୁ ଝିଅମାନେ ଓ ନାତି ନାତୁଣୀମାନେ ଜିଦ୍ କରିବାରୁ ସେ କୃତ୍ରିମ ଦାନ୍ତ ଲଗାଇଲେ । ଏଥିରେ ପ୍ରଥମେ ଯେଉଁ କଷ୍ଟ ହୋଇଥାଏ, ସେତକ ସହିବା ତାଙ୍କର ସେଇ ସ୍ୱାସ୍ଥ୍ୟରେ କଷ୍ଟଦାୟକ ହେଉଥାଏ ।

ଅନୁଗୋଳରେ ତାଙ୍କ ଦୀର୍ଘକାଳ ରହଣି ଭିତରେ ସେ ଅନୁଗୋଳ ପ୍ରଶିକ୍ଷଣ ମହାବିଦ୍ୟାଳୟ ଓ ଅନୁଗୋଳ ମହାବିଦ୍ୟାଳୟର ଲାଇବ୍ରେରିକୁ ଯାଇ ବହି ପଢ଼ନ୍ତି ଏବଂ

ବେଳେବେଳେ ଅଧ୍ୟାପକମାନଙ୍କ ଘରକୁ ଯାଇ ଆଳାପ କରନ୍ତି । ଏହାଛଡ଼ା ହିଲଜର୍ କମ୍ପାନୀର ବିଦେଶୀ ଅଫିସର୍ ନର୍ମାନ ରେ'ଙ୍କ ସାଙ୍ଗରେ ତାଙ୍କର ଖୁବ୍ ବନ୍ଧୁତା । ସେ ତାଙ୍କ ଘରକୁ ଗଲେ ବୌଦ୍ଧିକ ଆଲୋଚନା ଖାଲି କରନ୍ତି ନାହିଁ, ଅନେକ ସମୟରେ ରାତ୍ରିଭୋଜନ ବି କରନ୍ତି । ୟାଙ୍କରି ପାଖରେ ବସାଉଠା ବେଳେ ସେ ମଦ ଚାଖୁଥିଲେ, ଏହାକୁ ଖାଇଲେ ତାହା ଦେହ ଓ ମନ ଉପରେ କିପରି ପ୍ରଭାବ ପକାଏ, ସେଇକଥା ଜାଣିବାଲାଗି । ଏହି ନର୍ମାନ ରେ'ଙ୍କୁ ସେ ଗାନ୍ଧିବିଚାର ଏଭଳି ବୁଝାଇଥିଲେ ଯେ ସେ ନିଜ ଦେଶକୁ ଗଲାପରେ ତାଙ୍କ ଦେଶରୁ ଭାରତ ଭ୍ରମଣରେ ଆସୁଥିବା ଲୋକଙ୍କୁ ନବବାବୁଙ୍କ ଭଳି ଚମତ୍କାର ବ୍ୟକ୍ତିଙ୍କୁ ଭେଟିବା ଲାଗି ପରାମର୍ଶ ଦେଉଥିଲେ । ଖାଲି ସେ ମହାବିଦ୍ୟାଳୟକୁ ଯାଉନଥିଲେ, ପ୍ରାୟ ପ୍ରତି ହାଟପାଳି ବଣିଆବାହାଳ ହାଟକୁ ଯାଆନ୍ତି ଏବଂ ବେଳେ ବେଳେ ପାଖ ଖଲାରୀ ଓ ସୁସୁଡ଼ା ଗାଁ ଭିତରକୁ ପଶିଯାଇ କାହା ପିଣ୍ଡାରେ ବସି ଦୁଃଖସୁଖ ହୋଇ ଆସନ୍ତି । ଦିନେ ସେ ଖଲାରୀ ଗାଁରୁ ଜଣେ ପର୍ତ୍ତୁଗୀଜ ନୃତତ୍ତ୍ୱବିତ୍‌ଙ୍କୁ ଆବିଷ୍କାର କରିଥିଲେ । ଅନୁଗୋଳରୁ ଲୋପ ପାଇଯାଉଥିବା ଏକ ଆଦିବାସୀଙ୍କ ଉପରେ ଗବେଷଣା କରିବାକୁ ଆସି ସେ ଖଲାରୀ ଗାଁରେ ଖୁବ୍ ଅସୁବିଧାରେ ଥାଆନ୍ତି । ତାଙ୍କୁ ସଙ୍ଗରେ ଆଣି ସାନଝିଅ ସଙ୍ଗରେ ସାକ୍ଷାତ କରାଇଲେ ଏବଂ ତାଙ୍କ ଚଳାଚଳ ପାଇଁ କିଭଳି ଟିକିଏ ସୁବିଧା ହେବ, ତାହାର ବ୍ୟବସ୍ଥା କଲେ । ଏହି ଅସୁସ୍ଥ ଅବସ୍ଥାରେ ବି ଆମେରିକାର ଗାନ୍ଧିବାଦୀ ଜର୍ଜ ୱିଲୋବି ଆସିଥିଲେ ଓ ଅନୁଗୋଳରେ ଦୁଇଦିନ ରହିଥିଲେ । ନବବାବୁ କିନ୍ତୁ ତାଙ୍କ ସହିତ ଗଭୀର ଆଲୋଚନା କରିବା ଅବସ୍ଥାରେ ନ ଥିଲେ ।

ତାଙ୍କର ଅସୁସ୍ଥତାର ପ୍ରାକୃତିକ ଚିକିତ୍ସା ଲାଗି ସୁରେନ୍ଦ୍ର ଦ୍ୱିବେଦୀ ତାଙ୍କୁ ଭୁବନେଶ୍ୱର ଅଣାଇ ଚିକିତ୍ସା କରାଇବା ଅବସରରେ ତାଙ୍କ ପାଖକୁ ଆସିଥିବା ତିନୁର ବଡ଼ପୁଅ ଅସୀମ ଅନୁଗୋଳ ଫେରିଲା ବେଳକୁ ଏକ ଦାରୁଣ ଟ୍ରେକର ଦୁର୍ଘଟଣାରେ ପ୍ରାଣ ହରାଇଲା । ଏତିକିରେ ଏଠାରେ ପ୍ରାକୃତିକ ଚିକିତ୍ସା ବନ୍ଦ ହେଲା । ସମସ୍ତେ ଅନୁଗୋଳ ଫେରିଗଲେ । ପୁତ୍ରହରା କୃଷ୍ଣାର ଦୁଃଖ କହିଲେ ନ ସରେ । ସେ କିନ୍ତୁ ଆହୁରି ଡରି ଯାଇଥାଏ–ଏହି ଦୁର୍ବିପାକ ଯୋଗୁଁ ନବବାବୁଙ୍କର ଅସୁସ୍ଥତା ହୁଏତ ଆହୁରି ବଢ଼ିବ । ସତକୁସତ ତାଙ୍କର ପୁରୁଣା ଶୋକ ପୁଣି ହୃଦୟରେ ଭରିଉଠିଲା । ସେ କହିବାକୁ ଲାଗିଲେ, ''ମୋ'ର ବି ଗୋଟାଏ ପୁଅ ଥିଲା ଯେ, ସେ ବି ଆମକୁ ଛାଡ଼ି ଏମିତି ଚାଲିଗଲା । ବିଭୂତି (କ୍ୱାଇଁ) ଯେମିତି ତା' ପୁଅର ଫଟୋ ଏତେ ବଡ଼ କରି ରଖିଛି, ମୋ' ପୁଅର ଫଟୋ କାହିଁକି ସେମିତି ଆମ ଘରେ ନାହିଁ ?'' ବଡ଼ କ୍ୱାଇଁ ଓ ଝିଅ ଏବଂ ନାତିନାତୁଣୀମାନେ ଏ ଦୁଃସମ୍ବାଦ ପାଇ ଆସିଥିଲେ ଏବଂ କେତେଦିନ ରହି ସେମାନେ ଫେରିଗଲେ ।

ଏହା ପରେ ଘରେ ସମସ୍ତଙ୍କ ଜୀବନର ଛନ୍ଦ ପୂରାପୂରି ବଦଳିଗଲା । ନବବାବୁଙ୍କ ନିଃଶୂନତା ଦୂର କରିବାପାଇଁ କୃଷ୍ଣାର ସାନପୁଅ ଅନେକ ସମୟରେ ତାଙ୍କ ପାଖେ ରହେ । ସମୁଦୀ ବି କିଛି ସମୟ କଟାନ୍ତି । ଘୋଳ ଦହି ଖାଇବା ଓ ମାଲିସ ଚାଲିଥାଏ । କିନ୍ତୁ ଦୁଃଖରାତିର ସତେ ଯେପରି ଶେଷ ନାହିଁ ! ଦିନେ ଜୟକୃଷ୍ଣ ମହାନ୍ତି, ରବି ସାହୁ ଆଦି ଅନୁଗୋଳରେ ପହଞ୍ଚିଲେ । ନବବାବୁ ପାଣି ଟବ୍‌ରେ ବସିଥାନ୍ତି । ଏମାନେ କିଛି ନ କହି ଠିଆହୋଇ ରହିଲେ । ଯା'ଙ୍କର ମୁହଁର ଅବସ୍ଥାରୁ କିଛି ଅନୁମାନ କରି ସେ ମାଳତୀଦେବୀଙ୍କୁ ଡାକିଲେ, ''ଓଗୋ ! ଆସୁଛ ? ପୁଣି କିଛି ଦୁର୍ବିପାକର ବାର୍ତ୍ତା ଆସିଗଲା ।'' ମନମୋହନ ଚୌଧୁରୀଙ୍କ ଏକମାତ୍ର ପୁତ୍ର କବୀରର ଯୁକ୍ତରାଷ୍ଟ୍ରରେ ମଟର ଗାଡ଼ି ଦୁର୍ଘଟଣାରେ ମୃତ୍ୟୁ ଖବର ନେଇ ଏମାନେ ଯାଇଥିଲେ । ସମସ୍ତେ କଟକ ଫେରିଲେ । ଏ ଅବସ୍ଥାରେ କିଏ କାହାକୁ ସାନ୍ତ୍ୱନା ଦେବ ! କିନ୍ତୁ ନବବାବୁ ଖାଲି ନୀରବରେ ବସି ଲୁହ ଝରାଇଲେ । ରାତିରେ ନିଦ ହୁଏ ନାହିଁ; ଖାଲି ଛଟପଟ ହୁଅନ୍ତି । କେହି ତାଙ୍କୁ ଆଉଁଶିବା ପାଇଁ ଆସିଲେ ସେ ବିରକ୍ତ ହୁଅନ୍ତି । ମନମୋହନ ବାବୁଙ୍କ ପାଖକୁ ଓ ସୁମିତ୍ରାଦେବୀଙ୍କ ନିକଟରେ ଚୁପ୍‌ଚାପ ଠିଆ ହୁଅନ୍ତି ବା ନୀରବରେ କିଛି ସମୟ ବସନ୍ତି । ଆରତି (ମନମୋହନ ବାବୁଙ୍କ ବୋହୂ) ପୁଅମାନଙ୍କୁ ନେଇ ଆମେରିକାରୁ ଆସି ପହଞ୍ଚିଲା ପରେ ସେମାନଙ୍କ ସହିତ ଦୁଇଦିନ କଟାଇ ନବବାବୁ ଆଦି ଅନୁଗୋଳ ଫେରିଆସିଲେ । ଏହି ସମୟକୁ ତାଙ୍କ ଆଦରର ଦୁଃଖୀ (ସରଳାଦେବୀ) ଜ୍ଞାନ ହରାଇ ବହୁଦିନ ଧରି ଶଯ୍ୟାଶାୟୀ ରହିଥାନ୍ତି । ଏସବୁ ମିଶି ନବବାବୁଙ୍କର ଧୈର୍ଯ୍ୟର ବନ୍ଧକୁ ପୂରାପୂରି ଭାଙ୍ଗିଦେଇଥାଏ । ତାଙ୍କ ଆଖିରୁ ଖାଲି ଲୁହ ବହୁଥାଏ ।

## ଲୋକଧର୍ମ :

ପୂଜା ଉପଚାର ଆଦି ମା' କରୁଥିଲେ ବି ନବକୃଷ୍ଣ ଚୌଧୁରୀଙ୍କର ପିଲାଦିନରୁ ସେଥିପ୍ରତି କେବେ ଆଗ୍ରହ ନଥିଲା, ବରଂ ଅନ୍ଧବିଶ୍ୱାସ ଓ ପ୍ରଚଳିତ ପ୍ରଥାକୁ ଫିଙ୍ଗି ଅଲଗା ଏକ ବାଟରେ ଚାଲିବା ଥିଲା ତାଙ୍କର ଏକପ୍ରକାର ଖିଆଲ । ତାଙ୍କ ଘରକୁ ପିଲାଦିନେ ଅନେକ ବାବାଜି ଆସୁଥିଲେ । ସେମାନଙ୍କ ମଧ୍ୟରୁ ଜଣେଅଧେଙ୍କ ଚାରିତ୍ରିକ ବିଶୃଙ୍ଖଳା ଲକ୍ଷ୍ୟ କରି ନବକୃଷ୍ଣ ଚୌଧୁରୀଙ୍କର ପିଲାଦିନରୁ ବାବାଜିମାନଙ୍କ ପ୍ରତି ବିତୃଷ୍ଣା ଜାତ ହୋଇଥିଲା ; ଅଥଚ କଲେଜରେ ପଢୁଥିଲା ବେଳେ ବନ୍ଧୁ ହରେକୃଷ୍ଣ ମହତାବଙ୍କ ସଙ୍ଗରେ ସି.ଆର୍.ଡି. ନାଇଡୁ ନାମକ ଜଣେ ସାଧକଙ୍କ ପ୍ରଭାବରେ ସେ ପ୍ରାଣାୟାମ ଇତ୍ୟାଦି ଶିକ୍ଷା କରିଥିଲେ । ଏହି ସାଧକ କଂଗ୍ରେସ ଆନ୍ଦୋଳନ ସହିତ ସମ୍ପୃକ୍ତ ଥିଲେ ଓ ଏହାଙ୍କ ସାନ୍ନିଧ୍ୟ ତାଙ୍କୁ କିଛି ପରିମାଣରେ ପ୍ରଭାବିତ କରିଥିଲା । ଦେଶର ମୁକ୍ତି ଲାଗି ସାହସୀ, ବଳିଷ୍ଠ ଓ ଚରିତ୍ରବାନ ଯୁବକ ଦରକାର, ଏହି ପ୍ରେରଣା ସେ ତାଙ୍କଠାରୁ ପାଇଥିଲେ । ସେତେବେଳକୁ ବିବେକାନନ୍ଦଙ୍କର ଦେହାନ୍ତ

ହୋଇଥାଏ । ତଥାପି ତାଙ୍କ ବାଣୀ ଯୁବମାନସରେ ଦେଶପ୍ରେମର ନିଆଁ ଜଳାଇ ରଖୁଥିଲା । ନାଇଡୁଙ୍କ ଛଡ଼ା ବହୁ ସନ୍ନ୍ୟାସୀ ଜାତୀୟ ଆନ୍ଦୋଳନରେ ଯୋଗଦେଇ ଓ ଦେଶ ଲାଗି ଜୀବନ ଉତ୍ସର୍ଗ କରିବା ଦିଗରେ ନବବାବୁଙ୍କ ଭଳି ଯୁବକମାନଙ୍କୁ ପ୍ରୋତ୍ସାହନ ଦେଇଥିଲେ । ଅସହଯୋଗ ଆନ୍ଦୋଳନ କାଳରେ ରାମଦାସ ନାମକ ଜଣେ ତରୁଣ ସନ୍ନ୍ୟାସୀ ଓଡ଼ିଶାରେ ବହୁ ବର୍ଷ ରହିଥିଲେ । ପଣ୍ଡିମା ସନ୍ନ୍ୟାସୀଙ୍କ ସହ ପୁରୀ ଆସି ଫେରିବା ବାଟରେ ସେ ବାଳକ ଅବସ୍ଥାରେ ଆଠଗଡ଼ରେ ରହିଯାଇଥିଲେ ଏବଂ ପରବର୍ତ୍ତୀ କାଳରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ଜେଲ୍ ଯାଇନଥିଲେ ସତ, କିନ୍ତୁ ସ୍ୱାଧୀନତା ସଂଗ୍ରାମରେ ୧୯୨୧ରୁ ୧୯୩୫ ମସିହା ପର୍ଯ୍ୟନ୍ତ ବେଶ୍ ମସ୍ତ ହୋଇ ରହିଥିଲେ । ୧୯୩୬ ମସିହା ବେଳକୁ ସେ ଋଷିକେଶ ନିକଟକୁ ଯାଇ ସେଠାରେ ଆଶ୍ରମ କରି ରହିଲେ । ନବବାବୁଙ୍କର ତାଙ୍କ ସହିତ ବେଶ୍ ସୌହାର୍ଦ୍ଦ୍ୟ ଥିଲା ।

ସାରଙ୍ଗଧର ଦାସଙ୍କ ସ୍ତ୍ରୀ ଫ୍ରିଡା ଦାସଙ୍କ ସଂସ୍ପର୍ଶରେ ଆସିବା ପରେ ନବବାବୁ ଆଧୁନିକ ସଭ୍ୟତା ଓ ଯୁକ୍ତିସିଦ୍ଧ ସଂସ୍କାର ଦିଗରେ ଆକୃଷ୍ଟ ହୋଇଥିଲେ । ଏହା ସଙ୍ଗେସଙ୍ଗେ ମାର୍କ୍ସବାଦ ଅଧ୍ୟୟନ ପରେ ସେ ଭଗବାନଙ୍କ ସମ୍ପର୍କରେ ସଂଶୟୀ ହୋଇଛନ୍ତି । ବିଧାନସଭାରେ ଶପଥ ନେଲାବେଳେ ସେ ଭଗବାନଙ୍କ ନାମରେ ଶପଥ ନେଉନଥିଲେ । ଭଗବାନଙ୍କ ନାମରେ କାହିଁକି ଶପଥ ନେଉନଥିଲେ ବୋଲି ରାଉରକେଲାର ଯତୀନ୍ଦ୍ରକୁମାର ମହାପାତ୍ର ଥରେ ନବବାବୁଙ୍କୁ ପଚାରିଥିଲେ । ତା'ର ଉତ୍ତରରେ ସେ କହିଥିଲେ, ''ମୁଁ ଭଗବାନଙ୍କ ସମ୍ପର୍କରେ କିଛି ଜାଣେନା ।''

ସେହି ନବକୃଷ୍ଣ ଚୌଧୁରୀ ଯେତେବେଳେ ପୁତ୍ରଶୋକରେ ବିହ୍ୱଳ ହୋଇଛନ୍ତି, ସେତେବେଳେ ଭଣଜା ଜିତେନ୍ଦ୍ରନାଥ ମହାନ୍ତିଙ୍କ ସହାନୁଭୂତିସୂଚକ ପତ୍ରର ଉତ୍ତରରେ ପ୍ରହ୍ଲାଦଙ୍କ ଭଗବାନଙ୍କୁ ପ୍ରାର୍ଥନା 'ନ ତ୍ୱହଂ କାମୟେ ରାଜ୍ୟମ୍ ନ ସ୍ୱର୍ଗଂ ନାପୁନର୍ଭବମ୍, କାମୟେ ଦୁଃଖତପ୍ତାନାଂ ପ୍ରାଣୀନାମ୍ ଆର୍ତ୍ତନାଶନମ୍' ଲେଖିଛନ୍ତି । ''...ଆମେ ଭଗବାନଙ୍କୁ ଡାକୁଛୁ ଯେପରି ଅନ୍ୟର ଦୁଃଖ ଘୁଞ୍ଚେଇବା କାର୍ଯ୍ୟରେ ଆମର ଜୀବନ କଟିଯାଏ... ।'' ଦେହାନ୍ତର ବର୍ଷକ ପୂର୍ବରୁ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ଏକ ଛାତ୍ରସଭାରେ ଉଦ୍‌ବୋଧନ ଦେଇଥିଲେ । ସେତେବେଳକୁ ନିଜର ପକ୍ଷାଘାତ ବୃଦ୍ଧି ପାଇଥାଏ । ସମାଜର ଚାରିଆଡ଼େ ଅନ୍ଧକାର ଓ ନିରାଶା । ସେହି ସଭାରେ ସେ କହିଥିଲେ, ''ଆମେ ସମାଜ ପାଇଁ କିଛି କରିବାକୁ ଚାହିଁଥିଲୁ । ଆମେ ଚାହିଁଥିଲୁ, ଏ ଦେଶକୁ ନୂତନ ଭାବରେ ଗଢ଼ିବାକୁ । ଆମ୍ଭେମାନେ ଯାହା କରିପାରିଲୁ ନାହିଁ, ତୁମ୍ଭେମାନେ ତାହା କରିବ... । ଜରା କଷ୍ଟ ବଡ଼ କଷ୍ଟ । ମୁଁ ଭଗବାନଙ୍କୁ ପ୍ରାର୍ଥନା କରୁଛି, ଶୀଘ୍ର ମୋତେ କିପରି ନେଇଯାଆନ୍ତୁ ।'' ଯେଉଁ ସ୍ୱପ୍ନ ନେଇ ସେ ନିଜକୁ ଉତ୍ସର୍ଗ କରିଥିଲେ, ସେସବୁ ଧୂଳିସାତ୍, ତା' ସାଙ୍ଗକୁ ବ୍ୟକ୍ତିଗତ ଜୀବନର ନାନା ଦୁର୍ଯୋଗ । ଏସବୁ

ଶେଷ ବେଳକୁ ତାଙ୍କୁ ଭାଙ୍ଗିପକାଇଥିଲା ।

ବୈଷ୍ଣବମାନେ କହନ୍ତି, ''ଯେବେ ହୁଏ ଧନନାଶ, ଯେବେ ହୁଏ ପୁତ୍ରନାଶ, ଯେବେ ହୁଏ ସର୍ବନାଶ, ତେବେ ମିଳେ ଗୋବିନ୍ଦ ବିଶ୍ୱାସ ।'' ନବବାବୁଙ୍କ କ୍ଷେତ୍ରରେ ଧନନାଶ ପ୍ରଶ୍ନ ନଥିଲା । ତାଙ୍କ ପାଇଁ ଦେଶର ଭବିଷ୍ୟତ ଥିଲା ଧନ । ସେ ଲକ୍ଷ୍ୟ କରିଥିଲେ, ଦେଶ ଅତି ଦୁର୍ଦ୍ଦିନ ଆଡ଼କୁ ଯାଉଛି । ଏଣୁ ବୈଷ୍ଣବ ଦୃଷ୍ଟିକୋଣରୁ ତାଙ୍କର ଭଗବତ୍ ବିଶ୍ୱାସ ଲାଗି ଆଉକିଛି ବାକି ନଥିଲା । ତେବେ ଏଭଳି ସବୁ ପ୍ରକାର ସର୍ବନାଶ ହୋଇଥିବା ବ୍ୟକ୍ତିର ପୃଥିବୀରେ ଆଉ କଅଣ କରିବା ଲାଗି କି ସାମର୍ଥ୍ୟ ବା ଥିବ ?

'ବୈଷ୍ଣବ ଜନ ତୋ ତେନେ କହିୟେ ଯେ ପୀଡ଼ ପରାୟ ଜାଣେରେ,

ପର ଦୁଃଖେ ଉପକାର କରେ ତୋୟେ, ମନ ଅଭିମାନ ନ ଆଣେରେ ।'... ଇତ୍ୟାଦି ବର୍ଣ୍ଣନା କରି ନରସିଁୟା ମେହେଟ୍ଟା ବୈଷ୍ଣବ ଜନଙ୍କର କେତେକ ଲକ୍ଷଣ ସୂଚାଇ ଦେଇଛନ୍ତି । ସେହି ଭଜନଟି ପଢ଼ିଲା ପରେ ମନେହୁଏ, ସେଥିରୁ ଅନେକଗୁଡ଼ିଏ ଲକ୍ଷଣ ନବକୃଷ୍ଣ ଚୌଧୁରୀଙ୍କର ଥିଲା, ବିଶେଷକରି ପରର ପୀଡ଼ାକୁ ନିଜେ ଅନୁଭବ କରିବାରେ । ଅଥଚ ବେଶଭୂଷା, ଖାଦ୍ୟପେୟ ଆଦି ଜୀବନଚର୍ଯ୍ୟାରେ ସେ ଥିଲେ ଅନେକ ପରିମାଣରେ ଅବଧୂତପନ୍ଥୀ । କିନ୍ତୁ ଏସବୁ ସଂସାରତ୍ୟାଗୀ ଓ ମୁକ୍ତିକାମୀ ଅଥବା ଆତ୍ମଜ୍ଞାନକାମୀଙ୍କ ଅପେକ୍ଷା ବୌଦ୍ଧିକ ଦିଗରୁ ସେ ପସନ୍ଦ କରୁଥିଲେ ଶ୍ରୀ ଅରବିନ୍ଦଙ୍କ ଚିନ୍ତାଧାରାକୁ । ବିଶେଷକରି ଅରବିନ୍ଦଙ୍କ ମାୟାବାଦ ଖଣ୍ଡନ, ସଂସାରବିମୁଖ ଯୋଗସାଧନା ପରିବର୍ତ୍ତେ ନୂଆ ଯୋଗ ପଦ୍ଧତି ଆବିଷ୍କାର ଓ ବିବର୍ତ୍ତନ ଉପରେ ଭିତ୍ତି କରି ମଣିଷର ଦିବ୍ୟ ଜୀବନର ସମ୍ଭାବନା ତାଙ୍କ ପାଇଁ ଅଧିକ ଗ୍ରହଣଯୋଗ୍ୟ ଥିଲା ।

ହେଲେ, ସେ ବିଦଗ୍ଧ ସମାଜକୁ ଛାଡ଼ି ତଳିଆ ଲୋକଙ୍କ ସହିତ ନିଜକୁ ମିଶାଇ ଦେଇଥିଲେ ଏବଂ ଅତି ସାଧାରଣ ଲୋକଙ୍କ ଲାଗି ଭାରି ଉପଯୋଗୀ ଧର୍ମ ଭାବରେ ଅଲେଖ ଧର୍ମକୁ ଅଧିକ ପସନ୍ଦ କରୁଥିଲେ । ଅଲେଖ ବାବାମାନଙ୍କର ଆଚାରବ୍ୟବହାର ତାଙ୍କୁ ଆକୃଷ୍ଟ କରିଥିଲା । ଏହାଛଡ଼ା ବ୍ରାହ୍ମଣ୍ୟ ଧର୍ମର ଜାତିଭେଦ ଓ ପୂଜା ଅର୍ଚ୍ଚନା ଏବଂ ମନ୍ତ୍ରତନ୍ତ୍ରକୁ ବିରୋଧ କରିବା ଭିତରେ ଅଲେଖ ଧର୍ମ ଏକ ବିଦ୍ରୋହୀ ଧର୍ମ ଭାବରେ ଗଢ଼ିଉଠିଥିବାରୁ ନବବାବୁ ଏହି ଧର୍ମକୁ ପସନ୍ଦ କରୁଥିଲେ । ନିଜେ ମହିମାଧର୍ମଭୁକ୍ତ ନଥିଲେ ବି ସେହି ଧର୍ମର ବିଶିଷ୍ଟ ସାଧୁ ବିଶ୍ୱନାଥ ବାବାଙ୍କ ସହିତ ନବବାବୁଙ୍କର ଖୁବ୍ ଘନିଷ୍ଠତା ଥିଲା । ମହିମାଗାଦି ବା ମହିମା ଧର୍ମାବଲମ୍ବୀଙ୍କ ମଧ୍ୟରେ ଦ୍ୱନ୍ଦ୍ୱର ସମାଧାନ ପାଇଁ ସେ ବହୁବାର ଉଦ୍ୟମ କରିଥିଲେ ଏବଂ ମହିମା ଧର୍ମାଲୋଚନା ସମିତି ତରଫରୁ ପ୍ରକାଶିତ ପୁସ୍ତକପୁସ୍ତିକାମାନଙ୍କର ସୌଜନ୍ୟ-ସମ୍ପାଦକ ବି ଥିଲେ ।

ଯୋରନ୍ଦା ଗାଦି ପ୍ରତିଷ୍ଠା କାଳରେ ତତ୍କାଳୀନ ଢେଙ୍କାନାଳ ରାଜା ଭାଗୀରଥି ଭ୍ରମରବର ଓ ତାଙ୍କର ମା' ମହିମା ସ୍ୱାମୀଙ୍କର ଭକ୍ତ ଭାବରେ ଗାଦି ଉଦ୍ଦେଶ୍ୟରେ ଜମି ଆଦି ଖଞ୍ଜିଦେଇଥିଲେ । ଏହି କାରଣରୁ ଢେଙ୍କାନାଳ ପ୍ରଜାମଣ୍ଡଳ ଲୋକେ ୧୯୪୮ ମସିହାରେ ଏହି ଗାଦି ଦଖଲ କରିବାକୁ ଉଦ୍ୟମ କରିଥିଲେ । ପ୍ରଜାମଣ୍ଡଳର ପ୍ରାୟ ୨୦୦ ଲୋକ ଗାଦିର ଧର୍ମଶାଳା ଓ ଦାଣ୍ଡି ଘରର ୧୫ ବଖରା ପର୍ଯ୍ୟନ୍ତ ଘରେ ପ୍ରାୟ ୧୫ ଦିନ ରହିଥିଲେ । ପ୍ରଜାମଣ୍ଡଳ ଲୋକେ କଟକ ଆସି ହରେକୃଷ୍ଣ ମହତାବ ଓ ମାଳତୀଦେବୀଙ୍କ ନିକଟରେ ଦରଖାସ୍ତ କରି ଜଣାଇଲେ ଯେ ଅଲେଖ ବାବାମାନେ ରାଜାପକ୍ଷର ଲୋକ, ଏଣୁ ସେମାନଙ୍କୁ ଯୋରନ୍ଦା ଗାଦିରୁ ତଡ଼ିବାକୁ ହେବ । ମହତାବବାବୁ ସେ ଦରଖାସ୍ତଟି ନବକୃଷ୍ଣ ଚୌଧୁରୀଙ୍କ ନିକଟକୁ ପଠାଇଦେଇଥିଲେ । ବିଶ୍ୱନାଥ ବାବା ସେତେବେଳେ ଆଠଗଡ଼ରେ ଥାଆନ୍ତି । ସେ ଏ ଖବର ପାଇ କଟକ କ୍ୟାଣ୍ଟନମେଣ୍ଟ ରୋଡ୍‌ର ୭ ନମ୍ବର କୋଠିରେ ପହଞ୍ଚି ନବବାବୁଙ୍କୁ ପ୍ରଜାମଣ୍ଡଳ କର୍ମୀମାନଙ୍କ କାର୍ଯ୍ୟକଳାପ ସମ୍ପର୍କରେ ଅଭିଯୋଗ କରିଥିଲେ । ପ୍ରାୟ ଦୁଇଘଣ୍ଟା ଧରି ଆଲୋଚନା ହେଲା, ମାଳତୀଦେବୀ ପ୍ରଜାମଣ୍ଡଳ କର୍ମୀମାନଙ୍କ ପକ୍ଷ ନେଇ ନାନା ଯୁକ୍ତି ଦର୍ଶାଇଥିଲେ । ବିଶ୍ୱନାଥ ବାବା ମାଳତୀଦେବୀଙ୍କ ଯୁକ୍ତିକୁ ଖଣ୍ଡନ କରି ମହିମା ଗାଦିର ଦାବି ପ୍ରାଞ୍ଜଳ ଭାବରେ ଉପସ୍ଥାପନ କରିଥିଲେ । ନବବାବୁ ସବୁ ଶୁଣି ନିଷ୍ପତ୍ତି ଶୁଣାଇଲେ ଯେ ପ୍ରଜାମଣ୍ଡଳରେ ଲୋକେ ସପ୍ତାହକ ମଧ୍ୟରେ ମହିମା ଗାଦି ପରିସରରୁ ବାହାରିଯିବେ ।

ଏହାପରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିବା ସମୟରେ ୧୯୫୧ ମସିହା ମାଘ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ବଲ୍‌କଳଧାରୀ ଓ କୌପୀନଧାରୀ ସାଧୁମାନଙ୍କ ବିବାଦ ତୁଟାଇବାକୁ ଯୋରନ୍ଦା ଯାଇଥିଲେ । ସାଙ୍ଗରେ ଥିଲେ ମାଳତୀଦେବୀ ଏବଂ ତାଙ୍କର ଜଣେ ପ୍ରିୟ ଅନୁଗାମୀ ଲୋକନାଥ ପ୍ରଧାନ । ଉଭୟ ବଲ୍‌କଳଧାରୀ ଓ କୌପୀନଧାରୀ ସାଧୁମାନେ ତାଙ୍କୁ ପାଛୋଟି ନେଲେ । ମୁଖ୍ୟମନ୍ତ୍ରୀ ଯାଇଥାନ୍ତି ବୋଲି ନୂଆ ଖଟ, ନୂଆ ଶେଯ ଓ ତକିଆ ଇତ୍ୟାଦି ଦୁଇଟି ବଖରାରେ ସଜା ହୋଇଥିଲା । ନବବାବୁ ବାବାମାନଙ୍କୁ କହିଲେ, ''ଆପଣମାନେ ତ ସମସ୍ତେ ଭୂମିଶାୟୀ, ଆମ ପାଇଁ ଏ ବ୍ୟବସ୍ଥା କାହିଁକି କଲ ?'' ସେମାନଙ୍କ ଅନିଚ୍ଛା ସତ୍ତ୍ୱେ ସେ କିଛି ପାଳ ମଗାଇ ବିଛଣା ଲାଗି ଖଣ୍ଡେ ଖଜୁରି-ପଟି ମଗାଇ, ତା' ଉପରେ ନିଜ ବିଛଣା ବିଛାଇଦେଲେ । ତା'ପରେ ଜଣେ ସାଧୁ ଏକ ବିରାଟ ପିତ୍ତଳ ବାସନରେ କଟକରୁ ଅଣାଯାଇଥିବା ମିଠା ଅଙ୍ଗୁର, କମଳା ଆଦି ଖାଇବା ପାଇଁ ରଖିଲେ । ନବବାବୁ ସେସବୁ ଖାଇବାକୁ ମନାକଲେ । ସେତେବେଳକୁ ରୋଷେଇଖିଆ ସରିଥାଏ ଓ ରାତିର ରୋଷେଇ ବ୍ୟବସ୍ଥା ନଥାଏ । ଏଣୁ କିଛି ଚୁଡ଼ା, କଦଳୀ, ଗୁଡ଼ ଏବଂ ଆଚାରରେ ରାତ୍ରିଭୋଜନ ହେଲା ।

ଶୂନ୍ୟମନ୍ଦିର ନିକଟସ୍ଥ ଧ୍ୱନି ନିକଟରେ 'ଗୁରୁ ଅନାଦି ମହିମା ରଖ, ମହିମା ଟେକ' ଭଜନ ମୁଖରିତ ହେଉଥାଏ । ଉଭୟ ନବବାବୁ ଓ ମାଳତୀଦେବୀ ସେଠାରେ ସେମାନଙ୍କ ସହିତ କିଛି ସମୟ ଧ୍ୱନି କରି ବିଚାରଆଲୋଚନା ସ୍ଥଳକୁ ଗଲେ । ସେଠାରେ ନବବାବୁ କହିଲେ, ''ଶରୀରଟିରୁ ଦୁଇଟି ହାତ ପରି ଗୋଟିଏ ଧର୍ମରୁ ଆପଣମାନଙ୍କର ଦୁଇଟି ରୂପାନ୍ତର ହୋଇଛି । ପରିଧାନ ଭିନ୍ନ ହେଲେ ମଧ୍ୟ ମତାନ୍ତର ହେବା ଉଚିତ ନୁହେଁ । ଶୂନ୍ୟ-ପ୍ରଭୁ ସମସ୍ତଙ୍କର ଆରାଧ୍ୟ, ତାଙ୍କଠାରେ ସମସ୍ତଙ୍କର ଦାବି ଅଛି । ଏଥିପାଇଁ ଆପଣମାନେ ସାଂସାରିକ ଲୋକଙ୍କ ପରି କୋର୍ଟ କଚେରିକୁ ଯିବା ଦୁର୍ଭାଗ୍ୟଜନକ ।'' ଏହାଶୁଣି ଉଭୟ ମୌନ ରହିଲେ ଓ ନବବାବୁଙ୍କ କଥା ଗ୍ରହଣ କଲାଭଳି ଜଣାଗଲା, କିନ୍ତୁ ସେମାନଙ୍କର ପୂର୍ବର ମତାନ୍ତର ରହିଗଲା ବୋଲି ପରେ ଜଣାଗଲା ।

ନବକୃଷ୍ଣ ଚୌଧୁରୀ ଦର୍ଶନର ଛାତ୍ର ତ ଥିଲେ, କିନ୍ତୁ ତାଙ୍କ ବିଚାର ସର୍ବଦା ବୈଜ୍ଞାନିକ ଯୁକ୍ତି ଉପରେ ପ୍ରତିଷ୍ଠିତ ଥିଲା । ସେଥିଲାଗି ସେ ଶଙ୍କରଙ୍କ ଅଦ୍ୱୈତ ବେଦାନ୍ତର ବିଚାରକୁ ପୁରୁଣାକାଳିଆ ବୋଲି ବିଚାର କରୁଥିଲେ । ସେଇଥିଯୋଗୁଁ ଅରବିନ୍ଦ ଓ କୃଷ୍ଣମୂର୍ତ୍ତିଙ୍କ ବିଚାରଧାରାକୁ ସେ ଅଧିକ ପସନ୍ଦ କରୁଥିଲେ । ପ୍ରାର୍ଥନା ତାଙ୍କ ଦୈନନ୍ଦିନ କାର୍ଯ୍ୟକ୍ରମର ଅପରିହାର୍ଯ୍ୟ ଅଙ୍ଗ ନଥିଲା ; କିନ୍ତୁ ପ୍ରାର୍ଥନା ସମୟରେ ଉପସ୍ଥିତ ଥିଲେ, ସେ ସେଥିରେ ଅଂଶ ଗ୍ରହଣ କରୁଥିଲେ ।

ଯେଭଳି ବେଶଭୂଷା ଓ ଆଚରଣରେ ସେ ଗାନ୍ଧିଜନଙ୍କ ପରି ଦେଖାଯାଉ ନଥିଲେ ବି ବହୁ ମୌଳବାଦୀ ଗାନ୍ଧିଜନଙ୍କଠାରୁ ତାଙ୍କର ଗାନ୍ଧିବୋଧ ଥିଲା ଅଧିକ ଗଭୀର, ଠିକ୍ ସେହିପରି ଧାର୍ମିକ ଲୋକଙ୍କପରି ବେଶଭୂଷା ଓ ଆଚାର ନଥିଲେ ବି ସେ ଥିଲେ ପରମ ଧାର୍ମିକ । ତାଙ୍କ ପାଇଁ ଧର୍ମର ସଂଜ୍ଞା ଓ ତତ୍ତ୍ୱ ପାରମ୍ପରିକ ଧାର୍ମିକ ଆଚାରବିଚାରଠାରୁ ଥିଲା ସମ୍ପୂର୍ଣ୍ଣ ଭିନ୍ନ । ତାଙ୍କଠାରେ ବୈଷ୍ଣବୀୟ ଗୁଣାବଳୀ ଓ ଅବଧୂତର ଚରିତ୍ର କିଛି ପରିମାଣରେ ଥିଲେ ବି ସେ ଲୋକଙ୍କ ଭିତରର ଜଣେ ହୋଇଯାଇଥିବାରୁ ଅଲେଖ ଧର୍ମ ଭଳି ଏକ ସରଳ, ସୂକ୍ଷ୍ମ ଏବଂ ବିଦ୍ରୋହୀ ଧର୍ମାବଲମ୍ବୀଙ୍କର ଥିଲେ ନିକଟତର ।

ବାଜି ରାଉତ ଛାତ୍ରାବାସ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ ଶିଳ୍ପୀ ଜଗନ୍ନାଥ ଦାସ (ଜଗା ଭାଇ) ଜଣେ ଅଲେଖ ବାବାଙ୍କୁ ଦେଖି ବିଦ୍ରୂପ କରିବାରୁ ନବବାବୁ ତାଙ୍କୁ ତାଗିଦ୍ କରି କହିଥିଲେ, ''ତୁ ଅନ୍ୟ ଧର୍ମର ବାବାଜି, ସନ୍ନ୍ୟାସୀଙ୍କୁ ଯାହା କହିଲେ କହିବୁ, ଅଲେଖ ବାବାଙ୍କୁ ସେଭଳି କହିବୁ ନାହିଁ ।'' ଅଲେଖ ସନ୍ନ୍ୟାସୀମାନଙ୍କର ସରଳ ଓ ନୀତିନିଷ୍ଠ ଜୀବନ ସମ୍ପର୍କରେ ସେ ଜଗନ୍ନାଥ ଦାସଙ୍କୁ ବୁଝାଇ କହିଲେ ଯେ ଅଲେଖ ବାବାଜିମାନେ ମଠ କରି ସମ୍ପତ୍ତି ସଞ୍ଚୟ କରନ୍ତି ନାହିଁ । ଗୋଟିଏ ଗାଁର ଗୋଟିଏ ପରିବାରରୁ ଥରେମାତ୍ର ରନ୍ଧାଖାଦ୍ୟ ଖାଇଥାନ୍ତି ।

ଗାଁ ଦାଣ୍ଡରେ ବା ଗାଁ ମୁଣ୍ଡ ପରିଷ୍କାର ସ୍ଥାନରେ ବା ବେଢ଼ା ବାହାରେ ପତ୍ର ବା ମାଟିପାତ୍ରରେ ପ୍ରସାଦ ଗ୍ରହଣ କରନ୍ତି । ରନ୍ଧାଖାଦ୍ୟ ଖାଇବାର ତାତ୍ପର୍ଯ୍ୟ ହେଲା, ସେମାନେ ଯେକୌଣସି ଜାତିର ଲୋକଙ୍କ ରନ୍ଧା ଖାଇବେ ଓ ଦାତାଙ୍କ ମଙ୍ଗଳ କାମନା କରିବେ । ଯେଉଁ ଗ୍ରାମରୁ ଭିକ୍ଷା ନ ମିଳିବ, ସେ ଗାଁ ମୁଣ୍ଡ ପୋଖରୀରୁ ତିନି ଆଞ୍ଜୁଳା ପାଣି ପିଇ ଗ୍ରାମବାସୀଙ୍କ ମଙ୍ଗଳ କାମନା କରିବେ । ବିନା ବିଛଣାରେ ମାଟିରେ ଶୋଇବେ । ଦୁଃଖ ଓ ବିପଦଗ୍ରସ୍ତ ହୋଇ ବିଚରଣ କରିବେ । ପ୍ରାଣୀର ଅମଙ୍ଗଳ ପାଞ୍ଚିବେ ନାହିଁ । ଦୁଃଖସୁଖରେ ସମଜ୍ଞାନୀ ହୋଇ ବିଚରଣ କରିବେ । ଅନ୍ୟ ଯାହାଠାରୁ ଯାହା ଗ୍ରହଣ କଲେ ବି ରାଜା, ବ୍ରାହ୍ମଣ, ମଠ ଓ ଭିକ୍ଷାଜୀବୀଙ୍କଠାରୁ ଖାଦ୍ୟ ବା ଅନ୍ୟ କିଛି ଗ୍ରହଣ କରିବେ ନାହିଁ । ଟଙ୍କାପଇସା ହାତରେ ରଖିବେ ନାହିଁ ବା କେଉଁଠି ସଞ୍ଚୟ କରିବେ ନାହିଁ । କେହି ସନ୍ନ୍ୟାସୀଙ୍କୁ ଅର୍ଥ ବା ସ୍ୱର୍ଣ୍ଣ ଆଦି ଦାନ ଦେଲେ ସେମାନେ ସେସବୁ ଯଥାର୍ଥରେ ବ୍ୟୟ କରନ୍ତି ।

ଯେତେବେଳେ ବ୍ରାହ୍ମଣ୍ୟ ଧର୍ମ ନିଜର ଆକର୍ଷଣ ହରାଇ ମୂର୍ତ୍ତିପୂଜା ଓ ମନ୍ତ୍ରତନ୍ତ୍ରରେ ବୁଡ଼ିରହି ବ୍ରହ୍ମଜ୍ଞାନ ଭୁଲିଥିଲା ଏବଂ ଜାତିଭେଦ ଦ୍ୱାରା ହିନ୍ଦୁଧର୍ମକୁ ବିପନ୍ନ କରିଥିଲା, ଓଡ଼ିଶାର ପାହାଡ଼ଜଙ୍ଗଲଘେରା ବିସ୍ତୀର୍ଣ୍ଣ ଅଞ୍ଚଳରେ ସେହି ସମୟରେ ଏହି ଲୋକଧର୍ମର ଆବିର୍ଭାବ । ଏହି ଆଲୋଚ୍ୟ ବାବାମାନେ ସରଳ ଭାଷାରେ ସାଧାରଣ ଲୋକଙ୍କ ପାଖରେ ବ୍ରହ୍ମଜ୍ଞାନର କେତେକ ମୌଳିକ କଥା ପହଞ୍ଚାଇଦେଇଥିଲେ ଏବଂ ମୂର୍ତ୍ତିପୂଜା ଓ ମନ୍ତ୍ରତନ୍ତ୍ର ବିରୋଧରେ ଏକ ପ୍ରବାହ ସୃଷ୍ଟି କରିପାରିଥିଲେ । ବିଶେଷକରି ରାଜା ଏବଂ ରାଜତନ୍ତ୍ରର ରକ୍ଷକ ତଥା ପ୍ରଶସ୍ତିଗାନକାରୀ ବ୍ରାହ୍ମଣମାନଙ୍କ ବିରୋଧରେ ସେ ପର୍ଯ୍ୟନ୍ତ କୌଣସି ଧର୍ମ ସ୍ୱର ଉତ୍ତୋଳନ କରିପାରୁ ନଥିଲା । ବ୍ରାହ୍ମଣ୍ୟ ହିନ୍ଦୁଧର୍ମ ଛଡ଼ା ବୌଦ୍ଧ, ଜୈନ, ବୈଷ୍ଣବ ଆଦି ଧର୍ମ ରାଜାଶ୍ରିତ ହୋଇ ପ୍ରସାର ଲାଭ କରିଥିଲା, କିନ୍ତୁ ମହିମାଧର୍ମ ନାନା ସଂସ୍କାର ଓ ମୌଳିକ ଧାର୍ମିକ ଚିନ୍ତାଧାରାକୁ ପାଥେୟ କରି ପ୍ରାୟ ଏକଶତ ବର୍ଷ ପର୍ଯ୍ୟନ୍ତ ପଶ୍ଚିମ ଓଡ଼ିଶାରେ ବିସ୍ତାର ଲାଭ କରିଥିଲା । ଦୀକ୍ଷାଗୁରୁଙ୍କୁ ଗୁରୁତ୍ୱ ଦିଆଯାଉଥିଲେ ବି ଏହି ଅଲେଖପନ୍ଥୀମାନେ ଗୁରୁବାଦର ବିରୋଧୀ ଥିଲେ । ଏସବୁକୁ ବିଚାର କଲେ ମହିମା ଧର୍ମ ହିନ୍ଦୁଧର୍ମର ଏକ ସଂସ୍କାରପନ୍ଥୀ ବୈପ୍ଲବିକ ଧର୍ମଧାରା ।

ଏସବୁ ସତ୍ତ୍ୱେ କୌପୀନଧାରୀ ଓ ବଳ୍କଳଧାରୀ ଅଲେଖ ଧର୍ମାବଲମ୍ବୀମାନଙ୍କର ମହିମାଗାଦି ଲାଗି ଦ୍ୱନ୍ଦ୍ୱ ଓ ବିଚାର ଅପେକ୍ଷା ମହିମାଗୁରୁମାନଙ୍କର ଅଲୌକିକତା ପ୍ରଚାର ଆଦି ଲକ୍ଷ୍ୟ କରି ନବବାବୁ ଶେଷ ବେଳକୁ ନିରାଶ ହୋଇଥିଲେ । ତାଙ୍କର ମୃତ୍ୟୁର ମାତ୍ର ପାଞ୍ଚମାସ ପୂର୍ବରୁ 'ମହିମାଗାଦି, ମହିମା ଧର୍ମ ଇତିହାସ' ବହିର ମୁଖବନ୍ଧରେ ସେ ଯେଉଁ ଅଭିମତ ଦେଇଛନ୍ତି, ତାହା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ସେଥିଲାଗି ସେ ବହିର ଅଭିମତଟି ଏଠାରେ ଉଦ୍ଧାର କରାଗଲା ।

# ଅଭିମତ

ମହିମାଗାଦି, ମହିମାଧର୍ମ ଇତିହାସ ଦେଖିଲି । ମହିମାଗାଦିର ମହତ୍ତ୍ୱ ଚିରକାଳକୁ ଯେପରି ରହିବ, ତାହା ଜାଣିବା, ଶୁଣିବା ଓ ବୁଝିବା ଆବଶ୍ୟକ । କାରଣ, ଆମେ ଯେତେବେଳେ ଦେଶ ସ୍ୱାଧୀନ ନିମିତ୍ତ ଗାଁଗଣ୍ଡାରେ ବୁଲି କର୍ମ କରୁଥିଲୁ, ସେତେବେଳେ ମହିମାଧର୍ମର ସାଧୁ, ସନ୍ନ୍ୟାସୀମାନଙ୍କୁ ଦେଖିଲେ ଇଚ୍ଛାସୁଖେ ନତମସ୍ତକ ହୋଇଯାଉ । ସେହିପରି ସାଧୁ ସନ୍ନ୍ୟାସୀମାନେ ଧର୍ମ ନିୟମ ନିଷ୍ଠାରେ ଭୂଷିତ ହୋଇରହିଲେ ଧର୍ମଧାମର ମହତ୍ତ୍ୱ ବିକଶିତ ହେଉଥିବ । କେବଳ କୋଠାଘର, ଦେଉଳ, ଅଟ୍ଟାଳିକା ଇତ୍ୟାଦି ବଢ଼ାଉଥିଲେ ଧର୍ମଧାମର ମହତ୍ତ୍ୱ ବଢ଼ିବ ନାହିଁ । ଏହି ଭାବକୁ ହୃଦୟଙ୍ଗମ କରି ସାଧୁ ସନ୍ନ୍ୟାସୀମାନେ ଭ୍ରମଣ କରନ୍ତୁ । ସଦାଚାର ଓ ଲୋକମାନଙ୍କ ପ୍ରତି ସଦ୍ଭାବନା ରଖି ସଭାସମିତିରେ ତାହା ପ୍ରକାଶ କରିବା ସମୁଚିତ । କାରଣ ଧର୍ମ ନୀତି, ନିୟମ ଅନୁସାରେ କେତେକ ଧର୍ମର ଉତ୍ଥାନ, ପତନ ଘଟୁଛି । ମହିମା ମହାପ୍ରଭୁଙ୍କର ସେ ବିଷୟରେ କୃପା ଥାଉ, ସେପରି ଉତ୍‌ଥାନ, ପତନ ଏ ଧର୍ମରେ ନ ଘଟୁ ।

ଅବଧୂତ ସ୍ୱାମୀ ବିଶ୍ୱନାଥ ବାବାଙ୍କ ଦର୍ଶନ ଗ୍ରନ୍ଥ ପଢ଼ିଛି । ବାବାଙ୍କୁ ଜଣାଇଦେଇଛୁ ଓ ସାକ୍ଷାତରେ ମଧ୍ୟ କହିଛୁ; ଏ ସୁମହତ୍ ଗ୍ରନ୍ଥ ଯେପରି ଚିରଦିନକୁ ଲୋକମାନଙ୍କ ଦ୍ୱାରା ଆଦୃତ ହୋଇରହିବ । ବାବା ସ୍ୱାମୀଙ୍କ ବିଚାରଧାରା ହେଉଛି, କେବଳ ଧର୍ମର ନୀତି ନିୟମ ସୁରକ୍ଷା, କି ଗୃହସ୍ଥ, କି ସନ୍ନ୍ୟାସୀ, ସର୍ବେ ଏ ବିଷୟରେ ଜାଗ୍ରତ ହୁଅନ୍ତୁ । ଆଉ ମଧ୍ୟ ସାଧୁ, ସନ୍ନ୍ୟାସୀମାନେ ଏପରି କାର୍ଯ୍ୟ କରନ୍ତୁ, ଯଦ୍ଦ୍ୱାରା ଆମ୍ଭେମାନେ ଦେଖିଲେ ନତମସ୍ତକ ହେଉଥିବୁ ।

କଟକ — ନବକୃଷ୍ଣ ଚୌଧୁରୀ

ତା ୨୦-୧-୧୯୮୪ରିଖ

ନବବାବୁ କୌଣସି ନିର୍ଦ୍ଦିଷ୍ଟ ରାଜନୈତିକ ଆଦର୍ଶବାଦର ଗଣ୍ଡିରେ ସୀମିତ ନ ରହିଲା ଭଳି ମଧ୍ୟ କୌଣସି ଗୋଷ୍ଠୀଅନ୍ତର୍ଗତ ନଥିଲେ । ନାଗାମାନଙ୍କ ସାହସକୁ ସେ ଯେପରି ତାରିଫ୍ କରିଛନ୍ତି, ସେଥିରୁ ମନେହୁଏ ଯେ ସେ ବି ଶକ୍ତିର ଉପାସକ । ରାଜନୀତିର ଲୋକେ ତାଙ୍କର ମୂଲ୍ୟାୟନ ବେଳେ ଯେଉଭଳି ଅସୁବିଧାରେ ପଡ଼ନ୍ତି, ଧାର୍ମିକ ଦୃଷ୍ଟିକୋଣରୁ ଦେଖିଲାବେଳେ ସେ ବି ସେମିତି ନିର୍ଦ୍ଦିଷ୍ଟ ଧାର୍ମିକ ରଙ୍ଗର ଜଣାପଡ଼ନ୍ତି ନାହିଁ । ସେ ଭାବବାଦରେ ବିଶ୍ୱାସୀ ନୁହନ୍ତି କି ବସ୍ତୁବାଦରେ ବିଶ୍ୱାସୀ ନୁହନ୍ତି; ପୁଣି ଏସବୁଠାରୁ ଆହୁରି କିଛି ଉନ୍ନତତର ସଂଶ୍ଳେଷଣର ଅନ୍ୱେଷଣରେ ଥିବାଭଳି ଜଣାଯାଉଥିଲେ ବୋଲି ତାଙ୍କର ଦାର୍ଶନିକ ଭଣଜା ଜିତେନ୍ଦ୍ରନାଥ ମହାନ୍ତି କହନ୍ତି ।

ବାରିପଦା ଜେଲରୁ ଯେଉଁସବୁ ଚିଠି ଲେଖିଛନ୍ତି, ତହିଁରୁ ଜଣାଯାଏ ଯେ, ସେ ପୁନର୍ଜନ୍ମରେ ବିଶ୍ୱାସ କରନ୍ତି ନାହିଁ ଏବଂ ପାତଞ୍ଜଳିଙ୍କ ବସ୍ତୁନିଷ୍ଠ ତର୍କସିଦ୍ଧ ବୈଜ୍ଞାନିକ ଆଲୋଚନାଭଙ୍ଗୀ ତାଙ୍କୁ ଭଲ ଲାଗେ । ସବୁକଥାରେ ଧର୍ମକୁ ଯୋଡ଼ନ୍ତି ବୋଲି ଗାନ୍ଧିଜୀଙ୍କୁ ସମାଲୋଚନା କରୁଥିବା ଯୁବକ ନବକୃଷ୍ଣ ଚୌଧୁରୀ ଅନ୍ତିମକାଳରେ ସାଧାରଣ ଲୋକଙ୍କର ଧର୍ମଭାବ ଲୋପ ପାଇଯିବାରେ ବ୍ୟଥିତ ହେଉଥିବାର ଜଣାଯାଏ । ଚମ୍ପତିମୁଣ୍ଡା ବିଦ୍ୟାଳୟରେ ରହୁଥିଲା ବେଳେ ଅଧକ୍ଷ ଜୟନାରାୟଣ ଦାସ ଥରେ ତାଙ୍କୁ ପଚାରିଥିଲେ 'ବାପି ! ସବୁ ଧର୍ମ ମଧ୍ୟରେ କେଉଁ ଧର୍ମ ଭଲ ?' ସେ ଭାବିଥିଲେ, ନବବାବୁ କହିବେ ଖ୍ରୀଷ୍ଟଧର୍ମ ବୋଲି । କିନ୍ତୁ ନବବାବୁ କହିଥିଲେ, ''ସବୁ ଧର୍ମ ମଧ୍ୟରେ ହିନ୍ଦୁଧର୍ମ ଭଲ, କାରଣ ହିନ୍ଦୁ ଧର୍ମ ଏକ ଅତି ଉଦାର ତଥା ଉନ୍ନତ ଧର୍ମ । ଏଥିରେ ଭିନ୍ନ ମତକୁ ସହ୍ୟ କରାଯାଏ । ଏପରିକି ହିନ୍ଦୁ ଧର୍ମର ବିଭିନ୍ନ ସମ୍ପ୍ରଦାୟ ଛଡ଼ା ଅନ୍ୟ ଧର୍ମର ଅନୁଗାମୀମାନେ ବି ସତ୍ୟ ବା ଭଗବାନଙ୍କୁ ପାଇପାରିବେ, ଏହା ହିନ୍ଦୁ ବିଶ୍ୱାସ କରେ ।''

**ଗାନ୍ଧିବୋଧ :**

ଅସହଯୋଗ ଆନ୍ଦୋଳନ କାଳରେ ଗାନ୍ଧିଜୀଙ୍କ ଆହ୍ୱାନରେ ଓଡ଼ିଶାର ଯେଉଁ କେତେଜଣ ସ୍କୁଲ, କଲେଜ ଓ କଚେରି ତଥା ଅଫିସ୍ ଛାଡ଼ିଥିଲେ, ନବକୃଷ୍ଣ ଚୌଧୁରୀ ଥିଲେ ସେମାନଙ୍କ ମଧ୍ୟରୁ ଜଣେ । କିନ୍ତୁ ବନ୍ଧୁ ହରେକୃଷ୍ଣ ମହତାବଙ୍କ ଭଳି ସେ ୧୯୨୧ ମସିହାରୁ ଗାନ୍ଧିଜୀଙ୍କର ଏକାନ୍ତ ଅନୁଗାମୀ ନ ଥିଲେ । ଓଡ଼ିଶାରେ ରାଜକୃଷ୍ଣ ବୋଷ, ହରେକୃଷ୍ଣ ମହତାବ ଆଦି ୧୯୨୧ରୁ ୧୯୨୯ ମସିହା ପର୍ଯ୍ୟନ୍ତ ଗାନ୍ଧିଜୀଙ୍କ ଆହ୍ୱାନରେ ଏକାଧିକବାର କାରାବରଣ କରିଥିଲେ ଓ ତାଙ୍କ ଓଡ଼ିଶା ଗସ୍ତ ବେଳେ ତାଙ୍କ ଗହଣରେ ରହି ସମ୍ପୃକ୍ତ କାର୍ଯ୍ୟକ୍ରମ ପରିଚାଳନା କରିଥିଲେ । ୧୯୪୬ ମସିହା ପର୍ଯ୍ୟନ୍ତ ମହତାବବାବୁ ଗାନ୍ଧିଜୀଙ୍କ ସହିତ ଓଡ଼ିଶା ବିଷୟରେ ଘନିଷ୍ଠ ସମ୍ପର୍କ ରଖୁଥିଲେ ।

ନବକୃଷ୍ଣ ଚୌଧୁରୀ କଲେଜ ଛାଡ଼ିଲା ପରେ ୧୯୨୧ରୁ ୧୯୨୯ ପର୍ଯ୍ୟନ୍ତ ଜେଲ୍ ଯାଇନଥିଲେ ବି ଗାନ୍ଧିଜୀଙ୍କ ରଚାନତ୍ମକ କାର୍ଯ୍ୟକ୍ରମ ଚାଲୁରଖିବା ପାଇଁ ଉଦ୍ଦିଷ୍ଟ ଅଲକାଶ୍ରମରେ ବହୁ ବର୍ଷ ରହି ନଥିଲେ । ଅବଶ୍ୟ ଲୁଗାବୁଣା ତାଲିମ ନେବାପାଇଁ ସେ ୧୯୨୨ ମସିହାରେ ସାବରମତୀ ଆଶ୍ରମକୁ ଯାଇଥିଲେ । କିନ୍ତୁ ତାହା ନିରୋଳା ଖଦି କାମ ନ ଥିଲା । ଆଦରର ଦୁଃଖୀ (ସରଳାଦେବୀ)ଙ୍କୁ ଆର୍ଥିକ ସହାୟତା ଦେଇ ଆତ୍ମନିର୍ଭରଶୀଳ ହେବା ଦିଗରେ ସକ୍ଷମ କରାଇବା ଥିଲା ତାଙ୍କର ଅନ୍ୟତମ ଲକ୍ଷ୍ୟ । ୧୯୨୧ ମସିହାରେ 'ବର୍ଷକରେ ସ୍ୱରାଜ' ବୋଲି ଗାନ୍ଧିଜୀ ଯେଉଁ ଆହ୍ୱାନ ଦେଇଥିଲେ, ମହତାବ ଆଦିଙ୍କ ଭଳି, ସେଥିରେ ତାଙ୍କର ପ୍ରାୟ ଖୁବ୍ ଆସ୍ଥା ନଥିଲା । ନହେଲେ ସେ ବି ସେହି ସମୟରେ ଜେଲ୍ ଯାଇପାରିଥାନ୍ତେ ।

ସେ କିପରି ଗାନ୍ଧିବୋଧର ଏକ ବିନ୍ଦୁଠାରୁ ଆରମ୍ଭ କରି ଅହିଂସ ସାମ୍ୟବାଦ (ସମାଜବାଦକୁ ସେତେବେଳେ ସାମ୍ୟବାଦ କୁହାଯାଉଥିଲା) ଓ ମାର୍କ୍ସବାଦ ତଥା ଲେନିନ୍‌ବାଦ ଦେଇ ପୁଣି ଗାନ୍ଧିଙ୍କ ପାଖରେ ପହଞ୍ଚିଛନ୍ତି, ତାହା ଓଡ଼ିଶା ବିଧାନସଭାର ୧୯୫୨-୫୩ ମସିହା ଅତିରିକ୍ତ ଖର୍ଚ୍ଚ ଦାବି ଉପରେ ତାଙ୍କ ଭାଷଣରୁ ଜଣାଯାଏ । ୧୯୫୩ ମାର୍ଚ୍ଚ ୨୮ ତାରିଖ ଦିନ ସେ ବିଧାନସଭାରେ ଭାଷଣ ପ୍ରସଙ୍ଗରେ କହିଥିଲେ, ''ମୁଁ କାହାକୁ ସମାଲୋଚନା ନ କରି ମୋ' କଥା କହିବି । ପ୍ରଥମେ ଗାନ୍ଧିବାଦରେ ଆମେ ଜୟଯୁକ୍ତ ହେବା ଭାବି ସେଥିରେ ରହିଲି । ତା'ପରେ ଫେର୍ ମନେହେଲା, ଅହିଂସ ସାମ୍ୟବାଦୀ ଦଳ କରାଯିବା ଦରକାର; ଫେର୍ କିଛିଦିନ ପରେ ମନେହେଲା, ଏହାଦ୍ୱାରା କିଛି ହୋଇପାରିବ ନାହିଁ । Marxism Leninism ଦ୍ୱାରା ଭଲ ହେବ ବୋଲି ସେଥିରେ ପଶିଲି । କିନ୍ତୁ ପରେ ଯେତେବେଳେ ଜଣାଗଲା, Marxism Leninismର ପ୍ରକୃତ ରୂପ ମହାତ୍ମା ଗାନ୍ଧିଙ୍କ ଆଦର୍ଶରେ ରହିଛି ଓ ତାହା ବାସ୍ତବତାର ରୂପରେଖ, ସେତେବେଳେ ତାକୁ ଆମେ ଗ୍ରହଣ କରିନେଲୁ । ଅନେକ କର୍ମୀଙ୍କ ଜୀବନରେ ଏହିପରି ଚିନ୍ତାଧାରା ରହିଛି । ଗୋଟିଏ ପରିବର୍ତ୍ତିତ ଯୁଗ ମଧ୍ୟରେ ପଡ଼ି ଅନେକ ଏହା କରିଥାନ୍ତି । ଏସବୁ ସତ୍ତ୍ୱେ ଗୋଟିଏ ବାଟ ପରିଷ୍କାର ଦେଖାଗଲାଣି । ସେ ବାଟରେ ଆମେ ସବୁ ସମୟରେ ଚାଲିପାରୁନାହୁଁ । କେତେବେଳେ ଚିନ୍ତାର ଶିଥିଳତା, କେତେବେଳେ ଆଳସ୍ୟ, କେତେବେଳେ ବା ପୂର୍ବର ସଂସ୍କାର ଏବଂ କେତେବେଳେ ନୂଆ ନୂଆ ଭାବଧାରା ଆସି ପହଞ୍ଚିଯାଉଛି । ଖାଲି ଭାରତବର୍ଷ ନୁହେଁ, ସମଗ୍ର ଦୁନିଆ ପାଇଁ, ଯେଉଁଠି ଦେଶର ପାଞ୍ଚଟି ଦଳ ଅଛନ୍ତି, ସେମାନଙ୍କୁ ଆଜି ଗୋଟିଏ ରାସ୍ତା ଦେଖାଯାଉଛି । କ୍ଷୀଣ ହେଲେ ମଧ୍ୟ, ସ୍ପଷ୍ଟ ନ ହେଲେ ମଧ୍ୟ, ଗୋଟିଏ ରାସ୍ତା ଦେଖାଯାଉଛି, ଯେଉଁ ରାସ୍ତାରେ ଗଲେ ଆମେ ଦୁନିଆର ଆର୍ଥିକ ଏବଂ ସାମାଜିକ ମୁକ୍ତିର ପ୍ରଶ୍ନର ସମାଧାନ କରିପାରିବା । ସେ ବାଟ ହେଉଛି, ଛୋଟ ଛୋଟ ଗ୍ରାମ ଭିତରେ ପଲ୍ଲୀ ସମାଜକୁ କିପରି ଜୀବନ୍ତ କରିବା । ଏହା ଭିତରେ ଯେଉଁ ଚେତନା ରହିଛି, ନିଜର ଉନ୍ନତି କରିବାପାଇଁ ଯେଉଁ ପ୍ରବୃତ୍ତି ରହିଛି, ତାକୁ କିପରି ଜାଗ୍ରତ କରିବା । ସେମାନେ ନିଜର ଉନ୍ନତି କରିବାପାଇଁ କିପରି ଚେଷ୍ଟା କରିବେ, ସେଥିପାଇଁ ଯତ୍ନ କରିବା । ତାହା ନ କରି ଖାଲି କେତେଗୁଡ଼ିଏ ଔଷଧ ଖୁଆଇଲେ କିମ୍ବା ତାଙ୍କ ଉପରେ ନେଇ କେତେଗୁଡ଼ିଏ ନୂଆ ନୂଆ ସ୍କୁଲ୍ (ବିଚାରଧାରା) ମାଡ଼ିଦେଲେ ଏମାନଙ୍କ ନିଜ ଭିତରେ ଉନ୍ନତି କରିବାପାଇଁ ଯେଉଁ ପ୍ରବୃତ୍ତି ଅଛି, ତାହା ଜାଗ୍ରତ ହୋଇପାରିବ ନାହିଁ ।''

୧୯୩୩ରେ ଜବାହରଲାଲଙ୍କୁ ଲେଖିଥିବା ଚିଠିରେ ତାଙ୍କର ଗାନ୍ଧିବୋଧର ସ୍ପଷ୍ଟ ଧାରଣା ମିଳେ । ସେ ଗାନ୍ଧିଙ୍କର ସବୁ କଥାକୁ ବେଦବାକ୍ୟ ଭଳି ମାନିନେବାକୁ ପ୍ରସ୍ତୁତ ନଥିଲେ । ସବୁକଥାରେ ଗାନ୍ଧି ଧର୍ମକୁ ଯୋଡ଼ିବାଟାକୁ ସେ ପସନ୍ଦ କରୁନଥିଲେ । ସେ ଗାନ୍ଧିବିଚାରକୁ ମାର୍କ୍ସୀୟ କଷଟିପଥରରେ ପରଖ କରି ଗ୍ରହଣ କରିଛନ୍ତି । ନବକୃଷ୍ଣ

ଚୌଧୁରୀଙ୍କୁ ଅନୁଧ୍ୟାନ କଲେ ମନେହୁଏ, ସେ ମାର୍କ୍ସ ଓ ଗାନ୍ଧିଙ୍କ ବିଚାରକୁ ଭେଦି ଅତିକ୍ରମ କରିଯାଇଛନ୍ତି 'ଟ୍ରାନ୍‌ସେଣ୍ଡ୍‌' ।

୧୯୫୫ ମସିହା ଅକ୍ଟୋବର ୨ ତାରିଖରେ ସେ ଆକାଶବାଣୀ କଟକ କେନ୍ଦ୍ରରୁ ଗାନ୍ଧିଜୀଙ୍କ ସମ୍ପର୍କରେ ଏକ ଭାଷଣ ଦେଇଥିଲେ । ସେ କହିଥିଲେ, ''ଗାନ୍ଧିଜୀଙ୍କୁ ମୁଁ ଯେତିକି ଜାଣେ, ତାଙ୍କ ସମ୍ପର୍କରେ କିଛି ଲେଖିବାପାଇଁ ମୁଁ ନିଜକୁ ସମ୍ପୂର୍ଣ୍ଣ ଅସମର୍ଥ ମନେକରୁଛି । ଏ କଥା ବିଶ୍ୱାସ କରିବା କଷ୍ଟକର ମନେହୋଇପାରେ । ତାଙ୍କ ମୃତ୍ୟୁର କେଇ ସପ୍ତାହ ପୂର୍ବରୁ କେବଳ ଥରଟିଏ ସାକ୍ଷାତ ବ୍ୟତୀତ ମୋତେ ତାଙ୍କ ସହ ବ୍ୟକ୍ତିଗତ ଆଳାପ ବା ଆଲୋଚନାର ସୁଯୋଗ ମିଳିନଥିଲା । ଗାନ୍ଧିଜୀଙ୍କୁ ଦେଖିବା, ତାଙ୍କର କଥା ଶୁଣିବା ଓ ତାଙ୍କର ଲେଖାସବୁକୁ ପଢ଼ିବା ମୋ'ଭଳି ଜଣେ ସାଧାରଣ ଲୋକର ଜୀବନରେ ଏକ ଶ୍ରେଷ୍ଠ ସୁଯୋଗ ବୋଲି ମନେକରୁଛି । ଶହ ଶହ ଲୋକ ତାଙ୍କ ପାଦ ଛୁଇଁବାର ପ୍ରଚେଷ୍ଟାକୁ ଲକ୍ଷ୍ୟ କରିଛି । କିନ୍ତୁ ଯାହା ବି ହେଉ, ମୁଁ ତାହା କରିପାରେ ନାହିଁ । ସେ ମୋ' ପାଇଁ ଥିଲେ ଦେବତୁଲ୍ୟ । କିନ୍ତୁ ସେଇ ଅନୁସାରେ, ଅସମ୍ଭବ ବୋଲି ମନେହେଲେ ବି ଗାନ୍ଧିଜୀ ମୋ' ପାଇଁ କେବେ ବି ଅବତାର ସ୍ୱରୂପ ନଥିଲେ । ସେ ଥିଲେ ମୋ' ପାଇଁ ଖୁବ୍ ଭଲ ମଣିଷଟିଏ । ଗାନ୍ଧିଜୀଙ୍କ ସମ୍ପର୍କରେ ମୋ'ର ଧାରଣା ଆଖି ନଥିବା ଲୋକ ପାଇଁ ହାତୀଦେଖା ଅନୁଭୂତି । ଏଥିପାଇଁ ମୁଁ କଅଣ ବା କରିପାରେ ? ସେ ଯାହା ହେଉ, ମୁଁ ଏଥିପାଇଁ ତିଳେ ବି ଦୁଃଖିତ ନୁହେଁ ଯେ ଅନ୍ୟମାନଙ୍କ ଭଳି ମୁଁ ତାଙ୍କୁ କଳିପାରିନାହିଁ । ତେବେ ଆମେ ସମସ୍ତେ ତାଙ୍କ ଉପରେ ବ୍ୟକ୍ତିଗତ ମତ ଦେଇପାରିବା । ଅନ୍ୟାୟ ବିରୋଧରେ ତାଙ୍କର ସ୍ପଷ୍ଟ ଓ ଅବିଚଳ ଭୂମିକା ମୋତେ ଉଦ୍‌ବୁଦ୍ଧ କରିଥିଲା । ତାଙ୍କର ବଳିଷ୍ଠ ବାସ୍ତବବାଦୀ କାର୍ଯ୍ୟକଳାପ ଏବଂ ଦୃଢ଼ ଏକନିଷ୍ଠତାରେ ମୁଁ ପୂରାପୂରି ଅଭିଭୂତ ହୋଇଥିଲି ।''

ଏହାର ପନ୍ଦର ବର୍ଷ ପରେ ଯେତେବେଳେ ସେ ଗାନ୍ଧିବିଦ୍ୟା ସଂସ୍ଥାନର ଅଧ୍ୟକ୍ଷ ହେଲେ, ସେହି ସମୟରେ ଓ ତା'ପରେ ବି କେତେକ ବିଦେଶୀ ଜିଜ୍ଞାସୁ ତାଙ୍କ ସହିତ ଗାନ୍ଧିବିଚାର ସମ୍ପର୍କରେ ଆଲୋଚନା ପାଇଁ ଆସୁଥିଲେ । କିନ୍ତୁ ଜୀବନର ଶେଷଆଡ଼କୁ ଯୁକ୍ତରାଷ୍ଟ୍ର ଆମେରିକାର ଗାନ୍ଧିଜନ ଜର୍ଜ ଓ୍ୱିଲୋବି ଅନୁଗୋଳ ଆସି ବି ନିରାଶ ହୋଇଥିଲେ । ସେତେବେଳକୁ ସେ ଅସୁସ୍ଥ ଓ କ୍ଳାନ୍ତ ଏବଂ ଅନେକ ପରିମାଣରେ ହତାଶ । ଓ୍ୱିଲୋବିଙ୍କ ସହିତ ଗଭୀର ତାତ୍ତ୍ୱିକ କଥା ଆଲୋଚନା କରିବାକୁ ନବବାବୁ ଏଡ଼ାଇଯାଉଥାନ୍ତି ବୋଲି ସେଠାରେ ଉପସ୍ଥିତ ଥିବା କ୍ଷେତ୍ରବାସୀ ପତି ଓ ନାରାୟଣ ଦେଶାଇ ଲକ୍ଷ୍ୟ କରିଥିଲେ ।

ନବବାବୁ ତାତ୍ତ୍ୱିକ ଆଲୋଚନା ତ ବେଶ୍ କରନ୍ତି, କିନ୍ତୁ ଲେଖିବାଟା ତାଙ୍କ ପକ୍ଷରେ ଏକ ଅସହନୀୟ ବୋଝ ବୋଲି ମନେକରନ୍ତି । ତାଙ୍କର ଏଭଳି ଢଙ୍ଗକୁ ଜୟପ୍ରକାଶ ପସନ୍ଦ

କରୁନଥିଲେ । ଏଣୁ ଗାନ୍ଧିବିଦ୍ୟା ସଂସ୍ଥାନର ଜଣେ କର୍ତ୍ତା ଭାବରେ ଜୟପ୍ରକାଶ ଥରେ ତାଙ୍କୁ ଚିଡ଼େଇ କହିଲେ, ''ଆପଣଙ୍କୁ ଆଉ ଆମ ସଂସ୍ଥାନରେ କୁହାଇଦିଆଯିବ ନାହିଁ; ଆପଣଙ୍କ ବକ୍ତବ୍ୟ ଲିପିବଦ୍ଧ କରିବାପାଇଁ ଜଣେ ଷ୍ଟେନୋ ଦିଆଯିବ । ଗାନ୍ଧିତତ୍ତ୍ୱ ସମ୍ପର୍କରେ ଆପଣଙ୍କ ବକ୍ତବ୍ୟ ସେ ଲିପିବଦ୍ଧ କରିବେ, ଯାହାକୁ ପୁସ୍ତକ ଆକାରରେ ପ୍ରକାଶ କରାଯିବ ।'' ତଦନୁସାରେ ଜଣେ ଷ୍ଟେନୋ ନବବାବୁଙ୍କ ସଙ୍ଗରେ ରହିଲେ, ସେ ଅନୁଗୋଳ ଆସିଲେ ତାଙ୍କ ସହିତ ଷ୍ଟେନୋ ଆସନ୍ତି ଓ ଡିକ୍‌ଟେସନ୍ ନିଅନ୍ତି । ସେ ଡିକ୍‌ଟେସନ୍‌ର ସନ୍ଧାନ ମୁଁ ପାଇ ନାହିଁ । କିନ୍ତୁ ଗାନ୍ଧି ରଚନାବଳୀରୁ ଯେଉଁ କିଛି ଅଂଶ ନବବାବୁ ବାଛିଥିଲେ ; ତାହା ତିନିଟି ଫାଇଲ୍‌ରେ ନବବାବୁଙ୍କ ପାଖରେ ବହୁ ବର୍ଷ ରହିଲା । ଫାଇଲଗୁଡ଼ିକ ଶେଷକୁ ମନମୋହନ ଚୌଧୁରୀଙ୍କ ପାଖରେ ଥିଲା ବୋଲି ନବବାବୁଙ୍କ ଏକ ଚିଠିରୁ ଜାଣି ଲେଖକ ତହିଁରୁ ଦୁଇଟି ସଂଗ୍ରହ କରି ରଖିଥିଲା ।

ପ୍ରଫୁଲ୍ଲ ଦାସଙ୍କ ଲିଖିତ 'ଅଗ୍ନିଯୁଗର ଆହ୍ୱାନ'ର ମୁଖବନ୍ଧରେ ନବବାବୁ ଲେଖିଛନ୍ତି, '...ଅହିଂସକ ହେଉ ବା ହିଂସ୍ରକ ହେଉ, କୌଣସି ପ୍ରକାର ଜନସଙ୍ଗଠନ ଓ ଜନସଂଘର୍ଷ ବିନା କେବଳ ନେତାମାନଙ୍କ ଦ୍ୱାରା ସାଲିସ୍ କଦାପି ପ୍ରକୃତ ସ୍ୱରାଜ ହେବ ନାହିଁ କି ଲୋକଚୈତନ୍ୟ ଜାଗ୍ରତ ହେବ ନାହିଁ ବୋଲି ଗାନ୍ଧିଜୀଙ୍କର ଏହି ଚେତାବନୀକୁ ଅମାନ୍ୟ କରିବା ଫଳରେ ଯେଉଁ ସ୍ୱରାଜ୍ୟ ହେଲା, ସେଥିରେ ଲୋକଙ୍କୁ ପୂର୍ବ ପରି ବା ତତୋଽଧିକ ଭୟଭୀତ କରି ରଖାଗଲା । ଏ ସମୟରେ ଅଗ୍ନିଯୁଗର ଆହ୍ୱାନରେ ଜାଗିଉଠି ଭାରତର ଯୁବକଯୁବତୀମାନେ ସମ୍ପୂର୍ଣ୍ଣ କ୍ରାନ୍ତିର ବାହକ ରୂପେ ଏ ମହାଦେଶର ହଜାର ହଜାର ସହର, ବଜାର ଓ ଲକ୍ଷ ଲକ୍ଷ ଗାଁଗଣ୍ଡାରେ ଅଚେତନ ହୋଇ ପଡ଼ିରହିଥିବା ଲୋକଙ୍କ ପାଖରେ ଠିଆହେଲେ ଓ ତାଙ୍କ ସହିତ ସମ୍ପୂର୍ଣ୍ଣ ରୂପେ ନିଜକୁ ମିଶାଇଦେଲେ, ବାଟରେ ଅଟକିଯାଇଥିବା ଇତିହାସର ରଥ ଆଗେଇଚାଲିବ ।... ଲୋକେ ନିଜ ନିୟନ୍ତ୍ରଣରେ ରଖିପାରିଲା ଭଳି ସମାଜବାଦୀ ଅର୍ଥନୀତି ଓ ବିକେନ୍ଦ୍ରୀତ ଶାସନ ବ୍ୟବସ୍ଥା ଚାଲୁ କରିବେ ।'

ନବକୃଷ୍ଣ ଚୌଧୁରୀ

ତା ୩୦-୧-୧୯୭୪

ବଞ୍ଚିଥିବା ପର୍ଯ୍ୟନ୍ତ ସେ ଆମ ସମାଜର ଦୁର୍ବଳ ଓ ଅତ୍ୟାଚାରିତ ଲୋକଙ୍କ ଦୁର୍ଦ୍ଦଶାରେ ବିଚଳିତ ହୋଇପଡ଼ିଛନ୍ତି ସତ, କିନ୍ତୁ ଶେଷ ପର୍ଯ୍ୟନ୍ତ ଗାନ୍ଧିଜୀଙ୍କ ପନ୍ଥାରେ ତାଙ୍କର ଆସ୍ଥା ରହିଥିଲା, ଯଦିଓ ଗଣବିପ୍ଳବ ହେଉହେଉ ହିଂସା ମାର୍ଗରେ ଗଲା ତ ତଦ୍ୱାରା ବିପ୍ଳବ ମାରା ହୋଇଗଲା ବୋଲି ସେ ବିଚାର କରୁନଥିଲେ । ନବକୃଷ୍ଣ ଚୌଧୁରୀଙ୍କର ଗାନ୍ଧିବୋଧ ଏକ

ସ୍ୱତନ୍ତ୍ର ଅଧ୍ୟୟନସାପେକ୍ଷ, ଯାହାକି ଏହି ଜୀବନୀର କଳେବର ମଧ୍ୟରେ ଅସମ୍ଭବ । ସଂଗୃହୀତ ଫାଇଲ ଦୁଇଟିରେ ଥିବା ଗାନ୍ଧିଜୀଙ୍କ ରଚନାବଳୀ ଅନୁବାଦ କରିବାର ବାସନା ଲେଖକର ରହିଛି । ଏହାଛଡ଼ା ନବକୃଷ୍ଣ ଚୌଧୁରୀଙ୍କ ଗାନ୍ଧିବୋଧ ବାବଦରେ ବୌଦ୍ଧିକ ଲୋକଙ୍କଠାରୁ କିଛି ଲେଖା ସଂଗ୍ରହ କରି ଅନ୍ୟ ଏକ ସଙ୍କଳନ ପ୍ରକାଶ କରାଯାଇପାରେ ।

ନବକୃଷ୍ଣ ଚୌଧୁରୀଙ୍କ ଚେହେରା, ଚାଲିଚଳଣି ଓ ଅଭ୍ୟାସ ଗାନ୍ଧିଜନ ପରି ନଥିଲା । କୌତୂହଳବଶତଃ ସେ ମଦ ବି ଚାଖିଛନ୍ତି, ଜାଣିବାକୁ ଦେହ ଓ ମନ ଉପରେ ତାହାର କିଭଳି ପ୍ରଭାବ ପଡୁଛି । କିନ୍ତୁ ଗାନ୍ଧିବିଚାରର ଯେଉଁ ମୁଖ୍ୟ ନିର୍ଯ୍ୟାସ–ସତ୍ୟନିଷ୍ଠା, ଅହିଂସା ଓ ସାଧନାଶୁଦ୍ଧି–ସେସବୁ ଉପରେ ସେ କେବେ ସାଲିସ୍ କରିନାହାନ୍ତି । ସମାଜର ସବୁଠାରୁ ତଳିଆ ଲୋକର ସ୍ୱାର୍ଥକୁ ସବୁବେଳେ ଆଗ କରି ଦେଖିଛନ୍ତି ଓ ସ୍ୱେଚ୍ଛାରେ ଅତି ସାଧାରଣ ଜୀବନ ଆଦରିନେଇଛନ୍ତି ।



## ନବମ ଅଧ୍ୟାୟ

# ପୁରୁଷୋତ୍ତମ

ନବକୃଷ୍ଣ ଚୌଧୁରୀ ଥିଲେ ଏକ ଅଦ୍ଭୁତ ଲୋକ । ପୂର୍ବତନ ମୁଖ୍ୟମନ୍ତ୍ରୀ ବୋଲି କେହି କହିଲେ ସେ ସେଥିରେ ବିରକ୍ତି ପ୍ରକାଶ କରୁଥିଲେ । ସେ କହୁଥିଲେ, ''ମୋ'ର କଅଣ ଏହାଛଡ଼ା କିଛି ଅନ୍ୟ ପରିଚୟ ନାହିଁ ?'' ବାସ୍ତବରେ ଓଡ଼ିଶାରେ ଘଟଣାଚକ୍ରରେ ବହୁ ବ୍ୟକ୍ତି ମୁଖ୍ୟମନ୍ତ୍ରୀ ହୋଇଛନ୍ତି, ଯେଉଁମାନେ ହୁଏତ ଖୁବ୍ ବେଶିରେ ବିଧାୟକଟିଏ ହୋଇଥାନ୍ତେ । ଏଣୁ ନବକୃଷ୍ଣ ଚୌଧୁରୀଙ୍କୁ ସେହି ପରିଚୟରେ ଚିହ୍ନାଇବାକୁ ଗଲେ, ସେ କଅଣ ଥିଲେ, ତାହା ମୋଟେ ଜାଣିହେବ ନାହିଁ ବୋଲି ତାଙ୍କର ଜଣେ ବଡ଼ ସମାଲୋଚକ ହରେକୃଷ୍ଣ ମହତାବଙ୍କର ମନ୍ତବ୍ୟ ।

ଅନେକ ଲୋକ ଦୁନିଆରେ ଭାରି ମହାନ୍ ବ୍ୟକ୍ତି ଥିଲେ ବି ନିଜ ପରିବାର ଓ ଜ୍ଞାତି-କୁଟୁମ୍ବଙ୍କ ନିକଟରେ ମହାନ୍ ନଥାନ୍ତି । ଇଏ କିନ୍ତୁ ଏଭଳି ଜଣେ ଲୋକ ଥିଲେ ଯେ ଖାଲି ନିଜ ପରିବାର ଏବଂ ଜ୍ଞାତି କୁଟୁମ୍ବ ତ ନୁହନ୍ତି, ବୃହତ୍ତର 'ବାପି' ପରିବାରର ସମସ୍ତେ କହନ୍ତି ସେ ତାଙ୍କୁ ସବୁଠୁ ବେଶି ଭଲ ପାଆନ୍ତି । ତାଙ୍କର ଭଲପାଇବାର ଦିଗ୍‌ବଳୟ ଦେଶ, ମହାଦେଶ, ଜାତି, ଧର୍ମ, ବର୍ଣ୍ଣ, ସୀମା ଟପିଯାଇଥିଲା । ସମଗ୍ର ଜଗତର ମଙ୍ଗଳ ଥିଲା ତାଙ୍କର ଧ୍ୟେୟ । ବିଶ୍ୱର କେଉଁ କୋଣରେ ଅତ୍ୟାଚାରର କାହାଣୀ ଶୁଣିଲେ ସେ ବିଚଳିତ ହୋଇପଡୁଥିଲେ, ପୁଣି କେଉଁଠି ଅତ୍ୟାଚାରୀର ପରାଜୟ ଖବର ପାଇଲେ ଆନନ୍ଦରେ ସମସ୍ତଙ୍କୁ କହିଦେଉଥିଲେ ।

ମୁଖ୍ୟମନ୍ତ୍ରିତ୍ୱ ଛାଡ଼ିବା ଦିନ ଦଳଗତ ରାଜନୀତି ଛାଡ଼ିଲେ ; ହେଲେ, ରାଜନୀତି ତାଙ୍କୁ ଶେଷ ପର୍ଯ୍ୟନ୍ତ ଛାଡ଼ି ନଥିଲା । ବିଶେଷକରି ଯେଉଁଠି ସେ ତ୍ୟାଗ ଓ ନିଷ୍ଠାର ସନ୍ଧାନ ପାଆନ୍ତି, ସିଏ ଯେଉଁ ଦଳ ବା ଗୋଷ୍ଠୀର ହୋଇଥାନ୍ତୁ, ତାଙ୍କୁ ସେହି କ୍ଷେତ୍ରରେ ସେ ଆଦର କରିବାରେ ସଙ୍କୁଚିତ ହୁଅନ୍ତି ନାହିଁ । ଓଡ଼ିଶା ତଥା ଭାରତବର୍ଷରେ ଯେତେବେଳେ ଯେଉଁଠି ଅନ୍ୟାୟ ଓ

ଅବିଚାର ଦେଖାଦେଇଛି, ତାହାର ପ୍ରତିବାଦ ଓ ପ୍ରତିରୋଧ କରିବା ପାଇଁ ଜୀବନର ଶେଷ ପର୍ଯ୍ୟନ୍ତ ସେ ଆଗଭର ହୋଇଛନ୍ତି ।

ଏମିତି ତ ସିଏ ପୂର୍ବରୁ ବାମପନ୍ଥୀମାନଙ୍କୁ ପସନ୍ଦ କରୁଥିଲେ, ଯଦିଓ ସେ କୌଣସି ଦଳରେ ରହିଲେ ନାହିଁ । ତେବେ ବାମପନ୍ଥୀମାନଙ୍କ ମଧ୍ୟରେ ଯିଏ ଲଢୁଆ, ସେମାନଙ୍କ ସହିତ ତାଙ୍କର ଘନିଷ୍ଠତା ଥିଲା । ସେହି ଧାରାରେ ଓଡ଼ିଶାର ନକ୍ସଲ୍‌ପନ୍ଥୀଙ୍କଠାରୁ ଆରମ୍ଭ କରି ସୋସାଲିଷ୍ଟ ଇଉନିଟ୍ ସେଣ୍ଟରର ଲୋକଙ୍କ ସହିତ ତାଙ୍କର ଆନ୍ତରିକତା ଥିଲା । ସମାଜବାଦୀମାନଙ୍କ ମଧ୍ୟରେ ଲୋହିଆପନ୍ଥୀମାନେ ଥିଲେ ତାଙ୍କର ନିକଟତର । କିନ୍ତୁ ଜରୁରୀକାଳୀନ ପରିସ୍ଥିତିରେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ତରୁଣମାନଙ୍କର ସାହସିକତା ତାଙ୍କୁ ଖୁବ୍ ପ୍ରଭାବିତ କରିଥିଲା । ଏଣୁ ୧୯୭୭ ମସିହା ବେଳକୁ ଯେତେବେଳେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ସହ-ସଂଘସଞ୍ଚାଳକ ଦେଓରସଙ୍କର କଟକରେ ସଭା ହେଲା, ସେଥିରେ ସଭାପତିତ୍ୱ କରିବା ଲାଗି ସେ କୁଣ୍ଠିତ ହୋଇନଥିଲେ–ଯଦିଓ ତାଙ୍କର ଏକାନ୍ତ ଅନୁଗାମୀ ରବୀନ୍ଦ୍ରନାଥ ସାହୁ ଓ ମନୋରଞ୍ଜନ ମହାନ୍ତି ଆଦି ତାଙ୍କର ଏହି ପଦକ୍ଷେପକୁ ପସନ୍ଦ କରିନଥିଲେ । ସେହିଭଳି ଆନନ୍ଦମାର୍ଗୀ ଅଧ୍ୟାପକ ଅଜିତ୍ ମହାନ୍ତି ଆଦିଙ୍କ ସହିତ ତାଙ୍କର ସହୃଦୟତା ଥିଲା । ପ୍ରତ୍ୟେକ ଉତ୍ସର୍ଗୀକୃତ ପନ୍ଥୀଙ୍କର ବିଚାର ଜାଣିବା ଲାଗି ତାଙ୍କର ଆଗ୍ରହ ଥିଲା । ଏହି ହେତୁ ତାଙ୍କଠାରେ ଦେଖିବାକୁ ମିଳିଥିଲା ଏଭଳି ଉଦାର ଦୃଷ୍ଟିଭଙ୍ଗୀ । ଇଂରାଜୀର ‘ପ୍ରାଗ୍‌ମାଟିକ୍’ ଶବ୍ଦଟି ତାଙ୍କ ପାଇଁ ଏକାନ୍ତ ଉପଯୁକ୍ତ ବୋଲି କୁହାଯାଉଥିଲେ ବି ମୌଳିକ ବିଚାର ଉପରେ ସେ କେଉଁଠି ସାଲିସ୍ କରି ନାହାନ୍ତି ।

ଜୀବନରେ ସାଧାରଣ ଲୋକଙ୍କ ସହିତ ମିଶିବାଟା ସୁଗମ ହେବାଲାଗି ସେ ସାଧାରଣ ଲୋକର ଜୀବନ ବାଛିନେଇଥିଲେ । ତାହା ତାଙ୍କର ବିଦ୍ୟା ଓ ଜ୍ଞାନର ବିକାଶ ପାଇଁ କିଛି ଅସୁବିଧାଜନକ ନଥିଲା । ସେ ଓଡ଼ିଶାରେ ମାଳ ଅଞ୍ଚଳର ଅନୁନ୍ନତ ଆଦିବାସୀଙ୍କ ସମସ୍ୟା ଅନୁଧ୍ୟାନ କରିବା ସଙ୍ଗେ ସଙ୍ଗେ ସେସବୁର ସମାଧାନ ପାଇଁ ନିଜକୁ ଯଥାସମ୍ଭବ ନିୟୋଜିତ କରୁଥିଲେ । ସମୟ ପଡ଼ିଲେ ସେ ବାଜି ରାଉତ ଛାତ୍ରାବାସର ଗାଈଙ୍କୁ ଚରାଇବାକୁ ନେଉଥିଲେ ଓ ଅନ୍ୟ ସମୟରେ ବିଭିନ୍ନ ପ୍ରକାର ଜ୍ଞାନ ଚର୍ଚ୍ଚା ଲାଗି ସମୟ ବାହାର କରିପାରୁଥିଲେ । ଏସବୁ ବିଚାରରୁ ଓଡ଼ିଶାର ଏହି ପର୍ଯ୍ୟାୟର ବ୍ୟକ୍ତିତ୍ୱ ଏପର୍ଯ୍ୟନ୍ତ ଦେଖିବାକୁ ମିଳିନାହାନ୍ତି । ଅତ୍ୟାଚାରିତ ଲୋକର ପିଠି ଆଉଁଶି, ତାଙ୍କୁ ଯତ୍‌କିଞ୍ଚିତ୍ ସାହାଯ୍ୟ ଦେବା ଭିତରେ ସେ ଅମୃତ ଅନୁଭବ କରିପାରିଥିଲେ । ବ୍ୟକ୍ତିଗତ ଜୀବନ ଓ ସାଧାରଣ ଜୀବନର ନାନା ଧକ୍କା ସତ୍ତ୍ୱେ

ଏଭଳି ପ୍ରାଣଖୋଲା ହସିପାରୁଥିଲେ ଯେ ତାହା ଯିଏ ଦେଖୁଥିଲା, ସେ ଜାଣିପାରୁଥିଲା ଏ ମଣିଷଟିର ଭିତର କେତେ ସ୍ୱଚ୍ଛ ଓ ସରଳ ।

ସେ କାହିଁକି ସାମ୍ୟବାଦୀ ବା ସମାଜବାଦୀଙ୍କ ଦଳରେ ରହିଲେ ନାହିଁ ବୋଲି ସେସବୁ ଦଳର ଲୋକଙ୍କର ଭାରି ଅଭିମାନ ଓ ଅଭିଯୋଗ । ଭାରତବର୍ଷରେ ସାମ୍ୟବାଦୀ ଓ ସମାଜବାଦୀ ଦଳଗୁଡ଼ିକର ଏବର ପରିସ୍ଥିତିକୁ ଲକ୍ଷ୍ୟ କଲେ, ନବବାବୁଙ୍କର ସେମାନଙ୍କ ଦଳଭୁକ୍ତ ନ ହେବା ନିଷ୍ପତ୍ତିକୁ କଅଣ ଭୁଲ୍ କହିହେବ ? ତାଙ୍କ ଭଳି ସ୍ୱଚ୍ଛ ରାଜନୀତି କଲା ଲୋକ 'ମାଡ଼ ଖାଇବା ଓ ମାଡ଼ ମାରିବା' ଗୋଷ୍ଠୀ ସହିତ ବା 'ଅଣ୍ଟିରେ ଥାଇ ତଣ୍ଟିକଟା' ଲୋକଙ୍କ ସହିତ କିଭଳି ରହିପାରିଥାନ୍ତେ ? ନବବାବୁ ବଞ୍ଚିଥିଲା ବେଳେ ତାଙ୍କର ଜଣେ ଏକାନ୍ତ ଆନ୍ତରିକ ବ୍ୟକ୍ତି ରବୀନ୍ଦ୍ରନାଥ ସାହୁ ତାଙ୍କୁ ବୁଝେଇ ତାଙ୍କର ଜୀବନୀ ଲେଖିବାକୁ ଆରମ୍ଭ କରିଥିଲେ, ଯାହା କାହା ପକ୍ଷରେ ସମ୍ଭବପର ହୋଇନଥିଲା । ଅବଶ୍ୟ ସେ ଜୀବନୀ-ଲେଖା ଚିଠାସ୍ତରରେ ରହିଗଲା । ସେହି ରବୀନ୍ଦ୍ରନାଥ ସାହୁ ୧୯୯୬ ମସିହାରେ ଭୁବନେଶ୍ୱରରେ ଅନୁଷ୍ଠିତ ସ୍ୱେଚ୍ଛାସେବୀ ସଙ୍ଗଠନମାନଙ୍କର ଏକ ସମାବେଶରେ (ଯେଉଁଥିରେ ମେଧା ପାଟକର୍ ଯୋଗ ଦେଇଥିଲେ) କହିଥିଲେ-ନବବାବୁ କୁଆଡ଼େ କହୁଥିଲେ ଯେ ଭାରତୀୟ ପରିପ୍ରେକ୍ଷୀରେ ନକ୍ସଲପନ୍ଥୀ ଓ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ଏକାଠି ମିଶି କାମ କରିବା ଲାଗି ବି ବହୁତ କ୍ଷେତ୍ର ଓ ବହୁ ଅବକାଶ ରହିଛି । ଏଇଥିରୁ ବୁଝିହୁଏ, ସ୍ୱାଧୀନତା ପ୍ରାପ୍ତି ପରେ ସେ କାହିଁକି ଚାହୁଁଥିଲେ, ସମାଜବାଦୀ ଓ ଦକ୍ଷିଣପନ୍ଥୀ କଂଗ୍ରେସ ଲୋକ ଗୋଟିଏ ଦଳରେ ରହନ୍ତୁ । ଅବଶ୍ୟ ସେ ସମାଜବାଦୀମାନଙ୍କୁ ଏ କଥା ଖୋଲାଖୋଲି କହିନାହାନ୍ତି; କିନ୍ତୁ ଏହା ତାଙ୍କର ଆଭିମୁଖ୍ୟ ଥିଲା ବୋଲି ତାଙ୍କର ଏକାନ୍ତ ବିଶ୍ୱସ୍ତ ବାଙ୍କବିହାରୀ ଦାସ କହନ୍ତି ।

ଖାଲି ଭାରତବର୍ଷ ନୁହେଁ, ଆନ୍ତର୍ଜାତୀୟ କ୍ଷେତ୍ରରେ ସାମ୍ୟବାଦ ଯେଉଁଭଳି ଦୁର୍ଦ୍ଦଶାଗ୍ରସ୍ତ ହେଲା ଏବଂ ଯେଉଁ ପରିସ୍ଥିତିରେ ପହଞ୍ଚିଛି, ସେସବୁ ଲକ୍ଷ୍ୟ କଲେ ନବକୃଷ୍ଣ ଚୌଧୁରୀ ଆଦି ଭିନ୍ନ ମତାବଲମ୍ବୀମାନଙ୍କର ବିଚାରକୁ ନିର୍ଭୁଲ୍ କହିବାକୁ ହେବ । ସାମ୍ୟବାଦୀ ରାଷ୍ଟ୍ରମାନଙ୍କରେ ଘଟିଯାଇଥିବା ଘଟଣାରେ ବହୁ ମାର୍କ୍ସବାଦୀ ପୂରାପୂରି ସାମ୍ୟବାଦୀ ରାଷ୍ଟ୍ରବିରୋଧୀ ଓ ସାମ୍ୟବାଦୀ ଦଳବିରୋଧୀ ଭୂମିକା ଗ୍ରହଣ କରିଛନ୍ତି ଏବଂ ସାମ୍ୟବାଦକୁ ବି ବିରୋଧ କରିଛନ୍ତି । ନବକୃଷ୍ଣ ଚୌଧୁରୀ କିନ୍ତୁ ଥିଲେ ସେସବୁର ବ୍ୟତିକ୍ରମ । ସାମ୍ୟବାଦୀ ରୁଷରେ ଘଟିଥିବା ଘଟଣାବଳୀକୁ ସେ ଗ୍ରହଣ କରିପାରିନାହାନ୍ତି, କିନ୍ତୁ ଚୀନ୍‌ର ସାଂସ୍କୃତିକ ବିପ୍ଳବ ପ୍ରତି ତାଙ୍କର

ସହାନୁଭୂତି ଥିଲା । କାରଣ, ସେହି ଆନ୍ଦୋଳନ ପୁରୁଣା ସାମନ୍ତବାଦୀ ପିଢ଼ିର ବହୁ ଚଳଣି ଓ ବ୍ୟବସ୍ଥା ତଥା ମନୋଭାବକୁ ଦୂର କରିବା ଲାଗି ଏକ ପ୍ରବାହ ସୃଷ୍ଟି କରିଥିଲା ।

କୌଣସି ସମୟରେ କୌଣସି କଥା ତାଙ୍କ ମନକୁ ଠିକ୍ ବୋଲି ଆସୁଥିଲେ, ତାହା ଲୋକଙ୍କ ମଧ୍ୟରେ ଯେତେ ଅପ୍ରିୟ ହେଲେ ବି, ତାକୁ ପ୍ରକାଶ ଓ ପ୍ରଚାର କରିବାପାଇଁ ସେ ଇତସ୍ତତଃ ହେଉନଥିଲେ । ଏହି ପ୍ରସଙ୍ଗରେ ଭାରତର କେତେକ ଅଞ୍ଚଳ ଉପରେ ଚୀନର ଦାବି ସେ ଭାରତବର୍ଷର ତଥା ନେହେରୁଙ୍କର ଭୁଲ୍ ବୁଝାମଣା କଥା ସ୍ପଷ୍ଟ ଭାବରେ କହୁଥିଲେ; ଯଦିଓ ଏଭଳି କହିବାକୁ ସେତେବେଳେ ଦେଶପ୍ରୀତିବିରୋଧୀ ବୋଲି ମନେକରାଯାଉଥିଲା ।

ମଧୁସୂଦନ ଦାସ, ଗୋପବନ୍ଧୁ ଦାସ, ବିଶ୍ୱନାଥ ଦାସ, ହରେକୃଷ୍ଣ ମହତାବ ଅଥବା ବିଜୁ ପଟ୍ଟନାୟକଙ୍କ ଭଳି ନବକୃଷ୍ଣ ଚୌଧୁରୀ ଓଡ଼ିଆ ଜାତିର 'ହିରୋ' ନଥିଲେ, ଯଦିଓ ଓଡ଼ିଆ ଜାତୀୟତା ଏପରିକି ଓଡ଼ିଆ ପିଠାପଣା ପ୍ରତି ତାଙ୍କର ଦୁର୍ବଳତା ଥିଲା । ମଧୁସୂଦନ ଦାସ ଘରେ ବଙ୍ଗଳା କହୁଥିଲେ, ନବକୃଷ୍ଣ ଚୌଧୁରୀଙ୍କ ଯୋଗୁଁ ମାଳତୀଦେବୀ ଓଡ଼ିଆ କହିବା ଓ ଲେଖିବାରେ ଖାଲି ଦୋରସ୍ତ ହେଲେ ନାହିଁ, ଓଡ଼ିଶାର ଓ ବିଶେଷ ଭାବରେ ଗଞ୍ଜାମ ଓ କୋରାପୁଟର ମାଳଅଞ୍ଚଳ ଗାଁ ଗହଳିରେ ଲୋକଙ୍କ ସହିତ ମିଶିଯାଇଥିଲେ । ମାଳତୀ ଦେବୀ ଓଡ଼ିଶାର ଲୋକଗୀତ ଓ ଆଦିବାସୀ ସଂସ୍କୃତି ଚୟନ କଲେ ଏବଂ ଓଡ଼ିଶାକୁ ନିଜର କରିନେଲେ ।

ନବକୃଷ୍ଣ ଚୌଧୁରୀଙ୍କ ବିଚିତ୍ର ଗାଉଁଲି ଚେହେରା ଏବଂ ବେଶଭୂଷାରୁ (ଅବଶ୍ୟ ମଝିରେମଝିରେ ଦାଢ଼ି ରଖୁଥିଲେ) ଅନେକେ ତାଙ୍କୁ ଗାଉଁଲି ଓ ପୁରୁଣାକାଳିଆ ବୋଲି ଭୁଲ୍ ବୁଝନ୍ତି । ସେ କିନ୍ତୁ ଥିଲେ ଅନେକ ଦିଗରୁ ତାଙ୍କ ସମୟଠାରୁ ବହୁ ଆଗରେ ଏବଂ କେତେ ଦିଗରୁ ତାଙ୍କର ଚିନ୍ତାଧାରା ଥିଲା ସର୍ବକାଳୀନ । ଯେଉଁଦିନ ତାଙ୍କ ସାନଝିଅର ବିବାହ ପରବର୍ତ୍ତୀ ସ୍ୱାଗତିକା, ଠିକ୍ ସେହିଦିନ ତାଙ୍କର ମୃତ୍ୟୁ ଖବର ଗୁଆହାଟୀରେ ପହଞ୍ଚିଥିଲା । ଶତ ଶତ ଅସମୀୟା ଲୋକ ସେଦିନ ଆସି ନଥିଲେ ଭୋଜି ଖାଇବାକୁ, ଆସିଥିଲେ ହୃଦୟର କଥା କହିବାକୁ, କେଡ଼େ ଉତ୍ତମ ଲୋକ ସେ ଥିଲେ, ସେହି କଥା କହିଯିବାକୁ ।

ଜୀବନରେ ବହୁ କାମ ଆଡ଼କୁ ଟାଣିହୋଇଯିବା ଏବଂ ବ୍ୟକ୍ତିଗତ ଜୀବନରେ ଦାରୁଣ ଆଘାତ ଯୋଗୁଁ ତାଙ୍କଠାରୁ ଯେତିକି ଆଶା କରାଯାଉଥିଲା, ତାହା ମିଳିପାରିଲା ନାହିଁ । ଏଥିପାଇଁ ଦେଶର ତଥା ରାଜ୍ୟର ବିପ୍ଳବୀ ଲୋକଙ୍କର ବିଭିନ୍ନ ଶିବିରରେ ଅସଂଖ୍ୟ ବିଭାଜନ ବରଂ ବେଶି ଦାୟୀ କହିଲେ ଭୁଲ୍ ହେବନାହିଁ । ଅଭିଯୋଗ ହୁଏ ଯେ ସେ କାହିଁକି ବିଭିନ୍ନ

ବିଭାଜନ ବେଳେ ନିଜର ଦୃଷ୍ଟିଭଙ୍ଗୀ ସାଧାରଣରେ ପ୍ରକାଶ କଲେ ନାହିଁ ? କାରଣ, ସେ ଜାଣିଥିଲେ ତାଙ୍କୁ ନ ଜଣାଇ ଅନ୍ୟମାନେ ଏତେଦୂର ଆଗେଇଯାଇଥିଲେ ଯେ ନିଜର ମତ ପ୍ରକାଶ କରିଥିଲେ ଖାଲି ତିକ୍ତତା ହିଁ ବଢ଼ିଥାନ୍ତା, ଯାହା ଜୟପ୍ରକାଶ ଆଦିଙ୍କୁ ଭୋଗିବାକୁ ପଡ଼ିଥିଲା । ଯେତେବେଳେ ଦଳୀୟ ରାଜନୀତି ବହୁଧା ବିଭକ୍ତ, ସେତେବେଳେ ସେ ବିପ୍ଳବୀ ଦୃଷ୍ଟିଭଙ୍ଗୀର ବ୍ୟକ୍ତିବିଶେଷଙ୍କ ପାଖକୁ ଯାଇଛନ୍ତି, ସେମାନଙ୍କ ସହିତ ସେତୁ ବାନ୍ଧିଛନ୍ତି । ସେମାନଙ୍କ ମଧ୍ୟରୁ କାହାର କିଛି ଅଧୋଗତିର ଖବର ପାଇଲେ, ବ୍ୟତିବ୍ୟସ୍ତ ହୋଇ ରାତି ତିନିପହରେ ଯାଇ ତାଙ୍କ ଘରେ ପହଞ୍ଚିଛନ୍ତି, ଜାଣିବାକୁ ସତ୍ୟ କଅଣ ।

ନବକୃଷ୍ଣ ଚୌଧୁରୀ ସାଧକ ନ ଥିଲେ, ସେ ଥିଲେ ବିଦ୍ରୋହୀ । ନୀତିଗତ କଥାରେ ସେ ଗାନ୍ଧି, ନେହେରୁ ଓ ଶଙ୍କରଙ୍କୁ ସମାଲୋଚନା କରିବାକୁ ଛାଡୁ ନ ଥିଲେ । ଗଣତାନ୍ତ୍ରିକ ପଦ୍ଧତି ବିଷୟରେ ନିଷ୍ପତ୍ତି ନେବାବେଳେ ସେ ତାଙ୍କର ପ୍ରତିପକ୍ଷ ନୀଳକଣ୍ଠ ଦାସଙ୍କ କାର୍ଯ୍ୟକୁ ବି ସମର୍ଥନ କରି ଅନେକଙ୍କୁ ବିସ୍ମିତ କରିଦେଇଥିଲେ । ତାଙ୍କ ସମ୍ପର୍କରେ ପୁଣି ଅଭିଯୋଗ ହୁଏ ଯେ ସିଏ ସଂଗ୍ରାମକୁ ଏଡ଼ିଏଡ଼ି ଗଲେ । ଏକଥା କହିଲା ବେଳେ ସେ ସମୟର ଆମ ଦେଶର ପଛୁଆ ଲୋକଙ୍କର ଚେତନାର ସ୍ତରକୁ ବିଚାରକୁ ନେବା କଥା । ଏହିଭଳି ଅଭିଯୋଗ କରିଥିଲେ ଥରେ ତାଙ୍କ ଆଦରର 'ଜଗା' (ଶିଳ୍ପୀ ଜଗନ୍ନାଥ ଦାସ) । ନବବାବୁ ତାଙ୍କୁ କହିଥିଲେ, "ଆରେ, ତୁ ଆମ ସାଧାରଣ ଲୋକଙ୍କୁ ଚିହ୍ନିନାହୁଁ । ଖୁବ୍ ମତାମତି କଲେ ହୁଏତ ସେମାନେ ମାତିଯିବେ । କିନ୍ତୁ ଦମନ ହେଲେ ଏକବାର ଭାଙ୍ଗିପଡ଼ିବେ ଯେ ଆଉ ତାଙ୍କୁ ଯେତେ ବୁଝାଇଲେ ବି ସେମାନେ ବୁଝିବେ ନାହିଁ ।" ଏଣୁ ପଚାଶବର୍ଷ ତଳେ ଯାହା ସମ୍ଭବପର ଥିଲା, ନବବାବୁ ସେହି ମାର୍ଗ ଧରିଥିଲେ । ଶାସନକୁ ଲୋକାଭିମୁଖୀ କରିବା ସଙ୍ଗେସଙ୍ଗେ ତଳସ୍ତରର ଲୋକଙ୍କ ଚେତନାସ୍ତରର ବିକାଶ ଲାଗି ସେ ଉଦ୍ୟମ କରିଥିଲେ ଓ ସେମାନଙ୍କୁ ପ୍ରତିବାଦ ତଥା ପ୍ରତିରୋଧ କରିବା ଶିଖାଇଥିଲେ । ବେଶଭୂଷା ଓ ଖାଇବା ତ ଥିଲା ସାଧାରଣ ସ୍ତରର, ଭାଷା ବି ତାଙ୍କର ଥିଲା ପୂରାପୂରି ଲୋକଭାଷା । ମୁଖ୍ୟମନ୍ତ୍ରୀ ଥିଲାବେଳେ, ଜାତୀୟ କବି ବୀରକିଶୋର ଦାସଙ୍କ ଭାଷାରେ, ସେ ଥିଲେ 'ଖାଣ୍ଟିସୁନା' ; ଆଉ ତାଙ୍କୁ ଜାଣିଥିବା ଲୋକେ କହନ୍ତି, ମଣିଷ ହିସାବରେ ସେ ଥିଲେ ହୀରାଟିଏ ।

ନବକୃଷ୍ଣ ଚୌଧୁରୀ କେଉଁ ମତବାଦର ଲୋକ, ତାହା ନିର୍ଦ୍ଧାରଣ କରିବା ବେଳେ ସମସ୍ତେ ଅସୁବିଧାର ସମ୍ମୁଖୀନ ହୁଅନ୍ତି । ତା'ର କାରଣ ସେ ଗାନ୍ଧି, ମାର୍କ୍ସ ଓ ଶଙ୍କର ଆଦିଙ୍କୁ

ଭେଦି ଅତିକ୍ରମ କରିଯାଇଥିଲେ । ଏଣୁ ତାଙ୍କୁ ମାର୍କ୍ସୀୟ ଗାନ୍ଧିବାଦୀ କହିବା ବି ଠିକ୍ ନୁହେଁ । ତାଙ୍କ ଜୀବନକୁ ବ୍ୟର୍ଥତାର ଏକ ଅଧ୍ୟାୟ ବୋଲି କିଛିଲୋକ କହନ୍ତି । ସେଭଳି ବିଚାର କରିବାକୁ ଗଲେ ବୁଦ୍ଧ, ଯୀଶୁ ଏବଂ ଗାନ୍ଧି, କାହାର ସ୍ୱପ୍ନ ବା ସାକାର ହୋଇଛି ? ତଥାପି ସେହି ମହାନ୍ ଯୁଗପୁରୁଷମାନଙ୍କର ବ୍ୟର୍ଥତା ମଧ୍ୟରେ ଯୁଗାନ୍ତକାରୀ ସନ୍ଦେଶ ରହିଛି ବୋଲି ସାଧାରଣ ଭାବରେ ସ୍ୱୀକୃତ । ସେହି ବିଚାରକୁ ଅନ୍ଧାରିମୂଳକରେ ଲୋକଙ୍କୁ ପ୍ରତିବାଦ ଓ ପ୍ରତିରୋଧ ଶିଖାଇବା ଓ ଶାସନ ନିଆଁ ଭିତରୁ ନିଷ୍କଳଙ୍କ ହୋଇ ବାହାରିଥିବା ନବକୃଷ୍ଣ ଚୌଧୁରୀ, ପର ପିଢ଼ି ଲାଗି ତ୍ୟାଗ ଓ ନିଷ୍ଠାର ଯେଉଁ ଗୌରବମୟ ଅଧ୍ୟାୟ ରଖିଯାଇଛନ୍ତି, ତାହା ଭବିଷ୍ୟତ ବଂଶଧରଙ୍କ ଲାଗି ଏକ ସମ୍ପଦ ହୋଇ ରହିବ । ତାହା ହିଁ ତାଙ୍କର ଆମ୍ଭମାନଙ୍କ ପାଇଁ ସନ୍ଦେଶ ।

ସବୁ ଧର୍ମ, ମତବାଦ ଓ ସଭ୍ୟତାର ଚୂଡ଼ାନ୍ତ ସାଫଲ୍ୟ ଜାଣିହୁଏ, ତାହା କିଭଳି ମଣିଷ ସୃଷ୍ଟି କରିଛି, ସେଇଥିରୁ । ସେହି ବିଚାରରୁ ନବକୃଷ୍ଣ ଚୌଧୁରୀଙ୍କ ଭଳି 'ପୁରୁଷୋତ୍ତମ'ଙ୍କ ପାଇଁ ଯେକୌଣସି ଜାତି, ଧର୍ମ ଓ ମତବାଦର ଲୋକ ଗର୍ବ ଅନୁଭବ କରିବାର କଥା । ରବୀନ୍ଦ୍ରନାଥଙ୍କର ନିମ୍ନ କବିତାଟି ତାଙ୍କ ସମ୍ପର୍କରେ ଅଧିକ ପ୍ରାସଙ୍ଗିକ ବୋଲି ସେଇଟି ଏଠାରେ ଦିଆଗଲା ।

କୋନ୍ ଆଲୋତେ ପ୍ରାନେର 'ପ୍ରଦୀପ ଜ୍ୱାଲିୟେ ତୁମି ଧରାୟ ଆସ
ସାଧକ ଓଗୋ, ପ୍ରେମିକ ଓଗୋ,
ପାଗଲ ଓଗୋ, ଧରାୟ ଆସ ॥

ଏଇ ଅକୁଲ ସଂସାରେ
ଦୁଃଖ ଆଘାତ ତୋମାର-ପ୍ରାନେ ବୀଣା ଝଙ୍କାରେ ।
ଘୋର ବିପଦ ମାଝେ
କୋନ୍ ଜନନୀର ସୁଖେର ହାସି ଦେଖିୟା ହାସୋ ।
ତୁମି କାହାର ସନ୍ଧାନେ
ସକଲ୍ ସୁଖେ ଆଗୁନ୍ ଜ୍ୱେଲେ ବେଡାଓ କେ ଜାନେ !
ଏମନ୍ ବ୍ୟାକୁଲ୍ କରେ
କେ ତୋମାରେ କାଁଦାୟ ଯାରେ ଭାଲୋବାସ ॥

ତୋମାର ଭାବନା କିଛୁ ନାଇ
କେ ଯେ ତୋମାର ସାଥେର ସାଥି ଭାବି ମନେ ତାର

ତୁମି ମରନ ଭୁଲେ
କୋନ୍ ଅନନ୍ତ ପ୍ରାନ୍‌ସାଗରେ ଆନନ୍ଦେ ଭାସ ।

କବି ବିନୋଦଚନ୍ଦ୍ର ରାଉତରାୟ ସାଧାରଣଙ୍କ ବୁଝିବା ଭଳି ଭାଷାରେ ତାଙ୍କ ଉଦ୍ଦେଶ୍ୟରେ ଯେଉଁ ସଂକ୍ଷିପ୍ତ ଶ୍ରଦ୍ଧାଞ୍ଜଳି ଜଣାଇଛନ୍ତି, ତାହା ଏହିପରି–

''କିପରି ହେବାକୁ ହୁଏ ସଂଗ୍ରାମରେ ମରଣ ନିର୍ଭୟ
କେଉଁପରି କରାଯାଏ ଦୃଢ଼ ହୋଇ ହୃଦୟକୁ ଜୟ,
ରାଜେନ୍ଦ୍ର ଆସନେ ବସି କେଉଁପରି କରାଯାଏ ଯୋଗ
ତ୍ୟାଗପୂତ ଜୀବନକୁ କେଉଁପରି କରାଯାଏ ଭୋଗ ;
ତାହା ହିଁ ପ୍ରମାଣ କଲ ଗୋଟି ଗୋଟି ଯୁଗସ୍ରଷ୍ଟା ପରି
ଜାତି ଓ ଜନତା ଆଗେ ହେ ମହାନ୍ ନବ ଚୌଧୁରୀ ।''

## ଅନ୍ତିମ ଯାତ୍ରା :

ମନମୋହନ ଚୌଧୁରୀଙ୍କ ପୁଅର ଦେହାନ୍ତ ପରେ ବୋହୂ ଓ ଦୁଇ ନାତି ଯୁକ୍ତରାଷ୍ଟ୍ରରୁ ଆସିଥିଲେ । ସେମାନଙ୍କୁ ପୁଣି ଯୁକ୍ତରାଷ୍ଟ୍ରରେ ଛାଡ଼ିବା ଲାଗି ମନମୋହନ ଚୌଧୁରୀ ଓ ସୁମିତ୍ରାଦେବୀ ସେମାନଙ୍କ ସଙ୍ଗରେ ଯାଇଥିଲେ । ଓଡ଼ିଶା ଛାଡ଼ିବା ପୂର୍ବରୁ ସେମାନେ ନବବାବୁ ଓ ମାଳତୀଦେବୀଙ୍କୁ ଦେଖାକରି ବିଦାୟ ନେବାକୁ ଅନୁଗୋଳ ଆସିଥିଲେ । କୁଟୀର ସାମ୍ନାରେ ନବବାବୁ ଏକ ଦସ୍ତା ପାଣିକୁଣ୍ଡରେ ପ୍ରାକୃତିକ ଚିକିତ୍ସା ପଦ୍ଧତିରେ ସ୍ନାନାବସ୍ଥାରେ ଥାଆନ୍ତି । ବିଦାୟ ନେଲାବେଳେ ମନମୋହନ ବାବୁଙ୍କ ଆଖିରୁ ଦୁଇଟୋପା ଲୁହ ବହିପଡ଼ିଥିଲା, ଯାହା କି ତାଙ୍କଠାରେ କେହି ଦେଖି ନଥିଲେ ଏବଂ ନବବାବୁଙ୍କ ଆଖିରୁ ସେହି ପାଣିକୁଣ୍ଡରେ ଲୁହ ଝରିପଡୁଥାଏ । କିଛି କଥାବାର୍ତ୍ତା ନାହିଁ; କେବଳ ଆଖିରେ ବିଦାୟ-ବିଚ୍ଛେଦ । ସେଇଟି ଥିଲା ଦୀର୍ଘ ଓ ଗଭୀର ସମ୍ପର୍କର ଶେଷ ଦେଖା ।

ବ୍ୟକ୍ତିଗତ ଜୀବନର ଏସବୁ ଲଦିହୋଇପଡ଼ିଥିବା ବିପଦ ତାଙ୍କୁ ଯେତେ ଭାଙ୍ଗିପକାଇ-ନଥିଲା, ତାହାଠାରୁ ଅଧିକ ଦୁଃଖଦାୟକ ହୋଇଥିଲା ଦେଶର ଏବଂ ଲୋକଙ୍କର ସାଂଘାତିକ ଅଧୋଗତି । ବାଜି ରାଉତ ଛାତ୍ରାବାସର ପ୍ରାଣଚଞ୍ଚଳ ଅବସ୍ଥା ଯାଇ ସେତେବେଳକୁ ସେ ହୋଇଯାଇଥିଲା ନିଷ୍ପ୍ରାଣ । ନବଜୀବନ ମଣ୍ଡଳକୁ ଆଉ ନୂଆ କର୍ମୀ ଆସୁନଥିଲେ ଏବଂ ପ୍ରବୀଣ କର୍ମୀମାନେ ବୟସାଧିକ୍ୟ ଯୋଗୁଁ ଅନୁନ୍ନତ ଅଞ୍ଚଳରେ ଆଖିଦୃଶିଆ କାମ କରିବା ଅବସ୍ଥାରେ

ନଥିଲେ । ନବବାବୁ ଓ ମାଳତୀଦେବୀଙ୍କର ସ୍ୱପ୍ନର 'ଜୀବନ ବିଦ୍ୟାଳୟ'ର ମୃତ୍ୟୁ ଘଟିଯାଇଥିଲା ବହୁ ଦିନରୁ ।

ଯେଉଁ ଲୋକର ପ୍ରାଣଖୋଲା ହସ ବହୁ ଲୋକଙ୍କୁ ମୁଗ୍ଧ କରିଦେଉଥିଲା, ମୃତ୍ୟୁର ଦଶବର୍ଷ ପୂର୍ବରୁ ସେ ହସ ଶୁଖିଯାଇଥିଲା । ଯିଏ ଅଧିକାଂଶ ସମୟ ସ୍ଥିତପ୍ରଜ୍ଞ ଭଳି ଜଣାଯାଉଥିଲେ, ଶେଷ ଆଡ଼କୁ ସେ ଅତ୍ୟନ୍ତ ଅସହିଷ୍ଣୁ ଓ ଚିଡ଼୍‌ଚିଡ଼ା ହୋଇପଡ଼ିଥିଲେ । ତାଙ୍କ ମୁହଁରୁ ଯେଉଁ ଭାଷା କେହି ଶୁଣି ନଥିଲେ, ସେହି ମୁହଁରୁ ସେଭଳି ଅଶାଳୀନ କଥା ଶୁଣାଗଲା । ଶେଷଆଡ଼କୁ ତାଙ୍କ ଚେହେରା ବି ଅନେକ ପରିମାଣରେ ବଦଳିଯାଇଥିଲା । ତାଙ୍କ ଶେଷ ବେଳର ଫଟୋରୁ ତାଙ୍କୁ ମୋଟେ ଚିହ୍ନିହୁଏ ନାହିଁ । ଯିଏ ସବୁ ଦୁଃଖ, ଅବସାଦକୁ ପଛରେ ପକାଇ ଆସିଥିଲେ, ଅନ୍ତିମ କାଳକୁ ସେସବୁ ଯେମିତି ତାଙ୍କୁ ଘୋଟିଆସିଲା । ଶେଷ ଜୀବନକୁ ଖାଲି ଲୁହ ବୁହାଇବା, ସତେ ଯେଭଳି, ତାଙ୍କ ପାଇଁ ରହିଯାଇଥିଲା ।

୧୯୮୩ ଅକ୍ଟୋବର ମାସରେ ଶୋକସନ୍ତପ୍ତ ବୋହୂ ଓ ନାତିମାନଙ୍କୁ ଦେଖି କଟକରୁ ଫେରିବା ପରେ ସନ୍ଧ୍ୟା ପ୍ରାର୍ଥନା ବେଳେ କୃଷ୍ଣା ପ୍ରଥମ କେତେ ଦିନ 'ଗୀତା ପ୍ରବଚନ' ପଢ଼ି ନବବାବୁଙ୍କୁ ଶୁଣାଉଥିଲେ । ତାହା ସରିବା ପରେ, ପ୍ରାର୍ଥନା ପରେ, ମନମୋହନ ଚୌଧୁରୀଙ୍କ 'ହାଟ ବଜାରର ବ୍ରହ୍ମଜ୍ଞାନ' ପଢ଼ାଯାଏ । ସେ ବହି ସରିବା ପର୍ଯ୍ୟନ୍ତ ନବବାବୁ ସବୁତକ ମନଦେଇ ଶୁଣନ୍ତି । ଅନ୍ୟମାନଙ୍କୁ କହନ୍ତି, ''ବୁଲା (ମନମୋହନ ଚୌଧୁରୀ) ଗୋଟିଏ ଚମତ୍କାର ବହି ଲେଖିଛି; ପଢ଼ିଛ ?''

୧୯୮୪ ଜୁନ୍ ମାସରେ କୃଷ୍ଣାଙ୍କର ସାନଝିଅର ବିବାହ ଲାଗି ସବୁ ସମ୍ପର୍କୀୟ ଲୋକ ଏବଂ ପିଲାମାନେ ଅନୁଗୋଳ ଆସିଥାନ୍ତି । ଜୁନ୍ ୧୭ ତାରିଖରେ ସେ ଏତେ ଅସୁସ୍ଥ ହୋଇପଡ଼ିଥିଲେ ଯେ ଆଉ କିଛି ଖାଇଲେ ନାହିଁ । ସେ ପର୍ଯ୍ୟନ୍ତ ବିବାହ କାର୍ଯ୍ୟରେ ବିଘ୍ନ ଘଟିବ ବୋଲି ସେ ସବୁ କଷ୍ଟ ସହିଯାଉଥିଲେ । ତାଙ୍କର ଅବସ୍ଥା ଦେଖି ଡାକ୍ତର ଯଦୁନାଥ ଦାସଙ୍କୁ ଡକାଗଲା । ସେ ଆସି ଦେଖି ଭାରି ବ୍ୟସ୍ତ ହେଲେ । କିନ୍ତୁ ତାଙ୍କୁ କଟକ ନେବା ଉଚିତ ମନେକରାଗଲା ନାହିଁ ଓ ସେ ବି ଅନୁଗୋଳରୁ ଏଭଳି ସମୟରେ ଯିବାକୁ ଚାହୁଁନଥିଲେ । ଚିକିତ୍ସା ଚାଲିଲା ଓ ବିବାହ ସରି ଜୁନ୍ ୧୯ ତାରିଖ ଦିନ ଝିଅଜ୍ୱାଇଁ ବିଦାୟ ନେଲେ । ଏହାପରେ ନବବାବୁଙ୍କ ଅବସ୍ଥା ଅଧିକ ଖରାପ ହେବାକୁ ଲାଗିଥାଏ । ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଏ ଖବର ପାଇ ତାଙ୍କୁ ଦେଖି ଫେରିଯିବା ପରେ ଯଦୁବାବୁଙ୍କ ସହ କଟକରୁ ଏକ ଡାକ୍ତର ଟିମ୍ ପଠାଇଲେ । ଫର୍ଟିଲାଇଜର୍ କର୍ପୋରେସନ୍‌ରୁ ଅକ୍ସିଜେନ୍ ସିଲିଣ୍ଡର ଅଣାଗଲା ।

ପାଳିକରି ଦୁଇଜଣ ଲେଖା ଡାକ୍ତର ତାଙ୍କ ପାଖରେ ରହିଲେ । ରାଜ୍ୟପାଳ ବିଶ୍ୱମ୍ଭରନାଥ ପାଣ୍ଡେ ମଧ୍ୟ ତାଙ୍କୁ ଦେଖିବାକୁ ଆସିଲେ । ନବବାବୁ ଆଉ କିଛି ଖାଇବାକୁ ଚାହୁଁ ନଥିଲେ । ଝାଡ଼ା ଓ ପରିସ୍ରା ମଧ୍ୟ ବନ୍ଦ ହୋଇଗଲା । ଛାତ୍ରାବାସ ଛୁଟି ହୋଇଯାଇଥିବାରୁ କେହି ପିଲା ନଥାନ୍ତି ଓ ଅନେକ କର୍ମକର୍ତ୍ତା ମଧ୍ୟ ନଥାନ୍ତି । ନବବାବୁ ସେମାନଙ୍କୁ ଦେଖିବାକୁ ଚାହିଁଥିଲେ । କଥା ସେତେବେଳକୁ ଅସ୍ପଷ୍ଟ ହେଲାଣି । ତାଙ୍କର ଆଶଙ୍କା ହେଲା, ତାଙ୍କୁ କଟକ ନିଆଯାଇଛି । ଏଣୁ ସନ୍ଦେହ ଦୂର କରିବାଲାଗି ଡାକୁଥାନ୍ତି, ''ବାବାଜୀ କାହିଁ ? ବଇଁଶୀ କାହିଁ ?'' ସେହି ଅବସ୍ଥାରେ ରମାଦେବୀ କଟକ ଅନୁଗୋଳ ମଧ୍ୟରେ ଯା'ଆସ କରୁଥାନ୍ତି । ଜୁନ୍ ୨୩ ତାରିଖ ସନ୍ଧ୍ୟାରେ ଖାଇବାକୁ ଯାଚିବାରୁ ନବବାବୁ କହିଲେ, ''ରହ, ଆଗ ଗାଈ ଖାଆନ୍ତୁ । ଗାଈକୁ କିଏ ଖାଇବାକୁ ଦେଲାନା ?'' କନ୍ୟାଶ୍ରମର ଛୋଟଛୋଟ ଝିଅଙ୍କ ନାଁ ଧରି ଡାକୁଥାନ୍ତି ।

ସନ୍ଧ୍ୟାବେଳେ ଯଦୁନାଥ ଦାସ ନବବାବୁଙ୍କୁ ଦେଖି କଟକ ଫେରିଗଲେ । ଗଲା ବେଳକୁ ବିଭୂତିବାବୁ ଓ ନାରାୟଣ ଦେଶାଇଙ୍କ ପୁଅ ବାବୁଲିକୁ କିଛି ଇଙ୍ଗିତ ଦେଇଗଲେ । ରାତିରେ ସେ ବିଳିବିଳେଇଲେ । ତା'ରି ଭିତରେ ସେ 'ମହତାବ', 'ମହତାବ' ହେଉଥାନ୍ତି । ରାତିରେ ମହତାବଙ୍କୁ ଏ ଖବର ଦେଇ ତାଙ୍କୁ ଅନୁଗୋଳ ଆସିବାକୁ ଅନୁରୋଧ କରାଯାଇଥିଲା । ମହତାବବାବୁ କହିଥିଲେ, ''ଏ ତ ସଂସାରର ଧାରା । ଆଗ ପଛ ହୋଇ ସମସ୍ତେ ଯିବା । ଆଉ ବ୍ୟସ୍ତ ହେଲେ କଅଣ ହେବ ?'' ରାତି ଗୋଟାଏ ପରଠାରୁ ନିଃଶ୍ୱାସରେ କଷ୍ଟ ଜଣାଗଲା । ଅକ୍ସିଜେନ୍ ଓ ଇଞ୍ଜେକ୍ସନ୍ ଚାଲିଥାଏ । ଶେଷରେ ଛାତିକୁ ଘଷିବା ଓ ପାଟିରେ ନିଃଶ୍ୱାସ ପୂରାଇ ଡାକ୍ତରମାନେ ହୃତ୍‌ପିଣ୍ଡକୁ ସଜୀବ ରଖିବା ଚେଷ୍ଟାରେ ଲାଗିଥାନ୍ତି । ଶେଷରେ ସମସ୍ତ ଉଦ୍ୟମ ବ୍ୟର୍ଥ ହୋଇ ହୃଦ୍‌କ୍ରିୟା ବନ୍ଦ ହୋଇଗଲା । ଡାକ୍ତରମାନେ 'ଆଉ କିଛି ନାହିଁ' ବୋଲି ଘୋଷଣା କଲେ । କୃଷ୍ଣା ସେଥିରେ ବିଶ୍ୱାସ ନ କରି ନବବାବୁଙ୍କ ଛାତିରେ ମୁଣ୍ଡ ରଖିଲେ, କିନ୍ତୁ କାନପାତି ଆଉ ଶବ୍ଦ ଶୁଣିପାରିଲେ ନାହିଁ । ମାଳତୀଦେବୀ ପଥର ହୋଇ ଏସବୁ ଦେଖୁଥିଲେ । କିଛି ସମୟ ପରେ କହିଉଠିଲେ, ''ଦେଖିଲ, ମତେ ଠକିଦେଇ ଏକା ଛାଡ଼ି କେମିତି ଚାଲିଗଲା ?'' ସେହି ରାତିର ତୃତୀୟ ପ୍ରହରରେ ଆଶ୍ରମ ଓ ନବଜୀବନ ମଣ୍ଡଳ ପରିସର ମଧ୍ୟରେ ଥିବା ସମସ୍ତଙ୍କୁ ଖବର ଜଣାଇ ଦିଆଗଲା । ଅନେକେ ତ ରାତିଅଧ ପର୍ଯ୍ୟନ୍ତ ଥିଲେ ଓ ଘରକୁ ଫେରି ସାମାନ୍ୟ ଶୋଇଥିଲେ । ସମସ୍ତେ ଆସିଲା ପରେ ସ୍ଥାନୀୟ ଉପଜିଲ୍ଲାପାଳଙ୍କୁ ତଥା ଜିଲ୍ଲାପାଳଙ୍କୁ ସମ୍ବାଦ ଦିଆଗଲା ଏବଂ ପରଦିନ ଶବ ସଂସ୍କାର କରାଗଲା ।

ମୃତ୍ୟୁର ଏକାଦଶ ଦିନ ପର୍ଯ୍ୟନ୍ତ ଦୂରଦୂରାନ୍ତରରୁ ବନ୍ଧୁ ଓ ସହକର୍ମୀମାନେ ଶଙ୍ଖୋଳି ଆସୁଥିଲେ । ହିନ୍ଦୁ ପ୍ରଚଳିତ ପଦ୍ଧତି ଅନୁସାରେ ଦଶାହ, ଏକାଦଶାହ ପାଳନ କରାଯାଇ ନଥିଲା । କିନ୍ତୁ ଏକାଦଶ ଦିନ ଯେଉଁମାନେ ଉପସ୍ଥିତ ଥିଲେ, ସେମାନଙ୍କ ମଧ୍ୟରୁ ଯେଉଁମାନେ ଚାହିଁଲେ, ତାଙ୍କୁ କୃଷ୍ଣା ସ୍ମାରକୀ ଭାବରେ ଗୋଟିଏ ଗୋଟିଏ ଜିନିଷ ଦେଇଥିଲେ । ନବବାବୁଙ୍କର ଏକାନ୍ତ ବିଶ୍ୱସ୍ତ ରବୀନ୍ଦ୍ରନାଥ ସାହୁ ତାଙ୍କର ଏକ ପଞ୍ଜାବି ଆଣି ସାଇତିରଖିଛନ୍ତି ।

ଜୀବନର ଅନ୍ତିମ କାଳରେ ନବବାବୁ ଲକ୍ଷ୍ୟ କରିଥିଲେ ଯେ ଲୋକଙ୍କର ଧର୍ମଭାବନା କମିକମିଯାଉଛି । ସମାଜସେବା ଲାଗି ଶିକ୍ଷିତ, ବିଦ୍ୱାନ ଓ ଥିଲାବାଲା ଘରର ପିଲାମାନେ ଆଉ ବାହାରୁନାହାନ୍ତି । ଏହା ଫଳରେ ଦୁର୍ଗତଙ୍କ ଆର୍ଥିକ ସ୍ଥିତି ସୁଧାରିବା ପାଇଁ ଯେଉଁ ବିପୁଳ ରାଷ୍ଟ୍ରୀୟ ସମ୍ବଳ ଦିଆହେଉଛି, ତାହା ପାଣିରେ ପଡୁଛି । ଏହି ତିନୋଟି କଥା ତାଙ୍କୁ ଶେଷ ବେଳକୁ ଭାରି ବାଧୁଥିଲା ।

ଶିକ୍ଷିତ, ବିଦ୍ୱାନ ଓ ଥିଲାବାଲା ଘରର ପିଲା ରବୀନ୍ଦ୍ରନାଥ ସାହୁଙ୍କ ଭଳି ଅଳ୍ପ କିଛି ଯୁବକ ସମାଜସେବା ଲାଗି ଆସି ତ୍ୟାଗର ନିଦର୍ଶନ ଦେଖାଇଥିବାରୁ ସେଭଳି ଯୁବକ ନବବାବୁଙ୍କର ଭାରି ପ୍ରିୟ । ସେ ଅନେକ ସମୟରେ ସେମାନଙ୍କ ଘରକୁ ଯାଇ ନାନା କଥା ଆଲୋଚନା କରୁଥିଲେ ଓ ସମୟ କଟାଉଥିଲେ । ଏହାସତ୍ତ୍ୱେ ନବବାବୁଙ୍କ ପୁରୁଣା ପଞ୍ଜାବିଟି ପିନ୍ଧିବାକୁ ରବିବାବୁଙ୍କୁ ଡର ଲାଗେ ।



ଡକ୍ଟର ହରେକୃଷ୍ଣ ମହତାବଙ୍କ ଭାଷାରେ :

''ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲେ ଇତ୍ୟାଦି ବର୍ଣ୍ଣନାରୁ ସେ କ'ଣ ଥିଲେ ଯୁବକମାନେ ଜାଣିପାରିବେ ନାହିଁ । ସେ ଥିଲେ ଓଡ଼ିଶା କଂଗ୍ରେସ ଇତିହାସର ଏକ ଅଧ୍ୟାୟର ପ୍ରଧାନ ନାୟକ । ସୋସାଲିଷ୍ଟ ପାର୍ଟିର ଥିସିସ୍ କଟକସ୍ଥ ନବବାବୁଙ୍କ ଘରେ ପ୍ରସ୍ତୁତ ହୋଇଥିଲା । ମିନୁ ମାସାନି, ଅଚ୍ୟୁତ ପଟ୍ଟବର୍ଦ୍ଧନ ପ୍ରଭୃତି ସେଇଠି ଏକତ୍ର ହେଉଥିଲେ । ନବବାବୁଙ୍କ ଜୀବନ ଥିଲା ସମାଜବାଦୀର ଜୀବନ ।''

ନବକୃଷ୍ଣ ଚୌଧୁରୀ ଗୌତମ ବୁଦ୍ଧଙ୍କ ଭଳି ନିର୍ବାଣ ଚାହିଁନଥିଲେ କି ଶଙ୍କରାଚାର୍ଯ୍ୟଙ୍କ ଭଳି ବ୍ରହ୍ମତ୍ୱ ଲାଭ କାମନା କରି ନ ଥିଲେ । ସେ ଚାହିଁଥିଲେ ଏହି ଧୂଳିମାଟିର ଲୋକଙ୍କ ପାଇଁ ଦୁଃଖସୁଖରେ ନିଜକୁ ମିଶାଇ ଦେବା ଲାଗି । ସେହି ମାନବବାଦୀ ମଣିଷଟିର ଚେହେରାରେ ବାହ୍ୟ ଧାର୍ମିକ ଛାପ ନ ଥିଲା । କିନ୍ତୁ କାର୍ଯ୍ୟରେ ଥିଲେ ସେ ବୈଷ୍ଣବ, ଶାକ୍ତ ଭାବର, ଅବଧୂତ ଓ ସଂଶ୍ଳେଷଣ । ସେ ମାର୍କ୍ସବାଦୀ ବୋଲି ଦାବି କରୁ ନ ଥିଲେ ବି ସେ ଥିଲେ ସଚ୍ଚା ମାର୍କ୍ସବାଦୀ ।

ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଜୀବନୀ ଓ ତତ୍‌କାଳୀନ ପୃଷ୍ଠଭୂମିକୁ ନେଇ 'ଅନିର୍ବାଣ' ଗ୍ରନ୍ଥ ପରିକଳ୍ପିତ । ଲେଖକ ପଦ୍ମଚରଣ ନାୟକ ଏକାଧାରରେ ଜଣେ ଗବେଷକ ଓ ସଂପାଦକ ଭୂମିକାରେ ଅବତୀର୍ଣ୍ଣ ହୋଇ ଏହି ଜୀବନୀ ଗ୍ରନ୍ଥଟିକୁ ଏକ ନୂତନ ଆଙ୍ଗିକରେ ସୁସଜ୍ଜିତ କରିଛନ୍ତି । ବହୁ ମୂଲ୍ୟବାନ ଚିଠି ଓ ଦଲିଲ ଏଥିରେ ସନ୍ନିବେଶିତ କରି ଜୀବନୀ ଗ୍ରନ୍ଥଟିକୁ ଅଧିକ ବିଶ୍ୱସନୀୟ କରିପାରିଛନ୍ତି । ଜୀବନୀ ରଚନା କ୍ଷେତ୍ରରେ 'ଅନିର୍ବାଣ' ଏକ ନୂତନ ଦିଗନ୍ତ ସୃଷ୍ଟି କରିବା ସହ ଏକ ସ୍ୱତନ୍ତ୍ର ସାରସ୍ୱତ ଆବେଦନର ନମୁନା ବହନ କରୁଛି ।

ଧରିତ୍ରୀ

'ଅନିର୍ବାଣ' ଏକ ଅନନ୍ୟ ବ୍ୟକ୍ତିତ୍ୱର ଅମ୍ଳାନ ଜୀବନ ସ୍ମୃତି । ଇଏ ମଧ୍ୟ ସେହି ସମୟର ରାଜନୈତିକ ଓ ସାମାଜିକ ଇତିହାସ । ଆମ୍ଭେ ଆଶା କରୁଛୁ ଏ ବହିଟି ତା'ର ଯଥାଯୋଗ୍ୟ ପାଠକୀୟ ସ୍ୱୀକୃତି ପାଇବ । ଏପରି ପୁସ୍ତକ ସ୍କୁଲ, କଲେଜ ଓ ବିଶ୍ୱବିଦ୍ୟାଳୟ ପାଠ୍ୟ ପୁସ୍ତକ ଭାବେ ଗୃହୀତ ହେଲେ ଆମ୍ଭେମାନେ ଆନନ୍ଦିତ ହେବୁ ।

ସମ୍ବାଦ

ସରଳ ଅଥଚ ମନଛୁଆଁ ଶୈଳୀରେ ନବକୃଷ୍ଣ ଚୌଧୁରୀଙ୍କର ଜୀବନୀ ପୁସ୍ତକ 'ଅନିର୍ବାଣ' ପ୍ରକାଶିତ । ଦେଶ ଓ ଜାତିର ସ୍ୱାଧୀନତା ସଂଗ୍ରାମ କାଳରେ ନବକୃଷ୍ଣ ଚୌଧୁରୀଙ୍କର ଦୃଷ୍ଟିଭଙ୍ଗୀ, କାର୍ଯ୍ୟ ପଦ୍ଧତି ଓ ସଂଗ୍ରାମର ସମୟ ଓ ଓଡ଼ିଶାର ବିକାଶର ବହୁ ଘନଘଟା ସଫଳତାର ସହ ଉପସ୍ଥାପନ କରାଯାଇଛି ।

ପ୍ରଜାତନ୍ତ୍ର ସାପ୍ତାହିକୀ

ବହିଟିର ପ୍ରତ୍ୟେକ ଅନୁଚ୍ଛେଦ ପାଠ କଲାପରେ ନବକୃଷ୍ଣ ଚୌଧୁରୀଙ୍କ ଜୀବନର ବିଭିନ୍ନ ଦିଗ ଯେପରି ଭାବରେ ଉନ୍ମୀଳିତ ହୋଇଚାଲିଛି, ତାହା ଗୋଟିଏ ଉପନ୍ୟାସ ଭଳି ଲାଗୁଛି ।

ପ୍ରଫେସର ଡକ୍ଟର ରାଧାନାଥ ରଥ

ଆମ ଦେଶର ମହାନ ସ୍ୱାଧୀନତା ସଂଗ୍ରାମୀ, ତ୍ୟାଗୀ ଓ ଜନନାୟକ ନବବାବୁଙ୍କର ଏପରି ଏକ ଚମତ୍କାର ଜୀବନୀ ମାଧ୍ୟମରେ ଓଡ଼ିଶାର ଅର୍ଦ୍ଧଶତାବ୍ଦୀର ରାଜନୈତିକ ଚିତ୍ର ମଧ୍ୟ ଅଭିବ୍ୟକ୍ତ ଲାଭ କରିଛି ।

ପ୍ରଫେସର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)



ISBN 81-7703-081-7
9788177030815




ବିଦ୍ୟା ପ୍ରକାଶନ